# ଶ୍ରୀମଦ୍

# ବାଲ୍ମୀକିରାମାୟଣମ୍

## (କିଷ୍କିନ୍ଧାକାଣ୍ଡଃ)

---


ସଂଗ୍ରାହକ ଓ ଅନୁବାଦକ

**ପଣ୍ଡିତ ଲିଙ୍ଗରାଜ ମିଶ୍ର, ଏମ୍. ଏ.**



ପ୍ରଥମ ସଂସ୍କରଣ

୧୯୫୫






ମୂଲ୍ୟ ଟ ୬୲ ଛଅ ଟଙ୍କା ମାତ୍ର

# ଶ୍ରୀମଦ୍ରାମାୟଣସର୍ଗନାମାନୁକ୍ରମଣିକା

## କିଷ୍କିନ୍ଧାକାଣ୍ଡଃ

# ଶ୍ରୀମଦ୍‌ବାଲ୍ମୀକିରାମାୟଣମ୍

## କିଷ୍କିନ୍ଧାକାଣ୍ଡଃ

---

## ପ୍ରଥମଃ ସର୍ଗଃ

### ରାମବିପ୍ରଲମ୍ଭାବେଶଃ

ସ ତାଂ ପୁଷ୍କରିଣୀଂ ଗତ୍ୱା ପଦ୍ମୋତ୍ପଳଝଷାକୁଳାମ୍ ।
ରାମଃ ସୌମିତ୍ରିସହିତୋ ବିଲଲାପାକୁଳେନ୍ଦ୍ରିୟଃ । ୧ ।
ତତ୍ର ଦୃଷ୍ଟ୍ୱୈବ ତାଂ ହର୍ଷାଦିନ୍ଦ୍ରିୟାଣି ଚକମ୍ପିରେ ।
ସ କାମବଶମାପନ୍ନଃ ସୌମିତ୍ରିମିଦମବ୍ରବୀତ୍ । ୨ ।
ସୌମିତ୍ରେ ଶୋଭତେ ପମ୍ପା ବୈଦୂର୍ଯ୍ୟବିମଳୋଦକା ।
ଫୁଲ୍ଲପଦ୍ମୋତ୍ପଳବତୀ ଶୋଭିତା ବିବିଧୈର୍ଦ୍ରୁମୈଃ । ୩ ।

---

## ୧ମ ସର୍ଗ

### (ରାମଙ୍କର ବିରହବେଦନା)

ପଦ୍ମ, ମାଳକଇଁ ଏବଂ ମତ୍ସ୍ୟପୂର୍ଣ୍ଣ ସେହି ପମ୍ପାସରୋବରକୁ ରାମଚନ୍ଦ୍ର ଲକ୍ଷ୍ମଣଙ୍କ ସହିତ ଯାଇ ଦେଖିବାମାତ୍ରେ ତାଙ୍କର ଇନ୍ଦ୍ରିୟସବୁ ବିଚଳିତ ହୋଇ ଉଠିଲା ଏବଂ ସେ ବିଳାପ କରିବାକୁ ଲାଗିଲେ । ୧ । ସେହି ପମ୍ପାସରୋବରକୁ ଦେଖିବାମାତ୍ରେ ତାଙ୍କର ଇନ୍ଦ୍ରିୟମାନ କମ୍ପିଗଲା ଏବଂ କାମବଶ ହୋଇ ସେ ଲକ୍ଷ୍ମଣଙ୍କୁ ଏହିପ୍ରକାରେ କହିଲେ । ୨ । "ଲକ୍ଷ୍ମଣ ! ଦେଖ, ଏ ପମ୍ପା କିପରି ସୁନ୍ଦର ଦିଶୁଅଛି । ଏହାର ପାଣି ବୈଦୂର୍ଯ୍ୟ ମଣିପରି ବିମଳ ହୋଇଅଛି । ଏଥିରେ ପଦ୍ମ ଓ ମାଳକଇଁ ସବୁ ଫୁଟିଅଛି ଏବଂ ଅନେକ ପ୍ରକାର ବୃକ୍ଷଦ୍ୱାରା ଏହା ଶୋଭିତ ହୋଇ ରହିଅଛି । ୩ । ଲକ୍ଷ୍ମଣ !

ସୌମିତ୍ରେ ପଶ୍ୟ ପମ୍ପାୟାଃ କାନନଂ ଶୁଭଦର୍ଶନମ୍ ।
ଯତ୍ର ରାଜନ୍ତି ଶୈଳାଭା ଦ୍ରୁମାଃ ସଶିଖରା ଇବ । ୪ ।
ମାଂ ତୁ ଶୋକାଭିସନ୍ତପ୍ତମାଧୟଃ ପୀଡ଼ୟନ୍ତି ବୈ ।
ଭରତସ୍ୟ ଚ ଦୁଃଖେନ ବୈଦେହ୍ୟା ହରଣେନ ଚ । ୫ ।
ଶୋକାର୍ତ୍ତସ୍ୟାପି ମେ ପମ୍ପା ଶୋଭତେ ଚିତ୍ରକାନନା ।
ବ୍ୟବକୀର୍ଣ୍ଣା ବହୁବିଧୈଃ ପୁଷ୍ପୈଃ ଶୀତୋଦକା ଶିବା । ୬ ।
ନଳିନୈରପି ସଂଛନ୍ନା ହ୍ୟତ୍ୟର୍ଥଂ ଶୁଭଦର୍ଶନା ।
ସର୍ପବ୍ୟାଳାନୁଚରିତା ମୃଗଦ୍ୱିଜସମାକୁଳା । ୭ ।
ଅଧିକଂ ପ୍ରବିଭାତ୍ୟେତନ୍ନୀଳପୀତଂ ତୁ ଶାଦ୍ୱଳମ୍ ।
ଦ୍ରୁମାଣାଂ ବିବିଧୈଃ ପୁଷ୍ପୈଃ ପରିସ୍ତୋମୈରିବାର୍ପିତମ୍ । ୮ ।
ପୁଷ୍ପଭାରସମୃଦ୍ଧାନି ଶିଖରାଣି ସମନ୍ତତଃ ।
ଲତାଭିଃ ପୁଷ୍ପିତାଗ୍ରାଭିରୁପଗୂଢ଼ାନି ସର୍ବତଃ । ୯ ।
ସୁଖାନିଲୋଽୟଂ ସୌମିତ୍ରେ କାଳଃ ପ୍ରଚୁରମନ୍ମଥଃ ।
ଗନ୍ଧବାନ୍ ସୁରଭିର୍ମାସୋ ଜାତପୁଷ୍ପଫଳଦ୍ରୁମଃ । ୧୦ ।

---

ପମ୍ପାବନ ଆଡ଼କୁ ଦୃଷ୍ଟି ପକାଅ, ଏ କେଡ଼େ ସୁନ୍ଦର ଦେଖାଯାଉଛି ! ଏଥିରେ ଥିବା ବଡ଼ ବଡ଼ ବୃକ୍ଷମାନ ଶିଖରଯୁକ୍ତ ପର୍ବତପରି ଦେଖାଯାଉଛନ୍ତି । ୪ । ଶୋକସନ୍ତପ୍ତ ମୁଁ ଭରତର ଦୁଃଖରେ ଏବଂ ସୀତାଙ୍କ ହରଣହେତୁ ମାନସିକ ପୀଡ଼ାରେ ବ୍ୟାକୁଳ ହୋଇପଡ଼ୁଛି । ୫ । ମୁଁ ଶୋକସନ୍ତପ୍ତ ଏବଂ ଦୁଃଖିତ ଥିଲେ ମଧ୍ୟ ବିଚିତ୍ର କାନନଯୁକ୍ତ ଏ ପମ୍ପାସରୋବର ମୋତେ ଖୁବ୍ ସୁନ୍ଦର ଦେଖାଯାଉଛି । ଏଠାରେ ଅନେକ ପ୍ରକାର ଫୁଲ ଫୁଟିଅଛି ଏବଂ ଏହାର ଜଳ ଶୀତଳ ଓ ସୁନ୍ଦର ହୋଇଅଛି ।୬। ପଦ୍ମଫୁଲଦ୍ୱାରା ଏହାର ଜଳ ଘୋଡ଼ାଇ ହୋଇପଡ଼ୁଛି, ସର୍ପ ଏବଂ ଅନ୍ୟାନ୍ୟ ହିଂସ୍ରଜନ୍ତୁ ଏହା ଭିତରେ ଚଳବଚଳ ହେଉଛନ୍ତି, ଏହାର ଚାରିଆଡ଼େ ମଧ୍ୟ ମୃଗ ଓ ପକ୍ଷୀ ଘେରି ରହିଛନ୍ତି; ତଥାପି ଏହା ଅତିଶୟ ରମଣୀୟ ଦେଖାଯାଉ-ଅଛି । ୭ । ଏହାର ନୀଳ ଏବଂ ହଳଦିଆ ଘାସ ମୋତେ ବଡ଼ ସୁନ୍ଦର ଜଣାପଡ଼ୁଛି । ମନେହେଉଛି, ଯେପରିକି ଅନେକପ୍ରକାର ବୃକ୍ଷର ନାନା ପ୍ରକାର ପୁଷ୍ପରାଶି ଏକତ୍ର କରାଯାଇଛି । ୮ । ଏହି ସବୁ ବୃକ୍ଷର ଅଗ୍ରଭାଗମାନଙ୍କ ଉପରେ ଫୁଲର ବୋଝ ଲଦା ହୋଇଛି । ପୁଷ୍ପଯୁକ୍ତ ଲତାମାନେ ଏସବୁ ଗଛକୁ ବେଢ଼ି ରହିଛନ୍ତି । ୯ । ଲକ୍ଷ୍ମଣ ! ବର୍ତ୍ତମାନ ସୁଖକର ପବନ ବହୁଛି ଓ ଏ ସମୟ କାମୋଦ୍ଦୀପକ ଅଟେ । ଏହି ସୁଗନ୍ଧଯୁକ୍ତ ବସନ୍ତମାସରେ ଗଛମାନଙ୍କରେ ଫୁଲ ଏବଂ ଫଳ ଚାରିଆଡ଼େ ପୂର୍ଣ୍ଣ ହୋଇ ରହିଛି ।୧୦।

ପଶ୍ୟ ରୂପାଣି ସୌମିତ୍ରେ ବନାନାଂ ପୁଷ୍ପଶାଳିନାମ୍ ।
ସୃଜତାଂ ପୁଷ୍ପବର୍ଷାଣି ବର୍ଷଂ ତୋୟମୁଚାମିବ । ୧୧ ।
ପ୍ରସ୍ତରେଷୁ ଚ ରମ୍ୟେଷୁ ବିବିଧାଃ କାନନଦ୍ରୁମାଃ ।
ବାୟୁବେଗପ୍ରଚଳିତାଃ ପୁଷ୍ପୈରବକିରନ୍ତି ଗାମ୍ । ୧୨।
ପତିତୈଃ ପତମାନୈଶ୍ଚ ପାଦପସ୍ଥୈଶ୍ଚ ମାରୁତଃ ।
କୁସୁମୈଃ ପଶ୍ୟ ସୌମିତ୍ରେ କ୍ରୀଡ଼ତୀବ ସମନ୍ତତଃ । ୧୩ ।
ବିକ୍ଷିପନ୍ ବିବିଧାଃ ଶାଖା ନଗାନାଂ କୁସୁମୋତ୍କଟାଃ ।
ମାରୁତଶ୍ଚଳିତସ୍ଥାନୈଃ ଷଟ୍‌ପଦୈରନୁଗୀୟତେ । ୧୪ ।
ମତ୍ତକୋକିଳସଂନାଦୈର୍ନର୍ତ୍ତୟନ୍ନିବ ପାଦପାନ୍ ।
ଶୈଳକନ୍ଦରନିଷ୍କ୍ରାନ୍ତଃ ପ୍ରଗୀତ ଇବ ଚାନିଳଃ । ୧୫ ।
ତେନ ବିକ୍ଷିପତାତ୍ୟର୍ଥଂ ପବନେନ ସମନ୍ତତଃ ।
ଅମୀ ସଂସକ୍ତଶାଖାଗ୍ରା ଗ୍ରଥିତା ଇବ ପାଦପାଃ । ୧୬ ।
ସ ଏଷ ସୁଖସଂସ୍ପର୍ଶୋ ବାତି ଚନ୍ଦନଶୀତଳଃ ।
ଗନ୍ଧମଭ୍ୟବହନ୍ ପୁଣ୍ୟଂ ଶ୍ରମାପନୟନୋଽନିଳଃ । ୧୭ ।

---

ଲକ୍ଷ୍ମଣ ! ପୁଷ୍ପପୂର୍ଣ୍ଣ ଏ ବନର ଶୋଭା ଦେଖ; ମେଘ ଜଳବୃଷ୍ଟି କଲାପରି ଏହା ପୁଷ୍ପ-ବୃଷ୍ଟି କରୁଅଛି । ୧୧ । ବିବିଧ କାନନ ବୃକ୍ଷ ପବନରେ ଦୋହଲିବା ଦ୍ୱାରା ତଳେ ପଡ଼ିଥିବା ପଥର ଉପରେ ପୁଷ୍ପବୃଷ୍ଟି କରି ପୃଥିବୀକୁ ବରାବର ଢୋଡ଼ାଇ ପକାଉଛନ୍ତି । ୧୨ । ଦେଖ ଲକ୍ଷ୍ମଣ, ବୃକ୍ଷରୁ ଯେଉଁ ଫୁଲ ସବୁ ପଡ଼ିଯାଇଛି, ଯେଉଁସବୁ ପଡ଼ୁଛି ଏବଂ ଯେଉଁସବୁ ଏବେ ମଧ୍ୟ ବୃକ୍ଷରେ ଲଟକି ରହିଛି, ସେସବୁମଧ୍ୟରେ ପବନ କିପରି ଚାରିଆଡ଼େ ଖେଳା କରୁଛି । ୧୩ । ଫୁଲରେ ଭର୍ତ୍ତି ହୋଇଥିବା ବୃକ୍ଷମାନଙ୍କର ଶାଖାକୁ ହଲାଇଦେଇ ଯେତେବେଳେ ପବନ ଚାଲୁଛି, ସେତେବେଳେ ଭ୍ରମରମାନେ ସ୍ୱ ସ୍ୱ ସ୍ଥାନରୁ ବିଚ୍ୟୁତ ହୋଇ ତା ପଛେ ପଛେ ଗାଇ ଗାଇ ଉଡ଼ୁଛନ୍ତି । ୧୪ । ମତ୍ତ କୋକିଳର ସ୍ୱରଦ୍ୱାରା ବୃକ୍ଷମାନଙ୍କୁ ନଚାଇ ପର୍ବତଗୁହାରୁ ନିର୍ଗତ ହେଉଥିବା ବାୟୁ ଗାନ କରୁଥିଲାପରି ଜଣାପଡ଼ୁଛି । ୧୫ । ଏହି ବାୟୁ ଚାରିଆଡ଼ୁ ବୃକ୍ଷମାନଙ୍କୁ ବିଶେଷଭାବରେ ଦୋହଲାଇ ଦେଉଥିଲେ ସୁଦ୍ଧା, ସେ ସବୁ ଗଛର ଅଗ୍ରଭାଗ ଏପରିଭାବରେ ଯୋଡ଼ିହୋଇଯାଇଛି ଯେ ମନେହେଉଛି, ଯେପରିକି ସେଗୁଡ଼ିକ ଏକାଠି ଗୁନ୍ଥିହୋଇ ରହିଛି । ୧୬ । ଚନ୍ଦନଦ୍ୱାରା ଶୀତଳ ଏହି ଦକ୍ଷିଣା ପବନର ସ୍ପର୍ଶ ବଡ଼ ସୁଖକର ବୋଧହେଉଛି । ପବିତ୍ର ଗନ୍ଧ ବହିଆଣି ଏ ପବନ ପରିଶ୍ରମ-

ଅମୀ ପବନବିକ୍ଷିପ୍ତା ବିନଦନ୍ତୀବ ପାଦପାଃ ।
ଷଟ୍‌ପଦୈରନୁକୂଜଦ୍ଭିର୍ବନେଷୁ ମଧୁଗନ୍ଧିଷୁ । ୧୮ ।
ଗିରିପ୍ରସ୍ଥେଷୁ ରମ୍ୟେଷୁ ପୁଷ୍ପବଦ୍ଭିର୍ମନୋରମୈଃ ।
ସଂସକ୍ତଶିଖରାଃ ଶୈଳା ବିରାଜନ୍ତେ ମହାଦ୍ରୁମୈଃ । ୧୯ ।
ପୁଷ୍ପସଂଛନ୍ନଶିଖରା ମାରୁତୋତ୍‌କ୍ଷେପଚଞ୍ଚଳାଃ ।
ଅମୀ ମଧୁକରୋତ୍ତଂସାଃ ପ୍ରଗୀତା ଇବ ପାଦପାଃ । ୨୦ ।
ସୁପୁଷ୍ପିତାଂସ୍ତୁ ପଶ୍ୟୈତାନ୍ କର୍ଣ୍ଣିକାରାନ୍ ସମନ୍ତତଃ ।
ହାଟକପ୍ରତିସଂଛନ୍ନାନ୍ନରାନ୍ ପୀତାମ୍ବରାନିବ । ୨୧ ।
ଅୟଂ ବସନ୍ତଃ ସୌମିତ୍ରେ ନାନା ବିହଗନାଦିତଃ ।
ସୀତୟା ବିପ୍ରହୀଣସ୍ୟ ଶୋକସନ୍ଦୀପନୋ ମମ । ୨୨ ।
ମାଂ ହି ଶୋକସମାକ୍ରାନ୍ତଂ ସଂତାପୟତି ମନ୍ମଥଃ ।
ହୃଷ୍ଟଃ ପ୍ରବଦମାନଶ୍ଚ ସମାହ୍ୱୟତି କୋକିଳଃ । ୨୩ ।
ଏଷ ଦାତ୍ୟୂହକୋ ହୃଷ୍ଟୋ ରମ୍ୟେ ମାଂ ବନନିର୍ଝରେ ।
ପ୍ରଣଦନ୍ମନ୍ମଥାବିଷ୍ଟଂ ଶୋଚୟିଷ୍ୟତି ଲକ୍ଷ୍ମଣ । ୨୪ ।

---

କ୍ଳାନ୍ତ ଦୂର କରିଦେଉଛି । ୧୭ । ମଧୁର ଗନ୍ଧଯୁକ୍ତ ଏହି ବନରେ ଭ୍ରମରମାନେ ଗୁଞ୍ଜନ କରୁଛନ୍ତି; ବୋଧହେଉଛି, ଯେପରିକି ବାୟୁଦ୍ୱାରା ଚାଳିତ ହୋଇ ବୃକ୍ଷମାନେ ଗାନ କରୁଛନ୍ତି ଏବଂ ଭ୍ରମରମାନେ ସେ ଗାନର ଅନୁକରଣ କରୁଛନ୍ତି । ୧୮ । ସୁନ୍ଦର ପର୍ବତଶିଖର ଉପରେ ଜାତ ହୋଇଥିବା ପୁଷ୍ପଯୁକ୍ତ ଲମ୍ବ ଲମ୍ବ ବୃକ୍ଷମାନଙ୍କଦ୍ୱାରା ଶୋଭିତ ହୋଇଥିବାରୁ ଜଣାପଡ଼ୁଛି, ଯେପରିକି ପର୍ବତଶିଖରମାନେ ଏକଜୁଟ ହୋଇ ରହିଛନ୍ତି । ୧୯ । ଏ ବୃକ୍ଷସବୁ ଗାୟକସଦୃଶ ଜଣାପଡ଼ୁଛନ୍ତି । ଏମାନଙ୍କ ଶାଖାର ଅଗ୍ରଭାଗ ଫୁଲଦ୍ୱାରା ଘୋଡ଼ାଇ ହୋଇ ରହିଛି, ତାହା ବାୟୁଦ୍ୱାରା ସଞ୍ଚାଳିତ ହେଉଅଛି ଏବଂ ଭ୍ରମରମାନେ ବୃକ୍ଷର ଶିରୋଭୂଷଣସ୍ୱରୂପ ଦେଖାଯାଉଛନ୍ତି । ୨୦ । ଚାରିଆଡ଼େ ଫୁଲରେ ପୂର୍ଣ୍ଣ କନିଅର ଗଛମାନଙ୍କୁ ଦେଖ; ଏସବୁ ହଳଦିଆ ଲୁଗା ପିନ୍ଧିଥିବା ଏବଂ ସ୍ୱର୍ଣ୍ଣମୁକୁଟ ଧାରଣ କରିଥିବା ମନୁଷ୍ୟପରି ଦେଖାଯାଉଛନ୍ତି । ୨୧ । ଲକ୍ଷ୍ମଣ ! ଏ ବସନ୍ତ ସମୟରେ ନାନା ଜାତୀୟ ପକ୍ଷୀ ଗାନ କରୁଛନ୍ତି । ଏ ସମୟରେ ସୀତାଙ୍କ ବିରହରେ ମୋର ଅତିଶୟ ଦୁଃଖ ଜାତ ହେଉଅଛି । ୨୨ । ଶୋକରେ ପୀଡ଼ିତ କରି କନ୍ଦର୍ପ ମୋତେ ସନ୍ତାପିତ କରୁଛି ଏବଂ ଏହି କୋକିଳ ଆନନ୍ଦରେ ଗାନକରି ମୋତେ ଯେପରିକି ଥଟ୍ଟା କରୁଛି । ୨୩ । ଲକ୍ଷ୍ମଣ ! ହେଇଟି, ସୁନ୍ଦର ବନ-ଝରଣାନିକଟରେ ଜଳକୁକ୍କୁଟ ଆନନ୍ଦିତ ହୋଇ ଝଙ୍କାର କରୁଛି ଏବଂ ମୋତେ

ଶ୍ରୁତ୍ୱୈତସ୍ୟ ପୁରା ଶବ୍ଦମାଶ୍ରମସ୍ଥା ମମ ପ୍ରିୟା ।
ମାମାହୂୟ ପ୍ରମୁଦିତା ପରମଂ ପ୍ରତ୍ୟନନ୍ଦତ । ୨୫ ।
ଏବଂ ବିଚିତ୍ରାଃ ପତଗା ନାନାରାବବିରାବିଣଃ ।
ବୃକ୍ଷଗୁଲ୍ମଲତାଃ ପଶ୍ୟ ସମ୍ପତନ୍ତି ସମନ୍ତତଃ । ୨୬ ।
ବିମିଶ୍ରା ବିହଗାଃ ପୁଂଭିରାତ୍ମବ୍ୟୂହାଭିନନ୍ଦିତାଃ ।
ଭୃଙ୍ଗରାଜପ୍ରମୁଦିତାଃ ସୌମିତ୍ରେ ମଧୁରସ୍ୱରାଃ । ୨୭ ।
ଅସ୍ୟାଃ କୂଲେ ପ୍ରମୁଦିତାଃ ସଙ୍ଘଶଃ ଶକୁନାସ୍ତ୍ୱିହ ।
ଦାତ୍ୟୂହରତିବିକ୍ରନ୍ଦୈଃ ପୁଂସ୍କୋକିଲରୁତୈରପି । ୨୮ ।
ସ୍ୱନନ୍ତି ପାଦପାଶ୍ଚେମେ ମମାନଙ୍ଗପ୍ରଦୀପକାଃ ।
ଅଶୋକସ୍ତବକାଙ୍ଗାରଃ ଷଟ୍ପଦସ୍ୱନନିସ୍ୱନଃ । ୨୯ ।
ମାଂ ହି ପଲ୍ଲବତାମ୍ରାର୍ଚ୍ଚିର୍ବସନ୍ତାଗ୍ନିଃ ପ୍ରଧକ୍ଷ୍ୟତି ।
ନ ହି ତାଂ ସୂକ୍ଷ୍ମପକ୍ଷ୍ମାକ୍ଷୀଂ ସୁକେଶୀଂ ମୃଦୁଭାଷିଣୀମ୍ । ୩୦ ।
ଅପଶ୍ୟତୋ ମେ ସୌମିତ୍ରେ ଜୀବିତେଽସ୍ତି ପ୍ରୟୋଜନମ୍ ।
ଅୟଂ ହି ରୁଚିରସ୍ତସ୍ୟାଃ କାଲୋ ରୁଚିରକାନନଃ । ୩୧ ।

---

କାମପୀଡ଼ିତ କରି ଦୁଃଖ ଦେଉଛି । ୨୪ । ଏହାର ଶବ୍ଦ ଶୁଣି ପୂର୍ବେ ଆଶ୍ରମରେ ଥିବାବେଳେ ମୋର ପ୍ରିୟା ସୀତା ଆନନ୍ଦିତ ହୋଇ ମୋତେ ଡାକୁଥିଲେ ଏବଂ ବିଶେଷ ଆନନ୍ଦ ଅନୁଭବ କରୁଥିଲେ ।୨୫ । ଏହିପରି ନାନା ପ୍ରକାର ଶବ୍ଦ କରୁଥିବା ନାନା ବିଚିତ୍ର ବର୍ଣ୍ଣର ପକ୍ଷୀମାନେ, ବୃକ୍ଷ, ଗୁଳ୍ମ ଏବଂ ଲତାମାନେ ମୋତେ ଘେରିଆସି ଦୁଃଖ ଦେଉଛନ୍ତି ଦେଖ । ୨୬ । ଏହି ସ୍ତ୍ରୀପକ୍ଷୀମାନେ ପୁରୁଷ ପକ୍ଷୀଙ୍କ ସହିତ ମିଳି ନିଜ ନିଜ ଦଳ ସହିତ ଏକାଠି ହୋଇଅଛନ୍ତି ଏବଂ ଭ୍ରମରମାନଙ୍କପରି ମଧୁର ସ୍ୱର କରି ଆନନ୍ଦ ଉପଭୋଗ କରୁଛନ୍ତି । ୨୭ । ଆନନ୍ଦିତ ହୋଇ ଅନେକ ପକ୍ଷୀ ଏହି ପମ୍ପାତୀରରେ ଏକତ୍ର ହୋଇଛନ୍ତି । ଜଳକୁକ୍କୁଟମାନଙ୍କର ପ୍ରେମାଳାପ ଏବଂ ପୁରୁଷ କୋକିଳମାନଙ୍କର ଶବ୍ଦଦ୍ୱାରା ଏ ବୃକ୍ଷମାନେ ସତେ ଯେପରି କଥା କହି ମୋର କାମପୀଡ଼ାକୁ ବଢ଼ାଉଛନ୍ତି । ଅଶୋକ ଫୁଲର ପେନ୍ଥାଗୁଡ଼ିକ ଯାହାର ଅଙ୍ଗାରସଦୃଶ ଏବଂ ଭ୍ରମରମାନଙ୍କର ଶବ୍ଦ ଯାହାର ଶବ୍ଦ ଅଟେ ଏବଂ ନୂତନ ପତ୍ରମାନଙ୍କର ରକ୍ତିମା ଯେଉଁ ଅଗ୍ନିର ଶିଖାସଦୃଶ, ସେହି ବସନ୍ତରୂପ ଅଗ୍ନି ମୋତେ ନିଶ୍ଚୟ ପୋଡ଼ିପକାଇବ । ସେହି ସୂକ୍ଷ୍ମପକ୍ଷ୍ମାକ୍ଷୀ ସୁକେଶୀ ମୃଦୁଭାଷିଣୀ ସୀତାଙ୍କୁ ନ ଦେଖିଲେ ମୋର ଜୀବନରେ କୌଣସି ପ୍ରୟୋଜନ ନାହିଁ । ଏହି ବସନ୍ତ ସମୟ ସୀତାଙ୍କର ବଡ଼ ପ୍ରିୟ । କାରଣ ଏ ସମୟରେ ବନର ଶୋଭା ବିଶେଷ ବଢ଼ିଯାଏ । ୨୮–୩୧ ।

କୋକିଲାକୁଲସୀମାନ୍ତୋ ଦୟିତାୟା ମମାନଘ ।
ମନ୍ମଥାୟାସସଂଭୂତୋ ବସନ୍ତଗୁଣବର୍ଧିତଃ । ୩୨ ।
ଅୟଂ ମାଂ ଧକ୍ଷ୍ୟତି କ୍ଷିପ୍ରଂ ଶୋକାଗ୍ନିର୍ନଚିରାଦିବ ।
ଅପଶ୍ୟତସ୍ତାଂ ବନିତାଂ ପଶ୍ୟତୋ ରୁଚିରାନ୍ ଦ୍ରୁମାନ୍ । ୩୩ ।
ମମାୟମାତ୍ମପ୍ରଭବୋ ଭୂୟସ୍ତ୍ୱମୁପଯାସ୍ୟତି ।
ଅଦୃଶ୍ୟମାନା ବୈଦେହୀ ଶୋକଂ ବର୍ଧୟତୀହ ମେ । ୩୪ ।
ଦୃଶ୍ୟମାନୋ ବସନ୍ତଶ୍ଚ ସ୍ୱେଦସଂସର୍ଗଦୂଷକଃ ।
ମାଂ ହି ସା ମୃଗଶାବାକ୍ଷୀ ଚିନ୍ତାଶୋକବଲାତ୍କୃତମ୍ । ୩୫ ।
ସନ୍ତାପୟତି ସୌମିତ୍ରେ କ୍ରୂରଶ୍ଚୈତ୍ରବନାନିଲଃ ।
ଅମୀ ମୟୂରାଃ ଶୋଭନ୍ତେ ପ୍ରନୃତ୍ୟନ୍ତସ୍ତତସ୍ତତଃ । ୩୬ ।
ସ୍ୱୈଃ ପକ୍ଷୈଃ ପବନୋଦ୍ଧୂତୈର୍ଗବାକ୍ଷୈଃ ସ୍ଫାଟିକୈରିବ ।
ଶିଖିନୀଭିଃ ପରିବୃତାସ୍ତ ଏତେ ମଦମୂର୍ଚ୍ଛିତାଃ । ୩୭।

---

ହେ ନିଷ୍ପାପ ! ଏ ସ୍ତ୍ରୀକୋକିଳସମୂହ ମୋ ସ୍ତ୍ରୀର ସୀମନ୍ତପରି ଦେଖାଯାଉଛନ୍ତି । ମୋର ମନ୍ମଥପୀଡ଼ାରୁ ଉତ୍ପନ୍ନ ଏବଂ ବସନ୍ତରେ ସୌନ୍ଦର୍ଯ୍ୟଦ୍ୱାରା ବର୍ଦ୍ଧମାନ ଏହି ଶୋକାଗ୍ନି ଶୀଘ୍ର ମୋତେ ଜାଳି ପୋଡ଼ି ଦେବ; ଲେଶମାତ୍ର ବିଳମ୍ବ କରିବ ନାହିଁ । କାରଣ ମୁଁ ବର୍ତ୍ତମାନ ଏସବୁ ସୁନ୍ଦର ବୃକ୍ଷମାନଙ୍କୁ ଦେଖୁଛି ଅଥଚ ମୋର ବନିତା ସୀତାଙ୍କୁ ଦେଖିପାରୁ ନାହିଁ । ୩୨-୩୩ । ଏହି ହେତୁରୁ ମୋର କାମଜନିତ ଶୋକ ଆହୁରି ଅଧିକ ବଢ଼ୁଅଛି । ବୈଦେହୀ ଅଦୃଶ୍ୟ ହେବାରୁ ମୋର ଶୋକ ଆହୁରି ବଢ଼ିଯାଉଛି । ୩୪ । ବସନ୍ତ ବର୍ତ୍ତମାନ ସମ୍ମୁଖରେ ଉପସ୍ଥିତ । ଏହା ପରିଶ୍ରମଜନିତ ଝାଳକୁ ଶୁଖାଇଦିଏ । ଏ ସମୟରେ ଏହି ବସନ୍ତ ଏବଂ ସେହି ମୃଗଶିଶୁଲୋଚନା ସୀତା ମୋତେ ଚିନ୍ତିତ ଏବଂ ଶୋକାକୁଳ କରିଦେ ଛନ୍ତି । ୩୫ । ଏ ଲକ୍ଷ୍ମଣ ! ନିର୍ମମ ଚୈତ୍ରମାସର ବନପବନ ମୋତେ ଆହୁରି ସନ୍ତପ୍ତ କରୁଛି । ଦେଇଟି, ମୟୂରମାନେ ଏଣେ ତେଣେ ନାଚି ନାଚି ବଡ଼ ସୁନ୍ଦର ଦେଖାଯାଉଛନ୍ତି । ୩୬ । ଏମାନଙ୍କର ପକ୍ଷଗୁଡ଼ିକ ଯେତେବେଳେ ବାୟୁବେଗରେ ପରସ୍ପରଠାରୁ ଅଲଗା ହୋଇଯାଉଛି, ସେତେବେଳେ ତାହା ସ୍ଫଟିକନିର୍ମିତ ଝରକାପରି ଦେଖାଯାଉଛି । ମୟୂରୀମାନେ ଏହାର ଚାରିଆଡ଼େ ଘେରି ରହିଛନ୍ତି, ସୁତରାଂ ଏହି ମୟୂରମାନେ ମଦମତ୍ତ

ମନ୍ମଥାଭିପରୀତସ୍ୟ ମମ ମନ୍ମଥବର୍ଦ୍ଧନାଃ ।
ପଶ୍ୟ ଲକ୍ଷ୍ମଣ ନୃତ୍ୟନ୍ତଂ ମୟୂରମୁପନୃତ୍ୟତି । ୩୮ ।
ଶିଖିନୀ ମନ୍ମଥାର୍ତ୍ତୈଷା ଭର୍ତ୍ତାରଂ ଗିରିସାନୁନି ।
ତାମେବ ମନସା ରାମାଂ ମୟୂରୋଽପ୍ୟନୁଧାବତି । ୩୯ ।
ବିତତ୍ୟ ରୁଚିରୌ ପକ୍ଷୌ ରୁତୈରୁପହସନ୍ନିବ ।
ମୟୂରସ୍ୟ ବନେ ନୂନଂ ରକ୍ଷସା ନ ହୃତା ପ୍ରିୟା । ୪୦ ।
ତସ୍ମାନ୍ନୃତ୍ୟତି ରମ୍ୟେଷୁ ବନେଷୁ ସହ କାନ୍ତୟା ।
ମମ ତ୍ୱୟଂ ବିନା ବାସଃ ପୁଷ୍ପମାସେ ସୁଦୁଃସହଃ । ୪୧ ।
ପଶ୍ୟ ଲକ୍ଷ୍ମଣ ସଂରାଗସ୍ତିର୍ଯ୍ୟଗ୍ୟୋନିଗତେଷ୍ୱପି ।
ଅଧୁନା ଶିଖିନୀ କାମାଦ୍ଭର୍ତ୍ତାରମଭିବର୍ତ୍ତତେ । ୪୨ ।
ମମାପ୍ୟେବଂ ବିଶାଲାକ୍ଷୀ ଜାନକୀ ଜାତସଂଭ୍ରମା ।
ମଦନେନାଭିବର୍ତ୍ତେତ ଯଦି ନାପହୃତା ଭବେତ୍ । ୪୩ ।
ପଶ୍ୟ ଲକ୍ଷ୍ମଣ ପୁଷ୍ପାଣି ନିଷ୍ଫଳାନି ଭବନ୍ତି ମେ ।
ପୁଷ୍ପଭାରସମୃଦ୍ଧାନାଂ ବନାନାଂ ଶିଶିରାତ୍ୟୟେ । ୪୪ ।

---

ହୋଇ ନୃତ୍ୟ କରୁଅଛନ୍ତି ।୩୭। ମୁଁ ତ ଆଗରୁ କାମପୀଡ଼ିତ ଥିଲି ; ମୟୂରମାନଙ୍କର ଏ ଦୃଶ୍ୟ ଦେଖି ମୋର ସେ ପୀଡ଼ା ଅଧିକ ବଢ଼ିଯାଉଅଛି । ଲକ୍ଷ୍ମଣ ଦେଖ, ନାଚୁଥିବା ମୟୂର ପାଖରେ ଯାଇ ମୟୂରୀ କିପରି ନୃତ୍ୟ କରୁଅଛି ।୩୮। ପର୍ବତ-ଶିଖର ଉପରେ ନୃତ୍ୟ କରୁଥିବା ମୟୂର ପାଖରେ ଯାଇ କାମପୀଡ଼ିତା ଏହି ମୟୂରୀ ନୃତ୍ୟ କରୁଅଛି; ମୟୂର ମଧ୍ୟ ମନେ ମନେ ଆପଣାର ପ୍ରିୟାର ପଛେ ପଛେ ଦୌଡ଼ିବାକୁ ଇଚ୍ଛାକରୁଛି । ୩୯ । ମୟୂରର ସ୍ତ୍ରୀକୁ ବନରୁ ରାକ୍ଷସ ହରଣକରି ନେଇଯାଇ ନାହିଁ । ଏହିହେତୁରୁ ସେ ଆପଣାର ଦୁଇ ପକ୍ଷ ବିସ୍ତାର କରି ନିଜର ରବଦ୍ୱାରା ସତେ ଯେପରି ମୋତେ ଉପହାସ କରୁଛି । ୪୦ । (ଏହାର ପ୍ରିୟାକୁ କେହି ହରିନେଇ ନାହାଁନ୍ତି) ସେହିହେତୁରୁ ଏ ମୟୂର ଆପଣାର ପ୍ରିୟତମା ସହିତ ରମଣୀୟ ବନରେ ନୃତ୍ୟ କରୁଅଛି । ଏ ବସନ୍ତ ସମୟରେ ମୋର ପ୍ରିୟା ବିନା ଏଠାରେ ବାସ କରିବା ଅତିଶୟ ଅସହ୍ୟ ବୋଧହେଉଅଛି । ୪୧ । ଲକ୍ଷ୍ମଣ ! ଦେଖ, ପକ୍ଷୀମାନଙ୍କମଧ୍ୟରେ ମଧ୍ୟ କିପରି ଘନିଷ୍ଠ ପ୍ରେମ ଦେଖାଯାଉଛି । ଦେଖିଟି, ବର୍ତ୍ତମାନ ମୟୂରୀ ପ୍ରେମରେ ନିଜର ପତି ନିକଟରେ ଯାଇ ଠିଆ ହୋଇଛି । ୪୨ । ଆଜି ଯଦି ମୋର ବିଶାଳାକ୍ଷୀ ସୀତା ଅପହୃତା ନ ହୋଇଥାନ୍ତେ, ତାହାହେଲେ ସେ ମଧ୍ୟ ଅତି ଆନନ୍ଦରେ ମୋ ପ୍ରତି ପ୍ରେମ ଦେଖାଇ ମୋ ପାଖରେ ଆସି ଏହିପରି ଠିଆ ହୋଇଥାନ୍ତେ । ୪୩ । ଶିଶିର ଋତୁ ଅତୀତ ହୋଇଯିବାରୁ ବନ ବର୍ତ୍ତମାନ ଫୁଲରେ ଭରିଯାଇ ବଡ଼ ସମୃଦ୍ଧିମନ୍ତ ହୋଇଛି; ମାତ୍ର ଏସବୁ ଫୁଲ ମୋ ପକ୍ଷରେ ଆଜି

ରୁଚିରାଣ୍ୟପି ପୁଷ୍ପାଣି ପାଦପାନାମତିଶ୍ରିୟା ।
ନିଷ୍ଫଲାନି ମହୀଂ ଯାନ୍ତି ସମଂ ମଧୁକରୋତ୍କରୈଃ । ୪୫ ।
ନଦନ୍ତି କାମଂ ଶକୁନା ମୁଦିତାଃ ସଂଘଶଃ କଲମ୍ ।
ଆହ୍ୱୟନ୍ତ ଇବାନ୍ୟୋନ୍ୟଂ କାମୋନ୍ମାଦକରା ମମ । ୪୬ ।
ବସନ୍ତୋ ଯଦି ତତ୍ରାପି ଯତ୍ର ମେ ବସତି ପ୍ରିୟା ।
ନୂନଂ ପରବଶା ସୀତା ସାପି ଶୋଚତ୍ୟହଂ ଯଥା । ୪୭ ।
ନୂନଂ ନ ତୁ ବସନ୍ତସ୍ତଂ ଦେଶଂ ସ୍ପୃଶତି ଯତ୍ର ସା ।
କଥଂ ହ୍ୟସିତପଦ୍ମାକ୍ଷୀ ବର୍ତ୍ତୟେତ୍ ସା ମୟା ବିନା । ୪୮ ।
ଅଥବା ବର୍ତ୍ତତେ ତତ୍ର ବସନ୍ତୋ ଯତ୍ର ମେ ପ୍ରିୟା ।
କିଂ କରିଷ୍ୟତି ସୁଶ୍ରୋଣୀ ସା ତୁ ନିର୍ଭର୍ତ୍ସିତା ପରୈଃ । ୪୯ ।
ଶ୍ୟାମା ପଦ୍ମପଲାଶାକ୍ଷୀ ମୃଦୁଭାଷା ଚ ମେ ପ୍ରିୟା ।
ନୂନଂ ବସନ୍ତମାସାଦ୍ୟ ପରିତ୍ୟକ୍ଷ୍ୟତି ଜୀବିତମ୍ । ୫୦ ।
ଦୃଢ଼ଂ ହି ହୃଦୟେ ବୁଦ୍ଧିର୍ମମ ସଂପରିବର୍ତ୍ତତେ ।
ନାଲଂ ବର୍ତ୍ତୟିତୁଂ ସୀତା ସାଧ୍ୱୀ ମଦ୍‌ବିରହଂ ଗତା ।୫୧।

---

ନିଷ୍ଫଳ । ୪୪ । ଏ ଫୁଲଗୁଡ଼ିକ ଅତ୍ୟନ୍ତ ସୁନ୍ଦର ହେଲେ ମଧ୍ୟ ବୃକ୍ଷମାନଙ୍କରୁ ଖସିପଡ଼ି ଭ୍ରମରମାନଙ୍କ ସହିତ ଭୂମିରେ ପଡ଼ିରହିଅଛି । ୪୫ । ପକ୍ଷୀମାନେ ଦଳବଦ୍ଧ ହୋଇ ମଧୁର ସ୍ୱରରେ ଗାନ କରୁଛନ୍ତି । ବୋଧ ହେଉଛି, ଯେପରିକି ଏମାନେ ପରସ୍ପରକୁ ଡକାଡ଼କି କରୁଛନ୍ତି । ଏ ଦୃଶ୍ୟ ମଧ୍ୟ ମୋତେ କାମରେ ଉନ୍ମତ୍ତ କରିପକାଉଅଛି । ୪୬ ।ମୋର ପ୍ରିୟା ବର୍ତ୍ତମାନ ଯେଉଁଠାରେ ରହିଛନ୍ତି, ସେଠାରେ ମଧ୍ୟ ଯଦି ବସନ୍ତ ବିରାଜମାନ କରୁଥା[illegible], ତେବେ ସେ ପରାଧୀନା ହୋଇ ମଧ୍ୟ ମୋରିପରି ନିଶ୍ଚୟ ଶୋକ କରୁଥିବେ । ୪୭ । ସୀତା ଯେଉଁଠାରେ ଅଛନ୍ତି ସେ ଦେଶକୁ ନିଶ୍ଚୟ ବସନ୍ତ ସ୍ପର୍ଶ କରି ନାହିଁ; ନୋହିଲେ ସେ ନୀଳକମଳଲୋଚନା ମୋ ବିନା କିପରି ଥୟହୋଇ ରହିପାରିଥାନ୍ତେ ? । ୪୮ । ଅଥବା ସେ ଯେଉଁଠାରେ ଅଛନ୍ତି, ସେଠାରେ ବସନ୍ତ ମଧ୍ୟ ବିରାଜମାନ କରୁଛି; ମାତ୍ର ସେ ସୁମଧ୍ୟମା ଶତ୍ରୁମାନଙ୍କଦ୍ୱାରା ପ୍ରପୀଡ଼ିତା ହୋଇ କ'ଣ ଅବା ଆଉ କରିବେ ! (ଅର୍ଥାତ୍ ନିରୁପାୟ ହୋଇ ସବୁ ଦୁଃଖ ନୀରବରେ ସହୁଥିବେ) । ୪୯ । ସୁନ୍ଦରୀ ପଦ୍ମପଲାଶନେତ୍ରୀ ମଧୁରଭାଷିଣୀ ମୋର ପ୍ରିୟା ବସନ୍ତ ଆଗମରେ ନିଶ୍ଚୟ ପ୍ରାଣ ଛାଡ଼ିଦେବେ । ୫୦ । ମୋ ମନରେ ଏହି ଦୃଢ଼ ବିଶ୍ୱାସ ଜାତ ହେଉଛି ଯେ, ମୋ ବିରହରେ ସାଧ୍ୱୀ ସୀତା କଦାପି ସୁଖରେ ରହି

ମନ୍ୟେ ଭାବୋ ହି ବୈଦେହ୍ୟାସ୍ତତ୍ତ୍ୱତୋ ବିନିବେଶିତଃ ।
ମମାପି ଭାବଃ ସୀତାୟାଂ ସର୍ବଥା ବିନିବେଶିତଃ । ୫୨ ।
ଏଷ ପୁଷ୍ପବହୋ ବାୟୁଃ ସୁଖସ୍ପର୍ଶୋ ହିମାବହଃ ।
ତାଂ ବିଚିନ୍ତୟତଃ କାନ୍ତାଂ ପାବକପ୍ରତିମୋ ମମ । ୫୩ ।
ସଦା ସୁଖମହଂ ମନ୍ୟେ ଯଂ ପୁରା ସହ ସୀତୟା ।
ମାରୁତଃ ସ ବିନା ସୀତାଂ ଶୋକସଂଜନନୋ ମମ । ୫୪ ।
ତାଂ ବିନାଥ ବିହଙ୍ଗୋଽସୌ ପକ୍ଷୀ ପ୍ରଣଦିତସ୍ତଦା ।
ବାୟସଃ ପାଦପଗତଃ ପ୍ରହୃଷ୍ଟମଭିକୂଜତି । ୫୫ ।
ଏଷ ବୈ ତତ୍ର ବୈଦେହ୍ୟା ବିହଗଃ ପ୍ରତିହାରକଃ ।
ପକ୍ଷୀ ମାଂ ତୁ ବିଶାଳାକ୍ଷ୍ୟାଃ ସମୀପମୁପନେଷ୍ୟତି । ୫୬ ।
ପଶ୍ୟ ଲକ୍ଷ୍ମଣ ସଂନାଦଂ ବନେ ମଦବିବର୍ଦ୍ଧନମ୍ ।
ପୁଷ୍ପିତାଗ୍ରେଷୁ ବୃକ୍ଷେଷୁ ଦ୍ୱିଜାନାମବକୂଜତାମ୍ । ୫୭ ।
ବିକ୍ଷିପ୍ତାଂ ପବନେନୈତାମସୌ ତିଳକମଞ୍ଜରୀମ୍ ।
ଷଟ୍ପଦଃ ସହସାଭ୍ୟେତି ମଦୋଦ୍ଧୂତାମିବ ପ୍ରିୟାମ୍ । ୫୮ ।

---

ପାରିବେ ନାହିଁ । ୫୧ । ସୀତା ଯଥାର୍ଥଭାବରେ ତାଙ୍କର ହୃଦୟର ପ୍ରେମ ମୋଠାରେ ନିବେଶ କରିଅଛନ୍ତି ଏବଂ ମୁଁ ମଧ୍ୟ ସୀତାଙ୍କଠାରେ ମୋର ହୃଦୟର ଭାବ ନିବିଷ୍ଟ କରିଅଛି । ୫୨ । ଏହି ପୁଷ୍ପର ସୁଗନ୍ଧବାହୀ ବାୟୁ ଶୀତଳ ଏବଂ ସୁଖକର ହେଲେ ମଧ୍ୟ,କାନ୍ତାର ବିରହଚିନ୍ତାରେ ମୋତେ ଅଗ୍ନିତୁଲ୍ୟ ବୋଧହେଉଅଛି ।୫୩। ଯେ ବାୟୁ ସୀତାଙ୍କ ସହିତ ବାସ କରୁଥିବାବେଳେ ମୋତେ ସର୍ବଦା ସୁଖକର ବୋଧ ହେଉଥିଲା, ତାହା ବର୍ତ୍ତମାନ ସୀତାଙ୍କ ବିଚ୍ଛେଦରେ ମୋର ଶୋକଜାତ କରାଉ-ଅଛି । ୫୪ । ଏହି କାକ ସେ ସମୟରେ ( ବିୟୋଗର ସୂଚନା ଦେଇ ) ରାବ କରୁଥିଲା । ଆଜି ସେହି ପକ୍ଷୀ ଗଛ ଉପରେ ବସି ଆନନ୍ଦରେ ରାବୁଅଛି । ୫୫ । ଏହି ପକ୍ଷୀ ସୀତାଙ୍କୁ ହରଣ କରାଇଅଛି (ଏହାର ଅଶୁଭସୂଚକ ଶବ୍ଦ ହେବାରୁ ସୀତାଙ୍କ ହରଣ ଘଟିଅଛି) । ଆଜି ଏହି ପକ୍ଷୀ ମୋତେ ସୀତାଙ୍କ ପାଖରେ ପହଞ୍ଚାଇ ଦେବ (ଅର୍ଥାତ୍ ଆଜି ଏହାର ଶୁଭରାବ ଦ୍ୱାରା ସୀତାପ୍ରାପ୍ତିର ମଙ୍ଗଳସୂଚନା ଦେଉଅଛି) । ୫୬ । ଲକ୍ଷ୍ମଣ ! ବନରେ ପକ୍ଷୀମାନଙ୍କର ଶବ୍ଦ ଶୁଣ । ଏ ଶବ୍ଦ ଶୁଣିଲେ ମନୁଷ୍ୟର ମଦମତ୍ତଭାବ ବଢ଼ିଯାଏ । ଏ ପକ୍ଷୀମାନେ ପୁଷ୍ପିତ ବୃକ୍ଷଉପରେ ବସି ରାବ କରୁଅଛନ୍ତି । ୫୭ । କାମପୀଡ଼ିତା ପ୍ରିୟା ନିକଟକୁ ପୁରୁଷ ଯେପରି ବ୍ୟଗ୍ରଭାବରେ ଗମନକରେ, ସେହିପରି ଭ୍ରମର ଅତି ବ୍ୟଗ୍ରଭାବରେ ପବନଦ୍ୱାରା ସଞ୍ଚାଳିତ ଏହି ଅଶୋକମଞ୍ଜରୀ ନିକଟକୁ ଯାଉଅଛି ।୫୮। ଏହି ଅଶୋକ କାମୀ ଜନ-

କାମିନାମୟମତ୍ୟନ୍ତମଶୋକଃ ଶୋକବର୍ଦ୍ଧନଃ ।
ସ୍ତବକୈଃ ପବନୋତ୍କ୍ଷିପ୍ତୈସ୍ତର୍ଜୟନ୍ନିବ ମାଂ ସ୍ଥିତଃ । ୫୯ ।
ଅମୀ ଲକ୍ଷ୍ମଣ ଦୃଶ୍ୟନ୍ତେ ଚୂତାଃ କୁସୁମଶାଳିନଃ ।
ବିଭ୍ରମୋତ୍ସିକ୍ତମନସଃ ସାଙ୍ଗରାଗା ନରା ଇବ । ୬୦ ।
ସୌମିତ୍ରେ ପଶ୍ୟ ପମ୍ପାୟାଶ୍ଚିତ୍ରାସୁ ବନରାଜିଷୁ ।
କିଂନରା ନରଶାର୍ଦ୍ଦୂଲ ବିଚରନ୍ତି ଯତସ୍ତତଃ । ୬୧ ।
ଇମାନି ଶୁଭଗନ୍ଧୀନି ପଶ୍ୟ ଲକ୍ଷ୍ମଣ ସର୍ବଶଃ ।
ନଳିନାନି ପ୍ରକାଶନ୍ତେ ଜଲେ ତରୁଣସୂର୍ଯ୍ୟବତ୍ । ୬୨ ।
ଏଷା ପ୍ରସନ୍ନସଲିଲା ପଦ୍ମନୀଲୋତ୍ପଲାୟୁତା ।
ହଂସକାରଣ୍ଡବାକୀର୍ଣ୍ଣା ପମ୍ପା ସୌଗନ୍ଧିକାୟୁତା । ୬୩ ।
ଜଲେ ତରୁଣସୂର୍ଯ୍ୟାଭୈଃ ଷଟ୍‌ପଦାହତକେସରୈଃ ।
ପଙ୍କଜୈଃ ଶୋଭତେ ପମ୍ପା ସମନ୍ତାଦଭିସଂବୃତା । ୬୪ ।
ଚକ୍ରବାକୟୁତା ନିତ୍ୟଂ ଚିତ୍ରପ୍ରସ୍ଥବନାନ୍ତରା ।
ମାତଙ୍ଗମୃଗୟୂଥୈଶ୍ଚ ଶୋଭତେ ସଲିଲାର୍ଥିଭିଃ । ୬୫ ।

---

ମାନଙ୍କର ଶୋକକୁ ଅତ୍ୟନ୍ତ ବଢ଼ାଇଦିଏ । ଏହା ବାୟୁବିକ୍ଷିପ୍ତ ସ୍ତବକଦ୍ୱାରା ଯେପରିକି ମୋତେ ଧମକାଉଅଛି । ୫୯ । ଲକ୍ଷ୍ମଣ ! ଦେଖ, ପୁଷ୍ପଭୂଷିତ ଏହି ଆମ୍ରବୃକ୍ଷଗୁଡ଼ିକ ଅଙ୍ଗରାଗ ଧାରଣକାରୀ କାମୋନ୍ମତ୍ତ ନାଗର ପୁରୁଷମାନଙ୍କପରି ବୋଧ ହେଉଛନ୍ତି । ୬୦ । ହେ ପୁରୁଷବ୍ୟାଘ୍ର ସୌମିତ୍ରେ ! ଦେଖ, ପମ୍ପାର ବିଚିତ୍ର ବନମାନଙ୍କରେ କିନ୍ନରମାନେ କିପରି ଏଣେତେଣେ ବିଚରଣ କରୁଛନ୍ତି । ୬୧ । ଲକ୍ଷ୍ମଣ ! ଦେଖ, ଏହି ସୁନ୍ଦର ଗନ୍ଧଯୁକ୍ତ ରକ୍ତକମଳଗୁଡ଼ିକ ଜଳରେ କିପରି ତରୁଣ ସୂର୍ଯ୍ୟପରି ଶୋଭାପାଉଛନ୍ତି । ୬୨ । ଏହା ପମ୍ପା ସରୋବର; ଏହାର ଜଳ ଅତି ପରିଷ୍କାର । ଏଥିରେ ପଦ୍ମ ଓ ନୀଳୋତ୍ପଳ ସବୁ ଫୁଟିଅଛି, ହଂସ ଓ କାରଣ୍ଡବ ପକ୍ଷୀମାନଙ୍କଦ୍ୱାରା ଏହା ପୂର୍ଣ୍ଣ ହୋଇଛନ୍ତି ଏବଂ ପାଣିଶିଉଳି ଫୁଲ ମଧ୍ୟ ଫୁଟି ରହିଅଛି । ୬୩ । ପଦ୍ମଫୁଲଗୁଡ଼ିକର ରଙ୍ଗ ତରୁଣ ସୂର୍ଯ୍ୟପରି ହୋଇଅଛି । ଏହାର କେଶରଗୁଡ଼ିକ ଭ୍ରମରମାନଙ୍କଦ୍ୱାରା ସଞ୍ଚାଳିତ ହୋଇ ଏଣେ ତେଣେ ବିକ୍ଷିପ୍ତ ହୋଇପଡ଼ିଅଛି । ଏହି ସବୁ ପଦ୍ମଫୁଲଦ୍ୱାରା ପମ୍ପା ଅତ୍ୟନ୍ତ ଶୋଭମାନ ଦେଖାଯାଉଅଛି । ୬୪ । ଏଠାରେ ସର୍ବଦା ଚକ୍ରବାକମାନେ ବାସକରନ୍ତି । ଏହାର ବନ ମଧ୍ୟରେ ଅତି ରମଣୀୟ ସ୍ଥାନମାନ ଅଛି । ହସ୍ତୀ ଏବଂ ମୃଗମାନେ ଦଳ ଦଳ ହୋଇ ପାଣି ପିଇବାଲାଗି ଏଠାକୁ ଆସୁଅଛନ୍ତି । ଏସବୁ ଦୃଶ୍ୟରେ ପମ୍ପା ବଡ଼ ସୁନ୍ଦର

ପବନାହତବେଗାଭିରୂର୍ମିଭିର୍ବିମଲାମ୍ଭସି ।
ପଙ୍କଜାନି ଶରାଜନ୍ତେ ତାଡ୍ୟମାନାନି ଲକ୍ଷ୍ମଣ । ୭୭ ।
ପଦ୍ମପତ୍ରବିଶାଳାକ୍ଷୀଂ ସତତଂ ପ୍ରିୟପଙ୍କଜାମ୍ ।
ଅପଶ୍ୟତୋ ମେ ବୈଦେହୀଂ ଜୀବତଂ ନାଭିରୋଚତେ । ୭୭ ।
ଅହୋ କାମସ୍ୟ ବାମତ୍ୱଂ ଯୋ ଗତାମପି ଦୁର୍ଲଭାମ୍ ।
ସ୍ମାରୟିଷ୍ୟତି କଲ୍ୟାଣୀଂ କଲ୍ୟାଣତରବାଦିନାମ୍ । ୭୮ ।
ଶକ୍ୟୋ ଧାରୟିତୁଂ କାମୋ ଭବେଦଭ୍ୟାଗତୋ ମୟା ।
ଯଦି ଭୂୟୋ ବସନ୍ତୋ ମାଂ ନ ହନ୍ୟାତ୍ ପୁଷ୍ପିତଦ୍ରୁମଃ । ୭୯ ।
ଯାନି ସ୍ମ ରମଣୀୟାନି ତୟା ସହ ଭବନ୍ତି ମେ ।
ତାନ୍ୟେବାରମଣୀୟାନି ଜାୟନ୍ତେ ମେ ତୟା ବିନା । ୭୦ ।
ପଦ୍ମକୋଶପଲାଶାନି ଦ୍ରଷ୍ଟୁଂ ଦୃଷ୍ଟିର୍ହି ମନ୍ୟତେ ।
ସୀତାୟା ନେତ୍ରକୋଶାଭ୍ୟାଂ ସଦୃଶାନୀତି ଲକ୍ଷ୍ମଣ । ୭୧ ।
ପଦ୍ମକେସରସଂସୃଷ୍ଟୋ ବୃକ୍ଷାନ୍ତରବିନିସୃତଃ ।
ନିଃଶ୍ୱାସ ଇବ ସୀତାୟା ବାତି ବାୟୁର୍ମନୋହରଃ । ୭୨ ।

---

ଦେଖାଯାଉଅଛି ।୬୫। ଲକ୍ଷ୍ମଣ ! ବାୟୁଦ୍ୱାରା ସଂଘୃଷ୍ଟ ହୋଇ ପମ୍ପାର ବିମଳ ଜଳରେ ଯେଉଁସବୁ ତରଙ୍ଗ ଜାତ ହେଉଅଛି, ତାହାଦ୍ୱାରା ତାଡ଼ିତ ହୋଇ ପଦ୍ମଫୁଲ-ଗୁଡ଼ିକ କମ୍ପୁଅଛି ଏବଂ ବଡ଼ ରମଣୀୟ ଦେଖାଯାଉଅଛି ।୭୭। ପଦ୍ମପାଖୁଡ଼ା ସଦୃଶ ଆୟତଲୋଚନା ସୀତା ସବୁବେଳେ ପଦ୍ମଫୁଲକୁ ବଡ଼ ଭଲ ପାଉଥିଲେ । ତାଙ୍କୁ ନ ଦେଖି ମୋତେ ଜୀବନ ଧାରଣ କରିବାକୁ ସୁଖ ଲାଗୁ ନାହିଁ ।୭୭। କାମର ବିପକ୍ଷତା ଦେଖ, ସେ ଆଜ ମୋତେ ମୋ ପକ୍ଷରେ ଦୁର୍ଲଭ ଶୁଭଭାଷିଣୀ କଲ୍ୟାଣୀ ସୀତାଙ୍କୁ ସ୍ମରଣ କରାଇଦେଉଛି ।୬୮। ପୁଷ୍ପିତ ବୃକ୍ଷଯୁକ୍ତବସନ୍ତଋତୁ ଯଦି ମୋତେ ଆଘାତ ନ କରୁଥାନ୍ତା, ତେବେ ଅବଶ୍ୟ ମୁଁ ଅଭ୍ୟାଗତରୂପେ ଉପସ୍ଥିତ କନ୍ଦର୍ପଜ୍ୱାଳାକୁ କୌଣସିମତେ ସହି ନଅନ୍ତି ।୬୯। ସୀତାଙ୍କ ସହିତ ଥିବାରୁ ଯେଉଁସବୁ ପଦାର୍ଥ ମୋତେ ରମଣୀୟ ବୋଧହେଉଥିଲା, ବର୍ତ୍ତମାନ ତାଙ୍କ ବିରହରେ ସେହି ସବୁ ପଦାର୍ଥ ମୋତେ ଅତ୍ୟନ୍ତ ଅସୁନ୍ଦର ଦେଖାଯାଉଛି ।୭୦। ପଦ୍ମପୁଷ୍ପର ଲୋହିତବର୍ଣ୍ଣ ପାଖୁଡ଼ାଗୁଡ଼ିକ ସୀତାଙ୍କର ନେତ୍ରକୋଣ ସଦୃଶ ହୋଇଥିବାରୁ ଦେଖିବାକୁ ମୋର ଇଚ୍ଛା ହେଉଅଛି ।୭୧। ବୃକ୍ଷମଧ୍ୟରୁ ବାହାରୁଥିବା ପଦ୍ମକେଶରଯୁକ୍ତ ମନୋହର ବାୟୁ ସୀତାଙ୍କ ନିଶ୍ୱାସ ବାୟୁପରି ସୁଖକର ବୋଧହେଉଅଛି ।୭୨। ଲକ୍ଷ୍ମଣ ! ଦେଖ,

ସୌମିତ୍ରେ ପଶ୍ୟ ପମ୍ପାୟା ଦକ୍ଷିଣେ ଗିରିସାନୁଷୁ ।
ପୁଷ୍ପିତାଂ କର୍ଣ୍ଣିକାରସ୍ୟ ଯଷ୍ଟିଂ ପରମଶୋଭିତାମ୍ ।୭୩।
ଅଧିକଂ ଶୈଳରାଜୋଽୟଂ ଧାତୁଭିସ୍ତୁ ବିଭୂଷିତଃ ।
ବିଚିତ୍ରଂ ସୃଜତେ ରେଣୁଂ ବାୟୁବେଗବିଘଟ୍ଟିତମ୍ । ୭୪ ।
ଗିରିପ୍ରସ୍ଥା ସ୍ତୁ ସୌମିତ୍ରେ ସର୍ବତଃ ସଂପ୍ରପୁଷ୍ପିତୈଃ ।
ନିଷ୍ପତ୍ରୈଃ ସର୍ବତୋ ରମ୍ୟୈଃ ପ୍ରଦୀପ୍ତା ଇବ କିଂଶୁକୈଃ । ୭୫ ।
ପମ୍ପାତୀରରୁହାଶ୍ଚେମେ ସଂସିକ୍ତା ମଧୁଗନ୍ଧିନଃ ।
ମାଲତୀମଲ୍ଲିକାପଦ୍ମକରବୀରାଶ୍ଚ ପୁଷ୍ପିତାଃ । ୭୬ ।
କେତକ୍ୟଃ ସିନ୍ଧୁବାରାଶ୍ଚ ବାସନ୍ତ୍ୟଶ୍ଚ ସୁପୁଷ୍ପିତାଃ ।
ମାତୁଲିଙ୍ଗାଶ୍ଚ ପୂର୍ଣ୍ଣାଶ୍ଚ କୁନ୍ଦଗୁଲ୍ମାଶ୍ଚ ସର୍ବଶଃ । ୭୭ ।
ଚିରିବିଲ୍ୱା ମଧୂକାଶ୍ଚ ବଞ୍ଜୁଳା ବକୁଳାସ୍ତଥା ।
ଚମ୍ପକାସ୍ତିଲକାଶ୍ଚୈବ ନାଗବୃକ୍ଷାଶ୍ଚ ପୁଷ୍ପିତାଃ । ୭୮ ।
ପଦ୍ମକାଶ୍ଚୈବ ଶୋଭନ୍ତେ ନୀଳାଶୋକାଶ୍ଚ ପୁଷ୍ପିତାଃ ।
ଲୋଧ୍ରାଶ୍ଚ ଗିରିପୃଷ୍ଠେଷୁ ସିଂହକେସରପିଞ୍ଜରାଃ । ୭୯ ।
ଅଙ୍କୋଲାଶ୍ଚ କୁରଣ୍ଟାଶ୍ଚ ଚୂର୍ଣ୍ଣକାଃ ପାରିଭଦ୍ରକାଃ ।
ଚୂତାଃ ପାଟଲୟଶ୍ଚାପି କୋବିଦାରାଶ୍ଚ ପୁଷ୍ପିତାଃ ।୮୦ ।

---

ପମ୍ପାର ଦକ୍ଷିଣ ଦିଗରେ ପର୍ବତଶିଖର ଉପରେ ପୁଷ୍ପଭୂଷିତ କନିଅର ବୃକ୍ଷ କର୍ପର ସୁନ୍ଦର ଦେଖାଯାଉଛି ! ।୭୩। ଅନେକ ପ୍ରକାର ଧାତୁରେ ବିଭୂଷିତ ହୋଇଥିବାରୁ ଏହି ଶୈଳରାଜ ବାୟୁବେଗରେ ଆନ୍ଦୋଳିତ ହୋଇ ବିଭିନ୍ନ ରଙ୍ଗର ଧୂଳି ସୃଷ୍ଟି କରୁଅଛି ।୭୪। ସୌମିତ୍ରେ ! ଏହି ପାହାଡ଼ିଆ ସ୍ଥାନମାନ ପୁଷ୍ପିତ ଏବଂ ପତ୍ରହୀନ ରମଣୀୟ ପଳାଶ ବୃକ୍ଷଦ୍ୱାରା ଦୀପ୍ତିମନ୍ତ ଦେଖାଯାଉଛି ।୭୫। ପମ୍ପାତୀରର ଏ ବୃକ୍ଷମାନେ ପମ୍ପାଜଳରେ ସିକ୍ତ ହୋଇ ମଧୁରଗନ୍ଧଯୁକ୍ତ ହୋଇଛନ୍ତି । ମାଳତୀ, ମଲ୍ଲିକା, ପଦ୍ମ ଏବଂ କନିଅର ଫୁଲ ସବୁ ଏ ସମୟରେ ଫୁଟିଅଛି ।୭୬। କେତକୀ, ସିନ୍ଧୁବାର ଏବଂ ବାସନ୍ତୀ ମଧ୍ୟ ଫୁଟିଅଛି । ମାତୁଲଙ୍ଗ ଏବଂ ଗନ୍ଧପୂର୍ଣ୍ଣ କୁନ୍ଦଗୁଲ୍ମମାନେ ଚାରିଆଡ଼େ ପ୍ରଫୁଟିତ ହୋଇ ରହିଅଛନ୍ତି ।୭୭। ଚିରିବିଲ୍ୱ, ମଧୂକ, ବଞ୍ଜୁଳ, ବକୁଳ, ଚମ୍ପକ, ତିଳକ, ନାଗବୃକ୍ଷ, ପଦ୍ମକ ଏବଂ ନୀଳ ଅଶୋକ ମଧ୍ୟ ଫୁଟିଅଛି; ପର୍ବତ ଉପରେ ସିଂହ କେଶରପରି ଲୋଧ ପୁଷ୍ପ ମଧ୍ୟ ଫୁଟି ରହିଅଛି; ଅଙ୍କୋଳ, କୁରଣ୍ଟକ, ଚୂର୍ଣ୍ଣକ, ପାରିଭଦ୍ରକ, ଆମ୍ବ, ପାଟଳ ଏବଂ କୋବିଦାର ମଧ୍ୟ ଫୁଟିଅଛି; ପର୍ବତ

ମୁଚୁକୁନ୍ଦାର୍ଜୁନାଶ୍ଚୈବ ଦୃଶ୍ୟନ୍ତେ ଗିରିସାନୁଷୁ ।
କେତକୋଦ୍ଦାଲକାଶ୍ଚୈବ ଶିରୀଷାଃ ଶିଂଶପା ଧବାଃ । ୮୧ ।
ଶାଲ୍ମଲ୍ୟଃ କିଂଶୁକାଶ୍ଚୈବ ରକ୍ତାଃ କୁରବକାସ୍ତଥା ।
ତିନିଶା ନକ୍ତମାଲାଶ୍ଚ ଚନ୍ଦନାଃ ସ୍ୟନ୍ଦନାସ୍ତଥା । ୮୨ ।
ହିନ୍ତାଲାସ୍ତିଲକାଶ୍ଚୈବ ନାଗବୃକ୍ଷାଶ୍ଚ ପୁଷ୍ପିତାଃ ।
ପୁଷ୍ପିତାଃ ପୁଷ୍ପିତାଗ୍ରାଭିର୍ଲତାଭିଃ ପରିବେଷ୍ଟିତାନ୍ । ୮୩ ।
ଦ୍ରୁମାନ୍ ପଶ୍ୟେହ ସୌମିତ୍ରେ ପମ୍ପାୟା ରୁଚିରାନ୍ ବହୂନ୍ ।
ବାତବିକ୍ଷିପ୍ତବିଟପାନ୍ ଯଥାସନ୍ନାନ୍ ଦ୍ରୁମାନିମାନ୍ । ୮୪ ।
ଲତାଃ ସମନୁବର୍ତ୍ତନ୍ତେ ମତ୍ତା ଇବ ବରସ୍ତ୍ରିୟଃ ।
ପାଦପାତ୍ ପାଦପଂ ଗଚ୍ଛନ୍ ଶୈଲାଚ୍ଛୈଳଂ ବନାଦ୍ବନମ୍ । ୮୫ ।
ବାତି ନୈକରସାସ୍ୱାଦସଂମୋଦିତ ଇବାନିଲଃ ।
କେଚିତ୍ପର୍ଯ୍ୟାପ୍ତକୁସୁମାଃ ପାଦପାଃ ମଧୁଗନ୍ଧିନଃ । ୮୬ ।
କେଚିନ୍ମୁକୁଲସଂବୀତାଃ ଶ୍ୟାମବର୍ଣ୍ଣା ଇବାବଭୁଃ ।
ଇଦଂ ମୃଷ୍ଟମିଦଂ ସ୍ୱାଦୁ ପ୍ରଫୁଲ୍ଲମିଦମିତ୍ୟପି । ୮୭ ।

---

ଶିଖର ଉପରେ ମୁଚୁକୁନ୍ଦ ଏବଂ ଅର୍ଜୁନ ମଧ ଦେଖାଯାଉଛି । କେତକ, ଉଦ୍ଦାଳକ, ଶିରୀଷ, ଶିଂଶପା, ଧବ, ଶିମିଳ, ପଳାଶ, ରକ୍ତକୁରବକ, ତିନିସ, ନକ୍ତମାଳ, ଚନ୍ଦନ, ସ୍ୟନ୍ଦନ, ହିନ୍ତାଳ, ତିଳକ, ନାଗବୃକ୍ଷ ଏସବୁ ବୃକ୍ଷ ନିଜେ ପୁଷ୍ପିତ ହୋଇଛନ୍ତି ଏବଂ ପୁଷ୍ପିତ ଲତାଦ୍ୱାରା ମଧ ବେଷ୍ଟିତ ହୋଇ ରହିଛନ୍ତି । ୭୮-୮୩ । ଲକ୍ଷ୍ମଣ ! ଅସଂଖ୍ୟ ସୁନ୍ଦର ବୃକ୍ଷ ପମ୍ପାର ଅତି ନିକଟରେ ରହିଅଛି ଦେଖ । ବାୟୁଦ୍ୱାରା ଏହାର ଶାଖାମାନ କମ୍ପିତ ହେଉଅଛି । ୮୪ । ହେଇଟି, ଲତାମାନେ ଶ୍ରେଷ୍ଠ ସ୍ତ୍ରୀମାନଙ୍କପରି ବୃକ୍ଷମାନଙ୍କୁ ଅନୁବର୍ତ୍ତନ କରୁଛନ୍ତି । ବାୟୁ ଗୋଟିଏମାତ୍ର ରସ ଆସ୍ୱାଦନରେ ଖୁସି ନ ହୋଇ ଏ ବୃକ୍ଷରୁ ସେବୃକ୍ଷ ଉପରକୁ, ଏ ପର୍ବତରୁ ସେ ପର୍ବତ ଉପରକୁ ଏବଂ ଏ ବନରୁ ସେ ବନକୁ ବିଚରଣ କରୁଅଛି । କେତେକ ବୃକ୍ଷରେ ପ୍ରଚୁର ପରିମାଣରେ ପୁଷ୍ପସବୁ ଫୁଟିଅଛି ଏବଂ ଏହା ବଡ଼ ସୁଗନ୍ଧିତ ହୋଇଅଛି । ୮୫-୮୬ । କେତେକ ବୃକ୍ଷରେ କେବଳ କଢ଼ି ହୋଇଅଛି ଏବଂ ସେହିହେତୁରୁ ଗଛସବୁ ଶ୍ୟାମଳବର୍ଣ୍ଣ ଦେଖାଯାଉଛି । 'ଏ ଦଳ ହୋଇଯାଇଛି, ଏ ସ୍ୱାଦୁ, ଏ ଫୁଟିଛି'—ଏହି ପ୍ରକାର ରବ ପ୍ରେମମତ୍ତ ଭ୍ରମର ଫୁଲ ସାଙ୍ଗରେ ଏକାବେଳକେ ଲୀନ ହୋଇଯାଉଛି ଏବଂ ପୁଣି ଶୀଘ୍ର ସେଠାରୁ ବାହାରି ଆଉ ଜାଗାକୁ ଚାଲିଯାଉଛି ।

ରାଗରକ୍ତୋ ମଧୁକରଃ କୁସୁମେଷ୍ୱେବ ଲୀୟତେ ।
ନିଲୀୟ ପୁନରୁତ୍ପତ୍ୟ ସହସାନ୍ୟତ୍ର ଗଚ୍ଛତି ।
ମଧୁଲୁବ୍‌ଧୋ ମଧୁକରଃ ପମ୍ପାତୀରଦ୍ରୁମେଷ୍ୱସୌ । ୮୮ ।
ଇୟଂ କୁସୁମସଂଘାତୈରୁପାସ୍ତୀର୍ଣା ସୁଖାକୃତା ।
ସ୍ୱୟଂ ନିପତିତୈର୍ଭୂମିଃ ଶୟନପ୍ରସ୍ତରୈରିବ । ୮୯ ।
ବିବିଧା ବିବିଧୈଃ ପୁଷ୍ପୈସ୍ତୈରେବ ନଗସାନୁଷୁ ।
ବିସ୍ତୀର୍ଣାଃ ପୀତରକ୍ତାଭାଃ ସୌମିତ୍ରେ ପ୍ରସ୍ତରାଃ କୃତାଃ । ୯୦ ।
ହିମାନ୍ତେ ପଶ୍ୟ ସୌମିତ୍ରେ ବୃକ୍ଷାଣାଂ ପୁଷ୍ପସମ୍ଭବମ୍ ।
ପୁଷ୍ପମାସେ ହି ତରବଃ ସଂଘର୍ଷାଦିବ ପୁଷ୍ପିତାଃ । ୯୧ ।
ଆହ୍ୱୟନ୍ତ ଇବାନ୍ୟୋନ୍ୟଂ ନଗାଃ ଷଟ୍‌ପଦନାଦିତାଃ ।
କୁସୁମୋତ୍ତଂସବିଟପାଃ ଶୋଭନ୍ତେ ବହୁ ଲକ୍ଷ୍ମଣ । ୯୨ ।
ଏଷ କାରଣ୍ଡବଃ ପକ୍ଷୀ ବିଗାହ୍ୟ ସଲିଲଂ ଶୁଭମ୍ ।
ରମତେ କାନ୍ତୟା ସାର୍ଧଂ କାମମୁଦ୍ଦୀପୟନ୍ନିବ । ୯୩ ।
ମନ୍ଦାକିନ୍ୟାସ୍ତୁ ଯଦିଦଂ ରୂପମେତନ୍ମନୋହରମ୍ ।
ସ୍ଥାନେ ଜଗତି ବିଖ୍ୟାତା ଗୁଣାସ୍ତସ୍ୟା ମନୋହରାଃ । ୯୪ ।

---

ମଧୁଲୋଭୀ ଭ୍ରମର ଏହିପରି ପମ୍ପାତୀରବର୍ତ୍ତୀ ବୃକ୍ଷମାନଙ୍କ ଉପରେ କ୍ରୀଡ଼ା କରୁଅଛି । ୮୭-୮୮ । ଏ ଭୂମିକୁ ଗଛରୁ ପଡ଼ିଥିବା ଫୁଲମାନେ ଘୋଡ଼ାଇ ପକାଇଛନ୍ତି । ତଦ୍ଦ୍ୱାରା ଏହା ସୁଖକର ଶଯ୍ୟାସଦୃଶ ହୋଇ ଯାଇଅଛି । ୮୯ । ସୌମିତ୍ରେ ! ନାନା ପ୍ରକାର ପୁଷ୍ପଦ୍ୱାରା ପର୍ବତଶିଖରରେ ଥିବା ପଥରଗୁଡ଼ିକ ମଧ୍ୟ ନାନା ବର୍ଣ୍ଣର ହୋଇଯାଇଛି । କେଉଁଠାରେ ଲାଲ ପୁଷ୍ପଦ୍ୱାରା ପ୍ରସ୍ତର ଲାଲ ହୋଇଯାଇଛି, କେଉଁଠାରେ ବା ପୀତପୁଷ୍ପଦ୍ୱାରା ପୀତବର୍ଣ୍ଣ ହୋଇଯାଇଛି ।୯୦। ଲକ୍ଷ୍ମଣ ! ଶୀତଋତୁ ଶେଷରେ ଏହି ବୃକ୍ଷମାନଙ୍କର ପୁଷ୍ପସମୃଦ୍ଧି ଦେଖ; ଏହି (ବସନ୍ତ) ଋତୁରେ ପରସ୍ପର ସଂଘର୍ଷଦ୍ୱାରା ଏତେ ପୁଷ୍ପ ଜାତ ହୋଇଅଛି । ୯୧ । ଏହି ପର୍ବତମାନେ ଭ୍ରମରମାନଙ୍କ ଝଙ୍କାରଦ୍ୱାରା ଯେପରିକି ପରସ୍ପରକୁ ଡକାଡକି କରୁଛନ୍ତି । ବୃକ୍ଷମାନଙ୍କ ଶାଖାରେ ଫୁଲସବୁ ଫୁଟି ରହିଛି ଏବଂ ବୃକ୍ଷର ମୁକୁଟପରି ଶୋଭାପାଉଛି । ୯୨ । ହେଇଟି, କାରଣ୍ଡବ ପକ୍ଷୀ ଶୀତଳ ଜଳରେ ଗାଧୋଇ ପ୍ରିୟା ସହିତ ରମଣକରୁଅଛି । ଏହା ଦେଖି ମୋର କାମପ୍ରବୃତ୍ତି ଉଦ୍ଦୀପିତ ହେଉଅଛି । ୯୩ । ମନ୍ଦାକିନୀସଦୃଶ ଏହି ପମ୍ପାସରୋବରର ରୂପ ଅତିଶୟ ମନୋହର ହୋଇଅଛି । ତାହାର ମନୋହର ଗୁଣାବଳୀ ଯେ ଜଗତରେ ପ୍ରସିଦ୍ଧି ଲାଭକରିଅଛି, ଏହା ଯଥାର୍ଥ ହୋଇଅଛି । ୯୪ ।

ଯଦି ଦୃଶ୍ୟତେ ସା ସାଧ୍ୱୀ ଯଦି ଚେହ ବସେମହି ।
ସ୍ପୃହୟେୟଂ ନ ଶକ୍ରାୟ ନାଯୋଧ୍ୟାୟୈ ରଘୂତ୍ତମ । ୯୫ ।
ନ ହ୍ୟେବଂ ରମଣୀୟେଷୁ ଶାଦ୍ୱଲେଷୁ ତୟା ସହ ।
ରମତୋ ମେ ଭବେଚ୍ଚିନ୍ତା ନ ସ୍ପୃହାନ୍ୟେଷୁ ବା ଭବେତ୍ । ୯୬।
ଅମୀ ହି ବିବିଧୈଃ ପୁଷ୍ପୈସ୍ତରବୋ ବିବିଧଚ୍ଛଦାଃ ।
କାନନେଽସ୍ମିନ୍ ବିନା କାନ୍ତାଂ ଚିନ୍ତାମୁତ୍ପାଦୟନ୍ତି ମେ । ୯୭ ।
ପଶ୍ୟ ଶୀତଜଲାଂ ଚେମାଂ ସୌମିତ୍ରେ ପୁଷ୍କରାୟୁତାମ୍ ।
ଚକ୍ରବାକାନୁଚରିତାଂ କାରଣ୍ଡବନିଷେବିତାମ୍ । ୯୮ ।
ପ୍ଲବୈଃ କ୍ରୌଞ୍ଚୈଶ୍ଚ ସଂପୂର୍ଣ୍ଣାଂ ମହାମୃଗନିଷେବିତାମ୍ ।
ଅଧିକଂ ଶୋଭତେ ପମ୍ପା ବିକୂଜଦ୍ଭିର୍ବିହଙ୍ଗମୈଃ । ୯୯ ।
ଦୀପୟନ୍ତୀବ ମେ କାମଂ ବିବିଧା ମୁଦିତା ଦ୍ୱିଜାଃ ।
ଶ୍ୟାମାଂ ଚନ୍ଦ୍ରମୁଖୀଂ ସ୍ମୃତ୍ୱା ପ୍ରିୟାଂ ପଦ୍ମନିଭେକ୍ଷଣାମ୍ ।
ପଶ୍ୟ ସାନୁଷୁ ଚିତ୍ରେଷୁ ମୃଗୀଭିଃ ସହିତାନ୍ମୃଗାନ୍ ।୧୦୦ ।

---

ଯଦି ସେସାଧ୍ୱୀ ପୁଣି ଦେଖାମିଳନ୍ତେ ଏବଂ ମୁଁ ତାଙ୍କ ସହିତ ଏଠାରେ ବାସ କରିବାର ସୁବିଧା ପାଆନ୍ତି, ତାହାହେଲେ, ହେ ରଘୁଶ୍ରେଷ୍ଠ ! ମୁଁ ଇନ୍ଦ୍ରପଦକୁ ମଧ୍ୟ କାମନା କରନ୍ତି ନାହିଁ ବା ଅଯୋଧ୍ୟାକୁ ଫେରିଯିବାକୁ ଇଚ୍ଛା କରନ୍ତି ନାହିଁ । ୯୫ । ଏପରି ରମଣୀୟ ଘାସମୟ ପଡ଼ିଆରେ ସୀତାଙ୍କ ସହିତ ବିହାର କରିବା ସମୟରେ ମୋର ଅନ୍ୟ କୌଣସି ବିଷୟରେ ଚିନ୍ତା ବା ଇତରପ୍ରତି ସ୍ପୃହା ହୁଅନ୍ତା ନାହିଁ । ୯୬ । ଏହି କାନନରେ ବୃକ୍ଷମାନେ ନାନାପ୍ରକାର ପୁଷ୍ପରେ ଶୋଭିତ ହୋଇ ସୀତାଙ୍କ ବିରହହେତୁ ମୋ ମନରେ ଚିନ୍ତା ଜନ୍ମାଉଅଛନ୍ତି ।୯୭ । ହେ ସୌମିତ୍ରେ ! ଶୀତଳ ଜଳଯୁକ୍ତ ଏହି ପମ୍ପାସରୋବରକୁ ଦେଖ । ଏଥିରେ ବହୁଆଡ଼େ ପଦ୍ମଫୁଲ ଫୁଟିରହିଛି । ଚକ୍ରବାକ ଏବଂ କାରଣ୍ଡବମାନେ ଏଥିରେ ବାସ କରି ରହିଛନ୍ତି । ୯୮ । ପ୍ଲବ ଏବଂ କ୍ରୌଞ୍ଚମାନେ ଏଠାରେ ଭରି ରହିଛନ୍ତି; ଆହୁରି ଅନେକ ବଡ଼ ବଡ଼ ପଶୁ ମଧ୍ୟ ଏଠାରେ ଅଛନ୍ତି । ପକ୍ଷୀମାନଙ୍କ ଗାନଦ୍ୱାରା ପମ୍ପାର ଶୋଭା ଆହୁରି ବଢ଼ି ଯାଉଅଛି । ୯୯ । ଏସବୁ ବିଭିନ୍ନ ପ୍ରମୁଦିତ ପକ୍ଷୀ ସୁନ୍ଦରୀ, ଚନ୍ଦ୍ରବଦନା ଏବଂ ପଦ୍ମଲୋଚନା ସୀତାଙ୍କୁ ସ୍ମରଣ କରାଇ ମୋର କାମକୁ ବଢ଼ାଇଅଛନ୍ତି । ବିଚିତ୍ର ପର୍ବତ ଶିଖରରେ ମୃଗୀମାନଙ୍କ ସହିତ ବିଚରଣ କରୁଥିବା ମୃଗମାନଙ୍କୁ ଦେଖ । ୧୦୦ । ଏମାନେ

ମାଂ ପୁନର୍ମୃଗଶାବାକ୍ଷ୍ୟା ବୈଦେହ୍ୟା ବିରହୀକୃତମ୍ ।
ବ୍ୟଥୟନ୍ତୀବ ମେ ଚିତ୍ତଂ ସଂଚରନ୍ତସ୍ତତସ୍ତତଃ । ୧୦୧ ।
ଅସ୍ମିନ୍ ସାନୁନି ରମ୍ୟେ ହି ମତ୍ତଦ୍ୱିଜଗଣାକୁଳେ ।
ପଶ୍ୟେୟଂ ଯଦି ତାଂ କାନ୍ତାଂ ତତଃ ସ୍ୱସ୍ତି ଭବେନ୍ମମ ।୧୦୨ ।
ଜୀବେୟଂ ଖଳୁ ସୌମିତ୍ରେ ମୟା ସହ ସୁମଧ୍ୟମା ।
ସେବେତ ଯଦି ବୈଦେହୀ ପମ୍ପାୟାଃ ପବନଂ ଶୁଭମ୍ । ୧୦୩ ।
ପଦ୍ମସୌଗନ୍ଧିକବହଂ ଶିବଂ ଶୋକବିନାଶନମ୍ ।
ଧନ୍ୟା ଲକ୍ଷ୍ମଣ ସେବନ୍ତେ ପମ୍ପାୟା ବନମାରୁତମ୍ । ୧୦୪ ।
ଶ୍ୟାମା ପଦ୍ମପଲାଶାକ୍ଷୀ ପ୍ରିୟା ବିରହିତା ମୟା ।
କଥଂ ଧାରୟତି ପ୍ରାଣାନ୍ ବିବଶା ଜନକାତ୍ମଜା । ୧୦୫ ।
କିଂ ନୁ ବକ୍ଷ୍ୟାମି ଧର୍ମଜ୍ଞଂ ରାଜାନଂ ସତ୍ୟବାଦିନମ୍ ।
ଜନକଂ ପୃଷ୍ଟସୀତଂ ତଂ କୁଶଳଂ ଜନସଂସଦି । ୧୦୬ ।
ଯା ମାମନୁଗତା ମନ୍ଦଂ ପିତ୍ରା ପ୍ରସ୍ଥାପିତଂ ବନମ୍ ।
ସୀତା ଧର୍ମଂ ସମାସ୍ଥାୟ କ୍ୱ ନୁ ସା ବର୍ତ୍ତତେ ପ୍ରିୟା ।୧୦୭ ।

---

ଏଣେତେଣେ ସଞ୍ଚରଣକରି ମୃଗଲୋଚନା ସୀତାଙ୍କ ବିରହରେ ମୋର ଚିତ୍ତକୁ ବ୍ୟଥିତ କରୁଅଛନ୍ତି । ୧୦୧ । ଉନ୍ମତ୍ତ ପକ୍ଷିଯୁକ୍ତ ଏହି ରମଣୀୟ ପର୍ବତଶିଖର ଉପରେ ମୁଁ ଯଦି ମୋର ସେ ପ୍ରିୟାଙ୍କୁ ଦେଖିପାରନ୍ତି, ତେବେ ମୋର ତୃପ୍ତି ହୁଅନ୍ତା । ୧୦୨ । ସୌମିତ୍ରେ ! ଯଦି ସୁମଧ୍ୟମା ସୀତା ମୋ ସହିତ ପମ୍ପାର ଶୀତଳ ବାୟୁ ସେବନକରନ୍ତେ, ତାହାହେଲେ ମୁଁ ପ୍ରାଣଧରି ରହିପାରନ୍ତି । ୧୦୩ । ପଦ୍ମ ଏବଂ ପାଣିଶିଉଳି ପୁଷ୍ପର ଗନ୍ଧବାହୀ ଓ ଶୋକଦୂରକାରୀ ଏହି ପମ୍ପାର ଜଙ୍ଗଲୀ ବାୟୁକୁ ଯେଉଁମାନେ ସେବନ କରୁଛନ୍ତି, ସେମାନେ ଧନ୍ୟ । ୧୦୪ । ପଦ୍ମନେତ୍ରା ସୁନ୍ଦରୀ ପ୍ରିୟତମା ସୀତା ମୋ ବିନା ଦୁଃଖରେ କିପରି ପ୍ରାଣଧାରଣ କରି ପାରିବ ? । ୧୦୫ । ଧର୍ମଜ୍ଞ ସତ୍ୟବାଦୀ ରାଜା ଜନକ ଯେତେବେଳେ ଲୋକସଭା-ମଧ୍ୟରେ ମୋତେ ସୀତାଙ୍କ କୁଶଳକଥା ପଚାରିବେ, ମୁଁ ତାଙ୍କୁ କଣ ଜବାବ ଦେବି ? ।୧୦୬। ପିତାଙ୍କଦ୍ୱାରା ବନକୁ ପ୍ରେରିତହେଲେ ମଧ୍ୟ ମୋଭଳି ଅଭାଗାକୁ ଯେ ସୀତା ଧର୍ମ ଅବଲମ୍ବନ କରି ଅନୁସରଣ କରିଥିଲେ ସେ ସୀତା ବର୍ତ୍ତମାନ କେଉଁଠି ? ୧୦୭।

ତୟା ବିହୀନଃ କୃପଣଃ କଥଂ ଲକ୍ଷ୍ମଣ ଧାରୟେ ।
ଯା ମାମନୁଗତା ରାଜ୍ୟାଦ୍ଭ୍ରଷ୍ଟଂ ବିହ୍ବଳଚେତସମ୍ । ୧୦୮ ।
ତଚାର୍ବଞ୍ଚିତପଦ୍ମାକ୍ଷଂ ସୁଗନ୍ଧି ଶୁଭମବ୍ରଣମ୍ ।
ଅପଶ୍ୟତୋ ମୁଖଂ ତସ୍ୟାଃ ସୀଦତୀବ ମତିର୍ମମ । ୧୦୯ ।
ସ୍ମିତହାସ୍ୟାନ୍ତରଯୁତଂ ଗୁଣବନ୍ମଧୁରଂ ହିତମ୍ ।
ବୈଦେହ୍ୟା ବାକ୍ୟମତୁଲଂ କଦା ଶ୍ରୋଷ୍ୟାମି ଲକ୍ଷ୍ମଣ ।୧୧୦।
ପ୍ରାପ୍ୟ ଦୁଃଖଂ ବନେ ଶ୍ୟାମା ମାଂ ମନ୍ମଥବିକର୍ଶିତମ୍ ।
ନଷ୍ଟଦୁଃଖେବ ହୃଷ୍ଟେବ ସାଧ୍ୱୀ ସାଧ୍ୱଭ୍ୟଭାଷତ । ୧୧୧ ।
କିଂ ନୁ ବକ୍ଷ୍ୟାମ୍ୟଯୋଧ୍ୟାୟାଂ କୌସଲ୍ୟାଂ ହି ନୃପାତ୍ମଜ ।
କ୍ୱ ସା ସ୍ନୁଷେତି ପୃଚ୍ଛନ୍ତୀଂ କଥଂ ଚାପି ମନସ୍ୱିନୀମ୍ । ୧୧୨ ।
ଗଚ୍ଛ ଲକ୍ଷ୍ମଣ ପଶ୍ୟ ତ୍ୱଂ ଭରତଂ ଭ୍ରାତୃବତ୍ସଲମ୍ ।
ନ ହ୍ୟହଂ ଜୀବିତୁଂ ଶକ୍ତସ୍ତାମୃତେ ଜନକାତ୍ମଜାମ୍ । ୧୧୩ ।
ଇତି ରାମଂ ମହାତ୍ମାନଂ ବିଲପନ୍ତମନାଥବତ୍ ।
ଉବାଚ ଲକ୍ଷ୍ମଣୋ ଭ୍ରାତା ବଚନଂ ଯୁକ୍ତମବ୍ୟୟମ୍ । ୧୧୪ ।

---

ଲକ୍ଷ୍ମଣ ! ତାଙ୍କ ବିନା ମୁଁ ବିଚରା କପରି ପ୍ରାଣଧାରଣ କରିବି; ମୁଁ ରାଜ୍ୟଭ୍ରଷ୍ଟ ହୋଇ ବ୍ୟାକୁଳ ହୋଇଥିବାବେଳେ ମଧ୍ୟ ସେ ମୋ ପିଚ୍ଛା ଧରିଥିଲେ । ୧୦୮। ସୁନ୍ଦର ପଦ୍ମ-ସଦୃଶ ଚକ୍ଷୁଯୁକ୍ତ ସୁଗନ୍ଧିତ ବ୍ରଣହୀନ ତାଙ୍କର ସେ ମୁଖ ନ ଦେଖି ମୋର ମନ ଅବସନ୍ନ ହେଉଅଛି । ୧୦୯ । ହେ ଲକ୍ଷ୍ମଣ ! ମୁଁ ବୈଦେହୀଙ୍କର ସେ ଅତୁଳନୀୟ, ହିତକାରୀ ଏବଂ ମଧୁର ବାଣୀ କେବେ ଶୁଣିପାରିବି ? ତାଙ୍କ ବଚନରେ ମନ୍ଦହାସ୍ୟ ସର୍ବଦା ଯୁକ୍ତରହୁଥିଲା । ୧୧୦ । ବନରେ ନିଜେ ଦୁଃଖ ଭୋଗ କରି ମଧ୍ୟ ଶ୍ୟାମାଙ୍ଗୀ ସାଧ୍ୱୀ ସୀତା ମୋତେ କାମପୀଡ଼ିତ ଦେଖିଲେ ଆପଣା ଦୁଃଖ ପାସୋରି ଦେଇ ହସ ହସଭାବରେ ପ୍ରୀତିକର ବଚନ କହୁଥିଲେ । ୧୧୧ । ହେ ରାଜପୁତ୍ର ! ଅଯୋଧ୍ୟାରେ ମନସ୍ୱିନୀ କୌଶଲ୍ୟା ଯେତେବେଳେ "ବଧୂ କୁଆଡ଼େ ଗଲେ" ବୋଲି ପଚାରିବେ ସେତେବେଳେ ମୁଁ ତାଙ୍କୁ କି ଉତ୍ତର ଦେବି ? । ୧୧୨ । ଲକ୍ଷ୍ମଣ, ତୁମେ ଯାଇ ଭ୍ରାତୃବତ୍ସଳ ଭରତଙ୍କୁ ଦେଖ । ସୀତାଙ୍କ ବିନା ବଞ୍ଚି ରହିବାର ଶକ୍ତି ମୋର ଆଦୌ ନାହିଁ" । ୧୧୩ । ମହାତ୍ମା ରାମଙ୍କୁ ଏହିପରି ଅନାଥଭାବରେ ବିଳାପ କରିବାର ଦେଖି ଭାଇ ଲକ୍ଷ୍ମଣ, ଉଚିତ ଏବଂ ବିକାରଶୂନ୍ୟ ବଚନ କହିଲେ । ୧୧୪ ।

ସଂସ୍ତମ୍ଭ ରାମ ଭଦ୍ରଂ ତେ ମା ଶୁଚଃ ପୁରୁଷୋତ୍ତମ ।
ନେଦୃଶାନାଂ ମତିର୍ମନ୍ଦା ଭବତ୍ୟକଲୁଷାତ୍ମନାମ୍ । ୧୧୫।
ସ୍ମୃତ୍ୱା ବିୟୋଗଜଂ ଦୁଃଖଂ ତ୍ୟଜ ସ୍ନେହଂ ପ୍ରିୟେ ଜନେ ।
ଅତିସ୍ନେହପରିଷଙ୍ଗାଦ୍‌ବର୍ତ୍ତିରାର୍ଦ୍ରାପି ଦହ୍ୟତେ । ୧୧୬ ।
ଯଦି ଗଚ୍ଛତି ପାତାଳଂ ତତୋଽଭ୍ୟଧିକମେବ ବା ।
ସର୍ବଥା ରାବଣସ୍ତାତ ନ ଭବିଷ୍ୟତି ରାଘବ । ୧୧୭ ।
ପ୍ରବୃତ୍ତିର୍ଲଭ୍ୟତାଂ ତାବତ୍ତସ୍ୟ ପାପସ୍ୟ ରକ୍ଷସଃ ।
ତତୋ ହାସ୍ୟତି ବା ସୀତାଂ ନିଧନଂ ବା ଗମିଷ୍ୟତି । ୧୧୮ ।
ଯଦି ଯାତି ଦିତେର୍ଗର୍ଭଂ ରାବଣଃ ସହ ସୀତୟା ।
ତତ୍ରାପ୍ୟେନଂ ହନିଷ୍ୟାମି ନ ଚେଦ୍ଦାସ୍ୟତି ମୈଥିଲୀମ୍ । ୧୧୯ ।
ସ୍ୱାସ୍ଥ୍ୟଂ ଭଦ୍ର ଭଜସ୍ୱାର୍ଯ୍ୟ ତ୍ୟଜ୍ୟତାଂ କୃପଣା ମତିଃ ।
ଅର୍ଥୋ ହି ନଷ୍ଟକାର୍ଯ୍ୟାର୍ଥୈର୍ନାଯତ୍ନେନାଧିଗମ୍ୟତେ । ୧୨୦ ।
ଉତ୍ସାହୋ ବଲବାନାର୍ଯ୍ୟ ନାସ୍ତ୍ୟୁତ୍ସାହାତ୍ପରଂ ବଲମ୍ ।
ସୋତ୍ସାହସ୍ୟ ହି ଲୋକେଷୁ ନ କିଂଚିଦପି ଦୁର୍ଲଭମ୍ । ୧୨୧ ।

---

"ହେ ପୁରୁଷୋତ୍ତମ ରାମଚନ୍ଦ୍ର ! ଆପଣ ଶୋକ ନ କରି ଦମ୍ଭ ଧରନ୍ତୁ । ଆପଣଙ୍କପରି ନିଷ୍ପାପ ଲୋକଙ୍କର ମତି କଦାପି ଖରାପ ହେବାର ନୁହେଁ । ୧୧୫ । ବିୟୋଗରୁ ଦୁଃଖ ଜାତ ହୁଏ, ଏହା ସ୍ମରଣ ରଖି ପ୍ରିୟଜନ ପ୍ରତି ଅତି ସ୍ନେହ ତ୍ୟାଗକରନ୍ତୁ । ଅତିମାତ୍ରାରେ ସ୍ନେହ-(ତୈଳ) ଯୁକ୍ତ ହେଲେ ଓଦା ବଳିତା ମଧ୍ୟ ଜଳଯାଏ । ୧୧୬ । ରାବଣ ଯଦି ପାତାଳରେ ଅଥବା ତାହାଠାରୁ ମଧ୍ୟ ଅଧିକ ଦୂରରେ ଯାଇ ରହିଥାଏ, ତାହାହେଲେ ମଧ୍ୟ ସେ କଦାପି ବଞ୍ଚିପାରିବ ନାହିଁ । (ଅର୍ଥାତ୍ ସେ ଯେଉଁଠି ଥାଉ, ମୁଁ ତାକୁ ନିଶ୍ଚୟ ମାରିଦେବି) । ୧୧୭ । ସେ ପାପୀ ରାକ୍ଷସ କେଉଁଠାରେ ବର୍ତ୍ତମାନ କଣ କରୁଛି ତାର ଆଗେ ଖବର ନିଅ । ତା'ପରେ ହୁଏତ ସେ ସୀତାଙ୍କୁ ଛାଡ଼ିଦେବ, ନ ହେଲେ ଆପଣା ପ୍ରାଣ ହରାଇବ । ୧୧୮ । ଯଦି ସୀତାଙ୍କୁ ନେଇ ସେ ନିଜ ମାତା ଦିତିଙ୍କ ଗର୍ଭ ଭିତରେ ମଧ୍ୟ ଯାଇ ଆଶ୍ରୟ ନେଇଥାଏ, ତେବେ ବି ସେ ସୀତାଙ୍କୁ ଛାଡ଼ି ନ ଦେଲେ ମୁଁ ତାକୁ ନିଶ୍ଚୟ ମାରିପକାଇବି । ୧୧୯ । ଆର୍ଯ୍ୟ ! ଆପଣ ସୁସ୍ଥ ହୁଅନ୍ତୁ ଏବଂ କାତରତା ତ୍ୟାଗକରନ୍ତୁ । ଲୋକ ଉଦ୍ୟମହୀନ ହୋଇ ଯତ୍ନ ନ କଲେ ତାହାର ଉଦ୍ଦେଶ୍ୟ କଦାପି ସିଦ୍ଧ ହୋଇପାରେ ନାହିଁ । ୧୨୦ । ଆର୍ଯ୍ୟ ! ଉତ୍ସାହ ବଳବାନ ଅଟେ । ଉତ୍ସାହ ଠାରୁ ବଳ ଆଉ ବଳ ନାହିଁ । ଉତ୍ସାହୀ ଲୋକର ଏ ଜଗତରେ କିଛିମାତ୍ର ଦୁର୍ଲଭ ନୁହେ । ୧୨୧ । ଉତ୍ସାହୀ ପୁରୁଷ କୌଣସି

ଉତ୍ସାହବନ୍ତଃ ପୁରୁଷା ନାବସୀଦନ୍ତି କର୍ମସୁ ।
ଉତ୍ସାହମାତ୍ରମାଶ୍ରିତ୍ୟ ପ୍ରତିଲପ୍ସ୍ୟାମ ଜାନକୀମ୍ । ୧୨୨ ।
ତ୍ୟଜ୍ୟତାଂ କାମବୃତ୍ତତ୍ୱଂ ଶୋକଂ ସଂନ୍ୟସ୍ୟ ପୃଷ୍ଠତଃ ।
ମହାତ୍ମାନଂ କୃତାତ୍ମାନମାତ୍ମାନଂ ନାବବୁଧ୍ୟସେ । ୧୨୩ ।
ଏବଂ ସଂବୋଧିତସ୍ତେନ ଶୋକୋପହତଚେତନଃ ।
ତ୍ୟଜ୍ୟ ଶୋକଂ ଚ ମୋହଂ ଚ ରାମୋ ଧୈର୍ଯ୍ୟମୁପାଗମତ୍ ।୧୨୪।
ସୋଽଭ୍ୟତିକ୍ରାମଦବ୍ୟଗ୍ରସ୍ତାମଚିନ୍ତ୍ୟପରାକ୍ରମଃ ।
ରାମଃ ପମ୍ପାଂ ସୁରୁଚିରାଂ ରମ୍ୟାଂ ପାରିପ୍ଲବଦ୍ରୁମାମ୍ । ୧୨୫ ।
ନିରୀକ୍ଷମାଣଃ ସହସା ମହାତ୍ମା
ସର୍ବଂ ବନଂ ନିର୍ଝରକନ୍ଦରଂ ଚ ।
ଉଦ୍ୱିଗ୍ନଚେତାଃ ସହ ଲକ୍ଷ୍ମଣେନ
ଜଗାମ ଦୁଃଖୋପହତଃ ପ୍ରତସ୍ଥେ । ୧୨୬ ।
ତଂ ମତ୍ତମାତଙ୍ଗବିଳାସଗାମୀ
ଗଚ୍ଛନ୍ତମବ୍ୟଗ୍ରମନା ମହାତ୍ମା ।
ସ ଲକ୍ଷ୍ମଣୋ ରାଘବମିଷ୍ଟଚେଷ୍ଟୋ
ରରକ୍ଷ ଧର୍ମେଣ ବଲେନ ଚୈବ । ୧୨୭।

---

କାର୍ଯ୍ୟରେ ଅବସନ୍ନ ହୁଅନ୍ତି ନାହିଁ । କେବଳ ଉତ୍ସାହର ଆଶ୍ରା କଲେ ଆମେ ଜାନକୀଙ୍କୁ ଫେରି ପାଇବା । ୧୨୨ । ଆପଣ ଏ କାମପରତନ୍ତ୍ରତା ତ୍ୟାଗକରନ୍ତୁ । ଶୋକକୁ ପଛକୁ ପକା ଦିଅନ୍ତୁ । ଆପଣ ଯେ ମହାମନା ଏବଂ ସିଦ୍ଧାତ୍ମା ପୁରୁଷ ଏ କଥା ବର୍ତ୍ତମାନ ଭୁଲିଯାଇଛନ୍ତି" । ୧୨୩ । ଲକ୍ଷ୍ମଣଙ୍କଦ୍ୱାରା ଏହିପ୍ରକାରେ ପ୍ରବୋଧିତ ହୋଇ ଶୋକବ୍ୟାକୁଳ ରାମଚନ୍ଦ୍ର ଶୋକ ଏବଂ ମୋହ ତ୍ୟାଗ କରି ଧୈର୍ଯ୍ୟ ଅବଲମ୍ବନ କଲେ । ୧୨୪ । ଅଚିନ୍ତ୍ୟପରାକ୍ରମ ରାମଚନ୍ଦ୍ର ବ୍ୟଗ୍ରତା ତ୍ୟାଗକରି ବୃକ୍ଷପରିବେଷ୍ଟିତ ରମଣୀୟ ପମ୍ପାସରୋବର ଆଡ଼କୁ ଅଗ୍ରସର ହେଲେ । ୧୨୫ । ଉଦ୍‌ବିଗ୍ନଚିତ୍ତ ଏବଂ ଦୁଃଖପୀଡ଼ିତ ମହାତ୍ମା ରାମଚନ୍ଦ୍ର ସତ୍ୱର କରି (ସୀତାଙ୍କୁ ଅନ୍ୱେଷଣ କରିବା ଆବଶ୍ୟକ ଏହା ସ୍ଥିରକରି ) ସମସ୍ତ ବନ, ନିର୍ଝର, କନ୍ଦର, ଆଦି ଦେଖି ଦେଖି ଚାଲିଲେ । ୧୨୬ । ଗମନ କରୁଥିବା ରାମଙ୍କୁ ମତ୍ତହସ୍ତୀ ସଦୃଶ ଗମନକାରୀ,ସ୍ଥିରଚିତ୍ତ ଏବଂ ରାମଙ୍କର ମଙ୍ଗଳକାରୀ ଲକ୍ଷ୍ମଣ ଧର୍ମ ଏବଂ ଶାରୀରିକ ବଳରେ ରକ୍ଷା କରିଥିଲେ । ୧୨୭ । ଋଷ୍ୟମୂକ ପର୍ବତର ନିକଟରେ ଏମାନେ ଭ୍ରମଣ କରୁଥିବା

ତାବୃଶ୍ୟମୂକସ୍ୟ ସମୀପଚାରୀ
ଚରନ୍ଦଦର୍ଶାଦ୍ଭୁତଦର୍ଶନୀୟୌ ।
ଶାଖାମୃଗାଣାମଧିପସ୍ତରସ୍ୱୀ
ବିତତ୍ରସେ ନୈବ ଚିଚେଷ୍ଟ କିଂଚିତ୍ ।୧୨୮।
ସ ତୌ ମହାତ୍ମା ଗଜମନ୍ଦଗାମିନୌ
ଶାଖାମୃଗସ୍ତତ୍ର ଚିରଂ ଚରନ୍ତୌ ।
ଦୃଷ୍ଟ୍ୱା ବିଷାଦଂ ପରମଂ ଜଗାମ
ଚିନ୍ତାପରୀତୋ ଭୟଭାରଭଗ୍ନଃ ।୧୨୯।
ତମାଶ୍ରମଂ ପୁଣ୍ୟସୁଖଂ ଶରଣ୍ୟଂ
ସଦୈବ ଶାଖାମୃଗସେବିତାନ୍ତମ୍ ।
ତ୍ରସ୍ତାଶ୍ଚ ଦୃଷ୍ଟ୍ୱା ହରୟୋ ବିଜଗ୍ମୁ-
ର୍ମହୌଜସୌ ରାଘବଲକ୍ଷ୍ମଣୌ ତୌ ।୧୩୦।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ରାମବିପ୍ରଲମ୍ଭାବେଶ
ନାମ ପ୍ରଥମଃ ସର୍ଗଃ

---

ସମୟରେ ଅପୂର୍ବସୁନ୍ଦର ଏ ଦୁହିଁଙ୍କୁ ବାନରମାନଙ୍କର ଅଧିପତି (ସୁଗ୍ରୀବ) ଦେଖିଲେ । ସେ ଏମାନଙ୍କୁ ଦେଖି ଡରିଗଲେ; ସୁତରାଂ ଏମାନଙ୍କ ପ୍ରତି କଣ କର୍ତ୍ତବ୍ୟ ତାହା ସ୍ଥିର କରି ପାରିଲେ ନାହିଁ ।୧୨୮। ହସ୍ତୀସଦୃଶ ମନ୍ଦଗାମୀ ଏ ଦୁହିଁଙ୍କୁ ଦେଖି ବାନରାଧିପତି ବିଶେଷ ଦୁଃଖିତ ହୋଇଥିଲେ ଏବଂ ଚିନ୍ତାଯୁକ୍ତ ହୋଇ ଭୟଭୀତ ହୋଇପଡ଼ିଲେ ।୧୨୯। ସେ (ମତଙ୍ଗ ମୁନିଙ୍କ) ଆଶ୍ରମ ପବିତ୍ର ଏବଂ ସୁଖକର ଥିଲା । ଏହାର ସୀମରେ ବାନରମାନେ ବାସକରୁଥିଲେ । ମହାଶକ୍ତିଶାଳୀ ରାମ ଏବଂ ଲକ୍ଷ୍ମଣଙ୍କୁ ଦେଖି ବାନରମାନେ ଭୟଭୀତ ହୋଇ ସେ ଆଶ୍ରମ ଭିତରକୁ ଚାଲିଗଲେ ।୧୩୦।

---

# ଦ୍ୱିତୀୟଃ ସର୍ଗଃ

## ସୁଗ୍ରୀବମନ୍ତ୍ରଃ

ତୌ ତୁ ଦୃଷ୍ଟ୍ୱା ମହାତ୍ମାନୌ ଭ୍ରାତରୌ ରାମଲକ୍ଷ୍ମଣୌ ।
ବରାୟୁଧଧରୌ ବୀରୌ ସୁଗ୍ରୀବଃ ଶଙ୍କିତୋଽଭବତ୍ । ୧ ।
ଉଦ୍ୱିଗ୍ନହୃଦୟଃ ସର୍ବା ଦିଶଃ ସମବଲୋକୟନ୍ ।
ନ ବ୍ୟତିଷ୍ଠତ କସ୍ମିଂଶ୍ଚିଦ୍ଦେଶେ ବାନରପୁଙ୍ଗବଃ । ୨ ।
ନୈବ ଚକ୍ରେ ମନଃ ସ୍ଥାତୁଂ ବୀକ୍ଷମାଣୌ ମହାବଲୌ ।
କପେଃ ପରମଭୀତସ୍ୟ ଚିତ୍ତଂ ବ୍ୟବସସାଦ ହ । ୩ ।
ଚିନ୍ତୟିତ୍ୱା ସ ଧର୍ମାତ୍ମା ବିମୃଶ୍ୟ ଗୁରୁଲାଘବମ୍ ।
ସୁଗ୍ରୀବଃ ପରମୋଦ୍ୱିଗ୍ନଃ ସର୍ବୈସ୍ତୈର୍ବାନରୈଃ ସହ । ୪ ।
ତତଃ ସ ସଚିବେଭ୍ୟସ୍ତୁ ସୁଗ୍ରୀବଃ ପ୍ଲବଗାଧିପଃ ।
ଶଶଂସ ପରମୋଦ୍ୱିଗ୍ନଃ ପଶ୍ୟଂସ୍ତୌ ରାମଲକ୍ଷ୍ମଣୌ । ୫ ।
ଏତୌ ବନମିଦଂ ଦୁର୍ଗଂ ବାଲିପ୍ରଣିହିତୌ ଧ୍ରୁବମ୍ ।
ଛଦ୍ମନା ଚୀରବସନୌ ପ୍ରଚରନ୍ତାବିହାଗତୌ । ୬ ।

---

## ୨ୟ ସର୍ଗ

(ସୁଗ୍ରୀବଙ୍କ ମନ୍ତ୍ରଣା)

ସେହି ଉତ୍କୃଷ୍ଟ ଅସ୍ତ୍ରଧାରୀ ବୀର ମହାତ୍ମା ରାମ ଲକ୍ଷ୍ମଣ ଦୁଇଭାଇଙ୍କୁ ଦେଖି ସୁଗ୍ରୀବ ଶଙ୍କିତ ହୋଇଥିଲେ । ୧ । ତାଙ୍କର ହୃଦୟ ଉଦ୍‌ବିଗ୍ନ ହୋଇଗଲା । ସେ ବାନରଶ୍ରେଷ୍ଠ ବ୍ୟସ୍ତହୋଇ ଚାରିଆଡ଼କୁ ଚାହିଁବାକୁ ଲାଗିଲେ; କୌଣସି ଗୋଟିଏ ସ୍ଥାନରେ ସ୍ଥିରହୋଇ ରହିପାରିଲେ ନାହିଁ । ୨ । ମହାବଳୀ ରାମ ଏବଂ ଲକ୍ଷ୍ମଣଙ୍କୁ ଦେଖି ଥୟହୋଇ ଗୋଟିଏ ସ୍ଥାନରେ ରହିବାକୁ ସୁଗ୍ରୀବଙ୍କର ମନ ହେଲା ନାହିଁ । ଅତିଶୟ ଭୀତହୋଇ ତାଙ୍କର ଚିତ୍ତ ଅତ୍ୟନ୍ତ ଅବସନ୍ନ ହୋଇଯାଇଥିଲା ।୩। ଧର୍ମାତ୍ମା ସୁଗ୍ରୀବ ସାତିଶୟ ଉଦ୍‌ବିଗ୍ନ ହୋଇ ବାନରମାନଙ୍କ ସହିତ ହାନିଲାଭ କଥା ଚିନ୍ତାକରି ପରାମର୍ଶ କଲେ । ୪ । ତା ପରେ ବାନରାଧିପତି ସୁଗ୍ରୀବ ରାମ ଲକ୍ଷ୍ମଣଙ୍କୁ ଦେଖି ଅତିଶୟ ଉଦ୍‌ବିଗ୍ନ ହୋଇ ନିଜର ମନ୍ତ୍ରୀମାନଙ୍କୁ କହିଲେ ।୫। "ନିଶ୍ଚୟ ଏ ଦୁହେଁ ବାଲିଦ୍ୱାରା ପ୍ରେରିତ ହୋଇ ଏ ଦୁର୍ଗମ ବନକୁ ଆସିଛନ୍ତି; ଛଦ୍ମଭାବରେ ବଲ୍‌କଳ

ତତଃ ସୁଗ୍ରୀବସଚିବା ଦୃଷ୍ଟ୍ୱା ପରମଧନ୍ୱିନୌ ।
ଜଗ୍ମୁର୍ଗିରିତଟାତ୍ତସ୍ମାଦନ୍ୟଚ୍ଛିଖରମୁତ୍ତମମ୍ । ୭ ।
ତେ କ୍ଷିପ୍ରମଭିଗମ୍ୟାଥ ଯୂଥପା ଯୂଥପର୍ଷଭମ୍ ।
ହରୟୋ ବାନରଶ୍ରେଷ୍ଠଂ ପରିବାର୍ଯ୍ୟୋପତସ୍ଥିରେ । ୮ ।
ଏକମେକାୟନଗତାଃ ପ୍ଲବମାନା ଗିରେର୍ଗିରିମ୍ ।
ପ୍ରକମ୍ପୟନ୍ତୋ ବେଗେନ ଗିରୀଣାଂ ଶିଖରାଣି ଚ । ୯ ।
ତତଃ ଶାଖାମୃଗାଃ ସର୍ବେ ପ୍ଲବମାନା ମହାବଳାଃ ।
ବଭଞ୍ଜୁଶ୍ଚ ନଗାଂସ୍ତତ୍ର ପୁଷ୍ପିତାନ୍ଦୁର୍ଗମାଶ୍ରିତାନ୍ । ୧୦ ।
ଆପ୍ଲବନ୍ତୋ ହରିବରାଃ ସର୍ବତସ୍ତଂ ମହାଗିରିମ୍ ।
ମୃଗମାର୍ଜାରଶାର୍ଦ୍ଦୂଲାଁସ୍ତ୍ରାସୟନ୍ତୋ ୟୟୁସ୍ତଦା । ୧୧ ।
ତତଃ ସୁଗ୍ରୀବସଚିବାଃ ପର୍ବତେନ୍ଦ୍ରଂ ସମାଶ୍ରିତାଃ ।
ସଂଗମ୍ୟ କପିମୁଖ୍ୟେନ ସର୍ବେ ପ୍ରାଞ୍ଜଳୟଃ ସ୍ଥିତାଃ । ୧୨ ।
ତତସ୍ତୁ ଭୟସଂତ୍ରସ୍ତଂ ବାଳିକିଲ୍ୱିଷଶଙ୍କିତମ୍ ।
ଉବାଚ ହନୂମାନ୍ ବାକ୍ୟଂ ସୁଗ୍ରୀବଂ ବାକ୍ୟକୋବିଦଃ । ୧୩ ।

---

ସିଦ୍ଧ ମୁନିବେଶ ଧରି ବୁଲି ବୁଲି ଏଠାକୁ ଆସିଛନ୍ତି" ।୬। ତଦନନ୍ତର ଏ ମହାଧନୁର୍ଦ୍ଧାରୀ ଦୁହିଁଙ୍କୁ ଦେଖି ସୁଗ୍ରୀବଙ୍କ ମନ୍ତ୍ରୀମାନେ ସେ ପର୍ବତରୁ ଆଉ ଗୋଟିଏ ପର୍ବତ-ଶିଖରକୁ ଚାଲିଗଲେ । ୭ । ସେହି ବାନର ଦଳପତିମାନେ ଶୀଘ୍ର ବାନରରାଜଙ୍କ ନିକଟକୁ ଯାଇ ତାଙ୍କୁ ଚାରିଦିଗରୁ ଘେରି ବସିଗଲେ । ୮ । ଏହାପରେ ଏକାଠି ହୋଇ ଏକ ପର୍ବତରୁ ଅନ୍ୟ ପର୍ବତକୁ ଏମାନେ ଦୌଡ଼ିବାରୁ ସେମାନଙ୍କ ବେଗଦ୍ୱାରା ପର୍ବତଶିଖରମାନ କମ୍ପମାନ ହେଲା ।୯ । ଏହି ମହାବଳୀ ବାନରମାନେ ଡେଇଁଡେଇଁ ଦୁର୍ଗମ ସ୍ଥାନରେ ଥିବା ପୁଷ୍ପିତ ବୃକ୍ଷମାନଙ୍କୁ ଭାଙ୍ଗିପକାଇଲେ । ୧୦ । ବାନରମାନେ ଏଣେତେଣେ ଡେଇଁ ସେ ବିଶାଳ ପର୍ବତର ଚାରିଆଡ଼େ ଛାଇହୋଇଗଲେ । ସେମାନଙ୍କୁ ଦେଖି ମୃଗ, ମାର୍ଜାର ଏବଂ ବ୍ୟାଘ୍ରମାନେ ଭୟଭୀତ ହୋଇପଡ଼ିଲେ । ୧୧ । ତା ପରେ ସୁଗ୍ରୀବଙ୍କ ମନ୍ତ୍ରୀମାନେ ପର୍ବତରେ ପହଞ୍ଚି କପିଶ୍ରେଷ୍ଠ ସୁଗ୍ରୀବଙ୍କ ନିକଟରେ ଉପସ୍ଥିତ ହୋଇ ହାତଯୋଡ଼ି ଠିଆହୋଇ ରହିଲେ । ୧୨ । ଅନନ୍ତର କଥା କହିବାରେ ପଟୁ ହନୁମାନ୍ ବାଳିର କୁଚକ୍ରଶଙ୍କାରେ ଭୀତ ହୋଇଥିବା ସୁଗ୍ରୀବଙ୍କୁ

ସଂଭ୍ରମସ୍ତ୍ୟଜ୍ୟତାମେଷ ସର୍ବୈର୍ବାଳିକୃତେ ମହାନ୍ ।
ମଲୟୋଽୟଂ ଗିରିବରୋ ଭୟଂ ନେହାସ୍ତି ବାଲିନଃ । ୧୪ ।
ଯସ୍ମାଦୁଦ୍ବିଗ୍ନଚେତାସ୍ତ୍ୱଂ ବିଦ୍ରୁତୋ ହରିପୁଙ୍ଗବ ।
ତଂ କ୍ରୂରଦର୍ଶନଂ କ୍ରୂରଂ ନେହ ପଶ୍ୟାମି ବାଲିନମ୍ । ୧୫ ।
ଯସ୍ମାତ୍ତବ ଭୟଂ ସୌମ୍ୟ ପୂର୍ବଜାତ୍ପାପକର୍ମଣଃ ।
ସ ନେହ ବାଲୀ ଦୁଷ୍ଟାତ୍ମା ନ ତେ ପଶ୍ୟାମ୍ୟହଂ ଭୟମ୍ । ୧୬ ।
ଅହୋ ଶାଖାମୃଗତ୍ୱଂ ତେ ବ୍ୟକ୍ତମେବ ପ୍ଲବଙ୍ଗମ ।
ଲଘୁଚିତ୍ତତୟାତ୍ମାନଂ ନ ସ୍ଥାପୟସି ଯୋ ମତୌ । ୧୭ ।
ବୁଦ୍ଧିବିଜ୍ଞାନସଂପନ୍ନ ଇଙ୍ଗିତୈଃ ସର୍ବମାଚର ।
ନ ହ୍ୟବୁଦ୍ଧିଂ ଗତୋ ରାଜା ସର୍ବଭୂତାନି ଶାସ୍ତି ହି । ୧୮ ।
ସୁଗ୍ରୀବସ୍ତୁ ଶୁଭଂ ବାକ୍ୟଂ ଶ୍ରୁତ୍ୱା ସର୍ବଂ ହନୂମତଃ ।
ତତଃ ଶୁଭତରଂ ବାକ୍ୟଂ ହନୂମନ୍ତମୁବାଚ ହ । ୧୯ ।
ଦୀର୍ଘବାହୂ ବିଶାଲାକ୍ଷୌ ଶରଚ୍ଚାପାସିଧାରିଣୌ ।
କସ୍ୟ ନ ସ୍ୟାଦ୍ଭୟଂ ଦୃଷ୍ଟ୍ୱା ହ୍ୟେତୌ ସୁରସୁତୋପମୌ ।୨୦ ।

---

କହିଲେ । ୧୩ । "ଆପଣମାନେ ସମସ୍ତେ ବାଳିଠାରୁ ଅନିଷ୍ଟ ଘଟିବାର ଆଶଙ୍କା ଛାଡ଼ି ଦିଅନ୍ତୁ । ଏ ମଳୟ ପର୍ବତ । ଏଠାରେ ବାଳିର ଭୟ ଆଦୌ ନାହିଁ । ୧୪ । ହେ ବାନରଶ୍ରେଷ୍ଠ ! ତୁମେ ଉଦ୍‌ବିଗ୍ନ ହୋଇ ଯେଉଁ କ୍ରୂର ବାଳି ପାଖରୁ ପଳାଇ ଆସିଛ ସେ କ୍ରୂରଦର୍ଶନ ବାଳିକୁ ତ ମୁଁ ଏଠାରେ ବର୍ତ୍ତମାନ ଦେଖୁନାହିଁ । ୧୫ । ହେ ସୌମ୍ୟ ! ତୁମ୍ଭର ପାପାତ୍ମା ଜ୍ୟେଷ୍ଠଭ୍ରାତା ବାଳିକୁହିଁ ତୁମ୍ଭର ଭୟ । ସେ ତ ଏଠାରେ ନାହାନ୍ତି, ତେବେ ତୁମ୍ଭର ଭୟର କାରଣ ମୁଁ କିଛି ଦେଖିପାରୁ ନାହିଁ ।୧୬। ହେ ବାନରରାଜ ! ତୁମେ କ୍ଷୁଦ୍ରବୁଦ୍ଧି ହେତୁରୁ ସ୍ଥିରମନରେ କଥାକୁ ବିଚାର କରିପାରୁ ନାହଁ । ଏଦ୍ୱାରା ତୁମ୍ଭର ବାନରତ୍ୱ ପ୍ରକାଶ ପାଉଛି ।୧୭। ବୁଦ୍ଧିବିଜ୍ଞାନଯୁକ୍ତ ହୋଇ ସୂଚନା ଦେଖି ସବୁ ବିଷୟରେ କାର୍ଯ୍ୟ କର । ବୁଦ୍ଧି ହରାଇଲେ ରାଜା ସମସ୍ତ ପ୍ରାଣୀଙ୍କୁ ଶାସନ କରିପାରେ ନାହିଁ" ।୧୮। ସୁଗ୍ରୀବ ହନୁମାନଙ୍କର ଏସବୁ ସୁନ୍ଦର କଥା ଶୁଣି ତାଙ୍କୁ ଆହୁରି ଅଧିକ ସୁନ୍ଦର ବଚନ କହିଲେ । ୧୯ । "ଦୀର୍ଘବାହୁ, ବିଶାଳାକ୍ଷ, ଧନୁର୍ବାଣ ଏବଂ ଖଡ୍‌ଗଧାରୀ, ଦେବପୁତ୍ରସଦୃଶ ଏ ଦୁହିଁଙ୍କୁ ଦେଖି କାହାର ଭୟ ଜାତ ନ ହେବ ? । ୨୦ । ଏ ଦୁଇ ପୁରୁଷଶ୍ରେଷ୍ଠଙ୍କୁ ବାଳି

ବାଲପ୍ରଣିହିତାବେବ ଶଙ୍କେଽହଂ ପୁରୁଷୋତ୍ତମୌ ।
ରାଜାନୋ ବହୁମିତ୍ରାଶ୍ଚ ବିଶ୍ୱାସୋ ନାତ୍ର ହି କ୍ଷମଃ । ୨୧ ।
ଅରୟଶ୍ଚ ମନୁଷ୍ୟେଣ ବିଜ୍ଞେୟାଶ୍ଛଦ୍ମଚାରିଣଃ ।
ବିଶ୍ୱସ୍ତାନାମବିଶ୍ୱସ୍ତାଶ୍ଛିଦ୍ରେଷୁ ପ୍ରହରନ୍ତ୍ୟପି । ୨୨ ।
କୃତ୍ୟେଷୁ ବାଲୀ ମେଧାବୀ ରାଜାନୋ ବହୁଦର୍ଶିନଃ ।
ଭବନ୍ତି ପରହନ୍ତାରସ୍ତେ ଜ୍ଞେୟାଃ ପ୍ରାକୃତୈର୍ନରୈଃ । ୨୩ ।
ତୌ ତ୍ୱୟା ପ୍ରାକୃତେନୈବ ଗତ୍ୱା ଜ୍ଞେୟୌ ପ୍ଲବଙ୍ଗମ ।
ଇଙ୍ଗିତାନାଂ ପ୍ରକାରୈଶ୍ଚ ରୂପବ୍ୟାଭାଷଣେନ ଚ । ୨୪ ।
ଲକ୍ଷୟସ୍ୱ ତୟୋର୍ଭାବଂ ପ୍ରହୃଷ୍ଟମନସୌ ଯଦି ।
ବିଶ୍ୱାସୟନ୍ ପ୍ରଶଂସାଭିରିଙ୍ଗିତୈଶ୍ଚ ପୁନଃ ପୁନଃ । ୨୫ ।
ମମୈବାଭିମୁଖଂ ସ୍ଥିତ୍ୱା ପୃଚ୍ଛ ତ୍ୱଂ ହରିପୁଙ୍ଗବ ।
ପ୍ରୟୋଜନଂ ପ୍ରବେଶସ୍ୟ ବନସ୍ୟାସ୍ୟ ଧନୁର୍ଧରୌ । ୨୬ ।
ଶୁଦ୍ଧାତ୍ମାନୌ ଯଦି ତ୍ୱେତୌ ଜାନୀହି ତ୍ୱଂ ପ୍ଲବଙ୍ଗମ ।
ବ୍ୟାଭାଷିତୈର୍ବା ରୂପୈର୍ବା ବିଜ୍ଞେୟା ଦୁଷ୍ଟତାଽନୟୋଃ । ୨୭ ।

---

ପଠାଇଅଛି, ମୋର ଏହିପରି ଶଙ୍କା ଜାତ ହେଉଛି; କାରଣ ରାଜାମାନଙ୍କର ବହୁସଂଖ୍ୟକ ମିତ୍ର ଥାଆନ୍ତି । ସୁତରାଂ ରାଜାମାନଙ୍କ ପ୍ରତି ବିଶ୍ୱାସ କରିବା ଠିକ୍ ନୁହେ । ୨୧ । ଛଦ୍ମବେଶ ଧରି ବିଚରଣ କରୁଥିବା ଶତ୍ରୁମାନଙ୍କୁ ଭଲକରି ଚିହ୍ନିବା ମନୁଷ୍ୟର କର୍ତ୍ତବ୍ୟ । କାରଣ ସେହି ବିଶ୍ୱାସଘାତକମାନେ ପ୍ରଥମେ ବିଶ୍ୱାସ ଜନ୍ମାଇ ସୁବିଧା ପାଇଲକ୍ଷଣି ପ୍ରହାର କରନ୍ତି । ୨୨ । ରାଜାମାନେ ଅନେକ ଉପାୟ ଜାଣନ୍ତି । ନାନା ଉପାୟରେ ସେମାନେ ଶତ୍ରୁମାନଙ୍କୁ ମାରନ୍ତି । ବାଳି ସବୁକାର୍ଯ୍ୟରେ ଖୁବ୍ ବୁଦ୍ଧିମାନ୍ । ଅତଏବ ସାଧାରଣ ଲୋକମାନେ ରାଜାମାନଙ୍କୁ ଭଲକରି ଜାଣିବା (ଅର୍ଥାତ୍ ସାବଧାନ ହେବା) ଆବଶ୍ୟକ । ୨୩ । ଅତଏବ ହେ ବାନର ! ତୁମେ ସାଧାରଣ ବେଶରେ ଯାଇ ଇସାରା, ରୂପ ଏବଂ କଥାବାର୍ତ୍ତା କରିବାର ଢଙ୍ଗରୁ ସେ ଦୁହିଁଙ୍କୁ ଭଲକରି ଚିହ୍ନି ଆସିବା ଦରକାର । ୨୪ । ସେମାନଙ୍କର ପ୍ରକୃତ ମନର ଭାବ ବୁଝ । ପ୍ରଶଂସାଦ୍ୱାରା ଏବଂ ବାରମ୍ବାର ଇଙ୍ଗିତ କରି ବିଶ୍ୱାସ ଜନ୍ମାଇ ସେମାନେ ଆମପ୍ରତି ପ୍ରସନ୍ନ କି ନୁହନ୍ତି ଜାଣି ଆସିବ । ୨୫ । ହେ ବାନରଶ୍ରେଷ୍ଠ ! ମୋର ହୋଇ ତୁମେ ସେ ଦୁଇ ଧନୁର୍ଦ୍ଧାରୀଙ୍କୁ ପଚାରିବ, କି ଉଦ୍ଦେଶ୍ୟରେ ସେମାନେ ଏ ବନ ଭିତରକୁ ଆସିଛନ୍ତି । ୨୬ । ହେ ପ୍ଲବଙ୍ଗମ ! ତୁମେ ଏମାନଙ୍କୁ ଶୁଦ୍ଧ ବୋଲି ଜାଣିପାରିଲେ ମଧ୍ୟ ବିଶେଷ କଥାବାର୍ତ୍ତା ଏବଂ ଆକାର ପ୍ରକାରଦ୍ୱାରା ଏମାନଙ୍କର ଭିତର ଭାବ ଜାଣିବାକୁ ଚେଷ୍ଟା କରିବ; ତାଙ୍କ ମନରେ କୌଣସି ମନ୍ଦ ଅଭିପ୍ରାୟ ଅଛି

ଇତ୍ୟେବଂ କପିରାଜେନ ସଂଦିଷ୍ଟୋ ମାରୁତାତ୍ମଜଃ ।
ଚକାର ଗମନେ ବୁଦ୍ଧିଂ ଯତ୍ର ତୌ ରାମଲକ୍ଷ୍ମଣୌ । ୨୮ ।
ତଦେତତ୍ ସଂପୂଜ୍ୟ ବଚସ୍ତୁ ତସ୍ୟ
କପିଃ ସୁଭୀତସ୍ୟ ଦୁରାସଦସ୍ୟ ।
ମହାନୁଭାବୋ ହନୁମାନ୍ ଯଯୌ ତଦା
ସ ଯତ୍ର ରାମୋଽତିବଲୀ ସଲକ୍ଷ୍ମଣଃ । ୨୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସୁଗ୍ରୀବମନ୍ତ୍ରୋ
ନାମ ଦ୍ୱିତୀୟଃ ସର୍ଗଃ

---

କ ନାହିଁ" । ୨୭ । କପିରାଜଙ୍କଠାରୁ ଏହିପରି ଆଦେଶ ପାଇ ପବନସୁତ (ହନୁମାନ୍) ଯେଉଁଠାରେ ରାମ ଲକ୍ଷ୍ମଣ ଥିଲେ ସେଠାକୁ ଯିବାକୁ ସ୍ଥିର କଲେ । ୨୮ । ମହାନୁଭବ ହନୁମାନ୍ ଭୟଭୀତ ସୁଗ୍ରୀବଙ୍କ କଥା ମାନି ଯେଉଁଠାରେ ଲକ୍ଷ୍ମଣଙ୍କ ସହିତ ମହାବଳୀ ରାମଚନ୍ଦ୍ର ଥିଲେ ସେହିଠାକୁ ଗଲେ । ୨୯ ।

# ତୃତୀୟଃ ସର୍ଗଃ

## ହନୂମତ୍‌ପ୍ରେଷଣମ୍

ବଚୋ ବିଜ୍ଞାୟ ହନୁମାନ୍ ସୁଗ୍ରୀବସ୍ୟ ମହାତ୍ମନଃ ।
ପର୍ବତାଦୃଶ୍ୟମୂକାତ୍ତୁ ପୁପ୍ଲୁବେ ଯତ୍ର ରାଘବୌ । ୧ ।
କପିରୂପଂ ପରିତ୍ୟଜ୍ୟ ହନୁମାନ୍ମାରୁତାତ୍ମଜଃ ।
ଭିକ୍ଷୁରୂପଂ ତତୋ ଭେଜେ ଶଠବୁଦ୍ଧିତୟା କପିଃ । ୨ ।
ତତଶ୍ଚ ହନୁମାନ୍ ବାଚା ଶ୍ଲକ୍ଷ୍ଣୟା ସୁମନୋଜ୍ଞୟା ।
ବିନୀତବଦୁପାଗମ୍ୟ ରାଘବୌ ପ୍ରଣିପତ୍ୟ ଚ । ୩ ।
ଆବଭାଷେ ଚ ତୌ ବୀରୌ ଯଥାବତ୍ ପ୍ରଶଶଂସ ଚ ।
ସଂପୂଜ୍ୟ ବିଧିବଦ୍‌ବୀରୌ ହନୁମାନ୍ ବାନରୋତ୍ତମଃ । ୪ ।
ଉବାଚ କାମତୋ ବାକ୍ୟଂ ମୃଦୁ ସତ୍ୟପରାକ୍ରମୌ ।
ରାଜର୍ଷିଦେବପ୍ରତିମୌ ତାପସୌ ସଂଶିତବ୍ରତୌ । ୫ ।
ଦେଶଂ କଥମିମଂ ପ୍ରାପ୍ତୌ ଭବନ୍ତୌ ବରବର୍ଣିନୌ ।
ତ୍ରାସୟନ୍ତୌ ମୃଗଗଣାନନ୍ୟାଂଶ୍ଚ ବନଚାରିଣଃ । ୬ ।

---

## ତୃତୀୟ ସର୍ଗ

(ସୁଗ୍ରୀବଙ୍କର ହନୁମାନ୍‌ପ୍ରେରଣ)

ମହାତ୍ମା ସୁଗ୍ରୀବଙ୍କ କଥା ବୁଝିସାରି ହନୁମାନ୍ ଋଷ୍ୟମୂକ ପର୍ବତରୁ ଯେଉଁଠାରେ ରାମ ଏବଂ ଲକ୍ଷ୍ମଣ ଥିଲେ ସେଠାକୁ ଡେଇଁପଡ଼ିଲେ ।୧। ପବନଙ୍କ ପୁତ୍ର ବାନର ହନୁମାନ୍ କପିରୂପ ତ୍ୟାଗକରି ଶଠତା ଅବଲମ୍ବନପୂର୍ବକ ଭିକ୍ଷୁବେଶଧାରଣ କଲେ । ୨ । ତଦନନ୍ତର ରାମ ଏବଂ ଲକ୍ଷ୍ମଣଙ୍କ ନିକଟକୁ ବିନୀତଭାବରେ ଯାଇ ହନୁମାନ୍ ପ୍ରଣାମକଲେ ଏବଂ ମନୋହର ମଧୁର ଭାଷାରେ କହିଲେ । ବାନର ଶ୍ରେଷ୍ଠ ହନୁମାନ୍ ସେ ଦୁଇ ବୀରଙ୍କୁ ବିଧିମତେ ପୂଜା କରି ଏବଂ ଯଥାଯୋଗ୍ୟରେ ପ୍ରଶଂସା କରି କହିଲେ । ୩-୪ । ସେ ସତ୍ୟପରାକ୍ରମ ରାଜର୍ଷି ଏବଂ ଦେବତୁଲ୍ୟ ସେହି ଦୁଇ ତପସ୍ୱୀଙ୍କୁ ଆପଣା ମନମୁତାବକ ମୃଦୁଭାଷାରେ କଥା କହିଲେ (ଅର୍ଥାତ୍ ସୁଗ୍ରୀବ ଯେପରି ଆଦେଶ କରିଥିଲେ ସେପରି ନ କହି, ନିଜ ମନକୁ ଯେପରି ଭଲ ଦେଖାଗଲା, ସେହିପରି କହିଲେ) ।୫। "ଉତ୍କୃଷ୍ଟ ରୂପବନ୍ତ ଆପଣ ଦୁଇ ଜଣ ଏ ପ୍ରଦେଶକୁ କାହିଁକି ଆଗମନ କରିଛନ୍ତି ? ଆପଣମାନଙ୍କ ଆସିବାଦ୍ୱାରା ଏଠାର ପଶୁମାନେ ଏବଂ ଅନ୍ୟାନ୍ୟ ବନଚରମାନେ ଭୟଭୀତ ହୋଇଯାଇଅଛନ୍ତି । ୬ । ପମ୍ପାତୀରର

ପମ୍ପାତୀରରୁହାନ୍ ବୃକ୍ଷାନ୍ ବୀକ୍ଷମାଣୌ ସମନ୍ତତଃ ।
ଇମାଂ ନଦୀଂ ଶୁଭଜଲାଂ ଶୋଭୟନ୍ତୌ ତରସ୍ୱିନୌ । ୭ ।
ଧୈର୍ଯବନ୍ତୌ ସୁବର୍ଣାଭୌ କୌ ଯୁବାଂ ଚୀରବାସସୌ ।
ନିଃଶ୍ୱସନ୍ତୌ ବରଭୁଜୌ ପୀଡ଼ୟନ୍ତାବିମାଃ ପ୍ରଜାଃ । ୮ ।
ସିଂହବିପ୍ରେକ୍ଷିତୌ ବୀରୌ ମହାବଲପରାକ୍ରମୌ ।
ଶକ୍ରଚାପନିଭେ ଚାପେ ଗୃହୀତ୍ୱା ଶତ୍ରୁନାଶନୌ । ୯ ।
ଶ୍ରୀମନ୍ତୌ ରୂପସମ୍ପନ୍ନୌ ବୃଷଭଶ୍ରେଷ୍ଠବିକ୍ରମୌ ।
ହସ୍ତିହସ୍ତୋପମଭୁଜୌ ଦ୍ୟୁତିମନ୍ତୌ ନରର୍ଷଭୌ । ୧୦ ।
ପ୍ରଭୟା ପର୍ବତେନ୍ଦ୍ରୋଽୟଂ ଯୁବୟୋରବଭାସିତଃ ।
ରାଜ୍ୟାର୍ହାବମରପ୍ରଖ୍ୟୌ କଥଂ ଦେଶମିହାଗତୌ । ୧୧ ।
ପଦ୍ମପତ୍ରେକ୍ଷଣୌ ବୀରୌ ଜଟାମଣ୍ଡଳଧାରିଣୌ ।
ଅନ୍ୟୋନ୍ୟସଦୃଶୌ ବୀରୌ ଦେବଲୋକାଦିହାଗତୌ ।୧୨।
ଯଦୃଚ୍ଛୟେବ ସଂପ୍ରାପ୍ତୌ ଚନ୍ଦ୍ରସୂର୍ଯୌ ବସୁନ୍ଧରାମ୍ ।
ବିଶାଲବକ୍ଷସୌ ବୀରୌ ମାନୁଷୌ ଦେବରୂପିଣୌ । ୧୩ ।

---

ବୃକ୍ଷମାନଙ୍କୁ ଦେଖି ଦେଖି ଏବଂ ଏହି ସ୍ୱଚ୍ଛସଲିଳା ନଦୀର ଶୋଭା ବଢ଼ାଇ ଆପଣ ଦୁହେଁ ଏଠାରେ ଉପସ୍ଥିତ ହୋଇଛନ୍ତି । ୭ । ଧୈର୍ଯ୍ୟଶାଳୀ ଆପଣ ଦୁଇ ଜଣଙ୍କ ଶରୀରର ବର୍ଣ୍ଣ ସୁବର୍ଣ୍ଣସଦୃଶ ଦେଖାଯାଉଛି, ବଲ୍କଳ ବସ୍ତ୍ର ପରିଧାନ କରିଛନ୍ତି । ଆପଣମାନେ କିଏ ? ଦୀର୍ଘବାହୁଯୁକ୍ତ ଆପଣଙ୍କ ନିଶ୍ୱାସରେ ଏଠାର ପ୍ରଜାକୁଳ ପୀଡ଼ା ଅନୁଭବ କରୁଛନ୍ତି (ଅର୍ଥାତ୍ ଆପଣମାନଙ୍କ ବିଷାଦ ଦେଖି ସେମାନେ ଦୁଃଖିତ ହେଉଛନ୍ତି) ।୮। ଆପଣମାନଙ୍କ ଚାହାଣି ସିଂହ ପରି, ଆପଣ ମହାବଳୀ ଏବଂ ପରାକ୍ରମୀ । ଇନ୍ଦ୍ରଙ୍କ ଧନୁପରି ଶତ୍ରୁସଂହାରକାରୀ ଦୁଇଟି ଧନୁ ଆପଣ ଦୁହେଁ ଧାରଣ କରିଛନ୍ତି । ଆପଣମାନେ ଶ୍ରୀମାନ୍, ରୂପବାନ୍ ଏବଂ ମହାବଳବାନ୍ ବୃଷଭସଦୃଶ ପରାକ୍ରମୀ । ଆପଣମାନଙ୍କ ବାହୁଦୁଇଟି ହସ୍ତିଶୁଣ୍ଢ ପରି ଦେଖାଯାଉଛି । ଆପଣଦୁହେଁ ଦୀପ୍ତିମନ୍ତ ନରଶ୍ରେଷ୍ଠ ଅଟନ୍ତି । ଅପଣମାନଙ୍କ ପ୍ରଭାରେ ଏ ପର୍ବତ ଆଲୋକିତ ହୋଇଯାଉଛି । ଆପଣ ଦୁହେଁ ଦେବତାସଦୃଶ ଏବଂ ରାଜ୍ୟର ଅଧିକାରୀ ପରି ଦେଖାଯାଉଛନ୍ତି । ଆପଣମାନେ ଏ ଦେଶକୁ କାହିଁକି ଆସିଛନ୍ତି ? । ୯-୧୧ । ଆପଣ ଦୁହେଁ ଜଟାଧାରୀ ବୀର । ଆପଣମାନଙ୍କ ଆଖି ପଦ୍ମପାଖୁଡ଼ାପରି ଦେଖାଯାଉଛି । ଆପଣ ଦୁହେଁଯାକ ଏକାପରି ଦେଖାଯାଉଛନ୍ତି । ଆପଣମାନେ କଅଣ ଦେବଲୋକରୁ ଏଠାକୁ ଆଗମନ କରିଛନ୍ତି ? । ୧୨ । କଅଣ ଚନ୍ଦ୍ର ସୂର୍ଯ୍ୟ ଦୁହେଁ ହଠାତ୍ ପୃଥିବୀକୁ ଓହ୍ଲାଇ ଆସିଛନ୍ତି ? ପ୍ରଶସ୍ତବକ୍ଷଶାଳୀ ଆପଣ ଦୁଇ ବୀର ଦେବରୂପୀ ମନୁଷ୍ୟପରି ଦେଖା-

ସିଂହସ୍କନ୍ଧୌ ମହୋତ୍ସାହୌ ସମଦାବିବ ଗୋବୃଷୌ ।
ଆୟତାଶ୍ଚ ସୁବୃତ୍ତାଶ୍ଚ ବାହବଃ ପରିଘୋପମାଃ । ୧୪ ।
ସର୍ବଭୂଷଣଭୂଷାର୍ହାଃ କିମର୍ଥଂ ନ ବିଭୂଷିତାଃ ।
ଉଭୌ ଯୋଗ୍ୟାବହଂ ମନ୍ୟେ ରକ୍ଷିତୁଂ ପୃଥିବୀମିମାମ୍ । ୧୫ ।
ସସାଗରବନାଂ କୃତ୍ସ୍ନାଂ ବିନ୍ଧ୍ୟମେରୁବିଭୂଷିତାମ୍ ।
ଇମେ ଚ ଧନୁଷୀ ଚିତ୍ରେ ଶ୍ଳକ୍ଷ୍ଣେ ଚିତ୍ରାନୁଲେପନେ । ୧୬ ।
ପ୍ରକାଶେତେ ଯଥେନ୍ଦ୍ରସ୍ୟ ବଜ୍ରେ ହେମବିଭୂଷିତେ ।
ସମ୍ପୂର୍ଣାଶ୍ଚ ଶିତୈର୍ବାଣୈସ୍ତୂଣାଶ୍ଚ ଶୁଭଦର୍ଶନାଃ । ୧୭ ।
ଜୀବିତାନ୍ତକରୈର୍ଘୋରୈର୍ଜ୍ୱଲଦ୍ଭିରିବ ପନ୍ନଗୈଃ ।
ମହାପ୍ରମାଣୌ ବିପୁଲୌ ତପ୍ତହାଟକଭୂଷଣୌ । ୧୮ ।
ଖଡ୍‌ଗାବେତୌ ବିରାଜେତେ ନିର୍ମୁକ୍ତଭୁଜଗାବିବ ।
ଏବଂ ମାଂ ପରିଭାଷନ୍ତଂ କସ୍ମାଦ୍ବୈ ନାଭିଭାଷଥଃ । ୧୯ ।
ସୁଗ୍ରୀବୋ ନାମ ଧର୍ମାତ୍ମା କଶ୍ଚିଦ୍‌ବାନରଯୂଥପଃ ।
ବୀରୋ ବିନିକୃତୋ ଭ୍ରାତ୍ରା ଜଗଦ୍‌ଭ୍ରମତି ଦୁଃଖିତଃ । ୨୦ ।

---

ଯାଉଛନ୍ତି । ୧୩ । ଆପଣମାନଙ୍କ କାନ୍ଧ ସିଂହକାନ୍ଧପରି ହୋଇଛି । ମଦମତ୍ତ ବୃଷଭ ପରି ଆପଣ ଦୁହେଁ ଉତ୍ସାହପୂର୍ଣ୍ଣ ଜଣାପଡ଼ୁଛନ୍ତି । ଆପଣମାନଙ୍କ ବାହୁମାନ ପରିଘ (କବାଟର କିଳଣୀ)ପରି ଦୀର୍ଘ ଏବଂ ବର୍ତ୍ତୁଳ ହୋଇଅଛି । ୧୪ । ଆପଣମାନେ ସର୍ବପ୍ରକାର ଭୂଷଣ ଧାରଣ କରିବାର ଯୋଗ୍ୟ ଅଟନ୍ତି; ତେବେ କାହିଁକି ଏପରି ଭୂଷଣବିହୀନ ହୋଇଅଛନ୍ତି ? ମୁଁ ତ ଆପଣ ଦୁହିଁଙ୍କୁ ସାଗର, ବନ, ବିନ୍ଧ୍ୟ, ମେରୁ ଆଦି ପର୍ବତଯୁକ୍ତ ସମଗ୍ର ପୃଥିବୀକୁ ରକ୍ଷା କରିବାର ଯୋଗ୍ୟ ମନେକରୁଅଛି । ଆପଣମାନଙ୍କର ଏ ଧନୁ ଦୁଇଟି ବିଚିତ୍ର, ଚିକ୍‌କଣ ଏବଂ ଚିତ୍ରଯୁକ୍ତ ହୋଇଛି । ୧୫-୧୬ । ଏହା ଇନ୍ଦ୍ରଙ୍କର ସୁବର୍ଣ୍ଣବିଭୂଷିତ ବଜ୍ରପରି ଶୋଭାପାଉଛି । ତୀକ୍ଷ୍ଣ ବାଣରେ ପୂର୍ଣ୍ଣହୋଇ ଆପଣମାନଙ୍କ ତୂଣୀର (ଶରମୁଣା)ଗୁଡ଼ିକ ବଡ଼ ସୁନ୍ଦର ଦେଖାଯାଉଛି ।୧୭। ଏ ବାଣଗୁଡ଼ିକ ପ୍ରାଣ-ସଂହାରକାରୀ ଭୟଙ୍କର ସର୍ପମାନଙ୍କପରି ଜାଜ୍ୱଲ୍ୟମାନ ଦେଖାଯାଉଛନ୍ତି । ଅତି ବିଶାଳ, ସ୍ଥୂଳ, ଉତ୍ତପ୍ତସୁବର୍ଣ୍ଣଭୂଷିତ ଆପଣଙ୍କର ଏ ଖଡ୍‌ଗ ଦୁଇଟି କାତି ଛାଡ଼ିଥିବା ଦୁଇଟି ସର୍ପପରି ଶୋଭମାନ ଦେଖାଯାଉଛି । ମୁଁ ଆପଣମାନଙ୍କୁ ଏତେ କଥା କହିଲି, ଆପଣମାନେ ମୋତେ କିଛି କହୁନାହାନ୍ତି କାହିଁକି ? ।୧୮-୧୯ । ସୁଗ୍ରୀବ ନାମକ ଜଣେ ଧର୍ମାତ୍ମା ବାନରଶ୍ରେଷ୍ଠ ବୀର ନିଜ ଭାଇଙ୍କଦ୍ୱାରା ବିତାଡ଼ିତ ହୋଇ ଦୁଃଖିତଭାବରେ ସାରା ଜଗତ ଏଣେ ତେଣେ ବୁଲୁଛନ୍ତି । ୨୦ । ସେହି

ପ୍ରାପ୍ତୋଽହଂ ପ୍ରେଷିତସ୍ତେନ ସୁଗ୍ରୀବେଣ ମହାତ୍ମନା ।
ରାଜ୍ଞା ବାନରମୁଖ୍ୟାନାଂ ହନୂମାନ୍ନାମ ବାନରଃ ।୨୧।
ଯୁବାଭ୍ୟାଂ ସ ହି ଧର୍ମାତ୍ମା ସୁଗ୍ରୀବଃ ସଖ୍ୟମିଚ୍ଛତି ।
ତସ୍ୟ ମାଂ ସଚିବଂ ବିତ୍ତଂ ବାନରଂ ପବନାତ୍ମଜମ୍ ।୨୨।
ଭିକ୍ଷୁରୂପପ୍ରତିଚ୍ଛନ୍ନଂ ସୁଗ୍ରୀବପ୍ରିୟକାରଣାତ୍ ।
ଋଶ୍ୟମୂକାଦିହ ପ୍ରାପ୍ତଂ କାମଗଂ କାମରୂପିଣମ୍ ।୨୩।
ଏବମୁକ୍ତ୍ୱା ତୁ ହନୁମାଂସ୍ତୌ ବୀରୌ ରାମଲକ୍ଷ୍ମଣୌ ।
ବାକ୍ୟଜ୍ଞୌ ବାକ୍ୟକୁଶଳଃ ପୁନର୍ନୋବାଚ କିଞ୍ଚନ ।୨୪।
ଏତ ଚ୍ଛ୍ରୁତ୍ୱା ବଚସ୍ତସ୍ୟ ରାମୋ ଲକ୍ଷ୍ମଣମବ୍ରବୀତ୍ ।
ପ୍ରହୃଷ୍ଟବଦନଃ ଶ୍ରୀମାନ୍ ଭ୍ରାତରଂ ପାର୍ଶ୍ୱତଃ ସ୍ଥିତମ୍ ।୨୫।
ସଚିବୋଽୟଂ କପୀନ୍ଦ୍ରସ୍ୟ ସୁଗ୍ରୀବସ୍ୟ ମହାତ୍ମନଃ ।
ତମେବ କାଙ୍କ୍ଷମାଣସ୍ୟ ମମାନ୍ତିକମିହାଗତଃ ।୨୬।
ଅଭିଭାଷସ୍ୱ ସୌମିତ୍ରେ ସୁଗ୍ରୀବସଚିବଂ କପିମ୍ ।
ବାକ୍ୟଜ୍ଞଂ ମଧୁରୈର୍ବାକ୍ୟୈଃ ସ୍ନେହଯୁକ୍ତମରିନ୍ଦମମ୍ ।୨୭।

---

ଶ୍ରେଷ୍ଠ ବାନରମାନଙ୍କର ରାଜା ମହାତ୍ମା ସୁଗ୍ରୀବଙ୍କଦ୍ୱାରା ପ୍ରେରିତହୋଇ ମୁଁ ଏଠାକୁ ଆସିଛି । ମୁଁ ଜଣେ ବାନର ଏବଂ ମୋର ନାମ ହନୁମାନ୍ ।୨୧। ସେହି ଧର୍ମାତ୍ମା ସୁଗ୍ରୀବ ଆପଣ ଦୁଇ ଜଣଙ୍କ ସହିତ ମିତ୍ରତା ସ୍ଥାପନ କରିବାକୁ ଇଚ୍ଛାକରନ୍ତି । ମୁଁ ତାଙ୍କର ମନ୍ତ୍ରୀ ଏବଂ ବାୟୁଙ୍କର ପୁତ୍ର ଅଟେଁ ।୨୨। ସୁଗ୍ରୀବଙ୍କର ପ୍ରିୟକାର୍ଯ୍ୟ କରିବା ନିମନ୍ତେ ମୁଁ ଭିକ୍ଷୁରୂପ ଧାରଣ କରି ନିଜ ରୂପକୁ ଲୁଚାଇଅଛି । ଋଷ୍ୟମୂକ ପର୍ବତରୁ ମୁଁ ଏଠାକୁ ଆସିଛି । ମୁଁ ଇଚ୍ଛା ଅନୁସାରେ ଯେ କୌଣସି ରୂପ ଧାରଣ କରିପାରେ ଏବଂ ଇଚ୍ଛାମୁତାବକ ଯେ କୌଣସି ସ୍ଥାନକୁ ଯାଇପାରେ" ।୨୩। ସେହି ଦୁଇ ବୀର ରାମ ଏବଂ ଲକ୍ଷ୍ମଣଙ୍କୁ ଏହିପ୍ରକାର କହି, କଥା ବୁଝିବାବାଲା ଏବଂ କଥା କହିବାରେ ସୁନିପୁଣ ହନୁମାନ୍ ଚୁପ ହୋଇ ରହିଲେ; ଆଉ କିଛି କହିଲେ ନାହିଁ ।୨୪। ତାଙ୍କର ଏ କଥା ଶୁଣି ପ୍ରସନ୍ନମୁଖ ଶ୍ରୀମାନ୍ ରାମଚନ୍ଦ୍ର ତାଙ୍କ ପାଖରେ ବସିଥିବା ଭାଇ ଲକ୍ଷ୍ମଣଙ୍କୁ କହିଲେ ।୨୫। "ବାନରାଧିପତି ସୁଗ୍ରୀବଙ୍କର ଏ ମନ୍ତ୍ରୀ ଅଟନ୍ତି । ତାଙ୍କରି ଇଚ୍ଛାରେ ଏ ମୋ ନିକଟକୁ ଆସିଛନ୍ତି ।୨୬। ସୌମିତ୍ରେ ! ସୁଗ୍ରୀବସଚିବ ଏହି ବାନର ସହିତ ତୁମେ କଥାବାର୍ତ୍ତା କର । ଏ କଥା ବୁଝିବା ଲୋକ, ସ୍ନେହଶୀଳ ଏବଂ ଶତ୍ରୁଦମନକାରୀ । ତୁମେ ମଧୁର ବଚନ କହି ଏହାଙ୍କ ସହିତ ଆଳାପ

ନାନୃଗ୍ବେଦବିନୀତସ୍ୟ ନାଯଜୁର୍ବେଦଧାରିଣଃ ।
ନାସାମବେଦବିଦୁଷଃ ଶକ୍ୟମେବଂ ବିଭାଷିତୁମ୍ । ୨୮ ।
ନୂନଂ ବ୍ୟାକରଣଂ କୃତ୍ସ୍ନମନେନ ବହୁଧା ଶ୍ରୁତମ୍ ।
ବହୁବ୍ୟାହରତାନେନ ନ କିଞ୍ଚିଦପଶବ୍ଦିତମ୍ । ୨୯ ।
ନ ମୁଖେ ନେତ୍ରୟୋଶ୍ଚାପି ଲଲାଟେ ଚ ଭ୍ରୁବୋସ୍ତଥା ।
ଅନ୍ୟେଷ୍ୱପି ଚ ସର୍ବେଷୁ ଦୋଷଃ ସମ୍ବିଦିତଃ କ୍ୱଚିତ୍ । ୩୦ ।
ଅବିସ୍ତରମସଂଦିଗ୍ଧମବିଲମ୍ବିତମବ୍ୟଥମ୍ ।
ଉରଃସ୍ଥଂ କଣ୍ଠଗଂ ବାକ୍ୟଂ ବର୍ତ୍ତତେ ମଧ୍ୟମସ୍ୱରମ୍ । ୩୧ ।
ସଂସ୍କାରକ୍ରମସମ୍ପନ୍ନାମଦ୍ରୁତାମବିଲମ୍ବିତାମ୍ ।
ଉଚ୍ଚାରୟତି କଲ୍ୟାଣୀଂ ବାଚଂ ହୃଦୟହର୍ଷିଣୀମ୍ । ୩୨ ।
ଅନୟା ଚିତ୍ରୟା ବାଚା ତ୍ରିସ୍ଥାନବ୍ୟଞ୍ଜନସ୍ଥୟା ।
କସ୍ୟ ନାରାଧ୍ୟତେ ଚିତ୍ତମୁଦ୍ୟତାସେରରେରପି । ୩୩ ।
ଏବଂବିଧୋ ଯସ୍ୟ ଦୂତୋ ନ ଭବେତ୍ପାର୍ଥିବସ୍ୟ ତୁ ।
ସିଦ୍ଧ୍ୟନ୍ତି ହି କଥଂ ତସ୍ୟ କାର୍ଯ୍ୟାଣାଂ ଗତୟୋଽନଘ । ୩୪ ।

---

କର । ୨୭ । ଯେ ଋଗ୍‌ବେଦ ଶିକ୍ଷା କରି ନାହିଁ, ଯାହାର ଯଜୁର୍ବେଦର ଜ୍ଞାନ ନାହିଁ ଏବଂ ସାମବେଦରେ ଯେ ବିଦ୍ୱାନ୍ ନୁହେଁ, ସେ କଦାପି ଏପରି କଥା କହିପାରନ୍ତି ନାହିଁ । ୨୮ । ଏ ନିଶ୍ଚୟ ସମସ୍ତ ବ୍ୟାକରଣ ଶାସ୍ତ୍ର ବହୁବାର ଶୁଣିଛନ୍ତି । କାରଣ ବହୁତ କଥା କହିଲେ ମଧ୍ୟ ସେ କୌଣସି ଅଶୁଦ୍ଧ ଶବ୍ଦ ବ୍ୟବହାର କରି ନାହାନ୍ତି । ୨୯ ! ମୁଖ, ଚକ୍ଷୁ, ଲଲାଟ, ଭ୍ରୂଲତା ବା ଅନ୍ୟ କୌଣସି ଅଙ୍ଗରେ ମଧ୍ୟ କଥା କହିଲାବେଳେ ଏହାଙ୍କର କୌଣସି ଦୋଷ ଲକ୍ଷିତ ହୋଇ ନାହିଁ । ୩୦ । ସେ ଅତି ସଂକ୍ଷେପରେ ବକ୍ତବ୍ୟ କହିଛନ୍ତି । ଏହାଙ୍କ କଥାରେ ଏପରି କିଛି ନାହିଁ ଯହିଁରେ ଲେଶମାତ୍ର ସନ୍ଦେହ ହେବ । କଥା କହିବାରେ ଟିକିଏହେଲେ ବିଳମ୍ବ ହୋଇନାହିଁ ବା ଏହାଙ୍କର କଥାରେ ବ୍ୟଥା ଜାତ କରିବାଭଳି କିଛି ନାହିଁ । ହୃଦୟରେ ଯେ ଭାବ ଜାତ ହୋଇଛି ତାହାହିଁ କଣ୍ଠଦ୍ୱାରା ଅତି ଉଚ୍ଚସ୍ୱରରେ ନୁହେଁ, କି ଅତି ନୀଚସ୍ୱରରେ ନୁହେଁ, ମଧ୍ୟଭଳି ସ୍ୱରରେ କହିଛନ୍ତି । ୩୧ । ଅଧିକ ଚଞ୍ଚଳଭାବରେ, ନୁହେଁ କି ଅଧିକ ବିଳମ୍ବରେ ନୁହେଁ; ସଂସ୍କାର ଏବଂ ଉଚ୍ଚାରଣର ଶାସ୍ତ୍ରୀୟ ପଦ୍ଧତି ଅନୁସାରେ ମଧୁର ବଚନ କହି ହୃଦୟକୁ ପ୍ରସନ୍ନ କରି ଦେଇଛନ୍ତି । ୩୨ । ଏପରି ଶୁଦ୍ଧ ସୁନ୍ଦର ବିଚିତ୍ର ବାକ୍ୟଦ୍ୱାରା କାହାର ହୃଦୟ ସନ୍ତୁଷ୍ଟ ନ ହେବ ? ଯେଉଁ ଶତ୍ରୁ ମାରିବାପାଇଁ ଖଡ୍‌ଗ ଉଠାଇଥିବ, ତା'ର ମଧ୍ୟ ମନ ପ୍ରସନ୍ନ ହୋଇଯିବ । ୩୩ । ହେ ନିଷ୍ପାପ ! ଯେଉଁ ରାଜାର ଏପରି ଦୂତ ନ ଥିବ ତାହାର

ଏବଂ ଗୁଣଗଣୈର୍ଯୁକ୍ତା ଯସ୍ୟ ସ୍ୟୁଃ କାର୍ଯସାଧକାଃ ।
ତସ୍ୟ ସିଦ୍ଧ୍ୟନ୍ତି ସର୍ବେଽର୍ଥା ଦୂତବାକ୍ୟପ୍ରଚୋଦିତାଃ । ୩୫ ।
ଏବମୁକ୍ତସ୍ତୁ ସୌମିତ୍ରିଃ ସୁଗ୍ରୀବସଚିବଂ କପିମ୍ ।
ଅଭ୍ୟଭାଷତ ବାକ୍ୟଜ୍ଞୋ ବାକ୍ୟଜ୍ଞଂ ପବନାତ୍ମଜମ୍ । ୩୬ ।
ବିଦିତା ନୌ ଗୁଣା ବିଦ୍ୱନ୍ ସୁଗ୍ରୀବସ୍ୟ ମହାତ୍ମନଃ ।
ତମେବ ଚାବାଂ ମାର୍ଗାବଃ ସୁଗ୍ରୀବଂ ପ୍ଲବଗେଶ୍ୱରମ୍ ।୩୭ ।
ଯଥା ବ୍ରବୀଷି ହନୁମନ୍ ସୁଗ୍ରୀବବଚନାଦିହ ।
ତତ୍ତଥା ହି କରିଷ୍ୟାବୋ ବଚନାତ୍ତବ ସତ୍ତମ । ୩୮ ।
ତତ୍ତସ୍ୟ ବାକ୍ୟଂ ନିପୁଣଂ ନିଶମ୍ୟ
ପ୍ରହୃଷ୍ଟରୂପଃ ପବନାତ୍ମଜଃ କପିଃ ।
ମନଃ ସମାଧାୟ ଜୟୋପପତ୍ତୌ
ସଖ୍ୟଂ ତଦା କର୍ତୁମିୟେଷ ତାଭ୍ୟାମ୍ । ୩୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ହନୁମଦ୍ରାଘବସମାଗମୋ
ନାମ ତୃତୀୟଃ ସର୍ଗଃ

———

କାର୍ଯ୍ୟ କିପରି ସିଦ୍ଧ ହୋଇପାରିବ ? । ୩୪ । ଏପରି ଗୁଣବାନ୍ କାର୍ଯ୍ୟସାଧକ ଦୂତ ଯେଉଁ ରାଜାଙ୍କ ନିକଟରେ ଥିବେ, ସେ ରାଜାଙ୍କର କାର୍ଯ୍ୟ ଦୂତର କଥାଦ୍ୱାରହିଁ ସିଦ୍ଧ ହୋଇଯିବ" । ୩୫ । ରାମଚନ୍ଦ୍ର ଏପରି କହିବାପରେ କଥା ବୁଝିଲାବାଲା ପବନପୁତ୍ର ସୁଗ୍ରୀବଙ୍କ ମନ୍ତ୍ରୀ ହନୁମାନଙ୍କୁ, କଥା କହିବାରେ ନିପୁଣ ଲକ୍ଷ୍ମଣ କହିଲେ । ୩୬ । "ହେ ବିଦ୍ୱନ୍ ! ମହାତ୍ମା ସୁଗ୍ରୀବଙ୍କର ଗୁଣମାନ ଆମ ଦୁହିଁଙ୍କୁ ଜଣାଅଛି । ସେହି ବାନରାଧିପତି ସୁଗ୍ରୀବଙ୍କୁ ଆମେ ଖୋଜୁଛୁଁ । ୩୭ । ହନୁମନ୍ ! ସୁଗ୍ରୀବ ଯାହା କହିଥିଲେ ତୁମେ ତାହା କହିଲ( ଅର୍ଥାତ୍ ସୁଗ୍ରୀବଙ୍କ ସହିତ ମିତ୍ରତା କରିବା କଥା ତୁମେ ଯାହା କହିଲ ), ଆମେ ତୁମକଥା ଅନୁସାରେ ସେହିପରି କରିବୁଁ" । ୩୮ । ଲକ୍ଷ୍ମଣଙ୍କର ଏପରି ସୁନିପୁଣ ବଚନ ଶୁଣି ପବନପୁତ୍ର ହନୁମାନ୍ ବିଶେଷ ଆନନ୍ଦିତ ହେଲେ ଏବଂ ସୁଗ୍ରୀବଙ୍କର ଜୟଲାଭରେ ବିଶ୍ୱାସ କରି ସେହି ମୁହୂର୍ତ୍ତରେ ଏ ଦୁହିଁଙ୍କ ସହିତ ମିତ୍ରତା କରିବାକୁ ଇଚ୍ଛାକଲେ । ୩୯ ।

# ଚତୁର୍ଥଃ ସର୍ଗଃ

## ସୁଗ୍ରୀବସମୀପଗମନମ୍

ତତଃ ପ୍ରହୃଷ୍ଟୋ ହନୁମାନ୍ କୃତ୍ୟବାନିତି ତଦ୍ବଚଃ ।
ଶ୍ରୁତ୍ୱା ମଧୁରଭାବଂ ଚ ସୁଗ୍ରୀବଂ ମନସା ଗତଃ । ୧ ।
ଭବ୍ୟୋ ରାଜ୍ୟାଗମସ୍ତସ୍ୟ ସୁଗ୍ରୀବସ୍ୟ ମହାତ୍ମନଃ ।
ଯଦୟଂ କୃତ୍ୟବାନ୍ ପ୍ରାପ୍ତଃ କୃତ୍ୟଂ ଚୈତଦୁପାଗତମ୍ ।୨।
ତତଃ ପରମସଂହୃଷ୍ଟୋ ହନୁମାନ୍ ପ୍ଳବଗୋତ୍ତମଃ ।
ପ୍ରତ୍ୟୁବାଚ ତତୋ ବାକ୍ୟଂ ରାମଂ ବାକ୍ୟବିଶାରଦମ୍ । ୩ ।
କିମର୍ଥଂ ତ୍ୱଂ ବନଂ ଘୋରଂ ପମ୍ପାକାନନମଣ୍ଡିତମ୍ ।
ଆଗତଃ ସାନୁଜୋ ଦୁର୍ଗଂ ନାନାବ୍ୟାଳମୃଗାୟୁତମ୍ । ୪ ।
ତସ୍ୟ ତଦ୍ବଚନଂ ଶ୍ରୁତ୍ୱା ଲକ୍ଷ୍ମଣୋ ରାମଚୋଦିତଃ ।
ଆଚଚକ୍ଷେ ମହାତ୍ମାନଂ ରାମଂ ଦଶରଥାତ୍ମଜମ୍ । ୫ ।
ରାଜା ଦଶରଥୋ ନାମ ଦ୍ୟୁତିମାନ୍ ଧର୍ମବତ୍ସଳଃ ।
ଚାତୁର୍ବର୍ଣ୍ୟଂ ସ୍ୱଧର୍ମେଣ ନିତ୍ୟମେବାଭିପାଳୟନ୍ । ୬ ।

---

## ୪ର୍ଥ ସର୍ଗ

( ସୁଗ୍ରୀବଙ୍କ ନିକଟକୁ ଗମନ )

ସେମାନଙ୍କ ମଧୁର କଥା ଶୁଣି ସେମାନଙ୍କର ମଧ୍ୟ କିଛି କାର୍ଯ୍ୟ ଉଦ୍ଧାର କରିବାର ଅଛି ଜାଣି ହନୁମାନ୍ ଆନନ୍ଦମନରେ ମନେମନେ ସୁଗ୍ରୀବଙ୍କ ପାଖକୁ ଚାଲିଗଲେ । ୧ । (ସେ ଭାବିଲେ ) ମହାତ୍ମା ସୁଗ୍ରୀବଙ୍କୁ ଅବଶ୍ୟ ରାଜ୍ୟପ୍ରାପ୍ତି ହେବ, କାରଣ ଏ ରାମଚନ୍ଦ୍ର ନିଜର କୌଣସି କାର୍ଯ୍ୟୋଦ୍ଧାର ଉଦ୍ଦେଶ୍ୟରେ ଏଠାକୁ ଆସିଛନ୍ତି ଏବଂ ସେ କାର୍ଯ୍ୟ ସୁଗ୍ରୀବଙ୍କ ( ସାହାଯ୍ୟ ) ଉପରେ ନିର୍ଭରକରେ ।୨। ଅନନ୍ତର ହନୁମାନ ଅତ୍ୟନ୍ତ ଆନନ୍ଦିତ ହୋଇ, କଥା କହିବାରେ ନିପୁଣ ରାମଚନ୍ଦ୍ରଙ୍କୁ ପୁଣି ଉତ୍ତର ଦେଲେ । ୩ । "ପମ୍ପାକାନନଶୋଭିତ ନାନା ମୃଗ ଏବଂ ହିଂସ୍ରଜନ୍ତୁ-ପୂର୍ଣ୍ଣ ଏ ଘୋର ଦୁର୍ଗମ ଅରଣ୍ୟକୁ ଆପଣ ସାନ ଭାଇଙ୍କ ସହିତ କାହିଁକି ଆସିଛନ୍ତି ?" । ୪ । ହନୁମାନଙ୍କ କଥା ଶୁଣି ଏବଂ ରାମଚନ୍ଦ୍ରଙ୍କଦ୍ୱାରା ଆଦିଷ୍ଟ ହୋଇ ଲକ୍ଷ୍ମଣ ଦଶରଥପୁତ୍ର ରାମଚନ୍ଦ୍ରଙ୍କ କଥା ଏହିପ୍ରକାରେ କହିଲେ । ୫ । "ରାଜା ଦଶରଥ ବଡ଼ ଦୀପ୍ତିମାନ୍ ଏବଂ ଧର୍ମପ୍ରାଣ ଥିଲେ । ସେ ବ୍ରାହ୍ମଣାଦି ଚାରି ବର୍ଣ୍ଣଙ୍କୁ

ନ ଦ୍ୱେଷ୍ଟା ବିଦ୍ୟତେ ତସ୍ୟ ସ ତୁ ଦ୍ୱେଷ୍ଟି ନ କଞ୍ଚନ ।
ସ ତୁ ସର୍ବେଷୁ ଭୂତେଷୁ ପିତାମହ ଇବାପରଃ । ୭ ।
ଅଗ୍ନିଷ୍ଟୋମାଦିଭିର୍ଯଜ୍ଞୈରିଷ୍ଟବାନାପ୍ତଦକ୍ଷିଣୈଃ ।
ତସ୍ୟାୟଂ ପୂର୍ବଜଃ ପୁତ୍ରୋ ରାମୋ ନାମ ଜନୈଃ ଶ୍ରୁତଃ ।୮।
ଶରଣ୍ୟଃ ସର୍ବଭୂତାନାଂ ପିତୁର୍ନିର୍ଦ୍ଦେଶପାରଗଃ ।
ଜ୍ୟେଷ୍ଠୋ ଦଶରଥସ୍ୟାୟଂ ପୁତ୍ରାଣାଂ ଗୁଣବତ୍ତମଃ । ୯ ।
ରାଜଲକ୍ଷଣସଂଯୁକ୍ତଃ ସଂଯୁକ୍ତୋ ରାଜ୍ୟସମ୍ପଦା ।
ରାଜ୍ୟାଦ୍‌ଭ୍ରଷ୍ଟୋ ମୟା ବସ୍ତୁଂ ବନେ ସାର୍ଧମିହାଗତଃ । ୧୦।
ଭାର୍ଯ୍ୟୟା ଚ ମହାଭାଗଃ ସୀତୟାନୁଗତୋ ବଶୀ ।
ଦିନକ୍ଷୟେ ମହାତେଜାଃ ପ୍ରଭୟେବ ଦିବାକରଃ । ୧୧ ।
ଅହମସ୍ୟାବରୋ ଭ୍ରାତା ଗୁଣୈର୍ଦାସ୍ୟମୁପାଗତଃ ।
କୃତଜ୍ଞସ୍ୟ ବହୁଜ୍ଞସ୍ୟ ଲକ୍ଷ୍ମଣୋ ନାମ ନାମତଃ । ୧୨ ।
ସୁଖାର୍ହସ୍ୟ ମହାର୍ହସ୍ୟ ସର୍ବଭୂତହିତାତ୍ମନଃ ।
ଐଶ୍ୱର୍ଯ୍ୟେଣ ବିହୀନସ୍ୟ ବନବାସେ ରତସ୍ୟ ଚ । ୧୩ ।

---

ସ୍ୱଧର୍ମାନୁସାରେ ପାଳନ କରୁଥିଲେ । ୬ । ତାଙ୍କର କେହି ଶତ୍ରୁ ନ ଥିଲେ, କି ସେ ମଧ୍ୟ କାହାରିପ୍ରତି ଶତ୍ରୁତା କରୁ ନ ଥିଲେ । ସମସ୍ତ ପ୍ରାଣୀଙ୍କ ପ୍ରତି ସେ ଦ୍ୱିତୀୟ ବ୍ରହ୍ମାପରି ଥିଲେ । ୭ । ସେ ଅଗ୍ନିଷ୍ଟୋମ ପ୍ରଭୃତି ଯଜ୍ଞ କରିଥିଲେ ଏବଂ ପ୍ରଚୁର ଦକ୍ଷିଣା ଦାନ କରିଥିଲେ । ଯେ ତାଙ୍କର ଜ୍ୟେଷ୍ଠପୁତ୍ର ଏବଂ ରାମ ନାମରେ ଲୋକରେ ପ୍ରସିଦ୍ଧ । ୮ । ଏ ରାମଚନ୍ଦ୍ର ସମସ୍ତ ପ୍ରାଣୀଙ୍କର ଆଶ୍ରୟସ୍ଥଳ, ସବୁ ପୁତ୍ରମାନଙ୍କ ମଧ୍ୟରେ ଅଧିକ ଗୁଣବାନ୍ ଏବଂ ପିତାଙ୍କର ଆଦେଶପାଳନକାରୀ ଜ୍ୟେଷ୍ଠ ପୁତ୍ର ଅଟନ୍ତି । ୯ । ରାଜଲକ୍ଷଣଯୁକ୍ତ ଏବଂ ରାଜ୍ୟଶ୍ରୀସମ୍ପନ୍ନ ହେଲେ ମଧ୍ୟ, ଏ ରାଜ୍ୟଭ୍ରଷ୍ଟ ହୋଇ ମୋ ସହିତ ବନରେ ରହିବାନିମନ୍ତେ ଏଠାକୁ ଆସିଥିଲେ । ୧୦ । ସୂର୍ଯ୍ୟ ଅସ୍ତ ଗଲାବେଳେ ପ୍ରଭା ଯେପରି ତାଙ୍କ ସଙ୍ଗେ ସଙ୍ଗେ ଗମନ କରନ୍ତି, ସେହିପରି ଏହାଙ୍କର ସୀତା ନାମ୍ନୀ ପତ୍ନୀ ଏହାଙ୍କର ଅନୁଗମନ କରିଥିଲେ । ୧୧ । ମୁଁ ଏହାଙ୍କର ସାନ ଭାଇ । ଏହାଙ୍କ କୃତଜ୍ଞତା, ବହୁଜ୍ଞତା ଏବଂ ଗୁଣାବଳୀରେ ବଶୀଭୂତ ହୋଇ ମୁଁ ଏହାଙ୍କର ଦାସତ୍ୱ ଗ୍ରହଣ କରିଅଛି । ମୋର ନାମ ଲକ୍ଷ୍ମଣ । ୧୨ । ସୁଖ ଭୋଗ କରିବାର ଯୋଗ୍ୟ, ପୂଜନୀୟ ଏବଂ ସମସ୍ତ ପ୍ରାଣୀଙ୍କର ହିତାକାଙ୍କ୍ଷୀ ରାମଚନ୍ଦ୍ର ନିର୍ଧନ ହୋଇ ବନରେ ବାସକରୁଛନ୍ତି । ୧୩ । ଏ ନ ଥିବାବେଳେ

ରକ୍ଷସାପହୃତା ଭାର୍ଯା ରହିତେ କାମରୂପିଣା ।
ତଚ୍ଚ ନ ଜ୍ଞାୟତେ ରକ୍ଷଃ ପତ୍ନୀ ଯେନାସ୍ୟ ବା ହୃତା । ୧୪ ।
ଦନୁର୍ନାମ ଦିତେଃ ପୁତ୍ରଃ ଶାପାଦ୍ରାକ୍ଷସତାଂ ଗତଃ ।
ଆଖ୍ୟାତସ୍ତେନ ସୁଗ୍ରୀବଃ ସମର୍ଥୋ ବାନରାଧିପଃ । ୧୫ ।
ସ ଜ୍ଞାସ୍ୟତି ମହାବୀର୍ଯସ୍ତବ ଭାର୍ଯାପହାରଣମ୍ ।
ଏବମୁକ୍ତ୍ୱା ଦନୁଃ ସ୍ୱର୍ଗଂ ଭ୍ରାଜମାନୋ ଗତଃ ସୁଖମ୍ । ୧୬ ।
ଏତତ୍ତେ ସର୍ବମାଖ୍ୟାତଂ ଯଥାତଥ୍ୟେନ ପୃଚ୍ଛତଃ ।
ଅହଂ ଚୈବ ହି ରାମଶ୍ଚ ସୁଗ୍ରୀବଂ ଶରଣଂ ଗତୌ । ୧୭ ।
ଏଷ ଦତ୍ତ୍ୱା ଚ ବିତ୍ତାନି ପ୍ରାପ୍ୟ ଚାନୁତ୍ତମଂ ଯଶଃ ।
ଲୋକନାଥଃ ପୁରା ଭୂତ୍ୱା ସୁଗ୍ରୀବଂ ନାଥମିଚ୍ଛତି । ୧୮ ।
ପିତା ଯସ୍ୟ ପୁରା ହ୍ୟାସୀଚ୍ଛରଣ୍ୟୋ ଧର୍ମବତ୍ସଲଃ ।
ତସ୍ୟ ପୁତ୍ରଃ ଶରଣ୍ୟସ୍ୟ ସୁଗ୍ରୀବଂ ଶରଣଂ ଗତଃ । ୧୯ ।
ସର୍ବଲୋକସ୍ୟ ଧର୍ମାତ୍ମା ଶରଣ୍ୟଃ ଶରଣଂ ପୁରା ।
ଗୁରୁର୍ମେ ରାଘବଃ ସୋଽୟଂ ସୁଗ୍ରୀବଂ ଶରଣଂ ଗତଃ । ୨୦ ।

---

କାମରୂପଧାରୀ ଜଣେ ରାକ୍ଷସ ଏହାଙ୍କ ସ୍ତ୍ରୀକୁ ହରଣ କରି ନେଇ ଯାଇଅଛି । ସେ ରାକ୍ଷସର କୌଣସି ଠିକଣା ଆମେ ଜାଣି ପାରୁ ନାହୁଁ । ୧୪ । ଦିତିଙ୍କର ଦନୁ ନାମକ ଜଣେ ପୁତ୍ର ଶାପ ପାଇ ରାକ୍ଷସ ହୋଇ ଯାଇଥିଲେ । ସେ ଆମକୁ କହିଲେ, "ବାନରାଧିପତି ସୁଗ୍ରୀବ ବଡ଼ ସମର୍ଥ ଅଟନ୍ତି । ୧୫ । ସେ ମହାବଳୀ ତୁମ ସ୍ତ୍ରୀକୁ ହରଣ କରି ନେଇଯାଇଥିବା ବ୍ୟକ୍ତିକୁ ଜାଣିପାରିବେ ।" ଏହା କହି ଦନୁ ସ୍ୱର୍ଗକୁ ସୁଖରେ ଚାଲିଗଲେ । ୧୬। ତୁମେ ପଚାରିବାରୁ ମୁଁ ସମସ୍ତ କଥା ଯଥାଯଥଭାବରେ କହିଦେଲି । ମୁଁ ଏବଂ ରାମଚନ୍ଦ୍ର ଦୁହେଁ ସୁଗ୍ରୀବଙ୍କ ଶରଣ ନେଉଛୁଁ । ୧୭ । ଯେଉଁ ରାମଚନ୍ଦ୍ର ପୂର୍ବେ ବହୁତ ଧନ ଦାନ କରିଛନ୍ତି, ଉତ୍ତମ ଯଶ ଲାଭ କରିଛନ୍ତି, ସେହି ଲୋକସ୍ୱାମୀ ରାମଚନ୍ଦ୍ର ବର୍ତ୍ତମାନ ସୁଗ୍ରୀବଙ୍କର ଶରଣ ଇଚ୍ଛାକରୁଛନ୍ତି । ୧୮ । ଯାହାଙ୍କର ପିତା ଶରଣାଗତ ଲୋକଙ୍କୁ ସର୍ବଦା ରକ୍ଷାକରୁଥିଲେ ଏବଂ ଧର୍ମପ୍ରିୟ ଥିଲେ, ତାଙ୍କର ପୁତ୍ର ବର୍ତ୍ତମାନ ସୁଗ୍ରୀବଙ୍କୁ ଶରଣ ମାଗୁଛନ୍ତି । ୧୯। ଧର୍ମାତ୍ମା, ପୂର୍ବେ ସବୁ ଲୋକଙ୍କୁ ଶରଣଦେବାବାଲା, ମୋର ଗୁରୁ (ବଡ଼ ଭାଇ) ସେହି ରାମଚନ୍ଦ୍ର ବର୍ତ୍ତମାନ ସୁଗ୍ରୀବଙ୍କର ଶରଣାପନ୍ନ ହେଉଛନ୍ତି । ୨୦ । ଯାହାଙ୍କର ଅନୁଗ୍ରହ ଲାଭକରି

ଯସ୍ୟ ପ୍ରସାଦେ ସତତଂ ପ୍ରସୀଦେୟୁରିମାଃ ପ୍ରଜାଃ ।
ସ ରାମୋ ବାନରେନ୍ଦ୍ରସ୍ୟ ପ୍ରସାଦମଭିକାଙ୍କ୍ଷତେ । ୨୧ ।
ଯେନ ସର୍ବଗୁଣୋପେତାଃ ପୃଥିବ୍ୟାଂ ସର୍ବପାର୍ଥିବାଃ ।
ମାନିତାଃ ସତତଂ ରାଜ୍ଞା ସଦା ଦଶରଥେନ ବୈ । ୨୨ ।
ତସ୍ୟାୟଂ ପୂର୍ବଜଃ ପୁତ୍ରସ୍ତ୍ରିଷୁ ଲୋକେଷୁ ବିଶ୍ରୁତଃ ।
ସୁଗ୍ରୀବଂ ବାନରେନ୍ଦ୍ରଂ ତୁ ରାମଃ ଶରଣମାଗତଃ । ୨୩ ।
ଶୋକାଭିଭୂତେ ରାମେ ତୁ ଶୋକାର୍ତ୍ତେ ଶରଣଂ ଗତେ ।
କର୍ତ୍ତୁମର୍ହତି ସୁଗ୍ରୀବଃ ପ୍ରସାଦଂ ସହ ଯୂଥପୈଃ । ୨୪ ।
ଏବଂ ବ୍ରୁବାଣଂ ସୌମିତ୍ରିଂ କରୁଣଂ ସାଶ୍ରୁପାତନମ୍ ।
ହନୂମାନ୍ ପ୍ରତ୍ୟୁବାଚେଦଂ ବାକ୍ୟଂ ବାକ୍ୟବିଶାରଦଃ । ୨୫ ।
ଈଦୃଶା ବୁଦ୍ଧିସଂପନ୍ନା ଜିତକ୍ରୋଧା ଜିତେନ୍ଦ୍ରିୟାଃ ।
ଦ୍ରଷ୍ଟବ୍ୟା ବାନରେନ୍ଦ୍ରେଣ ଦିଷ୍ଟ୍ୟା ଦର୍ଶନମାଗତାଃ । ୨୬ ।
ସ ହି ରାଜ୍ୟାଚ୍ଚ ବିଭ୍ରଷ୍ଟଃ କୃତବୈରଶ୍ଚ ବାଲିନା ।
ହୃତଦାରୋ ବନେ ତ୍ରସ୍ତୋ ଭ୍ରାତ୍ରା ବିନିକୃତୋ ଭୃଶମ୍ । ୨୭ ।
କରିଷ୍ୟତି ସ ସାହାଯ୍ୟଂ ଯୁବୟୋର୍ଭାସ୍କରାତ୍ମଜଃ ।
ସୁଗ୍ରୀବଃ ସହ ଚାସ୍ମାଭିଃ ସୀତାୟାଃ ପରିମାର୍ଗଣେ । ୨୮ ।

---

ସମସ୍ତ ପ୍ରଜା ପ୍ରସନ୍ନ ହେଉଥିଲେ, ସେହି ରାମ ବାନରରାଜଙ୍କର ଅନୁଗ୍ରହ ଭିକ୍ଷା କରୁଛନ୍ତି । ୨୧ । ଯେଉଁ ରାଜା ଦଶରଥ ପୃଥିବୀର ସମସ୍ତ ଗୁଣବାନ୍ ରାଜାଙ୍କୁ ସମ୍ମାନିତ କରିଛନ୍ତି, ତାଙ୍କର ଜ୍ୟେଷ୍ଠପୁତ୍ର, ତିନି ଲୋକରେ ବିଖ୍ୟାତ ରାମ, ବାନରାଧିପତି ସୁଗ୍ରୀବଙ୍କର ଶରଣାଗତ ହେଉଛନ୍ତି । ୨୨-୨୩ । ଶୋକାଭିଭୂତ ଏବଂ ଶୋକପୀଡ଼ିତ ଶରଣାପନ୍ନ ରାମଚନ୍ଦ୍ରଙ୍କ ପ୍ରତି ନିଜର ସମସ୍ତ ଦଳପତିଙ୍କ ସହିତ ସୁଗ୍ରୀବଙ୍କର ଅନୁଗ୍ରହ ଦେଖାଇବା ଉଚିତ" । ୨୪ । ଲକ୍ଷ୍ମଣ କରୁଣସ୍ୱରରେ ଅଶ୍ରୁପାତପୂର୍ବକ ଏପରି କହିବା ପରେ ବାକ୍ୟନିପୁଣ ହନୂମାନ ଏହିପ୍ରକାରେ ଉତ୍ତରଦେଲେ । ୨୫ । "ଏପରି ବୁଦ୍ଧିମାନ୍ ଏବଂ କ୍ରୋଧ ଓ ଇନ୍ଦ୍ରିୟବଶକାରୀ ବ୍ୟକ୍ତିଙ୍କର ଦର୍ଶନ ଲାଭ କରିବା ସୁଗ୍ରୀବଙ୍କର ଏକାନ୍ତ ଉଚିତ । ଭାଗ୍ୟକ୍ରମେ ସେମାନେ ସ୍ୱୟଂ ଉପସ୍ଥିତ ହୋଇଛନ୍ତି । ୨୬ । ସୁଗ୍ରୀବ ମଧ୍ୟ ବାଳି ସହିତ ଶତ୍ରୁତା କରି ତାହାଦ୍ୱାରା ରାଜ୍ୟରୁ ବିତାଡ଼ିତ ହୋଇଛନ୍ତି । ତାଙ୍କର ସ୍ତ୍ରୀକୁ ଛଡ଼ାଇ ନିଆ ହୋଇଅଛି ଏବଂ ଭାଇଙ୍କଦ୍ୱାରା ବାରମ୍ବାର ଆକ୍ରାନ୍ତ ହୋଇ ସେ ବନରେ ଏଣେ ତେଣେ ବୁଲୁଛନ୍ତି । ୨୭ । ସେହି ସୂର୍ଯ୍ୟପୁତ୍ର ସୁଗ୍ରୀବ ନିଶ୍ଚୟ ଆମମାନଙ୍କୁ ନେଇ ସୀତାଙ୍କୁ ଖୋଜିବାରେ ଆପଣ

ଇତ୍ୟେବମୁକ୍ତ୍ୱା ହନୁମାନ୍ ଶ୍ଲକ୍ଷ୍ଣଂ ମଧୁରୟା ଗିରା ।
ବଭାଷେ ସାଧୁ ଗଚ୍ଛାମଃ ସୁଗ୍ରୀବମିତି ରାଘବମ୍ । ୨୯।
ଏବଂ ବ୍ରୁବନ୍ତଂ ଧର୍ମାତ୍ମା ହନୂମନ୍ତଂ ସ ଲକ୍ଷ୍ମଣଃ ।
ପ୍ରତିପୂଜ୍ୟ ଯଥାନ୍ୟାୟମିଦଂ ପ୍ରୋବାଚ ରାଘବମ୍ । ୩୦ ।
କପିଃ କଥୟତେ ହୃଷ୍ଟୋ ଯଥାୟଂ ମାରୁତାତ୍ମଜଃ ।
କୃତ୍ୟବାନ୍ ସୋଽପି ସଂପ୍ରାପ୍ତଃ କୃତକୃତ୍ୟୋଽସି ରାଘବ ।୩୧।
ତତଃ ସ ସୁମହାପ୍ରାଜ୍ଞୋ ହନୂମାନ୍ମାରୁତାତ୍ମଜଃ ।
ଜଗାମାଦାୟ ତୌ ବୀରୌ ହରିରାଜାୟ ରାଘବୌ । ୩୨ ।
ଭିକ୍ଷୁରୂପଂ ପରିତ୍ୟଜ୍ୟ ବାନରଂ ରୂପମାସ୍ଥିତଃ ।
ପୃଷ୍ଠମାରୋପ୍ୟ ତୌ ବୀରୌ ଜଗାମ କପିକୁଞ୍ଜରଃ । ୩୩ ।
ସ ତୁ ବିପୁଲଯଶାଃ କପିପ୍ରବୀରଃ
ପବନସୁତଃ କୃତକୃତ୍ୟବତ୍ପ୍ରହୃଷ୍ଟଃ ।
ଗିରିବରମୁରୁବିକ୍ରମଃ ପ୍ରୟାତଃ
ସ ଶୁଭମତିଃ ସହ ରାମଲକ୍ଷ୍ମଣାଭ୍ୟାମ୍ । ୩୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସୁଗ୍ରୀବସମୀପଗମନମ୍
ନାମ ଚତୁର୍ଥଃ ସର୍ଗଃ ।

---

ଦୁହିଁଙ୍କୁ ସାହାଯ୍ୟ କରିବେ" । ୨୮ । ଏହି ପ୍ରକାର ମଧୁର କଥା କହି ହନୁମାନ୍ ରାମଚନ୍ଦ୍ରଙ୍କୁ କହିଲେ, "ଚାଲନ୍ତୁ, ଆମେମାନେ ସୁଗ୍ରୀବଙ୍କ ନିକଟକୁ ଯିବା" । ୨୯ । ହନୁମାନ୍ ଏହା କହିବାପରେ ଧର୍ମାତ୍ମା ଲକ୍ଷ୍ମଣ ତାଙ୍କୁ ବିଧିପୂର୍ବକ ଅଭିବାଦନ କଲେ ଏବଂ ରାମଚନ୍ଦ୍ରଙ୍କୁ କହିଲେ । ୩୦ । "ବାୟୁପୁତ୍ର ବାନର ପ୍ରସନ୍ନ ହୋଇ ଯାହା କହିଲେ ସେଥିରୁ ଜଣାଯାଉଛି, ସୁଗ୍ରୀବ ମଧ୍ୟ ତାଙ୍କର କାର୍ଯ୍ୟସିଦ୍ଧି ନିମନ୍ତେ ଆପଣଙ୍କର ସହାୟତା ଅପେକ୍ଷା କରୁଛନ୍ତି; ଅତଏବ ଆମର କାର୍ଯ୍ୟସିଦ୍ଧି ନିଶ୍ଚୟ ହେବ"। ୩୧ । ବୁଦ୍ଧିମାନ ବାୟୁପୁତ୍ର ହନୁମାନ ଅନନ୍ତର ସେ ଦୁଇ ବୀର ରାଘବଙ୍କୁ ସଙ୍ଗରେ ନେଇ ସୁଗ୍ରୀବଙ୍କ ନିକଟକୁ ଗଲେ ।୩୨। ଭିକ୍ଷୁରୂପ ତ୍ୟାଗକରି ଏବଂ ବାନରରୂପ ଧାରଣକରି କପିଶ୍ରେଷ୍ଠ ହନୁମାନ୍ ସେ ଦୁଇ ବୀରଙ୍କୁ ପିଠିରେ ବସାଇ ଚାଲିଲେ । ୩୩ । ମହାଯଶସ୍ୱୀ କପିଶ୍ରେଷ୍ଠ ପବନପୁତ୍ର ହନୁମାନ କାର୍ଯ୍ୟସିଦ୍ଧି ହେବାପରି ଆନନ୍ଦିତ ହେଲେ । ସୁମତି ପ୍ରବଳ ପରାକ୍ରମୀ ହନୁମାନ୍ ରାମ ଏବଂ ଲକ୍ଷ୍ମଣଙ୍କୁ ସଙ୍ଗରେ ଧରି ପର୍ବତଶ୍ରେଷ୍ଠ (ଋଷ୍ୟମୂକ) ଉପରକୁ ଗଲେ । ୩୪ ।

— — — —

# ପଞ୍ଚମଃ ସର୍ଗଃ

## ସୁଗ୍ରୀବସଖ୍ୟମ୍

ଋଶ୍ୟମୂକାତ୍ତୁ ହନୂମାନ୍ ଗତ୍ୱା ତଂ ମଲୟଂ ଗିରମ୍ ।
ଆଚଚକ୍ଷେ ତଦାବୀରୌ କପିରାଜାୟ ରାଘବୌ । ୧ ।
ଅୟଂ ରାମୋ ମହାପ୍ରାଜ୍ଞଃ ସଂପ୍ରାପ୍ତୋ ଦୃଢ଼ବିକ୍ରମଃ ।
ଲକ୍ଷ୍ମଣେନ ସହ ଭ୍ରାତ୍ରା ରାମୋଽୟଂ ସତ୍ୟବିକ୍ରମଃ । ୨ ।
ଇକ୍ଷ୍ୱାକୂଣାଂ କୁଲେ ଜାତୋ ରାମୋ ଦଶରଥାତ୍ମଜଃ ।
ଧର୍ମେ ଚ ନିରତସ୍ତସ୍ୟୈବ ପିତୁର୍ନିର୍ଦ୍ଦେଶକାରକଃ । ୩ ।
ରାଜସୂୟାଶ୍ୱମେଧୈଶ୍ଚ ବହ୍ନିର୍ୟେନାଭିତର୍ପିତଃ ।
ଦକ୍ଷିଣାଶ୍ଚ ତଥୋତ୍ସୃଷ୍ଟା ଗାବଃ ଶତସହସ୍ରଶଃ । ୪ ।
ତପସା ସତ୍ୟବାକ୍ୟେନ ବସୁଧା ତେନ ପାଲିତା ।
ସ୍ତ୍ରୀହେତୋସ୍ତସ୍ୟ ପୁତ୍ରୋଽୟଂ ରାମୋଽରଣ୍ୟଂ ସମାଗତଃ ।୫।
ତସ୍ୟାସ୍ୟ ବସତୋଽରଣ୍ୟେ ନିୟତସ୍ୟ ମହାତ୍ମନଃ ।
ରାବଣେନ ହୃତା ଭାର୍ଯ୍ୟା ସ ତ୍ୱାଂ ଶରଣମାଗତଃ । ୬ ।

---

## ୫ମ ସର୍ଗ

### ( ସୁଗ୍ରୀବଙ୍କ ସହିତ ମିତ୍ରତା )

ଋଷ୍ୟମୂକ ପର୍ବତରୁ ହନୁମାନ୍ ମଳୟଗିରିକୁ ଗଲେ ଏବଂ ବାନରରାଜ (ସୁଗ୍ରୀବ)ଙ୍କୁ ରାମ ଲକ୍ଷ୍ମଣଙ୍କ କଥା କହିଲେ । ୧ । "ହେଉଛନ୍ତି ମହାପ୍ରାଜ୍ଞ ରାମ ! ଭାଇ ଲକ୍ଷ୍ମଣଙ୍କସହିତ ଆସିଛନ୍ତି । ଏ ମହାବିକ୍ରମଶାଳୀ ଏବଂ ସତ୍ୟବାନ ଅଟନ୍ତି । ୨ । ରାମ ଇକ୍ଷ୍ୱାକୁକୁଳରେ ଜାତ ଏବଂ ଦଶରଥଙ୍କର ପୁତ୍ର । ଏହାଙ୍କର ମତି ଧର୍ମରେ ସ୍ଥାପିତ ଏବଂ ଏ ପିତାଙ୍କର ଆଦେଶପାଳନକାରୀ ଅଟନ୍ତି । ୩ । ରାଜସୂୟ ଏବଂ ଅଶ୍ୱମେଧ ଯଜ୍ଞଦ୍ୱାରା ଯେ ଅଗ୍ନିକୁ ସନ୍ତୁଷ୍ଟ କରିଅଛନ୍ତି ଏବଂ ଶତସହସ୍ର ଗାଈ ଦକ୍ଷିଣାସ୍ୱରୂପ ଦାନ କରିଅଛନ୍ତି, ସେ (ଦଶରଥ) ତପସ୍ୟା ଏବଂ ସତ୍ୟବାକ୍ୟ ଦ୍ୱାରା ପୃଥିବୀକୁ ପାଳନ କରୁଥିଲେ । ତାଙ୍କର ପୁତ୍ର ଏହି ରାମଚନ୍ଦ୍ର ସ୍ତ୍ରୀଙ୍କ (ଦଶରଥଙ୍କ ସ୍ତ୍ରୀ କୈକେୟୀଙ୍କ) ନିମନ୍ତେ ବନକୁ ଆସିଛନ୍ତି । ୪-୫ । ଏ ମହାତ୍ମା ବନରେ ସଂଯମରେ ବାସ କରୁଥିଲେ । ରାବଣ ତାଙ୍କର ସ୍ତ୍ରୀକୁ ହରଣକରି ନେଇଯାଇଅଛି । ସେଥିପାଇଁ ସେ ତୁମ୍ଭର ଶରଣାପନ୍ନ ହେଉଅଛନ୍ତି ।୬। ରାମ ଏବଂ ଲକ୍ଷ୍ମଣ ଦୁଇ ଭାଇ

ଭବତା ସଖ୍ୟକାମୌ ତୌ ଭ୍ରାତରୌ ରାମଲକ୍ଷ୍ମଣୌ ।
ପ୍ରଗୃହ୍ୟ ଚାର୍ଚ୍ଚୟସ୍ୱୈତୌ ପୂଜନୀୟତମାବୁଭୌ । ୭ ।
ଶ୍ରୁତ୍ୱା ହନୂମତୋ ବାକ୍ୟଂ ସୁଗ୍ରୀବୋ ବାନରାଧିପଃ ।
ଦର୍ଶନୀୟତମୋ ଭୂତ୍ୱା ପ୍ରୀତ୍ୟୋବାଚ ଚ ରାଘବମ୍ । ୮ ।
ଭବାନ୍ଧର୍ମବିନୀତଶ୍ଚ ସୁତପାଃ ସର୍ବବତ୍ସଲଃ ।
ଆଖ୍ୟାତା ବାୟୁପୁତ୍ରେଣ ତତ୍ତ୍ୱତୋ ମେ ଭବଦ୍‌ଗୁଣାଃ । ୯ ।
ତନ୍ମମୈବୈଷ ସତ୍କାରୋ ଲାଭଶ୍ଚୈବୋତ୍ତମଃ ପ୍ରଭୋ ।
ଯତ୍ତ୍ୱମିଚ୍ଛସି ସୌହାର୍ଦ୍ଦଂ ବାନରେଣ ମୟା ସହ । ୧୦ ।
ରୋଚତେ ଯଦି ମେ ସଖ୍ୟଂ ବାହୁରେଷ ପ୍ରସାରିତଃ ।
ଗୃହ୍ୟତାଂ ପାଣିନା ପାଣିର୍ମର୍ଯ୍ୟାଦା ବଧ୍ୟତାଂ ଧ୍ରୁବା । ୧୧ ।
ଏତତ୍ତୁ ବଚନଂ ଶ୍ରୁତ୍ୱା ସୁଗ୍ରୀବସ୍ୟ ସୁଭାଷିତମ୍ ।
ସଂପ୍ରହୃଷ୍ଟମନା ହସ୍ତଂ ପୀଡ଼ୟାମାସ ପାଣିନା । ୧୨ ।
ହୃଷ୍ଟଃ ସୌହୃଦମାଲମ୍ବ୍ୟ ପର୍ଯ୍ୟଷ୍ୱଜତ ପୀଡ଼ିତମ୍ ।
ତତୋ ହନୂମାନ୍ ସଂତ୍ୟଜ୍ୟ ଭିକ୍ଷୁରୂପମରିନ୍ଦମଃ ।୧୩ ।

---

ଆପଣଙ୍କ ସହିତ ସଖ୍ୟସ୍ଥାପନ କରିବାକୁ ଇଚ୍ଛାକରନ୍ତି । ସେମାନଙ୍କ ନିକଟକୁ ଯାଇ ସେମାନଙ୍କୁ ଅର୍ଚ୍ଚନା କରନ୍ତୁ; କାରଣ ସେମାନେ ବିଶେଷ ପୂଜନୀୟ ଅଟନ୍ତି” । ୭ । ହନୁମାନଙ୍କ ବଚନ ଶୁଣି ବାନରାଧିପତି ସୁଗ୍ରୀବ ସୁନ୍ଦର ବେଶଭୂଷା ପିନ୍ଧି ରାମଚନ୍ଦ୍ରଙ୍କ ପାଖକୁ ଗଲେ ଏବଂ ତାଙ୍କୁ ପ୍ରୀତିପୂର୍ବକ କହିଲେ ।୮। “ଆପଣ ଧର୍ମଶିକ୍ଷା ଲାଭକରି ବିନୀତ ହୋଇଛନ୍ତି । ଆପଣ ଉତ୍ତମ ତପସ୍ୱୀ ଏବଂ ସର୍ବପ୍ରିୟ ଅଟନ୍ତି । ହନୁମାନ୍ ଆପଣଙ୍କର ସମସ୍ତ ଗୁଣାବଳୀ ମୋ ଆଗରେ କହିଛନ୍ତି । ୯ । ଆପଣ ଯେ ମୋପରି ଜଣେ ବାନର ସହିତ ମିତ୍ରତା କରିବାକୁ ଇଚ୍ଛାକରୁଛନ୍ତି, ଏହା ମୋର ଯଥେଷ୍ଟ ସତ୍କାର ଏବଂ ଶ୍ରେଷ୍ଠ ଲାଭ ଅଟେ । ୧୦ । ଯଦି ମୋ ସହିତ ମୈତ୍ରୀ ଚାହାନ୍ତି, ତେବେ ହେଉଛି ମୁଁ ହାତ ବଢ଼ାଇଦେଲି; ଆପଣ ନିଜ ହାତରେ ମୋ ହାତକୁ ଧରନ୍ତୁ । ଏହାଦ୍ୱାରା ଆମର ମିତ୍ରତା ଦୃଢ଼ ହୋଇଯିବ; ଏ ବନ୍ଧନ କଦାପି ତୁଟିବ ନାହିଁ” । ୧୧ । ସୁଗ୍ରୀବଙ୍କର ଏହି ମଧୁର ବଚନ ଶୁଣି ରାମଚନ୍ଦ୍ର ଅତ୍ୟନ୍ତ ଆନନ୍ଦିତ ହୋଇ ନିଜ ହାତରେ ତାଙ୍କ ହାତକୁ ଚାପିଧରିଲେ । ୧୨ । ମିତ୍ରତା ହେବାରେ ଆନନ୍ଦିତ ହୋଇ ସେ(ସୁଗ୍ରୀବ) ତାଙ୍କୁ ( ରାମଚନ୍ଦ୍ରଙ୍କୁ ) ଆଲିଙ୍ଗନକଲେ । ଅନନ୍ତର ଶତ୍ରୁଦମନକାରୀ ହନୁମାନ୍ ଭିକ୍ଷୁରୂପ ତ୍ୟାଗକରି ନିଜରୂପ ଧରିଲେ ଏବଂ

କାଷ୍ଠୟୋଃ ସ୍ୱେନ ରୂପେଣ ଜନୟାମାସ ପାବକମ୍ ।
ଦୀପ୍ୟମାନଂ ତତୋ ବହ୍ନିଂ ପୁଷ୍ପୈରଭ୍ୟର୍ଚ୍ୟ ସତ୍କୃତମ୍ । ୧୪।
ତୟୋର୍ମଧ୍ୟେ ତୁ ସୁପ୍ରୀତୋ ନିଦଧୌ ସୁସମାହିତଃ ।
ତତୋଽଗ୍ନିଂ ଦୀପ୍ୟମାନଂ ତୌ ଚକ୍ରତୁଶ୍ଚ ପ୍ରଦକ୍ଷିଣମ୍ । ୧୫ ।
ସୁଗ୍ରୀବୋ ରାଘବଶ୍ଚୈବ ବୟସ୍ୟତ୍ୱମୁପାଗତୌ ।
ତତଃ ସୁପ୍ରୀତ ମନସୌ ତାବୁଭୌ ହରିରାଘବୌ । ୧୬ ।
ଅନ୍ୟୋନ୍ୟମଭିବୀକ୍ଷନ୍ତୌ ନ ତୃପ୍ତିମଭିଜଗ୍ମତୁଃ ।
ତ୍ୱଂ ବୟସ୍ୟୋଽସି ହୃଦ୍ୟୋ ମେ ଏକଂ ଦୁଃଖଂ ସୁଖଂଚ ନୌ।୧୭
ସୁଗ୍ରୀବୋ ରାଘବଂ ବାକ୍ୟମିତ୍ୟୁବାଚ ପ୍ରହୃଷ୍ଟବତ୍ ।
ତତଃ ସ ପର୍ଣବହୁଲାଂ ଭଂକ୍ତ୍ୱା ଶାଖାଂ ସୁପୁଷ୍ପିତାମ୍ । ୧୮ ।
ସାଲସ୍ୟାସ୍ତୀର୍ଯ୍ୟ ସୁଗ୍ରୀବୋ ନିଷସାଦ ସ ରାଘବଃ ।
ଲକ୍ଷ୍ମଣାୟାଥ ସଂହୃଷ୍ଟୋ ହନୁମାନ୍ମାରୁତାତ୍ମଜଃ । ୧୯ ।
ଶାଖାଂ ଚନ୍ଦନବୃକ୍ଷସ୍ୟ ଦଦୌ ପରମପୁଷ୍ପିତାମ୍ ।
ତତଃ ପ୍ରହୃଷ୍ଟଃ ସୁଗ୍ରୀବଃ ଶ୍ଲକ୍ଷ୍ଣଂ ମଧୁରୟା ଗିରା । ୨୦ ।
ପ୍ରତ୍ୟୁବାଚ ତଦା ରାମଂ ହର୍ଷବ୍ୟାକୁଲଲୋଚନଃ ।
ଅହଂ ବିନିକୃତୋ ରାମ ଚରାମୀହ ଭୟାର୍ଦ୍ଦିତଃ । ୨୧।

---

ଦୁଇଖଣ୍ଡି କାଠ ଘଷି ଅଗ୍ନି ଉତ୍ପନ୍ନ କଲେ । ସେ ସେହି ଜ୍ୱଳନ୍ତ ଅଗ୍ନିକୁ ଆଦରପୂର୍ବକ ପୁଷ୍ପଦ୍ୱାରା ପୂଜାକଲେ ଏବଂ ସେହି ସତ୍କୃତ ଅଗ୍ନିକୁ ଆନନ୍ଦମନରେ ଉହ୍ଲାସହିତ ସେ ଦୁହିଁଙ୍କ ମଝିରେ ଥୋଇଦେଲେ । ଅନନ୍ତର ସେ ଦୁହେଁ ହୃଷ୍ଟମନରେ ଉକ୍ତ ଜ୍ୱଳନ୍ତ ଅଗ୍ନିକୁ ପ୍ରଦକ୍ଷିଣକଲେ । ୧୩-୧୫ । ସୁଗ୍ରୀବ ଏବଂ ରାମଚନ୍ଦ୍ର ମିତ୍ର ହୋଇଗଲେ । ଅନନ୍ତର ସେ ବାନର ଏବଂ ରାଘବ ଦୁହେଁ ପ୍ରୀତମନରେ ପରସ୍ପରକୁ ଦେଖି ନିରୀକ୍ଷଣ କଲେ ମଧ୍ୟ ସେମାନଙ୍କର ତୃପ୍ତି ଆସିଲା ନାହିଁ । ସୁଗ୍ରୀବ ଆନନ୍ଦିତ ହୋଇ ରାଘବଙ୍କୁ କହିଲେ, "ତୁମେ ମୋର ହୃଦୟର ପ୍ରିୟମିତ୍ର ଅଟ । ଆମ ଦୁହିଙ୍କର ସୁଖ ଦୁଃଖ ସମାନ ହେଲା" । ଅନନ୍ତର ପତ୍ରବହୁଳ ପୁଷ୍ପଯୁକ୍ତ ଗୋଟିଏ ଶାଳବୃକ୍ଷର ଶାଖା ଭାଙ୍ଗି ତା' ଉପରେ ସୁଗ୍ରୀବ ଏବଂ ରାମଚନ୍ଦ୍ର ବସିଲେ । ତା ପରେ ବାୟୁପୁତ୍ର ହନୁମାନ୍ ଆନନ୍ଦିତ ହୋଇ ଚନ୍ଦନବୃକ୍ଷର ଗୋଟିଏ ବହୁପୁଷ୍ପପୂର୍ଣ୍ଣ ଶାଖା ଲକ୍ଷ୍ମଣଙ୍କୁ ଦେଲେ । ଅନନ୍ତର ସୁଗ୍ରୀବ ଆନନ୍ଦମନରେ,ସରଳ ଏବଂ ମଧୁର ଭାଷାରେ ରାମଚନ୍ଦ୍ରଙ୍କୁ କହିଲେ, ସେତେବେଳେ ସୁଗ୍ରୀବଙ୍କ ଆଖିରେ ହସ ଫୁଟି ଉଠୁଥିଲା । "ହେ ରାମ ! ମୁଁ ବିତାଡ଼ିତ ଏବଂ ଭୟତ୍ରସ୍ତ ହୋଇ ଏଠାରେ ବର୍ତ୍ତମାନ ବିଚରଣ କରୁଅଛି ।୧୬-୨୧।

ହୃତଭାର୍ଯୋ ବନେ ତ୍ରସ୍ତୋ ଦୁର୍ଗମେତଦୁପାଶ୍ରିତଃ ।
ସୋଽହଂ ତ୍ରସ୍ତୋ ବନେ ଭୀତୋ ବସାମ୍ୟୁଦ୍ଭ୍ରାନ୍ତଚେତନଃ ।୨୨।
ବାଳିନା ନିକୃତୋ ଭ୍ରାତ୍ରା କୃତବୈରଶ୍ଚ ରାଘବ ।
ବାଳିନୋ ମେ ମହାଭାଗ ଭୟାର୍ତ୍ତସ୍ୟାଭୟଂ କୁରୁ । ୨୩ ।
କର୍ତୁମର୍ହସି କାକୁତ୍ସ୍ଥଃ ଭୟଂ ମେ ନ ଭବେଦ୍ୟଥା ।
ଏବମୁକ୍ତସ୍ତୁ ତେଜସ୍ୱୀ ଧର୍ମଜ୍ଞୋ ଧର୍ମବତ୍ସଲଃ । ୨୪ ।
ପ୍ରତ୍ୟଭାଷତ କାକୁତ୍ସ୍ଥଃ ସୁଗ୍ରୀବଂ ପ୍ରହସନ୍ନିବ ।
ଉପକାରଫଳଂ ମିତ୍ରଂ ବିଦିତଂ ମେ ମହାକପେ । ୨୫ ।
ବାଳିନଂ ତଂ ବଧିଷ୍ୟାମି ତବ ଭାର୍ଯାପହାରିଣମ୍ ।
ଅମୋଘାଃ ସୂର୍ଯସଂକାଶା ମମୈମେ ନିଶିତାଃ ଶରାଃ । ୨୬ ।
ତସ୍ମିନ୍ ବାଳିନି ଦୁର୍ବୃତ୍ତେ ନିପତିଷ୍ୟନ୍ତି ବେଗିତାଃ ।
କଙ୍କପତ୍ରପ୍ରତିଚ୍ଛନ୍ନା ମହେନ୍ଦ୍ରାଶନିସଂନିଭାଃ । ୨୭ ।
ତୀକ୍ଷ୍ଣାଗ୍ରା ଋଜୁପର୍ବାଣଃ ସରୋଷା ଭୁଜଗା ଇବ ।
ତମଦ୍ୟ ବାଳିନଂ ପଶ୍ୟ ତୀକ୍ଷ୍ଣୈରାଶୀବିଷୋପମୈଃ । ୨୮ ।

---

ମୋର ଭାର୍ଯ୍ୟାକୁ ହରଣ କରିନିଆହୋଇଛି । ଏ ଦୁର୍ଗମ ବନରେ ମୁଁ ଆଶ୍ରୟ ନେଇଛି । ମୁଁ ଏ ବନରେ ଭୟରେ ବୁଦ୍ଧି ହରାଇ ବାସକରୁଅଛି । ୨୨ । ଭାଇ ବାଳି ମୋତେ ତଡ଼ିଦେଇଅଛି । ସେ ମୋ ସହିତ ସର୍ବଦା ଶତ୍ରୁତା କରୁଅଛି । ହେ ମହାଭାଗ ରାଘବ ! ବାଳିଭୟରୁ ମୋତେ ଅଭୟ ଦାନକର । ୨୩ । ହେ କାକୁତ୍ସ୍ଥ ! ଆପଣ ଏପରି ବ୍ୟବସ୍ଥା କରନ୍ତୁ ଯଦ୍ଦ୍ୱାରା ମୋର ଆଉ ଭୟ ରହିବ ନାହିଁ"। ତେଜସ୍ୱୀ, ଧର୍ମବତ୍ସଳ ଏବଂ ଧର୍ମଜ୍ଞ ରାମଚନ୍ଦ୍ର ସୁଗ୍ରୀବଙ୍କର ଏ କଥା ଶୁଣି ହସି ହସି ତାଙ୍କୁ ଉତ୍ତର ଦେଲେ । "ହେ କପିଶ୍ରେଷ୍ଠ ବନ୍ଧୋ ! ଉପକାରର ଫଳ ମୋତେ ଜଣାଅଛି । ୨୪-୨୫ । ତୁମ୍ଭର ଭାର୍ଯ୍ୟାଙ୍କ ଅପହରଣକାରୀ ବାଳିକୁ ମୁଁ ବଧକରିବି । ମୋର ଏ ସୂର୍ଯ୍ୟସଦୃଶ ତେଜୋମୟ ତୀକ୍ଷ୍ଣ ଶର କଦାପି ବ୍ୟର୍ଥ ହୁଏ ନାହିଁ । ୨୬ । ମୋର ଏ କଙ୍କପତ୍ରଯୁକ୍ତ ଇନ୍ଦ୍ରବଜ୍ରସଦୃଶ ଶର ଅତି ବେଗ ସହକାରେ ଯାଇ ଦୁରାତ୍ମା ବାଳି ଉପରେ ପଡ଼ିବ । ୨୭ । ମୋର ଏ ବାଣ ଖୁବ ତୀକ୍ଷ୍ଣ, ସରଳ ଏବଂ କ୍ରୁଦ୍ଧ ସର୍ପସଦୃଶ । ଏହି ସର୍ପସଦୃଶ ତୀକ୍ଷ୍ଣ ଶରରେ ବିଦ୍ଧହୋଇ ମୃତ ବାଳି

ଶରୈର୍ବିନିହତଂ ଭୂମୌ ପ୍ରକୀର୍ଣମିବ ପର୍ବତମ୍ ।
ସ ତୁ ତଦ୍ବଚନଂ ଶ୍ରୁତ୍ୱା ରାଘବସ୍ୟାତ୍ମନୋ ହିତମ୍ ।
ସୁଗ୍ରୀବଃ ପରମପ୍ରୀତଃ ପରମଂ ବାକ୍ୟମବ୍ରବୀତ୍ । ୨୯ ।

ତବ ପ୍ରସାଦେନ ନୃସିଂହ ବୀର ରାଘବ
ପ୍ରିୟାଂ ଚ ରାଜ୍ୟଂ ଚ ସମାପ୍ନୁୟାମହମ୍ ।
ତଥା କୁରୁ ତ୍ୱଂ ନରଦେବ ବୈରିଣମ୍
ଯଥା ନ ହିଂସ୍ୟାତ୍ସ ପୁନର୍ମମାଗ୍ରଜଃ । ୩୦ ।

ସୀତାକପୀନ୍ଦ୍ରକ୍ଷଣଦାଚରାଣାମ୍
ରାଜୀବହେମଜ୍ୱଲନୋପମାନି ।
ସୁଗ୍ରୀବରାମପ୍ରଣୟପ୍ରସଙ୍ଗେ
ବାମାନି ନେତ୍ରାଣି ସମଂ ସ୍ଫୁରନ୍ତି । ୩୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସୁଗ୍ରୀବସଖ୍ୟମ୍
ନାମ ପଞ୍ଚମଃ ସର୍ଗଃ

---

ପର୍ବତ ଆକାରରେ ଭୂମିଶାୟୀ ହେବାର ତୁମେ ଶୀଘ୍ର ଦେଖିବ" । ନିଜର ହିତସୂଚକ ରାମଚନ୍ଦ୍ରଙ୍କର ଏ କଥା ଶୁଣି ସୁଗ୍ରୀବ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ ।୨୮-୨୯। "ନରସିଂହ ରାଘବ ! ଆପଣଙ୍କ କୃପାରେ ମୁଁ ନିଜର ସ୍ତ୍ରୀ ଏବଂ ରାଜ୍ୟ ପାଇବି । ହେ ନରଦେବ ! ଆପଣ ମୋର ଶତ୍ରୁ ଭାଇକୁ ଏପରି କରନ୍ତୁ, ଯେପରି କି ସେ ମୋ ପ୍ରତି ଆଉ କୌଣସି ହିଂସା କରି ପାରିବ ନାହିଁ । ୩୦ । ସୁଗ୍ରୀବ ଏବଂ ରାମଚନ୍ଦ୍ରଙ୍କର ଯେତେବେଳେ ମିତ୍ରତା ହେଉଥିଲା ଠିକ୍ ସେହି ସମୟରେ ସୀତା, ବାନରରାଜ ବାଳି ଏବଂ ରାକ୍ଷସମାନଙ୍କର ଏକ ସଙ୍ଗରେ ବାମ ଚକ୍ଷୁର ସ୍ଫୁରଣ ହୋଇଥିଲା । ସୀତାଙ୍କ ଚକ୍ଷୁ ପଦ୍ମସଦୃଶ, ବାଳିର ଚକ୍ଷୁ ସୁବର୍ଣ୍ଣସଦୃଶ ଏବଂ ରାକ୍ଷସମାନଙ୍କର ଚକ୍ଷୁ ଅଗ୍ନିସଦୃଶ ଥିଲା । ୩୧ ।

# ଷଷ୍ଠଃ ସର୍ଗଃ

## ଭୂଷଣପ୍ରତ୍ୟଭିଜ୍ଞାନମ୍

ପୁନରେବାବ୍ରବୀତ୍ ପ୍ରୀତୋ ସୁଗ୍ରୀବୋ ରଘୁନନ୍ଦନମ୍ ।
ଅୟମାଖ୍ୟାତି ତେ ରାମ ସେବକୋ ମନ୍ତ୍ରିସତ୍ତମଃ । ୧ ।
ହନୂମାନ୍ୟନ୍ନିମିତ୍ତଂ ତ୍ୱଂ ନିର୍ଜନଂ ବନମାଗତଃ ।
ଲକ୍ଷ୍ମଣେନ ସହ ଭ୍ରାତ୍ରା ବସତଶ୍ଚ ବନେ ତବ । ୨ ।
ରକ୍ଷସାପହୃତା ଭାର୍ଯ୍ୟା ମୈଥିଲୀ ଜନକାତ୍ମଜା ।
ତ୍ୱୟା ବିୟୁକ୍ତା ରୁଦତୀ ଲକ୍ଷ୍ମଣେନ ଚ ଧୀମତା । ୩ ।
ଅନ୍ତରଂ ପ୍ରେପ୍ସୁନା ତେନ ହତ୍ୱା ଗୃଧ୍ରଂ ଜଟାୟୁଷମ୍ ।
ଭାର୍ଯ୍ୟାବିୟୋଗଜଂ ଦୁଃଖଂ ପ୍ରାପିତସ୍ତେନ ରକ୍ଷସା । ୪ ।
ଭାର୍ଯ୍ୟାବିୟୋଗଜଂ ଦୁଃଖଂ ନଚିରାତ୍ତ୍ୱଂ ବିମୋକ୍ଷସେ ।
ଅହଂ ତାମାନୟିଷ୍ୟାମି ନଷ୍ଟାଂ ବେଦଶ୍ରୁତିମିବ । ୫ ।
ରସାତଳେ ବା ବର୍ତ୍ତନ୍ତୀଂ ବର୍ତ୍ତନ୍ତୀଂ ବା ନଭସ୍ତଲେ ।
ଅହମାନୀୟ ଦାସ୍ୟାମି ତବ ଭାର୍ଯ୍ୟାମରଂଦମ । ୬ ।

---

# ଷଷ୍ଠ ସର୍ଗ

( ଅଳଙ୍କାରପରିଚୟ )

ସୁଗ୍ରୀବ ପ୍ରସନ୍ନ ହୋଇ ପୁନର୍ବାର ରଘୁନନ୍ଦନ ରାମଚନ୍ଦ୍ରଙ୍କୁ କହିଲେ, "ହେ ରାମ ! ମୋର ଏହି ପ୍ରଧାନମନ୍ତ୍ରୀ ଏବଂ ସେବକ ହନୂମାନ୍ ଆପଣ ଯେ ନିମିତ୍ତ ନିର୍ଜନ ବନକୁ ଆସିଛନ୍ତି ଏବଂ ଭାଇ ଲକ୍ଷ୍ମଣଙ୍କ ସହିତ ବନରେ ବାସକରୁଛନ୍ତି।୧-୨।ସେକଥା ମୋତେ କହିଅଛନ୍ତି ଆପଣଙ୍କ ପତ୍ନୀ ଜନକନନ୍ଦିନୀଙ୍କୁ ରାବଣ ହରି ନେଇଅଛି । ସେତେବେଳେ ତାଙ୍କ ପାଖରେ ଆପଣ ନ ଥିଲେ କି ବୁଦ୍ଧିମାନ୍ ଲକ୍ଷ୍ମଣ ମଧ୍ୟ ନ ଥିଲେ । ୩ । ଏହି ଅବସର ପାଇ ସେ ରାକ୍ଷସ ବୃଦ୍ଧ ପକ୍ଷୀ ଜଟାୟୁଙ୍କୁ ମାରି ଆପଣଙ୍କ ସ୍ତ୍ରୀଙ୍କୁ ହରଣ କରି-ନେଲା ଏବଂ ଆପଣଙ୍କର ପତ୍ନୀବିୟୋଗ ଦୁଃଖ ଘଟାଇଲା । ୪ । ଶୀଘ୍ର ଆପଣଙ୍କର ପତ୍ନୀବିୟୋଗଜନିତ ଦୁଃଖ ଦୂର ହୋଇଯିବ । ହେ ଦେବ ! ମୁଁ ନଷ୍ଟ ବେଦକୁ ଉଦ୍ଧାର କଲାପରି ଶୀଘ୍ର ତାଙ୍କୁ ଫେରାଇ ଆଣିବି । ୫ । ହେ ଶତ୍ରୁନାଶକାରି ! ସେ ପାତାଳରେ ଥାଆନ୍ତୁ ବା ଆକାଶରେ ଥାଆନ୍ତୁ, ମୁଁ ଆପଣଙ୍କ ଭାର୍ଯ୍ୟାଙ୍କୁ ନିଶ୍ଚୟ

ଇଦଂ ତଥ୍ୟଂ ମମ ବଚସ୍ତ୍ୱମବେହି ଚ ରାଘବ ।
ନ ଶକ୍ୟା ସା ଜରୟିତୁମପି ସେନ୍ଦ୍ରୈଃ ସୁରାସୁରୈଃ । ୭ ।
ତବ ଭାର୍ଯା ମହାବାହୋ ଭକ୍ଷ୍ୟଂ ବିଷକୃତଂ ଯଥା ।
ତ୍ୟଜ ଶୋକଂ ମହାବାହୋ ତାଂ କାନ୍ତାମାନୟାମି ତେ । ୮ ।
ଅନୁମାନାତ୍ତୁ ଜାନାମି ମୈଥିଲୀ ସା ନ ସଂଶୟଃ ।
ହ୍ରିୟମାଣା ମୟା ଦୃଷ୍ଟା ରକ୍ଷସା ରୌଦ୍ରକର୍ମଣା । ୯ ।
କ୍ରୋଶନ୍ତୀ ରାମ ରାମେତି ଲକ୍ଷ୍ମଣେତି ଚ ବିସ୍ୱରମ୍ ।
ସ୍ଫୁରନ୍ତୀ ରାବଣସ୍ୟାଙ୍କେ ପନ୍ନଗେନ୍ଦ୍ରବଧୂର୍ଯଥା । ୧୦ ।
ଆତ୍ମନା ପଞ୍ଚମଂ ମାଂ ହି ଦୃଷ୍ଟ୍ୱା ଶୈଳତଲେ ସ୍ଥିତମ୍ ।
ଉତ୍ତରୀୟଂ ତୟା ତ୍ୟକ୍ତଂ ଶୁଭାନ୍ୟାଭରଣାନି ଚ । ୧୧ ।
ତାନ୍ୟସ୍ମାଭିର୍ଗୃହୀତାନି ନିହିତାନି ଚ ରାଘବ ।
ଆନୟିଷ୍ୟାମ୍ୟହଂ ତାନି ପ୍ରତ୍ୟଭିଜ୍ଞାତୁମର୍ହସି । ୧୨ ।
ତମବ୍ରବୀତ୍ତତୋ ରାମଃ ସୁଗ୍ରୀବଂ ପ୍ରିୟବାଦିନମ୍ ।
ଆନୟସ୍ୱ ସଖେ ଶୀଘ୍ରଂ କିମର୍ଥଂ ପ୍ରବିଲମ୍ବସେ । ୧୩ ।

---

ଆଣି ଆପଣଙ୍କୁ ଦେବି । ୬ । ହେ ରାଘବ ! ଆପଣ ମୋର ଏ କଥାକୁ ତଥ୍ୟକରି ଜାଣନ୍ତୁ । ଇନ୍ଦ୍ରାଦି ଦେବତାମାନେ ବା ଅସୁରମାନେ କେହି ସୀତାଙ୍କୁ ଜୀର୍ଣ୍ଣ କରିପାରିବେ ନାହିଁ । ୭ । ହେ ମହାବାହୋ ! ଆପଣଙ୍କ ସ୍ତ୍ରୀ ବିଷମିଶ୍ରିତ ଖାଦ୍ୟପରି ଅପରର ଦୁଷ୍ପ୍ରାପ୍ୟ ଅଟନ୍ତି । ଆପଣ ଶୋକ ତ୍ୟାଗକରନ୍ତୁ । ମୁଁ ଆପଣଙ୍କର ସେ ସ୍ତ୍ରୀଙ୍କୁ ନିଶ୍ଚୟ ଆଣିଦେବି । ୮ । ମୁଁ ଅନୁମାନରେ ଜାଣୁଛି, ସେ ନିଶ୍ଚୟ ସୀତା । ଭୟଙ୍କରକର୍ମକାରୀ ସେ ରାକ୍ଷସ ତାଙ୍କୁ ଚୋରାଇ ନେଇଯାଉଥିଲା । ୯ । ସେ ଭଗ୍ନସ୍ୱରରେ 'ରାମ' 'ରାମ', 'ଲକ୍ଷ୍ମଣ' 'ଲକ୍ଷ୍ମଣ' କହି କ୍ରନ୍ଦନ କରୁଥିଲେ ଏବଂ ରାବଣର କୋଳରେ ନାଗବଧୂସଦୃଶ ଶୋଭାପାଉଥିଲେ । ୧୦ । ଚାରି ଜଣ ମିତ୍ରଙ୍କ ସହିତ ମୋତେ ପର୍ବତ ଉପରେ ବସିଥିବାର ଦେଖି ସେ ନିଜର ଓଢ଼ଣି ଏବଂ କେତେଗୁଡ଼ିଏ ସୁନ୍ଦର ଅଳଙ୍କାର ଫିଙ୍ଗିଦେଇଥିଲେ । ୧୧ । ହେ ରାଘବ ! ସେଗୁଡ଼ିକ ଆମେମାନେ ନେଇ ରଖିଦେଇଛୁଁ । ମୁଁ ତାହା ଏବେ ଆଣୁଛି, ଆପଣ ଚିହ୍ନନ୍ତୁ" ।୧୨। ପ୍ରିୟସମ୍ବାଦଦାତା ସୁଗ୍ରୀବଙ୍କୁ ରାମଚନ୍ଦ୍ର କହିଲେ, "ମିତ୍ର ! ଶୀଘ୍ର ଆଣ, କାହିଁକି

ଏବମୁକ୍ତସ୍ତୁ ସୁଗ୍ରୀବଃ ଶୈଳସ୍ୟ ଗହନାଂ ଗୁହାମ୍ ।
ପ୍ରବିବେଶ ତତଃ ଶୀଘ୍ରଂ ରାଘବପ୍ରିୟକାମ୍ୟୟା । ୧୪ ।
ଉତ୍ତରୀୟଂ ଗୃହୀତ୍ୱା ତୁ ସ ତାନ୍ୟାଭରଣାନି ଚ ।
ଇଦଂ ପଶ୍ୟେତି ରାମାୟ ଦର୍ଶୟାମାସ ବାନରଃ । ୧୫ ।
ତତୋ ଗୃହୀତ୍ୱା ବାସସ୍ତୁ ଶୁଭାନ୍ୟାଭରଣାନି ଚ ।
ଅଭବଦ୍‌ବାଷ୍ପସଂରୁଦ୍ଧୋ ନୀହାରେଣେବ ଚନ୍ଦ୍ରମାଃ । ୧୬ ।
ସୀତାସ୍ନେହ ପ୍ରବୃତ୍ତେନ ସ ତୁ ବାଷ୍ପେଣ ଦୂଷିତଃ ।
ହା ପ୍ରିୟେତି ରୁଦନ୍ ଧୈର୍ଯ୍ୟମୁତ୍ସୃଜ୍ୟ ନ୍ୟପତତ୍‌କ୍ଷିତୌ । ୧୭ ।
ହୃଦି କୃତ୍ୱା ସ ବହୁଶସ୍ତମଲଂକାରମୁତ୍ତମମ୍ ।
ନିଶଶ୍ୱାସ ଭୃଶଂ ସର୍ପୋ ବିଲସ୍ଥ ଇବ ରୋଷିତଃ । ୧୮ ।
ଅବିଚ୍ଛିନ୍ନାଶ୍ରୁବେଗସ୍ତୁ ସୌମିତ୍ରିଂ ପ୍ରେକ୍ଷ୍ୟ ପାର୍ଶ୍ୱତଃ ।
ପରିଦେବୟିତୁଂ ଦୀନଂ ରାମଃ ସମୁପଚକ୍ରମେ । ୧୯ ।
ପଶ୍ୟ ଲକ୍ଷ୍ମଣ ବୈଦେହ୍ୟା ସଂତ୍ୟକ୍ତଂ ହ୍ରିୟମାଣୟା ।
ଉତ୍ତରୀୟମିଦଂ ଭୂମୌ ଶରୀରାଦ୍‌ଭୂଷଣାନି ଚ । ୨୦ ।
ଶାଦ୍ୱଲିନ୍ୟାଂ ଧ୍ରୁବଂ ଭୂମ୍ୟାଂ ସୀତୟା ହ୍ରିୟମାଣୟା ।
ଉତ୍ସୃଷ୍ଟଂ ଭୂଷଣମିଦଂ ତଥାରୂପଂ ହି ଦୃଶ୍ୟତେ । ୨୧ ।

---

ବିଳମ୍ବ କରୁଛ ?" । ୧୩ । ରାମଚନ୍ଦ୍ର ଏପରି କହିବାପରେ ତାଙ୍କୁ ପ୍ରୀତ କରିବା ନିମନ୍ତେ ସୁଗ୍ରୀବ ପର୍ବତର ନିର୍ଜନ ଗୁହାମଧ୍ୟରେ ପ୍ରବେଶକଲେ । ୧୪ । ଉତ୍ତରୀ ଏବଂ ଅଳଙ୍କାରଗୁଡ଼ିକ ଆଣି ସେ ବାନର ରାମଚନ୍ଦ୍ରଙ୍କୁ ଦେଖାଇଲେ ଏବଂ ହେଉଛି ଦେଖ ବୋଲି କହିଲେ । ୧୫ । ତା'ପରେ ରାମ ଏହି ବସ୍ତ୍ର ଏବଂ ସୁନ୍ଦର ଅଳଙ୍କାର ସବୁ ଧରି ରୋଦନ କଲେ । ଯେପରି କୁହୁଡ଼ିରେ ଚନ୍ଦ୍ର ଲୁଚିଯାଏ, ସେହିପରି ଅଶ୍ରୁଦ୍ୱାରା ରାମଚନ୍ଦ୍ରଙ୍କର ମୁଖ ଘୋଡ଼ାଇ ହୋଇପଡ଼ିଲା । ୧୬ । ସୀତାଙ୍କ ପ୍ରତି ସ୍ନେହହେତୁରୁ ଉତ୍ପନ୍ନ ଅଶ୍ରୁରେ ରାମଚନ୍ଦ୍ରଙ୍କର ମୁଖ ମଳିନ ହୋଇଗଲା । 'ହା ପ୍ରିୟେ' ବୋଲି କାନ୍ଦି ଧୈର୍ଯ୍ୟ ହରାଇ ସେ ଭୂମିରେ ପଡ଼ିଗଲେ ।୧୭। ସେ ଉତ୍ତମ ଅଳଙ୍କାରଗୁଡ଼ିକ ବାରମ୍ବାର ଛାତିରେ ଲଗାଇ ଗର୍ତ୍ତମଧ୍ୟରେ ଥିବା କ୍ରୁଦ୍ଧ ସର୍ପପରି ବାରମ୍ବାର ନିଶ୍ୱାସ ପକାଇବାକୁ ଲାଗିଲେ । ୧୮ । ରାମ ଅଶ୍ରୁର ବେଗ ବନ୍ଦ କରି ପାରିଲେ ନାହିଁ ଏବଂ ଲକ୍ଷ୍ମଣଙ୍କୁ ପାଖରେ ଦେଖି ଅତିଶୟ ଦୀନଭାବରେ କାନ୍ଦିବାକୁ ଲାଗିଲେ । ୧୯ । "ଲକ୍ଷ୍ମଣ ! ଦେଖ, ହରଣକରି ନେଇ ଯାଉଥିବାବେଳେ ସୀତା ଏହି ଉତ୍ତରୀ ଏବଂ ଅଳଙ୍କାର ଦେହରୁ କାଢ଼ି ଫିଙ୍ଗିଦେଇ ଯାଇଛନ୍ତି ।୨୦। ସୀତା ନିଶ୍ଚୟ ଏହାକୁ ଅଧିକ ଘାସ ଥିବା ଜମି ଉପରେ ଫିଙ୍ଗିଦେଇଥିଲେ । କାରଣ ଅଳଙ୍କାରଗୁଡ଼ିକ ଯେପରି

ଏବମୁକ୍ତସ୍ତୁ ରାମେଣ ଲକ୍ଷ୍ମଣୋ ବାକ୍ୟମବ୍ରବୀତ୍ ।
ନାହଂ ଜାନାମି କେୟୂରେ ନାହଂ ଜାନାମି କୁଣ୍ଡଳେ । ୨୨ ।
ନୂପୁରେ ତ୍ୱଭିଜାନାମି ନିତ୍ୟଂ ପାଦାଭିବନ୍ଦନାତ୍ ।
ତତସ୍ତୁ ରାଘବୋ ବାକ୍ୟଂ ସୁଗ୍ରୀବମିଦମବ୍ରବୀତ୍ । ୨୩ ।
ବ୍ରୂହି ସୁଗ୍ରୀବ କଂ ଦେଶଂ ହ୍ରିୟନ୍ତୀ ଲକ୍ଷିତା ତ୍ୱୟା ।
ରକ୍ଷସା ରୌଦ୍ରରୂପେଣ ମମ ପ୍ରାଣପ୍ରିୟା ହୃତା । ୨୪ ।
କ୍ୱ ବା ବସତି ତଦ୍ରକ୍ଷୋ ମହଦ୍ବ୍ୟସନଦଂ ମମ ।
ଯନ୍ନିମିତ୍ତମହଂ ସର୍ବାନ୍ନାଶୟିଷ୍ୟାମି ରାକ୍ଷସାନ୍ । ୨୫ ।
ହରତା ମୈଥିଲୀଂ ଯେନ ମାଂ ଚ ରୋଷୟତା ଧ୍ରୁବମ୍ ।
ଆତ୍ମନୋ ଜୀବିତାନ୍ତାୟ ମୃତ୍ୟୁଦ୍ୱାରମପାବୃତମ୍ । ୨୬ ।
ମମ ଦୟିତତମା ହୃତା ବନା-
ଦ୍ରଜନୀଚରେଣ ବିମଥ୍ୟ ଯେନ ସା ।
କଥୟ ମମ ରିପୁଂ ତମଦ୍ୟ ବୈ
ପ୍ଲବଗପତେ ଯମସଂନିଧିଂ ନୟାମି । ୨୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ଭୂଷଣ ପ୍ରତ୍ୟଭିଜ୍ଞାନମ୍
ନାମ ଷଷ୍ଠଃ ସର୍ଗଃ

———

'ଥିଲି ଠିକ୍ ସେହିପରି ରହିଥିବାର ଦେଖାଯାଉଛି" ।୨୧ । ରାମ ଏପରି କହିବାପରେ ଲକ୍ଷ୍ମଣ କହିଲେ, "ମୁଁ ଏ କେୟୂର ଦୁଇଟି ବା ଏ କୁଣ୍ଡଳ ଦୁଇଟିକୁ ଚିହ୍ନିନାହିଁ । ୨୨ । ମୁଁ ପ୍ରତ୍ୟହ ତାଙ୍କର ପାଦବନ୍ଦନା କରୁଥିଲି, ସୁତରାଂ ନୂପୁରକୁ ଭଲକରି ଚିହ୍ନିଛି"। ଅନନ୍ତର ରାମଚନ୍ଦ୍ର ସୁଗ୍ରୀବଙ୍କୁ ଏହି କଥା କହିଲେ ।୨୩। "ସୁଗ୍ରୀବ ! ସେ ଭୟଙ୍କରରୂପୀ ରାକ୍ଷସ ମୋ ପ୍ରାଣପ୍ରିୟାଙ୍କୁ ହରଣ କରି କେଉଁଆଡ଼କୁ ନେଇଯିବାର ତୁମେ ଦେଖିଛ, ମୋତେ କହ ।୨୪। ଯେ ମୋତେ ଏତେବଡ଼ ଦୁଃଖଦେଲା ସେ ରାକ୍ଷସ କେଉଁଠାରେ ବାସକରେ ? ତାହା ଲାଗି ମୁଁ ସମସ୍ତ ରାକ୍ଷସଙ୍କୁ ମାରିପକାଇବି ।୨୫। ଯେ ମୈଥିଲୀଙ୍କୁ ହରଣ କରି ମୋର କ୍ରୋଧ ଜାତ କରିଇଅଛି, ସେ ନିଶ୍ଚୟ ନିଜର ଜୀବନଅନ୍ତ କରିବା ନିମନ୍ତେ ମୃତ୍ୟୁର ଦ୍ୱାର ଖୋଲି ଦେଇଅଛି ।୨୬। ଯେଉଁ ନିଶାଚର ଏପରି ଛନ୍ଦ କରି ମୋର ପ୍ରିୟତମା ସୀତାଙ୍କୁ ହରଣ କରି ନେଇଅଛି, ହେ ବାନରାଧିପତି ! ମୋତେ ତାର ଠିକଣା ବତାଇଦିଅ । ମୁଁ ତାକୁ ଏହିକ୍ଷଣି ଯମ ନିକଟକୁ ପଠାଇଦେବି ।୨୭।

———

# ସପ୍ତମଃ ସର୍ଗଃ

## ରାମସମାଶ୍ୱାସନମ୍

ଏବମୁକ୍ତସ୍ତୁ ସୁଗ୍ରୀବୋ ରାମେଣାର୍ତ୍ତେନ ବାନରଃ ।
ଅବ୍ରବୀତ୍ପ୍ରାଞ୍ଜଳିର୍ବାକ୍ୟଂ ସବାଷ୍ପଂ ବାଷ୍ପଗଦ୍ଗଦଃ । ୧ ।
ନ ଜାନେ ନିଳୟଂ ତସ୍ୟ ସର୍ବଥା ପାପରକ୍ଷସଃ ।
ସାମର୍ଥ୍ୟଂ ବିକ୍ରମଂ ବାପି ଦୌଷ୍କୁଲେୟସ୍ୟ ବା କୁଳମ୍ । ୨ ।
ସତ୍ୟଂ ତୁ ପ୍ରତିଜାନାମି ତ୍ୟଜ ଶୋକମରିନ୍ଦମ ।
କରିଷ୍ୟାମି ତଥା ଯତ୍ନଂ ଯଥା ପ୍ରାପ୍ସ୍ୟସି ମୈଥିଲୀମ୍ । ୩ ।
ରାବଣଂ ସଗଣଂ ହତ୍ୱା ପରିତୋଷ୍ୟାତ୍ମପୌରୁଷମ୍ ।
ତଥାସ୍ମି କର୍ତ୍ତା ନ ଚିରାଦ୍ ଯଥା ପ୍ରୀତୋ ଭବିଷ୍ୟସି । ୪ ।
ଅଳଂ ବୈକ୍ଳବ୍ୟମାଲମ୍ବ୍ୟ ଧୈର୍ଯ୍ୟମାତ୍ମଗତଂ ସ୍ମର ।
ତ୍ୱଦ୍ବିଧାନାଂ ନ ସଦୃଶମୀଦୃଶଂ ବୁଦ୍ଧିଲାଘବମ୍ । ୫ ।
ମୟାପି ବ୍ୟସନଂ ପ୍ରାପ୍ତଂ ଭାର୍ଯ୍ୟାବିରହଜଂ ମହତ୍ ।
ନାହମେବଂ ହି ଶୋଚାମି ଧୈର୍ଯ୍ୟଂ ନ ଚ ପରିତ୍ୟଜେ । ୬ ।

---

## ୭ମ ସର୍ଗ

### (ରାମଙ୍କୁ ଆଶ୍ୱାସନାପ୍ରଦାନ)

ଦୁଃଖାର୍ତ୍ତ ରାମଚନ୍ଦ୍ର ଏପରି କହିବାପରେ ସୁଗ୍ରୀବଙ୍କ ଆଖି ଲୁହରେ ପୂରିଗଲା । ସେ ହାତଯୋଡ଼ି କାନ୍ଦି କାନ୍ଦି ରାମଚନ୍ଦ୍ରଙ୍କୁ କହିଲେ ।୧ । "ସେ ପାପୀ ରାକ୍ଷସର ଘର କେଉଁଠାରେ, ମୁଁ ଜାଣେ ନାହିଁ । ତାହାର କେତେଦୂର ଶକ୍ତି, କିପରି ପରାକ୍ରମ ଏବଂ ସେ ଅସତ୍କୁଳଜାତର କୁଳ ମଧ୍ୟ ମୁଁ ଜାଣେ ନାହିଁ ।୨। ମାତ୍ର ମୁଁ ସତ୍ୟପ୍ରତିଜ୍ଞା କରୁଛି, ଆପଣ ସୀତାଙ୍କୁ ଯେପରି ପାଇବେ ତାହାର ଆବଶ୍ୟକ ଯତ୍ନ ନିଶ୍ଚୟ କରିବି । ଅରିନ୍ଦମ ! ଆପଣ ଶୋକ ତ୍ୟାଗ କରନ୍ତୁ ।୩। ରାବଣକୁ ସବଂଶରେ ମାରି ଏବଂ ନିଜର ପୌରୁଷକୁ ପରିତୁଷ୍ଟ କରି ମୁଁ ଏପରି କାର୍ଯ୍ୟସାଧନ କରିବି, ଯେଉଁଥିରେ ଆପଣ ଅତିଶୀଘ୍ର ପ୍ରୀତ ହୋଇପିବେ ।୪। ଆପଣ ଏ ଦୁର୍ବଳତା ତ୍ୟାଗ କରନ୍ତୁ ଏବଂ ନିଜର ଧୈର୍ଯ୍ୟକୁ ସ୍ମରଣ କରନ୍ତୁ । ଆପଣଙ୍କ ସଦୃଶ ବ୍ୟକ୍ତିପକ୍ଷରେ ଏପରି ବୁଦ୍ଧିହୀନତା ଉଚିତ ନୁହେଁ ।୫। ମୁଁ ମଧ୍ୟ ପତ୍ନୀବିରହଜନିତ ମହାଦୁଃଖ ଭୋଗ କରିଅଛି, ମାତ୍ର ମୁଁ କେବେ ଏପରି ଶୋଚନା କରି ନାହିଁ ବା

ନାହଂ ତାମନୁଶୋଚାମି ପ୍ରାକୃତୋ ବାନରୋଽପି ସନ୍ ।
ମହାତ୍ମା ଚ ବିନୀତଶ୍ଚ କିଂ ପୁନର୍ଧୃତିମାନ୍ମହାନ୍ । ୭ ।
ବାଷ୍ପମାପତିତଂ ଧୈର୍ଯାନ୍ନିଗୃହୀତୁଂ ତ୍ୱମର୍ହସି ।
ମର୍ଯାଦାଂ ସତ୍ତ୍ୱଯୁକ୍ତାନାଂ ଧୃତିଂ ନୋତ୍ସ୍ରଷ୍ଟୁମର୍ହସି । ୮ ।
ବ୍ୟସନେ ବାର୍ଥକୃଚ୍ଛ୍ରେ ବା ଭୟେ ବା ଜୀବିତାନ୍ତଗେ ।
ବିମୃଶଂଶ୍ଚ ସ୍ୱୟା ବୁଦ୍ଧ୍ୟା ଧୃତିମାନ୍ନାବସୀଦତି । ୯ ।
ବାଲିଶସ୍ତୁ ନରୋ ନିତ୍ୟଂ ବୈକ୍ଲବ୍ୟଂ ଯୋଽନୁବର୍ତ୍ତତେ ।
ସ ମଜ୍ଜତ୍ୟବଶଃ ଶୋକେ ଭାରାକ୍ରାନ୍ତେବ ନୌର୍ଜଲେ ।୧୦ ।
ଏଷୋଽଞ୍ଜଲିର୍ମୟା ବଦ୍ଧଃ ପ୍ରଣୟାତ୍ତ୍ୱାଂ ପ୍ରସାଦୟେ ।
ପୌରୁଷଂ ଶ୍ରୟ ଶୋକସ୍ୟ ନାନ୍ତରଂ ଦାତୁମର୍ହସି । ୧୧ ।
ଯେ ଶୋକମନୁବର୍ତ୍ତନ୍ତେ ନ ତେଷାଂ ବିଦ୍ୟତେ ସୁଖମ୍ ।
ତେଜଶ୍ଚ କ୍ଷୀୟତେ ତେଷାଂ ନ ତ୍ୱଂ ଶୋଚିତୁମର୍ହସି ।୧୨।
ଶୋକେନାଭିପ୍ରପନ୍ନସ୍ୟ ଜୀବିତେ ଽପି ସଂଶୟଃ ।
ସ ଶୋକଂ ତ୍ୟଜ ରାଜେନ୍ଦ୍ର ଧୈର୍ଯମାଶ୍ରୟ କେବଳମ୍ । ୧୩ ।

---

ଧୈର୍ଯ୍ୟ ହରାଇ ନାହିଁ । ୬ । ସାଧାରଣ ବାନର ହୋଇ ମଧ୍ୟ ମୁଁ ମୋର ସ୍ତ୍ରୀଲାଗି ଅନୁଶୋଚନା କରୁ ନାହିଁ । ତେବେ ଆପଣଙ୍କ ପରି ମହାତ୍ମା, ଧୈର୍ଯ୍ୟଶୀଳ ଏବଂ ଶିକ୍ଷିତ ଲୋକଙ୍କ କଥା କଣ କହିବା ?। ୭ । ଆପଣଙ୍କର ଯେଉଁ ଲୁହ ବୋହିପଡୁଛି ତାକୁ ଧୈର୍ଯ୍ୟର ସହିତ ନିରୋଧ କରିବା ଉଚିତ । ସଜ୍ଜନ ଲୋକମାନଙ୍କର ଧୈର୍ଯ୍ୟ ସୀମାଲଙ୍ଘନ କରିବା ଉଚିତ ନୁହେ । ୮ । ବିପଦରେ, ଅର୍ଥାଭାବରେ, ଭୟରେ ବା ଜୀବନସଂକଟ ଉପସ୍ଥିତ ହେବାବେଳେ ଯେ ଧୀରତା ଅବଲମ୍ବନ କରି ନିଜର ବୁଦ୍ଧିଦ୍ୱାରା ବିଚାର କରେ ସେ କଦାପି ଦୁଃଖୀ ହୁଏ ନାହିଁ । ୯ । ଯେଉଁ ଲୋକ ସର୍ବଦା ଦୁର୍ବଳତାରେ ବିଚଳିତ ହୋଇପଡ଼େ ସେ ମୂର୍ଖ । ବେଶି ବୋଝାଇ ହେଲେ ନୌକା ଯେପରି ଜଳରେ ବୁଡ଼ିଯାଏ, ସେହିପରି ସେ ବ୍ୟକ୍ତି ଶକ୍ତିହୀନ ହୋଇ ଶୋକରେ ବୁଡ଼ିଯାଏ । ୧୦ । ମୁଁ ପ୍ରଣୟହେତୁରୁ ହାତଯୋଡ଼ି ଆପଣଙ୍କୁ ପ୍ରାର୍ଥନା କରୁଛି, ଆପଣ ଉଦ୍‌ଯୋଗର ଆଶ୍ରା କରନ୍ତୁ; ଶୋକକୁ ଅବକାଶ ଦେବା ଆପଣଙ୍କର ଉଚିତ ନୁହେ । ୧୧ । ଯେଉଁ ଲୋକ ଶୋକ କରେ ତାହାର କୌଣସି ସୁଖ ମିଳେ ନାହିଁ ଏବଂ ତେଜ କ୍ଷୟ ହୋଇଯାଏ; ସୁତରାଂ ଆପଣଙ୍କର ଶୋକ କରିବା ଉଚିତ ନୁହେ । ୧୨ । ଯେଉଁ ବ୍ୟକ୍ତି ଶୋକରେ ଅଭିଭୂତ ହୋଇଯାଏ ତାହାର ଜୀବନସଂଶୟ ମଧ୍ୟ ଉପସ୍ଥିତ ହୁଏ । ଅତଏବ ଆପଣ ଶୋକ ପରିହାର କରି

ହିତଂ ବୟସ୍ୟଭାବେନ ବ୍ରୂମି ନୋପଦିଶାମି ତେ ।
ବୟସ୍ୟତାଂ ପୂଜୟନ୍ନେ ନ ତ୍ୱଂ ଶୋଚିତୁମର୍ହସି । ୧୪ ।
ମଧୁରଂ ସାନ୍ତ୍ୱିତସ୍ତେନ ସୁଗ୍ରୀବେଣ ସ ରାଘବଃ ।
ମୁଖମଶ୍ରୁପରିକ୍ଲିନ୍ନଂ ବସ୍ତ୍ରାନ୍ତେନ ପ୍ରମାର୍ଜୟତ୍ । ୧୫ ।
ପ୍ରକୃତିସ୍ଥସ୍ତୁ କାକୁତ୍‌ସ୍ଥଃ ସୁଗ୍ରୀବବଚନାତ୍ ପ୍ରଭୁଃ ।
ସଂପରିଷ୍ୱଜ୍ୟ ସୁଗ୍ରୀବମିଦଂ ବଚନମବ୍ରବୀତ୍ । ୧୬ ।
କର୍ତ୍ତବ୍ୟଂ ଯଦ୍ ବୟସ୍ୟେନ ସ୍ନିଗ୍ଧେନ ଚ ହିତେନ ଚ ।
ଅନୁରୂପଂ ଚ ଯୁକ୍ତଂ ଚ କୃତଂ ସୁଗ୍ରୀବ ତତ୍ତ୍ୱୟା । ୧୭ ।
ଏଷ ଚ ପ୍ରକୃତିସ୍ଥୋଽହମନୁନୀତସ୍ତ୍ୱୟା ସଖେ ।
ଦୁର୍ଲଭୋ ହୀଦୃଶୋ ବନ୍ଧୁରସ୍ମିନ୍ କାଲେ ବିଶେଷତଃ । ୧୮ ।
କିଂତୁ ଯତ୍ନସ୍ତ୍ୱୟା କାର୍ଯ୍ୟୋ ମୈଥିଲ୍ୟା ପରିମାର୍ଗଣେ ।
ରାକ୍ଷସସ୍ୟ ଚ ରୌଦ୍ରସ୍ୟ ରାବଣସ୍ୟ ଦୁରାତ୍ମନଃ । ୧୯ ।
ମୟା ଚ ଯଦନୁଷ୍ଠେୟଂ ବିସ୍ରବ୍ଧେନ ତଦୁଚ୍ୟତାମ୍ ।
ବର୍ଷାସ୍ୱିବ ଚ ସୁକ୍ଷେତ୍ରେ ସର୍ବଂ ସଂପଦ୍ୟତେ ତବ । ୨୦ ।
ମୟା ଚ ଯଦିଦଂ ବାକ୍ୟମଭିମାନାତ୍ସମୀରିତମ୍ ।
ତତ୍ତ୍ୱୟା ହରିଶାର୍ଦ୍ଦୂଳ ତତ୍ତ୍ୱମିତ୍ୟୁପଧାର୍ଯ୍ୟତାମ୍ । ୨୧ ।

---

କେବଳ ଧୈର୍ଯ୍ୟକୁ ଆଶ୍ରୟ କରନ୍ତୁ । ୧୩ । ମୁଁ ଆପଣଙ୍କୁ ଉପଦେଶ ଦେଉ ନାହିଁ; କେବଳ ମିତ୍ରଭାବରେ ହିତକଥା କହୁଅଛି । ଅତଏବ ମୋର ମିତ୍ରତା ପ୍ରତି ସମ୍ମାନ ଦେଖାଇ ଆପଣଙ୍କର ଶୋକ କରିବା ଉଚିତ ନୁହେଁ” । ୧୪ । ସୁଗ୍ରୀବ ଏହିପରି ମଧୁରଭାବରେ ବୁଝାଇବା ପରେ ରାଘବ ଲୁଗାକାନିରେ ନିଜର ଲୁହରେ ମଳିନ ହୋଇଥିବା ମୁହଁ ପୋଛିପକାଇଲେ । ୧୫। ସୁଗ୍ରୀବଙ୍କ କଥାରେ ରାମଚନ୍ଦ୍ର ପ୍ରକୃତିସ୍ଥ ହୋଇ ତାଙ୍କୁ ଆଲିଙ୍ଗନ କଲେ ଏବଂ ଏହି କଥା କହିଲେ । ୧୬ । “ହେ ସୁଗ୍ରୀବ ! ସ୍ନେହଶୀଳ ଏବଂ ହିତୈଷୀ ମିତ୍ରର ଯାହା କରିବା ଉପଯୁକ୍ତ ତାହା ତୁମେ କରିଛ । ୧୭ । ସଖେ ! ଦେଖ, ତୁମେ ଅନୁନୟ କରିବାରୁ ମୁଁ ବର୍ତ୍ତମାନ ପ୍ରକୃତିସ୍ଥ ହେଲି । ବିଶେଷତଃ ତୁମପରି ବନ୍ଧୁ ଏ ସମୟରେ ମିଳିବା କଠିନ । ୧୮ । ମାତ୍ର ଜାନକୀ ଏବଂ କ୍ରୂର ଦୁରାତ୍ମା ରାବଣକୁ ଖୋଜିବା ନିମନ୍ତେ ତୁମର ଯତ୍ନକରିବା ଉଚିତ ।୧୯। ମୋତେ କ’ଣ କରିବାକୁ ହେବ ସେ କଥା ତୁମେ ବିଶ୍ୱସ୍ତଭାବରେ ମୋତେ କହ । ଯେପରି ସୁକ୍ଷେତ୍ରରେ ବର୍ଷା ସମୟରେ ସବୁ ପଦାର୍ଥ ଉତ୍ପନ୍ନ ହୁଏ ସେହିପରି ତୁମଠାରେ ସବୁ ସମ୍ଭବ । ୨୦ । ହେ ବାନରଶ୍ରେଷ୍ଠ ! ମୁଁ ଅଭିମାନରେ ଯେ କଥା କହିଲି ସେ କଥାକୁ ତୁମେ ଯଥାର୍ଥ କରି ଜାଣ । ୨୧ ।

ଅନୃତଂ ନୋକ୍ତପୂର୍ବଂ ମେ ନ ଚ ବକ୍ଷ୍ୟେ କଦାଚନ ।
ଏତତ୍ତେ ପ୍ରତିଜାନାମି ସତ୍ୟେନୈବ ଶପାମ୍ୟହମ୍ । ୨୨ ।
ତତଃ ପ୍ରହୃଷ୍ଟଃ ସୁଗ୍ରୀବୋ ବାନରୈଃ ସଚିବୈଃ ସହ ।
ରାଘବସ୍ୟ ବଚଃ ଶ୍ରୁତ୍ୱା ପ୍ରତିଜ୍ଞାତଂ ବିଶେଷତଃ । ୨୩ ।
ଏବମେକାନ୍ତସଂପୃକ୍ତୌ ତତସ୍ତୌ ନରବାନରୌ ।
ଉଭାବନ୍ୟୋନ୍ୟସଦୃଶଂ ସୁଖଂ ଦୁଃଖମଭାଷତାମ୍ । ୨୪ ।
ମହାନୁଭାବସ୍ୟ ବଚୋ ନିଶମ୍ୟ
ହରିର୍ନରାଣାମୃଷଭସ୍ୟ ତସ୍ୟ ।
କୃତଂ ସ ମେନେ ହରିବୀରମୁଖ୍ୟ-
ସ୍ତଦା ସ୍ୱକାର୍ଯ୍ୟଂ ହୃଦୟେନ ବିଦ୍ୱାନ୍ । ୨୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସାନ୍ତ୍ୱନାଶ୍ୱାସନମ୍
ନାମ ସପ୍ତମଃ ସର୍ଗଃ

---

ଆଗରୁ କେବେ ମିଥ୍ୟା କଥା କହିନାହିଁ, କି ଭବିଷ୍ୟତରେ କେବେ କହିବି ନାହିଁ । ମୁଁ ସତ୍ୟରେ ଶପଥ କରି ତୁମ ଆଗରେ କହୁଛି" । ୨୨ । ଅନନ୍ତର ରାମଚନ୍ଦ୍ରଙ୍କ କଥା ବିଶେଷତଃ ତାଙ୍କ ପ୍ରତିଜ୍ଞା ଶୁଣି ସୁଗ୍ରୀବ ତଥା ତାଙ୍କର ମନ୍ତ୍ରୀମାନେ ଏବଂ ଅନ୍ୟ ବାନରମାନେ ବିଶେଷ ଆନନ୍ଦିତ ହେଲେ । ୨୩ । ଏହାପରେ ଏକାନ୍ତରେ ବସି ସେ ଦୁଇ ନର ଏବଂ ବାନର (ଅର୍ଥାତ୍ ରାମ ଏବଂ ସୁଗ୍ରୀବ) ଆପଣା ଆପଣା ମଧ୍ୟରେ ସୁଖ ଦୁଃଖ କଥାବାର୍ତ୍ତା ହେଲେ । ୨୪ । ମହାନୁଭବ ନରାଧିପତି ରାମଚନ୍ଦ୍ରଙ୍କ କଥା ଶୁଣି ବାନରାଧିପତି ବିଦ୍ୱାନ୍ ସୁଗ୍ରୀବ ସଙ୍ଗେ ସଙ୍ଗେ ନିଜର କାର୍ଯ୍ୟ-ସିଦ୍ଧି ହେଲା ବୋଲି ମନେ ମନେ ଭାବିଲେ । ୨୫ ।

# ଅଷ୍ଟମଃ ସର୍ଗଃ

## ବାଲବଧପ୍ରତିଜ୍ଞା

ପରିତୁଷ୍ଟସ୍ତୁ ସୁଗ୍ରୀବସ୍ତେନ ବାକ୍ୟେନ ହର୍ଷିତଃ ।
ଲକ୍ଷ୍ମଣସ୍ୟାଗ୍ରଜଂ ଶୂରମିଦଂ ବଚନମବ୍ରବୀତ୍ । ୧ ।
ସର୍ବଥାହମନୁଗ୍ରାହ୍ୟୋ ଦେବତାନାଂ ନ ସଂଶୟଃ ।
ଉପପନ୍ନୋ ଗୁଣୋପେତଃ ସଖା ଯସ୍ୟ ଭବାନ୍ମମ । ୨ ।
ଶକ୍ୟଂ ଖଲୁ ଭବେଦ୍ରାମ ସହାୟେନ ତ୍ୱୟାନଘ ।
ସୁରରାଜ୍ୟମପି ପ୍ରାପ୍ତୁଂ ସ୍ୱରାଜ୍ୟଂ କିମୁତ ପ୍ରଭୋ । ୩ ।
ସୋଽହଂ ସଭାଜ୍ୟୋ ବନ୍ଧୂନାଂ ସୁହୃଦାଂ ଚୈବ ରାଘବ ।
ଯସ୍ୟାଗ୍ନି ସାକ୍ଷିକଂ ମିତ୍ରଂ ଲବ୍ଧଂ ରାଘବବଂଶଜମ୍ । ୪ ।
ଅହମପ୍ୟନୁରୂପସ୍ତେ ବୟସ୍ୟୋ ଜ୍ଞାସ୍ୟସେ ଶନୈଃ ।
ନ ତୁ ବକ୍ତୁଂ ସମର୍ଥୋଽହଂ ତ୍ୱୟି ଆତ୍ମଗତାନ୍ଗୁଣାନ୍ । ୫ ।
ମହାତ୍ମନାଂ ତୁ ଭୂୟିଷ୍ଠଂ ତ୍ୱଦ୍ୱିଧାନାଂ କୃତାତ୍ମନାମ୍ ।
ନିଶ୍ଚଳା ଭବତି ପ୍ରୀତିର୍ଧୈର୍ଯମାତ୍ମବତାଂ ବର । ୬ ।

---

## ୮ମ ସର୍ଗ

(ବାଲବଧପ୍ରତିଜ୍ଞା)

ସୁଗ୍ରୀବ ସେ କଥାରେ ସନ୍ତୁଷ୍ଟ ଏବଂ ଆନନ୍ଦିତ ହୋଇ ଲକ୍ଷ୍ମଣଙ୍କ ବଡ଼ ଭାଇ ବୀର ରାମଚନ୍ଦ୍ରଙ୍କୁ ଏହି କଥା କହିଲେ । ୧ । "ଆପଣଙ୍କପରି ଗୁଣବାନ୍ ସଖା ମୁଁ ଯେତେବେଳେ ପାଇଲିଣି, ସେତେବେଳେ ମୁଁ ଜାଣୁଛି ଯେ, ଦେବତାମାନେ ସକଳ-ପ୍ରକାରେ ମୋତେ ଅନୁଗ୍ରହ କରିବେ, ଏଥିରେ ସନ୍ଦେହ ନାହିଁ ।୨। ହେ ନିଷ୍ପାପ ପ୍ରଭୁ ରାମଚନ୍ଦ୍ର ! ଆପଣଙ୍କ ସାହାଯ୍ୟ ପାଇଲେ ଦେବତାମାନଙ୍କ ରାଜ୍ୟ ମଧ୍ୟ ମୁଁ ଲାଭ କରିବାକୁ ସମର୍ଥ ହେବି, ନିଜ ରାଜ୍ୟ ପାଇବା କଣ ବଡ଼ କଥା ? ।୩। ଆପଣଙ୍କପରି ରଘୁବଂଶୀଙ୍କ ସହିତ ମୋର ଯେତେବେଳେ ଅଗ୍ନିସାକ୍ଷିକ ମିତ୍ରତା ହୋଇଗଲିଣି, ସେତେବେଳେ ମୋର ବନ୍ଧୁ ଏବଂ ସୁହୃଦମାନେ ମୋତେ ନିଶ୍ଚୟ ସମ୍ମାନ କରିବେ । ୪ । ଆପଣ ଆସ୍ତେ ଆସ୍ତେ ଜାଣିପାରିବେ ଯେ ମୁଁ ମଧ୍ୟ ଆପଣଙ୍କର ଉପଯୁକ୍ତ ମିତ୍ର । ମୁଁ ଆପଣଙ୍କ ଆଗରେ ମୋର ନିଜର ଗୁଣାବଳୀ କହିପାରିବି ନାହିଁ । । ୫ । ଆପଣଙ୍କପରି ମହାତ୍ମା ଏବଂ ସିଦ୍ଧପୁରୁଷଙ୍କର ଧୈର୍ଯ୍ୟ ଅତିଶୟ ଅଧିକ

ରଜତଂ ବା ସୁବର୍ଣଂ ବା ଶୁଭ୍ରାନ୍ୟାଭରଣାନି ଚ ।
ଅବିଭକ୍ତାନି ସାଧୂନାମବଗଚ୍ଛନ୍ତି ସାଧବଃ । ୭ ।
ଆଢ୍ୟୋ ବାପି ଦରିଦ୍ରୋ ବା ଦୁଃଖିତଃ ସୁଖିତୋଽପି ବା ।
ନିର୍ଦୋଷଶ୍ଚ ସଦୋଷଶ୍ଚ ବୟସ୍ୟଃ ପରମା ଗତିଃ । ୮ ।
ଧନତ୍ୟାଗଃ ସୁଖତ୍ୟାଗୋ ଦେଶତ୍ୟାଗୋଽପି ବାନଘ ।
ବୟସ୍ୟାର୍ଥେ ପ୍ରବର୍ତ୍ତନ୍ତେ ସ୍ନେହଂ ଦୃଷ୍ଟ୍ୱା ତଥାବିଧମ୍ । ୯ ।
ତତ୍ତଥେତ୍ୟବ୍ରବୀଦ୍ରାମ ସୁଗ୍ରୀବଂ ପ୍ରିୟଦର୍ଶନମ୍ ।
ଲକ୍ଷ୍ମଣସ୍ୟାଗ୍ରତୋ ଲକ୍ଷ୍ମ୍ୟା ବାସବସ୍ୟେବ ଧୀମତଃ । ୧୦ ।
ତତୋ ରାମଂ ସ୍ଥିତଂ ଦୃଷ୍ଟ୍ୱା ଲକ୍ଷ୍ମଣଂ ଚ ମହାବଲମ୍ ।
ସୁଗ୍ରୀବଃ ସର୍ବତଶ୍ଚକ୍ଷୁର୍ବନେ ଲୋଲମପାତୟତ୍ । ୧୧ ।
ସ ଦଦର୍ଶ ତତଃ ସାଲମବିଦୂରେ ହରୀଶ୍ୱରଃ ।
ସୁପୁଷ୍ପମୀଷତ୍ପତ୍ରାଢ୍ୟଂ ଭ୍ରମରୈରୁପଶୋଭିତମ୍ । ୧୨ ।
ତସ୍ୟୈକାଂ ପର୍ଣବହୁଲାଂ ଶାଖାଂ ଭଙ୍କ୍ତ୍ୱା ସୁଶୋଭିତାମ୍ ।
ରାମସ୍ୟାସ୍ତୀର୍ଯ ସୁଗ୍ରୀବୋ ନିଷସାଦ ସରାଘବଃ । ୧୩ ।

---

ଏବଂ ପ୍ରୀତି ସ୍ଥିର ଓ ନିଶ୍ଚଳ ହୁଏ ।୬। ସାଧୁ ମିତ୍ରମାନେ ରୁପା ସୁନା ବା ଉତ୍ତମ ଉତ୍ତମ ଅଳଙ୍କାର ନିଜ ନିଜ ମଧ୍ୟରେ ବାଣ୍ଟିନେବା ଜିନିସ ବୋଲି ଜ୍ଞାନକରନ୍ତି ନାହିଁ, ଅର୍ଥାତ୍ ଏକ ମିତ୍ରର ଜିନିସ ଅନ୍ୟର ବୋଲି ଜ୍ଞାନ କରନ୍ତି । ୭ । ଧନୀ ହେଉ ବା ଦରିଦ୍ର ହେଉ, ଦୁଃଖୀ ହେଉ ବା ସୁଖୀ ହେଉ, ନିର୍ଦ୍ଦୋଷ ହେଉ ବା ସଦୋଷ ହେଉ, ମିତ୍ରହିଁ ମିତ୍ର ନିମନ୍ତେ ପରମଗତି (ସହାୟ) ଅଟେ । ୮ । ଏହିହେତୁରୁ ମିତ୍ରର ଏତାଦୃଶ ଘନିଷ୍ଠ ସ୍ନେହ ଦେଖି ତାହାଲାଗି ମିତ୍ର ଧନ, ସୁଖ ଏବଂ ଦେଶ ମଧ୍ୟ ତ୍ୟାଗ କରିଥାଏ" । ୯ । ଇନ୍ଦ୍ରତୁଲ୍ୟ କାନ୍ତିମାନ୍ ଓ ବୁଦ୍ଧିମାନ୍ ଲକ୍ଷ୍ମଣଙ୍କ ସମକ୍ଷରେ ରାମଚନ୍ଦ୍ର ପ୍ରିୟଦର୍ଶନ ସୁଗ୍ରୀବଙ୍କୁ କହିଲେ, "ହଁ, ତୁମେ ଯାହା କହିଲ ତାହା ଠିକ୍" ।୧୦। ଅନନ୍ତର ମହାବଳୀ ରାମ ଏବଂ ଲକ୍ଷ୍ମଣଙ୍କୁ ପ୍ରକୃତିସ୍ଥ ହୋଇ ବସିବାର ଦେଖି ସୁଗ୍ରୀବ ବନର ଚତୁର୍ଦ୍ଦିଗକୁ ନିଜର ଚଞ୍ଚଳଦୃଷ୍ଟି ପକାଇଲେ ।୧୧। ବାନରରାଜ ସୁଗ୍ରୀବ ନିକଟରେ ଗୋଟିଏ ଶାଳଗଛ ଦେଖିଲେ । ସେଥିରେ ଅଳ୍ପ ପତ୍ର ଥିଲା, ବହୁତ ଫୁଲ ଫୁଟିଥିଲା ଏବଂ ଭ୍ରମରମାନଙ୍କଦ୍ୱାରା ବେଷ୍ଟିତ ହୋଇ ତାହା ଅତ୍ୟନ୍ତ ସୁନ୍ଦର ଦେଖାଯାଉଥିଲା । ୧୨ । ସେହି ବୃକ୍ଷର ଗୋଟିଏ ସୁନ୍ଦର ପତ୍ରବହୁଳ ଶାଖା ସେ ଭାଙ୍ଗିଲେ ଏବଂ ତାହାକୁ ରାମଙ୍କ ପାଇଁ ବିଛାଇଦେଇ ତାଙ୍କ ସଙ୍ଗରେ ନିଜେ

ତାବାସୀନୌ ତତୋ ଦୃଷ୍ଟ୍ୱା ହନୂମାନପି ଲକ୍ଷ୍ମଣମ୍ ।
ସାଲଶାଖାଂ ସମୁତ୍ପାଟ୍ୟ ବିନୀତମୁପବେଶୟତ୍ ॥ ୧୪ ॥
ସୁଖୋପବିଷ୍ଟଂ ରାମଂ ତୁ ପ୍ରସନ୍ନମୁଦଧିଂ ଯଥା ।
ସାଲପୁଷ୍ପାବସଂକୀର୍ଣେ ତସ୍ମିନ୍ ଗିରିବରୋତ୍ତମେ ॥ ୧୫ ॥
ତତଃ ପ୍ରହୃଷ୍ଟଃ ସୁଗ୍ରୀବଃ ଶ୍ଳକ୍ଷ୍ଣୟା ଶୁଭୟା ଗିରା ।
ଉବାଚ ପ୍ରଣୟାଦ୍ରାମଂ ହର୍ଷବ୍ୟାକୁଳିତାକ୍ଷରମ୍ ॥ ୧୬ ॥
ଅହଂ ବିନିକୃତୋ ଭ୍ରାତ୍ରା ଚରାମ୍ୟେଷ ଭୟାର୍ଦିତଃ ।
ଋଷ୍ୟମୂକଂ ଗିରିବରଂ ହୃତଭାର୍ଯଃ ସୁଦୁଃଖିତଃ ॥ ୧୭ ॥
ସୋଽହଂ ତ୍ରସ୍ତୋ ଭୟେ ମଗ୍ନୋ ବନେ ସଂଭ୍ରାନ୍ତଚେତନଃ ।
ବାଲିନା ନିକୃତୋ ଭ୍ରାତ୍ରା କୃତବୈରଶ୍ଚ ରାଘବ ॥ ୧୮ ॥
ବାଲିନୋ ମେ ଭୟାର୍ତସ୍ୟ ସର୍ବଲୋକାଭୟଂକର ।
ମମାପି ତ୍ୱମନାଥସ୍ୟ ପ୍ରସାଦଂ କର୍ତୁମର୍ହସି ॥ ୧୯ ॥
ଏବମୁକ୍ତସ୍ତୁ ତେଜସ୍ୱୀ ଧର୍ମଜ୍ଞୋ ଧର୍ମବତ୍ସଳଃ ।
ପ୍ରତ୍ୟୁବାଚ ସ କାକୁତ୍ସ୍ଥଃ ସୁଗ୍ରୀବଂ ପ୍ରହସନ୍ନିବ ॥ ୨୦ ॥

---

ବସିଲେ । ୧୩ । ଏ ଦୁହିଙ୍କୁ ବସିବାର ଦେଖି ହନୁମାନ୍ ମଧ୍ୟ ଶାଳଗଛର ଗୋଟିଏ ଡାଳ ଭାଙ୍ଗି ବିନୟପୂର୍ବକ ତା ଉପରେ ଲକ୍ଷ୍ମଣଙ୍କୁ ବସାଇଲେ । ୧୪ । ଶାଳପୁଷ୍ପରେ ପୂର୍ଣ୍ଣ ସେହି ଶ୍ରେଷ୍ଠ ପର୍ବତ ଉପରେ ରାମଚନ୍ଦ୍ର ପ୍ରଶାନ୍ତ ସମୁଦ୍ରସଦୃଶ ସୁଖରେ ବସିଲେ । ୧୫ । ତା ପରେ ସୁଗ୍ରୀବ ଆନନ୍ଦମନରେ ରାମଚନ୍ଦ୍ରଙ୍କୁ ପ୍ରେମ-ପୂର୍ବକ ସୁନ୍ଦର ମଧୁର ବଚନ କହିଲେ । ତାଙ୍କର ହର୍ଷ ଏତେ ଅଧିକ ହୋଇଥିଲା ଯେ ତାଙ୍କର କଥାଗୁଡ଼ିକ ପରିଷ୍କାର ବାହାରୁ ନ ଥିଲା ।୧୬। "ମୁଁ ଭାଇକର୍ତ୍ତୃକ ଲାଞ୍ଛିତ ହୋଇ ଏହି ଋଷ୍ୟମୂକ ପର୍ବତରେ ଭୟରେ ଏବଂ ଦୁଃଖରେ ଏଣେ ତେଣେ ବୁଲୁଛି; ମୋର ସ୍ତ୍ରୀକୁ ମଧ୍ୟ ସେ ହରିନେଇଅଛି । ୧୭ । ହେ ରାଘବ ! ମୋର ଭାଇ ବାଲୀ ମୋତେ ତଡ଼ିଦେଇଛି ଏବଂ ସବୁବେଳେ ମୋ ସହିତ ଶତ୍ରୁତା କରୁଛି । ମୁଁ ଶଙ୍କିତ ଏବଂ ଭୟଭୀତ ହୋଇ ବ୍ୟାକୁଳମନରେ ବନରେ ବାସ-କରୁଛି । ୧୮ । ଆପଣ ସବୁ ଲୋକଙ୍କୁ ଅଭୟ ଦିଅନ୍ତି । ମୁଁ ବାଲୀ ଭୟରେ ବ୍ୟସ୍ତବ୍ୟସ୍ତ ହୋଇଛି; ସୁତରାଂ ମୁଁ ବଡ଼ ନିଃସହାୟ ଏବଂ ମୋପ୍ରତି ଆପଣଙ୍କର କୃପା କରିବା ଉଚିତ" । ୧୯ । ସୁଗ୍ରୀବ ଏପରି କହିବା ପରେ ତେଜସ୍ୱୀ ଧର୍ମଜ୍ଞ ଧର୍ମପ୍ରିୟ ରାମଚନ୍ଦ୍ର ହସି ହସି ଉତ୍ତରଦେଲେ । ୨୦ । "ଉପକାର କରିବା ମିତ୍ରର ଏବଂ

ଉପକାରଫଲଂ ମିତ୍ରମପକାରୋଽରି ଲକ୍ଷଣମ୍ ।
ଅଦ୍ୟୈବ ତଂ ବଧିଷ୍ୟାମି ତବ ଭାର୍ଯାପହାରିଣମ୍ । ୨୧ ।
ଇମେ ହି ମେ ମହାଭାଗ ପତ୍ରିଣସ୍ତିଗ୍ମତେଜସଃ ।
କାର୍ତ୍ତିକେୟବନୋଦ୍ଭୂତାଃ ଶରା ହେମବିଭୂଷିତାଃ । ୨୨ ।
କଙ୍କପତ୍ରପରିଚ୍ଛନ୍ନା ମହେନ୍ଦ୍ରାଶନିସଂନିଭାଃ ।
ସୁପର୍ବାଣଃ ସୁତୀକ୍ଷ୍ଣାଗ୍ରାଃ ସରୋଷା ଭୁଜଗା ଇବ । ୨୩ ।
ବାଲିସଂଜ୍ଞମମିତ୍ରଂ ତେ ଭ୍ରାତରଂ କୃତକିଲ୍ବିଷମ୍ ।
ଶରୈର୍ବିନିହତଂ ପଶ୍ୟ ବିକୀର୍ଣମିବ ପର୍ବତମ୍ । ୨୪ ।
ରାଘବସ୍ୟ ବଚଃ ଶ୍ରୁତ୍ୱା ସୁଗ୍ରୀବୋ ବାହିନୀପତିଃ ।
ପ୍ରହର୍ଷମତୁଲଂ ଲେଭେ ସାଧୁ ସାଧ୍ୱିତି ଚାବ୍ରବୀତ୍ । ୨୫ ।
ରାମ ଶୋକାଭିଭୂତୋଽହଂ ଶୋକାର୍ତ୍ତାନାଂ ଭବାନ୍ ଗତିଃ ।
ବୟସ୍ୟ ଇତିକୃତ୍ୱା ହି ତ୍ୱଯ୍ୟହଂ ପରିଦେବୟେ । ୨୬ ।
ତ୍ୱଂ ହି ପାଣିପ୍ରଦାନେନ ବୟସ୍ୟୋଽଗ୍ନିସାକ୍ଷିକମ୍ ।
କୃତଃ ପ୍ରାଣୈର୍ବହୁମତଃ ସତ୍ୟେନ ଚ ଶପାମ୍ୟହମ୍ । ୨୭।
ବୟସ୍ୟ ଇତିକୃତ୍ୱା ଚ ବିସ୍ରବ୍ଧଃ ପ୍ରବଦାମ୍ୟହମ୍ ।
ଦୁଃଖମନ୍ତର୍ଗତଂ ତନ୍ମେ ମନୋ ହରତି ନିତ୍ୟଶଃ ।୨୮ ।

---

ଅପକାର କରିବା ଶତ୍ରୁର ଲକ୍ଷଣ ଅଟେ । ତୁମ୍ଭର ଭାର୍ଯ୍ୟାପହରଣକାରୀକୁ ମୁଁ ଆଜହିଁ ମାରି ପକାଇବି । ୨୧ । ହେ ମହାଭାଗ ! ମୋର ଏହି ସୁବର୍ଣ୍ଣଭୂଷିତ ତୀକ୍ଷ୍ଣ ଶରଗୁଡ଼ିକ କାର୍ତ୍ତିକେୟ ବନରେ ଉତ୍ପନ୍ନ ହୋଇଥିଲା । ୨୨ । ଏଗୁଡ଼ିକ କଙ୍କପତ୍ରଯୁକ୍ତ, ତୀକ୍ଷ୍ଣ, ସିଧା, ଇନ୍ଦ୍ରଙ୍କ ବଜ୍ର ଏବଂ କ୍ରୁଦ୍ଧ ସର୍ପସଦୃଶ ଅଟନ୍ତି । ୨୩ । ତୁମ୍ଭର ପାପାତ୍ମା ଭାଇ ବାଲୀ ନାମକ ଶତ୍ରୁ ମୋର ଶରଦ୍ୱାରା ହତ ହୋଇ ଭଗ୍ନ ପର୍ବତପରି ଖଣ୍ଡ ଖଣ୍ଡ ହୋଇଯିବ ଦେଖ" ।୨୪ । ରାମଚନ୍ଦ୍ରଙ୍କ କଥା ଶୁଣି ସେନାପତି ସୁଗ୍ରୀବ ବହୁତ ଖୁସି ହେଲେ ଏବଂ 'ସାଧୁ' 'ସାଧୁ' କହିଲେ । ୨୫ । "ରାମ ! ମୁଁ ବଡ଼ ଶୋକପୀଡ଼ିତ । ଆପଣ ଶୋକାର୍ତ୍ତ ଲୋକର ଗତି ଅଟନ୍ତି । ଆପଣ ମୋର ମିତ୍ର, ଏହା ଜାଣି ମୁଁ ଆପଣଙ୍କ ଆଗେ ମୋର ଦୁଃଖ ଜଣାଉଛି । ୨୬ । ଆପଣ ମୋର ହାତ ଧରି ଅଗ୍ନିକୁ ସାକ୍ଷୀ ରଖି ମୋ ସହିତ ମିତ୍ରତା ସ୍ଥାପନ କରିଛନ୍ତି । ସୁତରାଂ ଆପଣ ମୋର ପ୍ରାଣଠାରୁ ବଳି ପ୍ରିୟ, ଏ କଥା ମୁଁ ଶପଥ କରି କହୁଛି । ୨୭ । ଆପଣ ମୋର ମିତ୍ର ଅଟନ୍ତି,ଏଥିଲାଗି ଯେଉଁ ଭିତରର ଦୁଃଖ ମୋ ମନକୁ ସବୁବେଳେ ବ୍ୟାକୁଳ କରୁଛି ତାହା ମୁଁ ବିଶ୍ୱାସରେ ଆପଣଙ୍କ ଆଗେ ପ୍ରକାଶ କରୁଛି" । ୨୮ । ଏତିକି କହି

ଏତାବଦୁକ୍ତ୍ୱା ବଚନଂ ବାଷ୍ପଦୂଷିତଲୋଚନଃ ।
ବାଷ୍ପଦୂଷିତୟା ବାଚା ନୋଚ୍ଚୈଃ ଶକ୍ନୋତି ଭାଷିତୁମ୍ । ୨୯ ।
ବାଷ୍ପବେଗଂ ତୁ ସହସା ନଦୀବେଗମିବାଗତମ୍ ।
ଧାରୟାମାସ ଧୈର୍ଯ୍ୟେଣ ସୁଗ୍ରୀବ ରାମସଂନିଧୌ । ୩୦ ।
ସ ନିଗୃହ୍ୟ ତୁ ତଂ ବାଷ୍ପଂ ପ୍ରମୃଜ୍ୟ ନୟନେ ଶୁଭେ ।
ବିନିଃଶ୍ୱସ୍ୟ ଚ ତେଜସ୍ୱୀ ରାଘବଂ ପୁନରୁଚବାନ୍ । ୩୧ ।
ପୁରାହଂ ବାଲିନା ରାମ ରାଜ୍ୟାତ୍ ସ୍ୱାଦବରୋପିତଃ ।
ପରୁଷାଣି ଚ ସଂଶ୍ରାବ୍ୟ ନିର୍ଧୂତୋଽସ୍ମି ବଲୀୟସା । ୩୨ ।
ହୃତା ଭାର୍ଯ୍ୟା ଚ ମେ ତେନ ପ୍ରାଣେଭ୍ୟୋଽପି ଗରୀୟସୀ ।
ସୁହୃଦଶ୍ଚ ମଦୀୟା ଯେ ସଂଯତା ବନ୍ଧନେଷୁ ତେ । ୩୩ ।
ଯତ୍ନବାଂଶ୍ଚ ସ ଦୁଷ୍ଟାତ୍ମା ମଦ୍‌ବିନାଶାୟ ରାଘବ ।
ବହୁଶସ୍ତତ୍ପ୍ରଯୁକ୍ତାଶ୍ଚ ବାନରା ନିହତା ମୟା । ୩୪ ।
ଶଙ୍କୟା ତ୍ୱେତୟାହଂ ଚ ଦୃଷ୍ଟ୍ୱା ତ୍ୱାମପି ରାଘବ ।
ନୋପସର୍ପାମ୍ୟହଂ ଭୀତୋ ଭୟେ ସର୍ବେ ହି ବିଭ୍ୟତି । ୩୫ ।

---

ସୁଗ୍ରୀବଙ୍କ ଆଖି ଲୁହରେ ପୂର୍ଣ୍ଣ ହୋଇଗଲା । ଲୋତକଗଦ୍‌ଗଦ ହୋଇ ସେ ଆଉ ପାଟିକରି କଥା କହିପାରିଲେ ନାହିଁ । ୨୯ । ସହସା ନଦୀର ବେଗସଦୃଶ ବୋହି ଆସୁଥିବା ଲୋତକର ବେଗକୁ ସୁଗ୍ରୀବ ବଡ଼ ଧୈର୍ଯ୍ୟର ସହିତ ରାମଚନ୍ଦ୍ରଙ୍କ ନିକଟରେ ରୋଧ କରିଥିଲେ । ୩୦ । ସେ ତେଜସ୍ୱୀ ଲୁହକୁ ବନ୍ଦ କରି ଆଖି ଦୁଇଟି ପୋଛି ପକାଇଲେ ଏବଂ ଦୀର୍ଘ ନିଶ୍ୱାସ ପକାଇ ରାମଚନ୍ଦ୍ରଙ୍କୁ ପୁଣି କହିଲେ । ୩୧ । "ହେ ରାମ ! ବାଲୀ ବିଶେଷ ବଳବାନ୍ ଥିବାରୁ ମୋତେ ମୋ ନିଜ ରାଜ୍ୟରୁ ବିଚ୍ୟୁତ କରିଦେଲା ଏବଂ କଠୋର କଥାରେ ଭର୍ତ୍ସନା କରି ତଡ଼ିଦେଲା । ୩୨ । ମୋର ପ୍ରାଣରୁ ବଳି ପ୍ରିୟତମା ଭାର୍ଯ୍ୟାକୁ ସେ ହରଣ କଲା । ଯେଉଁମାନେ ମୋର ନିଜର ବନ୍ଧୁ ଥିଲେ ସେମାନଙ୍କୁ ସେ ବନ୍ଦୀକରି ରଖିଛି । ୩୩ । ହେ ରାଘବ ! ସେ ଦୁରାତ୍ମା ସବୁବେଳେ ମୋତେ ମାରିପକାଇବା ପାଇଁ ଯତ୍ନ କରୁଅଛି । ତାଦ୍ୱାରା ନିଯୁକ୍ତ ହୋଇଥିବା ଏପରି ଅନେକ ବାନରଙ୍କୁ ମୁଁ ମାରିଦେଇଛି । ୩୪ । ଏହି ଶଙ୍କାରେ ମୁଁ ତୁମକୁ ଦେଖି ତୁମ ନିକଟକୁ ପ୍ରଥମେ ଯାଇ ନ ଥିଲି । କାରଣ ମନରେ ଭୟ ଜାତ ହେଲେ ମନୁଷ୍ୟକୁ ପ୍ରତ୍ୟେକ କଥାରେ ଡରମାଡ଼େ । ୩୫ । ହନୁମାନ୍ ପ୍ରଭୃତି ଏହି

କେବଲଂ ହି ସହାୟା ମେ ହନୁମତ୍‌ପ୍ରମୁଖାସ୍ତ୍ୱିମେ ।
ଅତୋଽହଂ ଧାରୟାମ୍ୟଦ୍ୟ ପ୍ରାଣାନ୍ କୃଚ୍ଛ୍ରଗତୋଽପି ସନ୍ ।୩୬।
ଏତେ ହି କପୟଃ ସ୍ନିଗ୍ଧା ମାଂ ରକ୍ଷନ୍ତି ସମନ୍ତତଃ ।
ସହ ଗଚ୍ଛନ୍ତି ଗନ୍ତବ୍ୟେ ନିତ୍ୟଂ ତିଷ୍ଠନ୍ତି ଚସ୍ଥିତେ । ୩୭ ।
ସଂକ୍ଷେପସ୍ତ୍ୱେଷ ମେ ରାମ କିମୁକ୍ତ୍ୱା ବିସ୍ତରଂ ହି ତେ ।
ସ ମେ ଜ୍ୟେଷ୍ଠୋ ରିପୁର୍ଭ୍ରାତା ବାଲୀବିଶ୍ରୁତପୌରୁଷଃ । ୩୮ ।
ତଦ୍‌ବିନାଶାଦ୍ଧି ମେ ଦୁଃଖଂ ପ୍ରମୃଷ୍ଟଂ ସ୍ୟାଦନନ୍ତରମ୍ ।
ସୁଖଂ ମେ ଜୀବିତଂ ଚୈବ ତଦ୍‌ବିନାଶନିବନ୍ଧନମ୍ । ୩୯ ।
ଏଷ ମେ ରାମ ଶୋକାନ୍ତଃ ଶୋକାର୍ତ୍ତେନ ନିବେଦିତଃ ।
ଦୁଃଖିତଃ ସୁଖିତୋ ବାପି ସଖ୍ୟୁର୍ନିତ୍ୟଂ ସଖା ଗତିଃ । ୪୦ ।
ଶ୍ରୁତ୍ୱୈତଚ୍ଚ ବଚୋ ରାମଃ ସୁଗ୍ରୀବମିଦମବ୍ରବୀତ୍ ।
କିଂ ନିମିତ୍ତମଭୂଦ୍ ବୈରଂ ଶ୍ରୋତୁମିଚ୍ଛାମି ତତ୍ତ୍ୱତଃ ।୪୧।
ସୁଖଂ ହି କାରଣଂ ଶ୍ରୁତ୍ୱା ବୈରସ୍ୟ ତବ ବାନର ।
ଆନନ୍ତର୍ଯଂ ବିଧାସ୍ୟାମି ସଂପ୍ରଧାର୍ଯ ବଲାବଲମ୍ । ୪୨ ।

---

କେତେଜଣ କେବଳ ମୋର ସହାୟ ହୋଇରହିଥିବାରୁ ଏତେ ବିପଦରେ ପଡ଼ି ମଧ୍ୟ ମୁଁ ପ୍ରାଣ ଧରି ରହିଛି ।୩୬। ଏହି ବାନରମାନେ ମୋତେ ବିଶେଷ ସ୍ନେହ କରନ୍ତି ଏବଂ ମୋତେ ସବୁପ୍ରକାରେ ରକ୍ଷା କରୁଛନ୍ତି । ମୋତେ କୌଣସି ସ୍ଥାନକୁ ଯିବାକୁ ହେଲେ ଏମାନେ ମୋ ସଙ୍ଗେ ସଙ୍ଗେ ଯାଉଛନ୍ତି ଏବଂ ମୁଁ ଯେଉଁଠି ରହୁଛି ଏମାନେ ସେହି ସ୍ଥାନରେ ସର୍ବଦା ରହୁଛନ୍ତି । ୩୭ । ହେ ରାମ ! ସଂକ୍ଷେପରେ ମୁଁ ଆପଣଙ୍କୁ ଏତିକି କହିଲି; ଆଉ ବେଶି ବିସ୍ତାର କହିବାରେ ଲାଭ କଣ ? ପ୍ରସିଦ୍ଧ ପରାକ୍ରମୀ ମୋର ସେହି ବଡ଼ ଭାଇ ବାଲୀ ମୋର ଶତ୍ରୁ ଅଟେ ।୩୮ । କେବଳ ତାହାର ବିନାଶ ପରେ ମୋର ଦୁଃଖ ଦୂର ହୋଇପାରେ । ମୋର ଜୀବନ ଏବଂ ମୋର ସୁଖ ତାହାର ବିନାଶ ଉପରେ ନିର୍ଭର କରେ । ୩୯ । ହେ ରାମ ! ଦୁଃଖୀ ହେଉ ବା ସୁଖୀ ହେଉ ମିତ୍ରହିଁ ମିତ୍ରର ଗତି ଅଟେ । ସେଥିପାଇଁ ମୁଁ ଦୁଃଖପୀଡ଼ିତ ହୋଇ ମୋର ଶୋକ ଦୂର କରିବାର ଉପାୟ ଆପଣଙ୍କୁ କହିଦେଲି" । ୪୦ । ଏ କଥା ଶୁଣି ରାମ ସୁଗ୍ରୀବଙ୍କୁ କହିଲେ, କାହିଁକି ତୁମ୍ଭର ଏ ଶତ୍ରୁତା ହେଲା ତାହାର ପ୍ରକୃତ ତଥ୍ୟ ମୁଁ ଶୁଣିବାକୁ ଚାହେଁ । ୪୧ । ତୁମ୍ଭର ବୈରତାର କାରଣ ଶୁଣିସାରି ଏବଂ ତୁମ ମଧ୍ୟରେ କାହାର ବଳ ବେଶି ଏବଂ କାହାର ବଳ କମ୍, ଏ କଥା ସ୍ଥିର କରିସାରି ମୁଁ ତୁମକୁ ସୁଖୀ

**ବଲବାନ୍ ହି ମମାମର୍ଷଃ ଶ୍ରୁତ୍ୱା ତ୍ୱାମବମାନିତମ୍ ।**
**ବର୍ଧତେ ହୃଦୟୋତ୍କମ୍ପୀ ପ୍ରାବୃଡ୍‌ବେଗ ଇବାମ୍ଭସଃ । ୪୩ ।**
**ହୃଷ୍ଟଃ କଥୟ ବିସ୍ରବ୍ଧୋ ଯାବଦାରୋପ୍ୟତେ ଧନୁଃ ।**
**ସୃଷ୍ଟଶ୍ଚ ହି ମୟା ବାଣୋ ନିରସ୍ତଶ୍ଚ ରିପୁସ୍ତବ । ୪୪ ।**
**ଏବମୁକ୍ତସ୍ତୁ ସୁଗ୍ରୀବଃ କାକୁତ୍ସ୍ଥେନ ମହାତ୍ମନା ।**
**ପ୍ରହର୍ଷମତୁଲଂ ଲେଭେ ଚତୁର୍ଭିଃ ସହ ବାନରୈଃ । ୪୫ ।**
**ତତଃ ପ୍ରହୃଷ୍ଟବଦନଃ ସୁଗ୍ରୀବୋ ଲକ୍ଷ୍ମଣାଗ୍ରଜେ ।**
**ବୈରସ୍ୟ କାରଣଂ ତତ୍ତ୍ୱମାଖ୍ୟାତୁମୁପଚକ୍ରମେ । ୪୬ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ବାଲିବଧପ୍ରତିଜ୍ଞା
ନାମ ଅଷ୍ଟମଃ ସର୍ଗଃ

---

କରାଇବି । ୪୨ । ତୁମର ଅବମାନନା କଥା ଶୁଣି ବର୍ଷାକାଳରେ ଜଳର ବେଗପରି ମୋର ହୃଦୟ କମ୍ପନକାରୀ କ୍ରୋଧ ବିଶେଷ ବଢ଼ି ଯାଉଅଛି ।୪୩। ମୁଁ ଧନୁରେ ଗୁଣ ଚଢ଼ାଉ ଚଢ଼ାଉ ତୁମେ ପ୍ରସନ୍ନତାପୂର୍ବକ ବିଶ୍ୱାସରେ ସବୁ କଥା ମୋତେ କହ । ମୁଁ ବାଣ ଛାଡ଼ିବାମାତ୍ରେ ତୁମର ଶତ୍ରୁ ବିନଷ୍ଟ ହେଲା ବୋଲି ଜାଣ'' । ୪୪ । ମହାତ୍ମା ରାମଚନ୍ଦ୍ର ଏପରି କହିବାପରେ ସୁଗ୍ରୀବ ଅନ୍ୟ ଚାରି ବାନରଙ୍କ ସହିତ ବିଶେଷ ଆନନ୍ଦିତ ହେଲେ । ୪୫ । ଅନନ୍ତର ସୁଗ୍ରୀବ ପ୍ରସନ୍ନ ହୋଇ ରାମଚନ୍ଦ୍ରଙ୍କୁ ବୈରିତାର ଅସଲ କାରଣ ଠିକ୍ ଠିକ୍ ଭାବରେ କହିବାକୁ ଆରମ୍ଭ କଲେ । ୪୬ ।

---

# ନବମଃ ସର୍ଗଃ

## ବୈରବୃତ୍ତାନ୍ତାନୁକ୍ରମଃ

ବାଲୀ ନାମ ମମ ଭ୍ରାତା ଜ୍ୟେଷ୍ଠଃ ଶତ୍ରୁନିଷୂଦନ ।
ପିତୁର୍ବହୁମତୋ ନିତ୍ୟଂ ମମ ଚାପି ତଥା ପୁରା । ୧ ।
ପିତର୍ଯ୍ୟୁପରତେ ତସ୍ମିନ୍ ଜ୍ୟେଷ୍ଠୋଽୟମିତି ମନ୍ତ୍ରିଭିଃ ।
କପୀନାମୀଶ୍ୱରୋ ରାଜ୍ୟେ କୃତଃ ପରମସଂମତଃ । ୨ ।
ରାଜ୍ୟଂ ପ୍ରଶାସତସ୍ତସ୍ୟ ପିତୃପୈତାମହଂ ମହତ୍ ।
ଅହଂ ସର୍ବେଷୁ କାଲେଷୁ ପ୍ରଣତଃ ପ୍ରେଷ୍ୟବତ୍ ସ୍ଥିତଃ । ୩ ।
ମାୟାବୀ ନାମ ତେଜସ୍ୱୀ ପୂର୍ବଜୋ ଦୁନ୍ଦୁଭେଃ ସୁତଃ ।
ତେନ ତସ୍ୟ ମହଦ୍‌ବୈରଂ ବାଲିନଃ ସ୍ତ୍ରୀକୃତଂ ପୁରା । ୪ ।
ସ ତୁ ସୁପ୍ତେ ଜନେ ରାତ୍ରୌ କିଷ୍କିନ୍ଧାଦ୍ୱାରମାଗତଃ ।
ନର୍ଦତି ସ୍ମ ସୁସଂରବ୍ଧୋ ବାଲିନଂ ଚାହ୍ୱୟଦ୍ରଣେ । ୫ ।
ପ୍ରସୁପ୍ତସ୍ତୁ ମମ ଭ୍ରାତା ନର୍ଦତୋ ଭୈରବସ୍ୱନମ୍ ।
ଶ୍ରୁତ୍ୱା ନ ମମୃଷେ ବାଲୀ ନିଷ୍ପପାତ ଜବାତ୍ତଦା । ୬ ।

---

# ୯ମ ସର୍ଗ

## (ବାଳୀ-ସୁଗ୍ରୀବଙ୍କ ବିରୋଧବୃତ୍ତାନ୍ତ)

"ହେ ଶତ୍ରୁନାଶକାରି ମୋର ବଡ଼ ଭାଇଙ୍କର ନାମ ବାଳୀ । ପୂର୍ବେ ସେ ମୋର ଏବଂ ମୋ ପିତାଙ୍କର ବିଶେଷ ପ୍ରିୟ ଥିଲେ ।୧। ପିତାଙ୍କ ମୃତ୍ୟୁ ପରେ 'ସେ ବଡ଼' ଏଥିଲାଗି ସର୍ବସମ୍ମତିକ୍ରମେ ମନ୍ତ୍ରୀମାନେ ବାନରମାନଙ୍କ ରାଜାରୂପେ ତାଙ୍କୁ ରାଜ୍ୟରେ ଅଭିଷିକ୍ତ କଲେ । ୨ । ପିତୃପିତାମହଙ୍କର ସେହି ବିଶାଳ ରାଜ୍ୟକୁ ବାଳୀ ଶାସନ କରିବାକୁ ଲାଗିଲେ ଏବଂ ମୁଁ ସବୁବେଳେ ଅନୁଗତ ଭୃତ୍ୟସଦୃଶ ତାଙ୍କ ପାଖେ ପାଖେ ରହିଲି । ୩ । ଦୁନ୍ଦୁଭିର ବଡ଼ ପୁଅ ମାୟାବୀ ନାମରେ ଏକ ତେଜସ୍ୱୀ ରାକ୍ଷସ ଥିଲା । ସ୍ତ୍ରୀସମ୍ପର୍କ ନେଇ ବାଳୀ ସହିତ ପୂର୍ବରୁ ତାହାର ବିଶେଷ ଶତ୍ରୁତା ଥିଲା ।୪। ରାତିରେ ସମସ୍ତେ ଶୋଇପଡ଼ିବା ପରେ ସେ କିଷ୍କିନ୍ଧାର ଦ୍ୱାରଦେଶରେ ଆସି ପହଞ୍ଚିଲା ଏବଂ କ୍ରୋଧପୂର୍ବକ ଗର୍ଜନ କରି ବାଳୀଙ୍କୁ ଯୁଦ୍ଧ କରିବାକୁ ଡାକିଲା । ୫ । ମୋର ଭାଇ ଶୋଇଥିଲେ । ସେ ଏ ଭୈରବ ଗର୍ଜନ ଶୁଣି ସହି ନ ପାରି ତତ୍‌କ୍ଷଣାତ୍ ତାକୁ ଆକ୍ରମଣ କରିବାକୁ ବାହାରିପଡ଼ିଲେ । ୬ । କ୍ରୋଧପୂର୍ବକ ସେ ରାକ୍ଷସଶ୍ରେଷ୍ଠକୁ

ସ ତୁ ବୈ ନିଃସୃତଃ କ୍ରୋଧାତ୍ତଂ ହନ୍ତୁମସୁରୋତ୍ତମମ୍ ।
ବାର୍ଯମାଣସ୍ତତଃ ସ୍ତ୍ରୀଭିର୍ମୟା ଚ ପ୍ରଣତାତ୍ମନା । ୭ ।
ସ ତୁ ନିର୍ଧୂୟ ତାଃ ସର୍ବା ନିର୍ଜଗାମ ମହାବଲଃ ।
ତତୋଽହମପି ସୌହାର୍ଦାନ୍ନିଃସୃତୋ ବାଲିନା ସହ । ୮ ।
ସ ତୁ ମେ ଭ୍ରାତରଂ ଦୃଷ୍ଟ୍ୱା ମାଂ ଚ ଦୂରାଦବସ୍ଥିତମ୍ ।
ଅସୁରୋ ଜାତସଂତ୍ରାସଃ ପ୍ରଦୁଦ୍ରାବ ତଦା ଭୃଶମ୍ । ୯ ।
ତସ୍ମିନ୍ ଦ୍ରବତି ସଂତ୍ରସ୍ତେ ହ୍ୟାବାଂ ଦ୍ରୁତତରଂ ଗତୌ ।
ପ୍ରକାଶୋଽପି କୃତୋ ମାର୍ଗଶ୍ଚନ୍ଦ୍ରେଣୋଦ୍‌ଗଚ୍ଛତା ତଦା । ୧୦ ।
ସ ତୃଣୈରାବୃତଂ ଦୁର୍ଗଂ ଧରଣ୍ୟା ବିବରଂ ମହତ୍ ।
ପ୍ରବିବେଶାସୁରୋ ବେଗାଦାବାମାସାଦ୍ୟ ବିଷ୍ଠିତୌ । ୧୧ ।
ତଂ ପ୍ରବିଷ୍ଟଂ ରିପୁଂ ଦୃଷ୍ଟ୍ୱା ବିଲଂ ରୋଷବଶଂ ଗତଃ ।
ମାମୁବାଚ ତତୋ ବାଲୀ ବଚନଂ କ୍ଷୁଭିତେନ୍ଦ୍ରିୟଃ । ୧୨ ।
ଇହ ତିଷ୍ଠାଦ୍ୟ ସୁଗ୍ରୀବ ବିଲଦ୍ୱାରି ସମାହିତଃ ।
ଯାବଦତ୍ର ପ୍ରବିଶ୍ୟାହଂ ନିହନ୍ମି ସମରେ ରିପୁମ୍ । ୧୩।

---

ମାରିବା ପାଇଁ ବାଳୀ ଘରୁ ବାହାରି ହେଲେ । ତାଙ୍କ ସ୍ତ୍ରୀମାନେ ଏବଂ ମୁଁ ମଧ୍ୟ ତାଙ୍କୁ ମନା କରୁଥିଲୁଁ ।୭। ସେ ମହାବଳୀ ସ୍ତ୍ରୀମାନଙ୍କୁ ଆଡ଼େଇ ଦେଇ ବାହାରିଗଲେ । ସ୍ନେହ-ବଶରୁ ମୁଁ ମଧ୍ୟ ବାଳୀଙ୍କ ସହିତ ବାହାରିପଡ଼ିଲି ।୮। ମୋର ଭାଇଙ୍କୁ ଦେଖି ଏବଂ ମୁଁ ଦୂରରେ ଥିବାର ଦେଖି ସେ ଅସୁରର ମନରେ ଭୟ ହୋଇଗଲା ଏବଂ ସେ ଖୁବ୍ ବେଗରେ ପଳାଇଗଲା । ୯ । ତାକୁ ଭୟରେ ପଳାଇଯିବାର ଦେଖି ଆମେ ଦୁଇ ଭାଇ ଖୁବ୍ ବେଗରେ ତା ପିଚ୍ଛା ଧରିଲୁଁ । ଚନ୍ଦ୍ର ଉଠିବାହେତୁରୁ ସେତେବେଳେ ରାସ୍ତା ବେଶ୍ ପରିଷ୍କାର ହୋଇ ଯାଇଥିଲା । ୧୦ । ଭୂଇଁରେ ଗୋଟିଏ ବଡ଼ ବିବର ଥିଲା । ତାହାର ମୁହଁ ଘାସରେ ଘୋଡ଼ାଇ ହୋଇପଡ଼ିଥିଲା । ସେ ସେହି ବିବର ପାଖରେ ପହଞ୍ଚି ସେଥିଭିତରକୁ ପଶିଗଲା ଏବଂ ଆମେ ଦୁହେଁ ସେହିଠାରେ ରହିଗଲୁଁ । ୧୧ । ଶତ୍ରୁ ବିଲ ଭିତରେ ପଶିଯିବାର ଦେଖି ବାଳୀ ବଡ଼ କ୍ରୁଦ୍ଧ ହେଲେ ଏବଂ ତାଙ୍କର ଇନ୍ଦ୍ରିୟମାନ କ୍ଷୁଭିତ ହୋଇଗଲା । ସେ ତା'ପରେ ମୋତେ କହିଲେ ।୧୨। "ସୁଗ୍ରୀବ ! ଏହି ବିଲଦ୍ୱାରରେ ତୁ ସାବଧାନ ହୋଇ ରହ । ମୁଁ ଏହି ବିଲଭିତରେ ପଶି ଯୁଦ୍ଧକରି ଶତ୍ରୁକୁ ମାରିବି" । ୧୩ । ମୁଁ ଏ କଥା ଶୁଣି

ମୟା ତ୍ୱେତଦ୍ବଚଃ ଶ୍ରୁତ୍ୱା ଯାଚତଃ ସ ପରଂତପଃ ।
ଶାପୟିତ୍ୱା ସ ମାଂ ପଦ୍ଭ୍ୟାଂ ପ୍ରବିବେଶ ବିଲଂ ତତଃ ।୧୪।
ତସ୍ୟ ପ୍ରବିଷ୍ଟସ୍ୟ ବିଲଂ ସାଗ୍ରଃ ସଂବତ୍ସରୋ ଗତଃ ।
ସ୍ଥିତସ୍ୟ ଚ ବିଲଦ୍ୱାରି ସ କାଲୋ ବ୍ୟତ୍ୟବର୍ତ୍ତତ । ୧୫ ।
ଅହଂ ତୁ ନଷ୍ଟଂ ତଂ ଜ୍ଞାତ୍ୱା ସ୍ନେହାଦାଗତସଂଭ୍ରମଃ ।
ଭ୍ରାତରଂ ନ ପ୍ରପଶ୍ୟାମି ପାପାଶଂକି ଚ ମେ ମନଃ ।୧୬ ।
ଅଥ ଦୀର୍ଘସ୍ୟ କାଲସ୍ୟ ବିଲାତ୍ତସ୍ମାଦ୍ ବିନିଃସୃତମ୍ ।
ସଫେନଂ ରୁଧିରଂ ଦୃଷ୍ଟ୍ୱା ତତୋଽହଂ ଭୃଶଦୁଃଖିତଃ । ୧୭ ।
ନର୍ଦତାମସୁରାଣାଂ ଚ ଧ୍ୱନିର୍ମେ ଶ୍ରୋତ୍ରମାଗତଃ ।
ନ ରତସ୍ୟ ଚ ସଂଗ୍ରାମେ କ୍ରୋଶତୋଽପି ସ୍ୱନୋ ଗୁରୋଃ ।୧୮।
ଅହଂ ତ୍ୱବଗତୋ ବୁଦ୍ଧ୍ୟା ଚିହ୍ନୈସ୍ତୈର୍ଭ୍ରାତରଂ ହତମ୍ ।
ପିଧାୟ ଚ ବିଲଦ୍ୱାରଂ ଶିଳୟା ଗିରିମାତ୍ରୟା । ୧୯ ।
ଶୋକାର୍ତ୍ତଶ୍ଚୋଦକଂ କୃତ୍ୱା କିଷ୍କିନ୍ଧାମାଗତଃ ସଖେ ।
ଗୂହମାନସ୍ୟ ମେ ତତ୍ତ୍ୱଂ ଯତ୍ନତୋ ମନ୍ତ୍ରିଭିଃ ଶ୍ରୁତମ୍ । ୨୦ ।

---

ସେ ଶତ୍ରୁହନ୍ତା (ବାଳୀ)ଙ୍କୁ (ସାଙ୍ଗରେ ଯିବାକୁ) ପ୍ରାର୍ଥନା କଲି, ମାତ୍ର ସେ ମୋତେ ପାଦ ଛୁଆଇଁ ଶପଥ କରାଇ ବିଲଭିତରେ ପଶିଗଲେ ।୧୪। ତାଙ୍କର ବିଲଭିତରକୁ ପଶିବାର ବର୍ଷକରୁ ବେଶି ହୋଇଗଲା । ମୁଁ ଏ ବର୍ଷକକାଳ ସେହି ବିଲଦ୍ୱାରରେ ରହି କଟାଇଲି । ୧୫ । ସେ ମରିଗଲେ ବୋଲି ମୁଁ ବିଚାରିଲି । ସ୍ନେହବଶରୁ ମୋ ମନ ବଡ଼ ବ୍ୟସ୍ତ ହେଲା । ଭାଇଙ୍କୁ ନ ଦେଖି ମୋ ମନମଧ୍ୟରେ ଅନିଷ୍ଟ ଶଙ୍କା ଜାତ ହେଲା । ୧୬ । ଅନନ୍ତର ବହୁକାଳଉତ୍ତାରୁ ସେ ବିଲଭିତରୁ ଫେଣଯୁକ୍ତ ରକ୍ତଧାର ବାହାରିଲା । ତାହା ଦେଖି ମୁଁ ଅତିଶୟ ଦୁଃଖିତ ହେଲି । ୧୭ । ଅସୁରମାନଙ୍କର ଗର୍ଜନ ଧ୍ୱନି ମଧ୍ୟ ମୋତେ ଶୁଣାଗଲା ଅଥଚ ମୋ-ବଡ଼ଭାଇ ଯୁଦ୍ଧରେ ବ୍ୟାପୃତ ଥିବାର କୌଣସି ଚିତ୍କାର ଶବ୍ଦ ଶୁଣାଗଲା ନାହିଁ ।୧୮। ଏହିସବୁ ଲକ୍ଷଣ ଦେଖି ମୁଁ ମନେ ମନେ ସ୍ଥିର କରିନେଲି ଯେ ମୋ ଭାଇ ମରିଗଲେଣି । ସୁତରାଂ ମୁଁ ପର୍ବତପ୍ରମାଣ ଏକ ପଥର ଦ୍ୱାରା ସେ ବିଲଦ୍ୱାରକୁ ବନ୍ଦ କରିଦେଲି ।୧୯। ହେ ମିତ୍ର ! ମୁଁ ଦୁଃଖରେ ବ୍ୟଥିତ ହୋଇ ଭାଇଙ୍କୁ ଜଳତର୍ପଣ କରି କିଷ୍କିନ୍ଧାକୁ ଫେରି ଆସିଲି । ପ୍ରକୃତ ତଥ୍ୟ କଥା ମୁଁ ଲୁଚାଇ ରଖିଲେ ମଧ୍ୟ ମନ୍ତ୍ରୀମାନେ ତାହା

ତତୋଽହଂ ତୈଃ ସମାଗମ୍ୟ ସମେତୈରଭିଷେଚିତଃ ।
ରାଜ୍ୟଂ ପ୍ରଶାସତସ୍ତସ୍ୟ ନ୍ୟାୟତୋ ମମ ରାଘବ । ୨୧ ।
ଆଜଗାମ ରିପୁଂ ହତ୍ୱା ଦାନବଂ ସ ତୁ ବାନରଃ ।
ଅଭିଷିକ୍ତଂ ତୁ ମାଂ ଦୃଷ୍ଟ୍ୱା କ୍ରୋଧାତ୍ସଂରକ୍ତଲୋଚନଃ । ୨୨ ।
ମଦୀୟାନ୍ମନ୍ତ୍ରିଣୋ ବଦ୍ଧ୍ୱା ପରୁଷଂ ବାକ୍ୟମବ୍ରବୀତ୍ ।
ନିଗ୍ରହେ ଚ ସମର୍ଥସ୍ୟ ତଂ ପାପଂ ପ୍ରତି ରାଘବ । ୨୩ ।
ନ ପ୍ରାବର୍ତ୍ତତ ମେ ବୁଦ୍ଧିର୍ଭ୍ରାତୃଗୌରବଯନ୍ତ୍ରିତା ।
ହତ୍ୱା ଶତ୍ରୁଂ ସ ମେ ଭ୍ରାତା ପ୍ରବିବେଶ ପୁରଂ ତଦା ।୨୪।
ମାନୟଂସ୍ତଂ ମହାତ୍ମାନଂ ଯଥାବଚ୍ଚାଭିବାଦୟମ୍ ।
ଉକ୍ତାଶ୍ଚ ନାଶିଷସ୍ତେନ ପ୍ରହୃଷ୍ଟେନାନ୍ତରାତ୍ମନା । ୨୫ ।
ନତ୍ୱା ପାଦାବହଂ ତସ୍ୟ ମୁକୁଟେନାସ୍ପୃଶଂ ପ୍ରଭୋ ।
ଅପି ବାଲୀ ମମ କ୍ରୋଧାନ୍ନ ପ୍ରସାଦଂ ଚକାର ସଃ । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ବୈରବୃତ୍ତାନ୍ତାନୁକ୍ରମୋ
ନାମ ନବମଃ ସର୍ଗଃ

---

ଶୁଣିପାରିଲେ । ୨୦ । ହେ ରାଘବ ! ଅନନ୍ତର ସେମାନେ ସମସ୍ତେ ମିଳି ମୋର ଅଭିଷେକ କରିଦେଲେ ଏବଂ ମୁଁ ନ୍ୟାୟପୂର୍ବକ ରାଜ୍ୟଶାସନ କରିବାକୁ ଲାଗିଲି । ୨୧ । ଶତ୍ରୁ ରାକ୍ଷସକୁ ମାରି ବାଲୀ ଫେରିଆସିଲେ ଏବଂ ମୁଁ ଅଭିଷିକ୍ତ ହୋଇଥିବାର ଦେଖି କ୍ରୋଧରେ ତାଙ୍କର ଆଖି ରକ୍ତବର୍ଣ୍ଣ ହୋଇଗଲା । ୨୨ । ସେ ମୋ ମନ୍ତ୍ରୀମାନଙ୍କୁ ବାନ୍ଧି ଅତି କଠୋର ବାକ୍ୟରେ ସେମାନଙ୍କୁ ଗାଳିଦେଲେ । ସେ ପାପୀକୁ ଶାସ୍ତି ଦେବାକୁ ମୁଁ ସମର୍ଥ ଥିଲେ ମଧ୍ୟ ଭାଇ ପ୍ରତି ସମ୍ମାନହେତୁରୁ ମୋର ସେ ଇଚ୍ଛା ହେଲା ନାହିଁ । ଶତ୍ରୁକୁ ମାରି ମୋର ଭାଇ ତା'ପରେ ପୁରମଧ୍ୟରେ ପ୍ରବେଶ କଲେ । ୨୩-୨୪ । ମୁଁ ସେ ମହାତ୍ମାଙ୍କୁ ସମ୍ମାନ କଲି ଏବଂ ଯଥାବିଧି ଅଭିବାଦନ କଲି । ସେ ଅନ୍ତଃକରଣରେ ଆନନ୍ଦିତ ହୋଇ ମୋତେ ଆଶୀର୍ବାଦ ସୁଦ୍ଧା କଲେ ନାହିଁ । ୨୫ । ମୁଁ ମୁଣ୍ଡ ନୁଆଇଁ ମୁକୁଟଦ୍ୱାରା ତାଙ୍କ ଚରଣ ସ୍ପର୍ଶକଲି; ମାତ୍ର ବାଲୀ କ୍ରୋଧରେ ମୋ ପ୍ରତି ଆଦୌ ପ୍ରସନ୍ନ ହେଲେ ନାହିଁ । ୨୬ ।

# ଦଶମଃ ସର୍ଗଃ

## ରାଜ୍ୟନିର୍ବାସକଥନମ୍

ତତଃ କ୍ରୋଧସମାବିଷ୍ଟଂ ସଂରବ୍ଧଂ ତମୁପାଗତମ୍ ।
ଅହଂ ପ୍ରସାଦୟାଂଚକ୍ରେ ଭ୍ରାତରଂ ହିତକାମ୍ୟୟା । ୧ ।
ଦିଷ୍ଟ୍ୟାସି କୁଶଲୀ ପ୍ରାପ୍ତୋ ନିହତଶ୍ଚ ତ୍ୱୟା ରିପୁଃ ।
ଅନାଥସ୍ୟ ହି ମେ ନାଥସ୍ତ୍ୱମେକୋଽନାଥନନ୍ଦନଃ । ୨ ।
ଇଦଂ ବହୁଶଲାକଂ ତେ ପୂର୍ଣଚନ୍ଦ୍ରମିବୋଦିତମ ।
ଛତ୍ରଂ ସବାଲବ୍ୟଜନଂ ପ୍ରତୀଚ୍ଛସ୍ୱ ମୟା ଧୃତମ୍ । ୩ ।
ଆର୍ତ୍ତସ୍ତସ୍ୟ ବିଲଦ୍ୱାରି ସ୍ଥିତଃ ସଂବତ୍ସରଂ ନୃପ ।
ଦୃଷ୍ଟ୍ୱା ଚ ଶୋଣିତଂ ଦ୍ୱାରି ବିଲାଚ୍ଚାପି ସମୁତ୍ଥିତମ୍ । ୪।
ଶୋକସଂବିଗ୍ନହୃଦୟୋ ଭୃଶଂ ବ୍ୟାକୁଲିତେନ୍ଦ୍ରିୟଃ ।
ଅପିଧାୟ ବିଲଦ୍ୱାରଂ ଶୈଲଶୃଙ୍ଗେଣ ତତ୍ତଦା । ୫ ।

---

## ୧୦ମ ସର୍ଗ

( ରାଜ୍ୟରୁ ନିର୍ବାସିତ ହେବାର କଥନ )

"ଅନନ୍ତର ମୋର ହିତକାମନାକରି ମୁଁ ସେ କ୍ରୁଦ୍ଧ ଭାଇଙ୍କୁ ପ୍ରସନ୍ନ କରିବାକୁ ଲାଗିଲି । ସେ ଆସି ପହଞ୍ଚିବା ପରେ ମୁଁ ତାଙ୍କୁ କହିଲି । ୧ । ସୌଭାଗ୍ୟବଶରୁ ତୁମେ କୁଶଳରେ ଫେରି ଆସିଛ । ତୁମେ ଶତ୍ରୁକୁ ମାରିପକାଇଛ । ଅନାଥ ନିରାଶ୍ରୟ ମୋର ତୁମେହିଁ ଏକମାତ୍ର ଆନନ୍ଦଦାୟକ ପ୍ରଭୁ ଅଟ । ୨। ବହୁଶଲାକାବିଶିଷ୍ଟ, ପୂର୍ଣ୍ଣଚନ୍ଦ୍ରସଦୃଶ ଶୋଭମାନ ଏ ଛତ୍ର ଏବଂ ଚାମର ତୁମେ ଗ୍ରହଣକର । ମୁଁ ଏପର୍ଯ୍ୟନ୍ତ ତାହା ଧାରଣ କରି ରଖିଥିଲି । ୩ । ହେ ରାଜନ୍ ! ମୁଁ ସେ ବିଲଦ୍ୱାରରେ ବର୍ଷେକାଳ ଦୁଃଖିତ ହୋଇ ରହିଥିଲି । ବିଲରୁ ବାହାରୁଥିବା ରକ୍ତକୁ ମୁଁ ବିଲମୁହଁରେ ଦେଖିଲି । ୪। ଏଥିରେ ମୋର ହୃଦୟ ଶୋକରେ ବ୍ୟାକୁଳ ହୋଇ ଉଠିଲା ଏବଂ ଇନ୍ଦ୍ରିୟସମୂହ ମଧ୍ୟ ବ୍ୟାକୁଳ ହୋଇଗଲା; ସୁତରାଂ ସେତେବେଳେ ମୁଁ ପର୍ବତଶୃଙ୍ଗଦ୍ୱାରା ବିଲର ଦ୍ୱାରକୁ ବନ୍ଦ କରିଦେଲି । ୫ । ସେ ଦେଶରୁ ବାହାରି

ତସ୍ମାଦ୍ଦେଶାଦପାକ୍ରମ୍ୟ କିଷ୍କିନ୍ଧାଂ ପ୍ରାବିଶଂ ପୁନଃ ।
ବିଷାଦାତ୍ତ୍ୱିହ ମାଂ ଦୃଷ୍ଟ୍ୱା ପୌରୈର୍ମନ୍ତ୍ରିଭିରେବ ଚ । ୬ ।
ଅଭିଷିକ୍ତୋ ନ କାମେନ ତନ୍ମେ କ୍ଷନ୍ତୁଂ ତ୍ୱମର୍ହସି ।
ତ୍ୱମେବ ରାଜା ମାନାର୍ହଃ ସଦାଚାହଂ ଯଥା ପୁରା । ୭ ।
ରାଜଭାବନିୟୋଗୋଽୟଂ ମମ ତ୍ୱଦ୍‌ବିରହାତ୍‌କୃତଃ ।
ସାମାତ୍ୟ ପୌରନଗରଂ ସ୍ଥିତଂ ନିହତକଣ୍ଟକମ୍ । ୮ ।
ନ୍ୟାସଭୂତମିଦଂ ରାଜ୍ୟଂ ତବ ନିର୍ଯାତୟାମ୍ୟହମ୍ ।
ମା ଚ ରୋଷଂ କୃଥାଃ ସୌମ୍ୟ ମମ ଶତ୍ରୁନିଷୂଦନ । ୯ ।
ଯାଚେ ତ୍ୱାଂ ଶିରସା ରାଜନ୍ମୟା ବଦ୍ଧୋଽୟମଞ୍ଜଳିଃ ।
ବଳାଦସ୍ମିନ୍ ସମାଗମ୍ୟ ମନ୍ତ୍ରିଭିଃ ପୁରବାସିଭିଃ । ୧୦ ।
ରାଜଭାବେ ନିଯୁକ୍ତୋଽହଂ ଶୂନ୍ୟଦେଶଜିଗୀଷୟା ।
ସ୍ନିଗ୍ଧମେବଂ ବ୍ରୁବାଣଂ ମାଂ ସ ବିନିର୍ଭର୍ତ୍ସ୍ୟ ବାନରଃ । ୧୧ ।
ଧିକ୍ତ୍ୱାମିତି ଚ ମାମୁକ୍ତ୍ୱା ବହୁ ତତ୍ତଦୁବାଚ ହ ।
ପ୍ରକୃତୀଶ୍ଚ ସମାନୀୟ ମନ୍ତ୍ରିଣଶ୍ଚୈବ ସମ୍ମତାନ୍ । ୧୨ ।

---

ମୁଁ ପୁଣି ଆସି କିଷ୍କିନ୍ଧାରେ ପ୍ରବେଶକଲି । ମୋତେ ଦୁଃଖିତ ଦେଖି ମନ୍ତ୍ରୀ ଏବଂ ପୁରବାସୀମାନେ ମୋତେ ରାଜସିଂହାସନରେ ଅଭିଷିକ୍ତ କଲେ । ୬ । ମୁଁ ନିଜ ଇଚ୍ଛାରେ ରାଜପଦରେ ଅଭିଷିକ୍ତ ହୋଇ ନାହିଁ, ସୁତରାଂ ତୁମେ ମୋତେ କ୍ଷମା କରିବା ଉଚିତ । ତୁମେହିଁ ସମ୍ମାନାର୍ହ ରାଜା ଅଟ । ମୁଁ ପୂର୍ବେ ଯାହା ଥିଲି ସବୁବେଳେ ତାହାହିଁ ରହିବି । ୭ । ତୁମ ବିରହରେ ମୋତେ ସମସ୍ତେ ରାଜାରୂପେ ନିଯୁକ୍ତ କରିଛନ୍ତି । ଶତ୍ରୁହୀନ ମନ୍ତ୍ରୀ ପ୍ରଜାଆଦିଯୁକ୍ତ ତୁମ୍ଭର ରାଜ୍ୟ ନ୍ୟାସରୂପେ ମୋ ପାଖରେ ରହିଅଛି । ୮ । ହେ ଶତ୍ରୁଜୟକାରି ! ମୁଁ ତାହା ତୁମକୁ ଫେରାଇ ଦେଉଛି । ତୁମେ କ୍ରୋଧ କର ନାହିଁ । ୯ । ହେ ରାଜନ୍ ! ହେଇଟି ମୁଁ ହାତଯୋଡ଼ି ତୁମକୁ ପ୍ରାର୍ଥନା କରୁଛି । ମନ୍ତ୍ରୀ ଏବଂ ପୁରବାସୀମାନେ ବଳାତ୍କାରକରି ମୋତେ ରାଜା କରିଦେଇଛନ୍ତି । ଶୂନ୍ୟଦେଶ ଦେଖି ଶତ୍ରୁ ଜୟ କରି ରାଜ୍ୟକୁ ଆସିବେ—ଏହି ଆଶଙ୍କା କରି ସେମାନେ ଏପରି କରିଛନ୍ତି । ମୁଁ ଏପରି ନମ୍ରଭାବରେ କହିଲେ ମଧ୍ୟ ସେ ବାନର ମୋତେ ଭର୍ତ୍ସନା କରି କହିଲା ।୧୦-୧୧।'ତୋତେ ଧିକ୍' । ଏହିପରି ସେ ଅନେକ ଗର୍ହିତ କଥା କହିଲେ । ସେ ମାନନୀୟ ମନ୍ତ୍ରୀମାନଙ୍କୁ ଏବଂ ପ୍ରଜାବର୍ଗଙ୍କୁ ଅଣାଇ ବନ୍ଧୁମାନଙ୍କ ମଧ୍ୟରେ ମୋତେ ଅତ୍ୟନ୍ତ ଗର୍ହିତ କଥା କହିଲେ ଏବଂ ସେମାନଙ୍କୁ

ମାମାହ ସୁହୃଦାଂ ମଧ୍ୟେ ବାକ୍ୟଂ ପରମଗର୍ହିତମ୍ ।
ବିଦିତଂ ବୋ ଯଥା ରାତ୍ରୌ ମାୟାବୀ ସ ମହାସୁରଃ । ୧୩ ।
ମାଂ ସମାହ୍ୱୟତ କ୍ରୁଦ୍ଧୋ ଯୁଦ୍ଧାକାଙ୍‌କ୍ଷୀ ତଦା ପୁରା ।
ତସ୍ୟ ତଦ୍ଭାଷିତଂ ଶ୍ରୁତ୍ୱା ନିଃସୃତୋଽହଂ ନୃପାଳୟାତ୍ । ୧୪ ।
ଅନୁଯାତଶ୍ଚ ମାଂ ତୂର୍ଣ୍ଣମୟଂ ଭ୍ରାତା ସୁଦାରୁଣଃ ।
ସ ତୁ ଦୃଷ୍ଟ୍ୱୈବ ମାଂ ରାତ୍ରୌ ସଦ୍ୱିତୀୟଂ ମହାବଳଃ । ୧୫ ।
ପ୍ରାଦ୍ରବଦ୍ଭୟସଂତ୍ରସ୍ତୋ ବୀକ୍ଷ୍ୟାବାଂ ସମୁପାଗତୌ ।
ଅଭିଦ୍ରୁତସ୍ତୁ ବେଗେନ ବିବେଶ ସ ମହାବିଲମ୍ । ୧୬ ।
ତଂ ପ୍ରବିଷ୍ଟଂ ବିଦିତ୍ୱା ତୁ ସୁଘୋରଂ ସୁମହଦ୍ ବିଲମ୍ ।
ଅୟମୁକ୍ତୋଽଥ ମେ ଭ୍ରାତା ମୟା ତୁ କ୍ରୂରଦର୍ଶନଃ । ୧୭ ।
ଅହତ୍ୱା ନାସ୍ତି ମେ ଶକ୍ତିଃ ପ୍ରତିଗନ୍ତୁମିତଃ ପୁରୀମ୍ ।
ବିଲଦ୍ୱାରି ପ୍ରତୀକ୍ଷ ତ୍ୱଂ ଯାବଦେନଂ ନିହନ୍ମ୍ୟହମ୍ । ୧୮ ।
ସ୍ଥିତୋଽୟମିତି ମତ୍ୱାହଂ ପ୍ରବିଷ୍ଟସ୍ତୁ ଦୁରାସଦମ୍ ।
ତଂ ମେ ମାର୍ଗୟତସ୍ତତ୍ର ଗତଃ ସଂବତ୍ସରସ୍ତଦା । ୧୯ ।
ସ ତୁ ଦୃଷ୍ଟୋ ମୟା ଶତ୍ରୁରନିର୍ବେଦ୍ୟାଦ୍ଭୟାବହଃ ।
ନିହତଶ୍ଚ ମୟା ସଦ୍ୟଃ ସ ସର୍ବୈଃ ସହ ବନ୍ଧୁଭିଃ । ୨୦ ।

---

କହିଲେ । "ତୁମେମାନେ ଜାଣ, ସେ ମାୟାବୀ ମହାରାକ୍ଷସ ସେଦିନ ରାତିରେ ଆସି ଯୁଦ୍ଧ କରିବାକୁ ମୋତେ ଆହ୍ୱାନ କଲା । ତାର ସେ କଥା ଶୁଣି ମୁଁ ରାଜନଅରରୁ ବାହାରି ପଡ଼ିଲି । ୧୨-୧୪ । ମୋର ଏହି ଦାରୁଣ ଭାଇ ମୋ ପଛରେ ଯାଇଥିଲା । ସେ ମହାବଳ ରାକ୍ଷସ ରାତିରେ ଆମ ଦୁହିଁଙ୍କୁ ନିକଟରେ ପହଞ୍ଚିବାର ଦେଖି ଭୟରେ ତ୍ରସ୍ତ ହୋଇ ପଳାଇ ଯାଇ ଏକ ମହାବିବର ଭିତରେ ପଶିଗଲା । ୧୫-୧୬ । ତାକୁ ଏକ ଭୟଙ୍କର ମହାବିଲମଧ୍ୟରେ ପଶିଯିବାର ଜାଣି ମୁଁ ନିଜର ଏହି କ୍ରୂରଦର୍ଶନ ଭାଇକୁ କହିଲି । ୧୭ । ଶତ୍ରୁକୁ ନ ମାରି ଏଠାରୁ ନଗରକୁ ଫେରିଯିବାର ଶକ୍ତି ମୋର ନାହିଁ । ମୁଁ ଏହାକୁ ମାରିବା ପର୍ଯ୍ୟନ୍ତ ତୁ ଏହି ବିଲ-ଦ୍ୱାରରେ ଅପେକ୍ଷା କରି ରହ ! ୧୮ । ସେ ବାହାରେ ରହିଲା—ଏହି କଥା ଜାଣି ମୁଁ ବିଲଭିତରକୁ ଗଲି ଏବଂ ସେଠାରେ ତାକୁ ଖୋଜିବାରେ ବର୍ଷେ ବିତିଗଲା ।୧୯। ମୁଁ ସେ ଭୟାନକ ଶତ୍ରୁକୁ ଦେଖିଲି ଏବଂ ବିନା କ୍ଲେଶରେ ସବୁ ବନ୍ଧୁଙ୍କ ସହିତ ତାହାକୁ ସଙ୍ଗେ ସଙ୍ଗେ ମାରି ପକାଇଲି । ୨୦ । ସେ ଭୂଇଁ ଉପରେ ପଡ଼ି ଗର୍ଜନ

ତସ୍ୟୈବ ଚ ପ୍ରବୃତ୍ତେନ ରୁଧିରୌଘେଣ ତଦ୍‌ବିଲମ୍ ।
ପୂର୍ଣ୍ଣମାସୀଦ୍ଦୁରାକ୍ରାମଂ ସ୍ତନତସ୍ତସ୍ୟ ଭୂତଲେ ।୨୧।
ସୂଦୟିତ୍ୱା ତୁ ତଂ ଶତ୍ରୁଂ ବିକ୍ରାନ୍ତଂ ତମହଂ ସୁଖମ୍ ।
ନିଷ୍କ୍ରାମନ୍ନେବ ପଶ୍ୟାମି ବିଲସ୍ୟ ପିହିତଂ ମୁଖମ୍ ।୨୨।
ବିକ୍ରୋଶମାନସ୍ୟ ତୁ ମେ ସୁଗ୍ରୀବେତି ପୁନଃ ପୁନଃ ।
ଯଦା ପ୍ରତିବଚୋ ନାସ୍ତି ତତୋଽହଂ ଭୃଶଦୁଃଖିତଃ ।୨୩।
ପାଦପ୍ରହାରୈସ୍ତୁ ମୟା ବହୁଭିଃ ପରିପାତିତମ୍ ।
ତତୋଽହଂ ତେନ ନିଷ୍କ୍ରମ୍ୟ ପଥା ପୁରମୁପାଗତଃ ।୨୪।
ତତ୍ରାନେନାସ୍ମି ସଂରୁଦ୍ଧୋ ରାଜ୍ୟଂ ମୃଗୟତାତ୍ମନଃ ।
ସୁଗ୍ରୀବେଣ ନୃଶଂସେନ ବିସ୍ମୃତ୍ୟ ଭ୍ରାତୃସୌହୃଦମ୍ ।୨୫।
ଏବମୁକ୍ତ୍ୱା ତୁ ମାଂ ତତ୍ର ବସ୍ତ୍ରେଣୈକେନ ବାନରଃ ।
ତଦା ନିର୍ବାସୟାମାସ ବାଲୀ ବିଗତସାଧ୍ୱସଃ ।୨୬।
ତେନାହମପବିଦ୍ଧଶ୍ଚ ହୃତଦାରଶ୍ଚ ରାଘବ ।
ତଦ୍ଭୟାଚ୍ଚ ମହୀଂ ସର୍ବାଂ କ୍ରାନ୍ତବାନ୍ ସବନାର୍ଣ୍ଣବାମ୍ ।୨୭।
ଋଶ୍ୟମୂକଂ ଗିରିବରଂ ଭାର୍ଯ୍ୟାହରଣଦୁଃଖିତଃ ।
ପ୍ରବିଷ୍ଟୋଽସ୍ମି ଦୁରାଧର୍ଷଂ ବାଲିନଃ କାରଣାନ୍ତରେ ।୨୮।

---

କରୁଥିଲା । ତା' ଦେହରୁ ରକ୍ତସ୍ରୋତ ବାହାରି ସମସ୍ତ ବିଲ ପୂର୍ଣ୍ଣ ହୋଇଗଲା । ଏପରିକି ସେ ବିଲଭିତରେ ଚାଲିବା କଷ୍ଟକର ହୋଇଗଲା ।୨୧। ସେ ପରାକ୍ରମୀ ଶତ୍ରୁକୁ ଅନାୟାସରେ ମାରିସାରି ମୁଁ ବାହାରିବାର ବାଟ ପାଇଲି ନାହିଁ; କାରଣ ବିଲର ଦ୍ୱାର ବନ୍ଦ ହୋଇଯାଇଥିଲା ।୨୨। 'ସୁଗ୍ରୀବ' 'ସୁଗ୍ରୀବ' ବୋଲି ବାରମ୍ବାର ଚିତ୍କାର କଲେ ମଧ୍ୟ ମୋତେ କୌଣସି ଉତ୍ତର ମିଳିଲା ନାହିଁ । ସୁତରାଂ ମୁଁ ଅତିଶୟ ଦୁଃଖିତ ହେଲି ।୨୩। ମୁଁ ଅନେକ ବାର ଗୋଇଠା ମାରି ମାରି ସେ ପଥରକୁ ଆଡ଼େଇ ଫିଙ୍ଗିଦେଲି ଏବଂ ସେହି ଦ୍ୱାରବାଟେ ବାହାରି ପୁଣି ନଗରକୁ ଫେରି ଆସିଲି ।୨୪। ସ୍ୱୟଂ ରାଜ୍ୟ ଅଭିଳାଷ କରି କ୍ରୂର ସୁଗ୍ରୀବ ଭ୍ରାତୃସ୍ନେହ ଭୁଲିଯାଇ ମୋତେ ସେଠାରେ ବନ୍ଦ କରି ଦେଇ ଆସିଥିଲା" ।୨୫। ଏହା କହି ନିର୍ଭୀକ ବାଲୀ ମୋତେ ଖଣ୍ଡିଏ ମାତ୍ର ଲୁଗା ଦେଇ ସେଠାରୁ ନିର୍ବାସିତ କରିଦେଲା ।୨୬। ହେ ରାଘବ ! ସେ ମୋତେ ତଡ଼ି ଦେଇଛି ଏବଂ ମୋର ସ୍ତ୍ରୀକୁ ହରଣ କରିଅଛି । ତା' ଭୟରେ ସମୁଦ୍ର ପର୍ଯ୍ୟନ୍ତ ବନଯୁକ୍ତ ସମସ୍ତ ପୃଥିବୀ ବୁଲି ସାରିଲିଣି ।୨୭। ଭାର୍ଯ୍ୟାହରଣରେ ଦୁଃଖିତ ହୋଇ ମୁଁ ଏହି ଋଷ୍ୟମୂକ ପର୍ବତରେ ଆସି ପହଞ୍ଚିଅଛି । ଯେହେତୁ କୌଣସି କାରଣ-

ଏତତ୍ତେ ସର୍ବମାଖ୍ୟାତଂ ବୈରାନୁକଥନଂ ମହତ୍ ।
ଅନାଗସା ମୟା ପ୍ରାପ୍ତଂ ବ୍ୟସନଂ ପଶ୍ୟ ରାଘବ । ୨୯ ।
ବାଲିନସ୍ତୁ ଭୟାତ୍ତସ୍ୟ ସର୍ବଲୋକଭୟାପହ ।
କର୍ତୁମର୍ହସି ମେ ବୀର ପ୍ରସାଦଂ ତସ୍ୟ ନିଗ୍ରହାତ୍ । ୩୦ ।
ଏବମୁକ୍ତଃ ସ ତେଜସ୍ୱୀ ଧର୍ମଜ୍ଞୋ ଧର୍ମସଂହିତମ୍ ।
ବଚନଂ ବକ୍ତୁମାରେଭେ ସୁଗ୍ରୀବଂ ପ୍ରହସନ୍ନିବ । ୩୧ ।
ଅମୋଘାଃ ସୂର୍ଯସଂକାଶା ନିଶିତା ମେ ଶରା ଇମେ ।
ତସ୍ମିନ୍ ବାଲିନି ଦୁର୍ବୃତ୍ତେ ପତିଷ୍ୟନ୍ତି ରୁଷାନ୍ୱିତାଃ । ୩୨ ।
ଯାବତ୍ତଂ ନ ହି ପଶ୍ୟେୟଂ ତବ ଭାର୍ଯାପହାରିଣମ୍ ।
ତାବତ୍ସ ଜୀବେତ୍ପାପାତ୍ମା ବାଲୀ ଚାରିତ୍ରଦୂଷକଃ । ୩୩ ।
ଆତ୍ମାନୁମାନାତ୍ପଶ୍ୟାମି ମଗ୍ନଂ ତ୍ୱାଂ ଶୋକସାଗରେ ।
ତ୍ୱାମହଂ ତାରୟିଷ୍ୟାମି ବାଢ଼ଂ ପ୍ରାପ୍ସ୍ୟସି ପୁଷ୍କଲମ୍ । ୩୪ ।
ତସ୍ୟ ତଦ୍ୱଚନଂ ଶ୍ରୁତ୍ୱା ହର୍ଷପୌରୁଷବର୍ଧନମ୍ ।
ସୁଗ୍ରୀବଃ ପରମପ୍ରୀତଃ ସୁମହଦ୍ୱାକ୍ୟମବ୍ରବୀତ୍ । ୩୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ବୈରାନୁକଥନମ୍
ନାମ ଦଶମଃ ସର୍ଗଃ

---

ବଶତଃ ଏ ସ୍ଥାନ ବାଳୀର ଅଗମ୍ୟ । ୨୮ । ଏହାହିଁ ଶତ୍ରୁତାର କାରଣ ମୁଁ ଆପଣଙ୍କୁ କହିଲି । ହେ ରାଘବ ! ଦେଖନ୍ତୁ, ବିନା ଅପରାଧରେ ମୁଁ ଏ ଦୁଃଖ ସହ୍ୟ କରୁଅଛି ।୨୯ ହେ ସମସ୍ତ ସଂସାରର ଭୟଦୂରକାରୀ, ବୀର ରାମଚନ୍ଦ୍ର ! ସେ ବାଳୀର ଭୟରୁ ମୋତେ ରକ୍ଷାକର । ତାହାର ଅତ୍ୟାଚାରରୁ ମୋତେ ରକ୍ଷା କରିବା ପାଇଁ ଆପଣଙ୍କର ଅନୁଗ୍ରହ କରିବା ଉଚିତ" ।୩୦। ସୁଗ୍ରୀବ ଏପରି କହିବାଉତ୍ତାରୁ ତେଜସ୍ୱୀ ଧର୍ମଜ୍ଞ ରାମଚନ୍ଦ୍ର ହସି ହସି ସୁଗ୍ରୀବଙ୍କୁ ଧର୍ମସମ୍ମତ ବଚନ କହିବାକୁ ଆରମ୍ଭ କଲେ ।୩୧। "ସୂର୍ଯ୍ୟସଦୃଶ ତେଜୋମୟାନ୍ ମୋର ଏହି ତୀକ୍ଷ୍ଣ ଶରଗୁଡ଼ିକ ଅମୋଘ ଅଟେ ।।କ୍ରୋଧରେ ଏସବୁ ଶର ସେହି ଦୁରାଚାରୀ ବାଳୀ ଉପରେ ପଡ଼ିବ । ୩୨ । ତୁମର ସ୍ତ୍ରୀହରଣକାରୀ ସେ ବାଳୀକୁ ମୁଁ ଯେପର୍ଯ୍ୟନ୍ତ ନ ଦେଖିଛି କେବଳ ସେତିକବେଳପର୍ଯ୍ୟନ୍ତ ସେ ଦୁଷ୍ଟଚରିତ୍ର ପାପାତ୍ମା ଜୀବିତ ରହିବ । ୩୩ । ମୋର ନିଜ ଅନୁମାନରୁ ମୁଁ ଦେଖୁଛି, ତୁମେ ଶୋକ-ସାଗରରେ ବୁଡ଼ିରହିଛ । ମୁଁ ତୁମକୁ ଉଦ୍ଧାର କରିବି ଏବଂ ତୁମେ ନିଶ୍ଚୟ ପ୍ରଭୂତ ମଙ୍ଗଳ ଲାଭ କରିବ" । ୩୪ । ଆନନ୍ଦ ଏବଂ ପୁରୁଷାର୍ଥବର୍ଦ୍ଧନକାରୀ ରାମଚନ୍ଦ୍ରଙ୍କର ଏ ବଚନ ଶୁଣି ସୁଗ୍ରୀବ ବିଶେଷ ଆନନ୍ଦିତ ହେଲେ ଏବଂ କହିଲେ । ୩୫ ।

---

# ଏକାଦଶଃ ସର୍ଗଃ

## ବାଲିବଲାବଷ୍କରଣମ୍

ରାମସ୍ୟ ବଚନଂ ଶ୍ରୁତ୍ୱା ହର୍ଷପୌରୁଷବର୍ଧନମ୍ ।
ସୁଗ୍ରୀବଃ ପୂଜୟାଂଚକ୍ରେ ରାଘବଂ ପ୍ରଶଶଂସ ଚ । ୧ ।
ଅସଂଶୟଂ ପ୍ରଜ୍ୱଳିତୈସ୍ତୀକ୍ଷ୍ଣୈର୍ମର୍ମାତିଗୈଃ ଶରୈଃ ।
ତ୍ୱଂ ଦହେଃ କୁପିତୋ ଲୋକାନ୍ ଯୁଗାନ୍ତ ଇବ ଭାସ୍କରଃ । ୨ ।
ବାଳିନଃ ପୌରୁଷଂ ଯତ୍ତଦ୍ ଯଚ୍ଚ ବୀର୍ଯଂ ଧୃତଶ୍ଚ ଯା ।
ତନ୍ମମୈକମନାଃ ଶ୍ରୁତ୍ୱା ବଧସ୍ୱ ଯଦନନ୍ତରମ୍ । ୩ ।
ସମୁଦ୍ରାତ୍ପୂର୍ଶ୍ଚିମାତ୍ପୂର୍ବଂ ଦକ୍ଷିଣାଦପି ଚୋତ୍ତରମ୍ ।
କ୍ରାମତ୍ୟନୁଦିତେ ସୂର୍ଯେ ବାଲୀ ବ୍ୟପଗତକ୍ଳମଃ । ୪ ।
ଅଗ୍ରାଣ୍ୟାରୁହ୍ୟ ଶୈଳାନାଂ ଶିଖରାଣି ମହାନ୍ତ୍ୟପି ।
ଊର୍ଧ୍ୱମୁତ୍ପାତ୍ୟ ତରସା ପ୍ରତିଗୃହ୍ଣାତି ବୀର୍ଯବାନ୍ । ୫ ।
ବହବଃ ସାରବନ୍ତଶ୍ଚ ବନେଷୁ ବିବିଧା ଦ୍ରୁମାଃ ।
ବାଳିନା ତରସା ଭଗ୍ନା ବଳଂ ପ୍ରଥୟତାତ୍ମନଃ । ୬ ।

---

## ୧୧ଶ ସର୍ଗ

### ( ବାଳୀଙ୍କର ବଳବର୍ଣ୍ଣନା )

ରାମଚନ୍ଦ୍ରଙ୍କର ଆନନ୍ଦ ଏବଂ ପୁରୁଷାର୍ଥବର୍ଦ୍ଧନକାରୀ ବଚନ ଶୁଣି ସୁଗ୍ରୀବ ତାଙ୍କୁ ପୂଜା ଏବଂ ପ୍ରଶଂସା କରି କହିଲେ । ୧ । "ପ୍ରଳୟକାଳୀନ ସୂର୍ଯ୍ୟସଦୃଶ ଆପଣ କ୍ରୋଧ କଲେ ପ୍ରଜ୍ୱଳିତ, ତୀକ୍ଷ୍ଣ ଏବଂ ମର୍ମଭେଦୀ ଏହି ବାଣଦ୍ୱାରା ଆପଣ ନିଶ୍ଚୟ ସବୁ ସଂସାରକୁ ଜାଳି ଦେଇପାରିବେ । ୨ । ବାଳୀର ଯେପରି ପୁରୁଷାର୍ଥ, ଯେପରି ବଳ ଏବଂ ଯେପରି ଧୈର୍ଯ୍ୟ, ତାହା ସବୁ ଏକାଗ୍ରମନରେ ମୋଠାରୁ ଶୁଣନ୍ତୁ । ତା'ପରେ ଯାହା କରିବାର ତାହା କରିବେ । ୩ । ପଶ୍ଚିମ ସମୁଦ୍ରରୁ ପୂର୍ବ ସମୁଦ୍ର ପର୍ଯ୍ୟନ୍ତ ଏବଂ ଦକ୍ଷିଣ ସମୁଦ୍ରରୁ ଉତ୍ତର ସମୁଦ୍ରପର୍ଯ୍ୟନ୍ତ ସୂର୍ଯ୍ୟ ଉଦୟ ନ ହେଉଣୁ ବାଳୀ ବୁଲିଯାଇ ଫେରି ଆସିପାରେ; ଅଥଚ ତାହାର କିଛିମାତ୍ର କ୍ଳାନ୍ତ ବୋଧହୁଏ ନାହିଁ । ୪ । ପର୍ବତର ପ୍ରକାଣ୍ଡ ଶିଖରଗୁଡ଼ିମାନ ଉପରକୁ ଫିଙ୍ଗିଦେଇ ପୁଣି ତାକୁ ସେ ବଳବାନ୍ (ବାଳୀ) ଅଟକାଇ ଦିଏ । ୫ । ନିଜର ବଳ ଦେଖାଇବା ପାଇଁ ସେ ସାର ଅନେକ ବଳବାନ୍ ମହାଦ୍ରୁମ ବନରେ ଉପାଡ଼ି ଅଳ୍ପକ୍ଷଣରେ ଭାଙ୍ଗି ପକାଇଅଛି ।୬।

ମହିଷୋ ଦୁନ୍ଦୁଭିର୍ନାମ କୈଳାସଶିଖରପ୍ରଭଃ ।
ବଲଂ ନାଗସହସ୍ରସ୍ୟ ଧାରୟାମାସ ବୀର୍ଯବାନ୍ । ୭ ।
ସ ବୀର୍ଯୋତ୍ସେକଦୁଷ୍ଟାତ୍ମା ବରଦାନେନ ମୋହିତଃ ।
ଜଗାମ ସ ମହାକାୟଃ ସମୁଦ୍ରଂ ସରିତାଂ ପତମ୍ । ୮ ।
ଊର୍ମିମନ୍ତମତିକ୍ରମ୍ୟ ସାଗରଂ ରତ୍ନସଂଚୟମ୍ ।
ମମ ଯୁଦ୍ଧଂ ପ୍ରଯଚ୍ଛେତି ତମୁବାଚ ମହାର୍ଣବମ୍ । ୯ ।
ତତଃ ସମୁଦ୍ରୋ ଧର୍ମାତ୍ମା ସମୁତ୍ଥାୟ ମହାବଲଃ ।
ଅବ୍ରବୀଦ୍ବଚନଂ ରାଜନ୍ନସୁରଂ କାଲଚୋଦିତମ୍ । ୧୦ ।
ସମର୍ଥୋ ନାସ୍ମି ତେ ଦାତୁଂ ଯୁଦ୍ଧଂ ଯୁଦ୍ଧବିଶାରଦ ।
ଶ୍ରୂୟତାଂ ତ୍ୱଭିଧାସ୍ୟାମି ଯସ୍ତେ ଯୁଦ୍ଧଂ ପ୍ରଦାସ୍ୟତି । ୧୧ ।
ଶୈଲରାଜୋ ମହାରଣ୍ୟେ ତପସ୍ୱିଶରଣଂ ପରମ୍ ।
ଶଙ୍କରଶ୍ୱଶୁରୋ ନାମ୍ନା ହିମବାନିତି ବିଶ୍ରୁତଃ । ୧୨ ।
ମହାପ୍ରସ୍ରବଣୋପେତୋ ବହୁକନ୍ଦରନିର୍ଝରଃ ।
ସ ସମର୍ଥସ୍ତବ ପ୍ରୀତିମତୁଲାଂ କର୍ତୁମର୍ହତି । ୧୩ ।
ତଂ ଭୀତମିତି ବିଜ୍ଞାୟ ସମୁଦ୍ରମସୁରୋତ୍ତମଃ ।
ହିମବଦ୍ବନମାଗମ୍ୟ ଶରଶ୍ଚାପାଦିବ ଚ୍ୟୁତଃ । ୧୪ ।

---

କୈଳାସ ପର୍ବତର ଶିଖରପରି ପ୍ରଭାଶାଳୀ ଦୁନ୍ଦୁଭି ନାମକ ଏକ ରାକ୍ଷସ ଥିଲା । ତାହାର ସହସ୍ର ହାତୀଙ୍କ ସଦୃଶ ବଳ ଥିଲା । ୭ । ସେ ବିଶାଳକାୟ ଦୁଷ୍ଟ ରାକ୍ଷସ ବଳଦୃପ୍ତ ହୋଇ ଏବଂ ବରଦାନରେ ମୋହିତ ହୋଇ ନଦୀମାନଙ୍କର ପତି ସମୁଦ୍ର ନିକଟକୁ ଗଲା । ୮ । ରତ୍ନର ଖଣି, ଲହରୀଯୁକ୍ତ ସେହି ସମୁଦ୍ରରେ ପଶି ସେ ମହାସମୁଦ୍ରକୁ କହିଲା, "ମୋ ସଙ୍ଗେ ଯୁଦ୍ଧକର" । ୯ । ଅନନ୍ତର ମହାବଳୀ ଧର୍ମାତ୍ମା ସମୁଦ୍ରରାଜ ଉଠି କାଳପ୍ରେରିତ ସେହି ରାକ୍ଷସକୁ କହିଲେ । ୧୦ । "ହେ ଯୁଦ୍ଧବିଶାରଦ ! ତୁମ ସହିତ ଯୁଦ୍ଧ କରିବାକୁ ମୋର ଶକ୍ତି ନାହିଁ । ତୁମ ସହିତ ଯେ ଯୁଦ୍ଧ କରିବାକୁ ସମର୍ଥ ମୁଁ ତାଙ୍କ ନାମ କହିଦେଉଛି । ୧୧ । ଶଙ୍କରଙ୍କର ଶ୍ୱଶୁର ହିମବାନ୍ ନାମରେ ବିଖ୍ୟାତ ଶୈଳରାଜ ଅରଣ୍ୟରେ ତପସ୍ୱୀମାନଙ୍କର ପ୍ରଧାନ ଆଶ୍ରୟସ୍ଥଳ । ୧୨ । ସେଥିରେ ଅସଂଖ୍ୟ ସ୍ରୋତ, ଝରଣା ଏବଂ କନ୍ଦର ଅଛି । ସେ ତୁମ ସହିତ ଯୁଦ୍ଧ କରିବାକୁ ଯୋଗ୍ୟ । ସେ ନିଶ୍ଚୟ ତୁମକୁ ଖୁସି କରିଦେବେ" ୧୩ । ସେ ରାକ୍ଷସଶ୍ରେଷ୍ଠ ସମୁଦ୍ରକୁ ଭୟଭୀତ ଜାଣି ଧନୁରୁ ମୁକ୍ତ ଶରସଦୃଶ ବେଗରେ

ତତସ୍ତସ୍ୟ ଗିରେଃ ଶ୍ୱେତା ଗଜେନ୍ଦ୍ରପ୍ରତିମାଃ ଶିଳାଃ ।
ଚିକ୍ଷେପ ବହୁଧା ଭୂମୌ ଦୁନ୍ଦୁଭିର୍ବିନନାଦ ଚ । ୧୫ ।
ତତଃ ଶ୍ୱେତାମ୍ବୁଦାକାରଃ ସୌମ୍ୟଃ ପ୍ରୀତିକରାକୃତିଃ ।
ହିମବାନବ୍ରବୀଦ୍ୱାକ୍ୟଂ ସ୍ୱ ଏବ ଶିଖରେ ସ୍ଥିତଃ । ୧୬ ।
କ୍ଲେଷ୍ଟୁମର୍ହସି ମାଂ ନ ତ୍ୱଂ ଦୁନ୍ଦୁଭେ ଧର୍ମବତ୍ସଳ ।
ରଣକର୍ମସ୍ୱକୁଶଳସ୍ତପସ୍ୱିଶରଣୋ ହ୍ୟହମ୍ । ୧୭ ।
ତସ୍ୟ ତଦ୍ୱଚନଂ ଶ୍ରୁତ୍ୱା ଗିରିରାଜସ୍ୟ ଧୀମତଃ ।
ଉବାଚ ଦୁନ୍ଦୁଭିର୍ବାକ୍ୟଂ କ୍ରୋଧାତ୍ସଂରକ୍ତଲୋଚନଃ । ୧୮ ।
ଯଦି ଯୁଦ୍ଧେଽସମର୍ଥସ୍ତ୍ୱଂ ମଦ୍ଭୟାଦ୍ୱା ନିରୁଦ୍ୟମଃ ।
ତମାଚକ୍ଷ୍ୱ ପ୍ରଦଦ୍ୟାନ୍ମେ ଯୋ ହି ଯୁଦ୍ଧଂ ଯୁୟୁତ୍ସତଃ । ୧୯ ।
ହିମବାନବ୍ରବୀଦ୍ୱାକ୍ୟଂ ଶ୍ରୁତ୍ୱା ବାକ୍ୟବିଶାରଦଃ ।
ଅନୁକ୍ତପୂର୍ବଂ ଧର୍ମାତ୍ମା କ୍ରୋଧାତ୍ତମସୁରୋତ୍ତମମ୍ । ୨୦ ।
ବାଲୀ ନାମ ମହାପ୍ରାଜ୍ଞଃ ଶକ୍ରପୁତ୍ରଃ ପ୍ରତାପବାନ୍ ।
ଅଧ୍ୟାସ୍ତେ ବାନରଃ ଶ୍ରୀମାନ୍ କିଷ୍କିନ୍ଧାମତୁଲପ୍ରଭାମ୍ । ୨୧ ।

---

ହିମାଳୟ ବନକୁ ଆସିଲା ।୧୪। ଦୁନ୍ଦୁଭି ହିମାଳୟର ହାତୀ ସଦୃଶ ବୃହତ୍ ଶ୍ୱେତବର୍ଣ୍ଣ ଶିଳାମାନଙ୍କୁ ଏଣେତେଣେ ଭୂମିରେ ଫୋପାଡ଼ିବାକୁ ଲାଗିଲା ଏବଂ ଘୋର ଗର୍ଜନ କରିବାକୁ ଲାଗିଲା । ୧୫ । ଅନନ୍ତର ଶ୍ୱେତମେଘାକୃତି, ସୁନ୍ଦରବପୁ ଏବଂ ପ୍ରସନ୍ନାକୃତି ହିମବାନ୍ ନିଜ ଶିଖର ଉପରେ ଥାଇ କହିଲେ ।୧୬। "ହେ ଧର୍ମବତ୍ସଳ ଦୁନ୍ଦୁଭେ ! ତୁମେ ମୋତେ କଷ୍ଟ ଦିଅ ନାହିଁ । ମୁଁ ତ ଯୁଦ୍ଧବିଦ୍ୟାରେ ନିପୁଣ ନୁହେଁ । ମୋର ଏଠାରେ କେବଳ ତପସ୍ୱୀମାନେ ଆଶ୍ରୟ ଗ୍ରହଣକରି ରହିଥାଆନ୍ତି" ।୧୭। ବୁଦ୍ଧିମାନ୍ ପର୍ବତରାଜଙ୍କର ଏ କଥା ଶୁଣି ଦୁନ୍ଦୁଭିର ଚକ୍ଷୁ କ୍ରୋଧରେ ରକ୍ତବର୍ଣ୍ଣ ହୋଇଗଲା ଏବଂ ସେ କହିଲା ।୧୮। "ଯୁଦ୍ଧ କରିବାକୁ ତୁମେ ଯଦି ଅସମର୍ଥ ଅଥବା ଭୟରେ ଯୁଦ୍ଧ କରିବାକୁ ଚାହଁ ନାହଁ, ତେବେ ମୋ ସହିତ ଯେ ଯୁଦ୍ଧ କରିବ ଏପରି କୌଣସି ବ୍ୟକ୍ତିର ନାମ ମୋତେ କହ" ।୧୯। ବାକ୍ୟନିପୁଣ ଧର୍ମାତ୍ମା ହିମବାନ୍ ତାହାର ଏହି କଥା ଶୁଣି କ୍ରୋଧରେ ସେ ରାକ୍ଷସଶ୍ରେଷ୍ଠଙ୍କୁ ଏପରି କଥା କହିଲେ, ଯାହା ପୂର୍ବେ କେବେ ସେ କାହାରିକୁ କହି ନ ଥିଲେ । ୨୦ । "ଇନ୍ଦ୍ରଙ୍କ ପୁତ୍ର ବାଳୀ ନାମରେ ଏକ ପ୍ରବଳପ୍ରତାପୀ ବାନର ମନୋହର କିଷ୍କିନ୍ଧା ନଗରରେ

ସ ସମର୍ଥୋ ମହାପ୍ରାଜ୍ଞସ୍ତବ ଯୁଦ୍ଧବିଶାରଦଃ ।
ଦ୍ୱନ୍ଦ୍ୱଯୁଦ୍ଧଂ ସ ଦାତୁଂ ତେ ନମୁଚେରିବ ବାସବଃ । ୨୨ ।
ତଂ ଶୀଘ୍ରମଭିଗଚ୍ଛ ତ୍ୱଂ ଯଦି ଯୁଦ୍ଧମିହେଚ୍ଛସି ।
ସ ହି ଦୁର୍ମର୍ଷଣୋ ନିତ୍ୟଂ ଶୂରଂ ସମରକର୍ମଣି । ୨୩ ।
ଶ୍ରୁତ୍ୱା ହିମବତୋ ବାକ୍ୟଂ କୋପାବିଷ୍ଟଃ ସ ଦୁନ୍ଦୁଭିଃ ।
ଜଗାମ ତାଂ ପୁରୀଂ ତସ୍ୟ କିଷ୍କିନ୍ଧାଂ ବାଲିନସ୍ତଦା । ୨୪ ।
ଧାରୟନ୍ମାହିଷଂ ବେଷଂ ତୀକ୍ଷ୍ଣଶୃଙ୍ଗୋ ଭୟାବହଃ ।
ପ୍ରାବୃଷୀବ ମହାମେଘସ୍ତୋୟପୂର୍ଣୋ ନଭସ୍ତଲେ । ୨୫ ।
ତତସ୍ତୁ ଦ୍ୱାରମାଗମ୍ୟ କିଷ୍କିନ୍ଧାୟା ମହାବଲଃ ।
ନନର୍ଦ କମ୍ପୟନ୍ ଭୂମିଂ ଦୁନ୍ଦୁଭିର୍ଦୁନ୍ଦୁଭିର୍ଯଥା । ୨୬ ।
ସମୀପଜାନ୍ ଦ୍ରୁମାନ୍ ଭଞ୍ଜନ୍ ବସୁଧାଂ ଦାରୟନ୍ ଖୁରୈଃ ।
ବିଷାଣେନୋଲ୍ଲିଖନ୍ଦର୍ପାତ୍ତଦ୍ଦ୍ୱାରଂ ଦ୍ୱିରଦୋ ଯଥା । ୨୭ ।
ଅନ୍ତଃପୁରଗତୋ ବାଲୀ ଶ୍ରୁତ୍ୱା ଶବ୍ଦମମର୍ଷଣଃ ।
ନିଷ୍ପପାତ ସହ ସ୍ତ୍ରୀଭିସ୍ତାରାଭିରିବ ଚନ୍ଦ୍ରମାଃ । ୨ ।

---

ଥାଏ । ୨୧ । ଯେପରି ନମୁଚି ସହିତ ଇନ୍ଦ୍ର ଯୁଦ୍ଧ କରିଥିଲେ, ସେହିପରି ସେହି ବୁଦ୍ଧିମାନ୍ ଯୁଦ୍ଧନିପୁଣ ବାଳୀ ତୁମ ସହିତ ଦ୍ୱନ୍ଦ୍ୱଯୁଦ୍ଧ କରିବାକୁ ସମର୍ଥ ଅଟେ ।୨୨। ତୁମେ ଯଦି ବର୍ତ୍ତମାନ ଯୁଦ୍ଧ କରିବାକୁ ଚାହୁଁଛ, ତାହାହେଲେ ଅତିଶୀଘ୍ର ତାହାର ନିକଟକୁ ଯାଅ । ସେ ଯୁଦ୍ଧରେ ବଡ଼ ନିପୁଣ ଅଟେ ଏବଂ କେବେହେଲେ କାହାର ଆହ୍ୱାନ ସହ୍ୟକରି ପାରେ ନାହିଁ” । ୨୩ । ହିମବାନଙ୍କ ବଚନ ଶୁଣି ସେ ଦୁନ୍ଦୁଭି କ୍ରୋଧରେ ବାଳୀର ସେହି କିଷ୍କିନ୍ଧାନଗରୀ ଆଡ଼କୁ ଗଲା । ୨୪ । ସେ ମହିଷବେଶ ଧାରଣ କରିଥିଲା । ତାହାର ଶିଙ୍ଗ ବଡ଼ ତୀକ୍ଷ୍ଣ ଥିଲା ଏବଂ ସେ ଦେଖିବାକୁ ଅତିଶୟ ଭୟଙ୍କର ହୋଇଥିଲା । ବର୍ଷା ସମୟରେ ଜଳପୂର୍ଣ୍ଣ ଆକାଶସ୍ଥ ମେଘସଦୃଶ ସେ ଦେଖାଯାଉଥିଲା । ୨୫ । ମହାବଳବାନ୍ ଦୁନ୍ଦୁଭି କିଷ୍କିନ୍ଧାର ଦ୍ୱାରରେ ଆସି ପହଞ୍ଚି, ପୃଥିବୀ କମ୍ପାଇ, ଦୁନ୍ଦୁଭି ଶବ୍ଦପରି ଗର୍ଜନ କରିବାକୁ ଲାଗିଲା ।୨୬। ସେ ନିକଟରେ ଥିବା ବୃକ୍ଷମାନଙ୍କୁ ଭାଙ୍ଗିବାକୁ ଲାଗିଲା, ଖୁରରେ ପୃଥିବୀକୁ ଖୋଳିବାକୁ ଲାଗିଲା ଏବଂ ଶିଙ୍ଗରେ ଦ୍ୱାରକୁ ହାତୀସଦୃଶ ବଳରେ କେଞ୍ଚିବାକୁ ଲାଗିଲା । ୨୭ । ବାଳୀ କାହାର ଦର୍ପ ସହିପାରେ ନାହିଁ । ସେ ଅନ୍ତଃପୁରରେ ଥାଇ ଏହି ଶବ୍ଦ ଶୁଣିଲା ଏବଂ ତାରାଗଣ ସହିତ ଚନ୍ଦ୍ରସଦୃଶ ନିଜ ସ୍ତ୍ରୀମାନଙ୍କ ସହିତ ବାହାରି

ମିତଂ ବ୍ୟକ୍ତାକ୍ଷରପଦଂ ତମୁବାଚ ସ ଦୁନ୍ଦୁଭିମ୍ ।
ହରୀଣାମୀଶ୍ୱରୋ ବାଲୀ ସର୍ବେଷାଂ ବନଚାରିଣାମ୍ । ୨୯ ।
କିମର୍ଥଂ ନଗରଦ୍ୱାରମିଦଂ ରୁଦ୍ଧ୍ୱା ବିନର୍ଦସେ ।
ଦୁନ୍ଦୁଭେ ବିଦିତୋ ମେଽସି ରକ୍ଷ ପ୍ରାଣାନ୍ମହାବଲ । ୩୦ ।
ତସ୍ୟ ତଦ୍ୱଚନଂ ଶ୍ରୁତ୍ୱା ବାନରେନ୍ଦ୍ରସ୍ୟ ଧୀମତଃ ।
ଉବାଚ ଦୁନ୍ଦୁଭିର୍ବାକ୍ୟଂ କ୍ରୋଧାତ୍ସଂରକ୍ତଲୋଚନଃ । ୩୧ ।
ନ ତ୍ୱଂ ସ୍ତ୍ରୀସଂନିଧୌ ବୀର ବଚନଂ ବକ୍ତୁମର୍ହସି ।
ମମ ଯୁଦ୍ଧଂ ପ୍ରୟଚ୍ଛାଦ୍ୟ ତତୋ ଜ୍ଞାସ୍ୟାମି ତେ ବଲମ୍ । ୩୨ ।
ଅଥବା ଧାରୟିଷ୍ୟାମି କ୍ରୋଧମଦ୍ୟ ନିଶାମିମାମ୍ ।
ଗୃହ୍ୟତାମୁଦୟଃ ସ୍ୱୈରଂ କାମଭୋଗେଷୁ ବାନର । ୩୩ ।
ଦୀୟତାଂ ସଂପ୍ରଦାନଂ ଚ ପରିଷ୍ୱଜ୍ୟ ଚ ବାନରାନ୍ ।
ସର୍ବଶାଖାମୃଗେନ୍ଦ୍ରସ୍ତ୍ୱଂ ସଂସାଧୟ ସୁହୃଜ୍ଜନମ୍ । ୩୪ ।
ସୁଦୃଷ୍ଟାଂ କୁରୁ କିଷ୍କିନ୍ଧାଂ କୁରୁଷ୍ୱାତ୍ମସମଂ ପୁରେ ।
କ୍ରୀଡ଼ସ୍ୱ ଚ ସମଂ ସ୍ତ୍ରୀଭିରହଂ ତେ ଦର୍ପନାଶନଃ । ୩୫ ।

---

ଆସିଲା । ୨୮ । ବାନର ଏବଂ ଅନ୍ୟାନ୍ୟ ବନଚରମାନଙ୍କର ରାଜା ସେ ବାଳୀ ସ୍ପଷ୍ଟଭାବରେ ଦୁନ୍ଦୁଭିକୁ ଅତି ସଂକ୍ଷେପରେ କହିଲା । ୨୯ । "ନଗରଦ୍ୱାର ରୋକିକରି ତୁ କାହିଁକି ଏପରି ଗର୍ଜନ କରୁଛୁ । ହେ ମହାବଳ ଦୁନ୍ଦୁଭେ ! ମୁଁ ତୋତେ ଜାଣେ । ତୁ ଏବେ ନିଜର ପ୍ରାଣ ରକ୍ଷାକର" ।୩୦। ବୁଦ୍ଧିମାନ୍ ବାନରରାଜର ସେ କଥା ଶୁଣି କ୍ରୋଧରେ ଆଖି ରକ୍ତବର୍ଣ୍ଣ କରି ଦୁନ୍ଦୁଭି କହିଲା । ୩୧ । "ସ୍ତ୍ରୀଲୋକଙ୍କ ଆଗରେ ବୀରଙ୍କ ପରି କଥା କହିବାରେ କିଛି ଫଳ ନାହିଁ । ଆଜ ମୋ ସହିତ ଯୁଦ୍ଧକର, ତେବେ ଯାଇ ତୋନେ ମୁଁ ବଳବାନ୍ ବୋଲି ଜାଣିବି । ୩୨ । ଅଥବା ଆଜ ରାତିକ ପାଇଁ ମୁଁ ମୋର କ୍ରୋଧକୁ ରୋକି ରଖିବି । ସୂର୍ଯ୍ୟ ଉଦୟ ହେବାପର୍ଯ୍ୟନ୍ତ ସମୟ ଦେଲି । ଏତାବତ୍ କାଳ ତୁ ତୋର କାମ ଉପଭୋଗ କରିନେ । ୩୩ । ତୁ ବାନର-ମାନଙ୍କର ରାଜା ଅଟୁ, ସୁତରାଂ ସେମାନଙ୍କୁ ଆଲିଙ୍ଗନ କରି ଯାହାକୁ ଯାହା ଦେବାର ଅଛି ଦେଇଦେ ଏବଂ ନିଜର ମିତ୍ରମାନଙ୍କୁ ସନ୍ତୁଷ୍ଟ କରିନେ । ୩୪ । କିଷ୍କିନ୍ଧାକୁ ଖୁବ୍ ଆନନ୍ଦିତ କରିନେ । ଏ ନଗରରେ ତୋ ସ୍ଥାନ ଅଧିକାର କରିବାକୁ କାହାକୁ ସ୍ଥିର କରିବାର କରିପକା ଏବଂ ସ୍ତ୍ରୀମାନଙ୍କ ସହିତ ମନମାଫିକ୍ କ୍ରୀଡ଼ା-କୌତୁକ କରିନେ । କାରଣ ମୁଁ ତୋର ଦର୍ପଚୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ଏଠାରେ

ଯୋ ହି ମତ୍ତଂ ପ୍ରମତ୍ତଂ ବା ଭଗ୍ନଂ ବା ରହିତଂ କୃଶମ୍ ।
ହନ୍ୟାତ୍ସ ଭ୍ରୂଣହା ଲୋକେ ତ୍ୱଦ୍‌ବିଧଂ ମଦମୋହିତମ୍ । ୩୬ ।
ସ ପ୍ରହସ୍ୟାବ୍ରବୀନ୍ମନ୍ଦଂ କ୍ରୋଧାତ୍ତମସୁରେଶ୍ୱରମ୍ ।
ବିସୃଜ୍ୟ ତାଃ ସ୍ତ୍ରିୟଃ ସର୍ବାସ୍ତାରାପ୍ରଭୃତିକାସ୍ତଦା । ୩୭ ।
ମତ୍ତୋଽୟମିତି ମା ମଂସ୍ଥା ଯଦ୍ୟଭୀତୋଽସି ସଂଯୁଗେ ।
ମଦୋଽୟଂ ସଂପ୍ରହାରେଽସ୍ମିନ୍ ବୀରପାନଂ ସମର୍ଥ୍ୟତାମ୍ । ୩୮ ।
ତମେବମୁକ୍ତ୍ୱା ସଂକ୍ରୁଦ୍ଧୋ ମାଲାମୁତ୍‌କ୍ଷିପ୍ୟ କାଞ୍ଚନୀମ୍ ।
ପିତ୍ରା ଦତ୍ତାଂ ମହେନ୍ଦ୍ରେଣ ଯୁଦ୍ଧାୟ ବ୍ୟବତିଷ୍ଠତ । ୩୯ ।
ବିଷାଣୟୋର୍ଗୃହୀତ୍ୱା ତଂ ଦୁନ୍ଦୁଭିଂ ଗିରିସଂନିଭମ୍ ।
ଆବିଧ୍ୟତ ତଦା ବାଲୀ ବିନଦନ୍ କପିକୁଞ୍ଜରଃ । ୪୦ ।
ବାଲୀ ବ୍ୟାପାତୟାଂଚକ୍ରେ ନନର୍ଦ ଚ ମହାସ୍ୱନମ୍ ।
ଶ୍ରୋତ୍ରାଭ୍ୟାମଥ ରକ୍ତଂ ତୁ ତସ୍ୟ ସୁସ୍ରାବ ପାତ୍ୟତଃ । ୪୧ ।
ତୟୋସ୍ତୁ କ୍ରୋଧସଂରମ୍ଭାତ୍ପରସ୍ପରଜୟୈଷିଣୋଃ ।
ଯୁଦ୍ଧଂ ସମଭବଦ୍‌ଘୋରଂ ଦୁନ୍ଦୁଭେର୍ବାଳିନସ୍ତଥା । ୪୨ ।

---

ଉପସ୍ଥିତ ହୋଇଅଛୁ । ୩୫ । ଯେଉଁ ବ୍ୟକ୍ତି ନିଶାରେ ମତ୍ତ, ପାଗଳ, ପଳାୟନକାରୀ, ଅସ୍ତ୍ରହୀନ ବା ଦୁର୍ବଳ ଲୋକକୁ ମାରେ ବା ତୋପରି କାମମୋହିତ ଲୋକକୁ ମାରେ, ତାଙ୍କୁ ଭ୍ରୂଣହତ୍ୟା ପାପ ଲାଗେ” । ୩୬ । ତାରା ପ୍ରଭୃତି ସବୁ ସ୍ତ୍ରୀଙ୍କୁ ସେଠାରୁ ବିଦାୟ ଦେଇ ବାଲୀ ସେହି ରାକ୍ଷସରାଜକୁ କ୍ରୋଧପୂର୍ବକ ହସି ହସି କହିଲା । ୩୭ । “ଯୁଦ୍ଧ କରିବାକୁ ତୁ ଯଦି ଭୟ ନ କରୁଛୁ ତାହାହେଲେ ମୋତେ କାମମତ୍ତ ବୋଲି ଜ୍ଞାନକର ନାହିଁ । ମାତ୍ର ଏ ସମ୍ଭୋଗମଦକୁ ଏ ଯୁଦ୍ଧରେ ବୀରପାନ (ଯେ ମଦିରା ପାନକରି ବୀରମାନେ ଯୁଦ୍ଧଯାତ୍ରା କରନ୍ତି) ଜ୍ଞାନକର” । ୩୮ । କ୍ରୋଧରେ ତାହାକୁ ଏପ୍ରକାର କହି, ନିଜର ପିତା ଇନ୍ଦ୍ର ଦେଇଥିବା ସୁବର୍ଣ୍ଣହାରକୁ କାଢ଼ି ପକାଇ, ବାଲୀ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ବାହାରିପଡ଼ିଲା । ୩୯ । ପର୍ବତସଦୃଶ ସେହି ଦୁନ୍ଦୁଭିର ଶିଙ୍ଗ ଦୁଇଟି ଧରି କପିଶ୍ରେଷ୍ଠ ବାଲୀ ତାକୁ ଘୁଞ୍ଚି ଫିଙ୍ଗିଦେଲା ଏବଂ ଗର୍ଜନ କରିବାକୁ ଲାଗିଲା । ୪୦ । ବାଲୀ ତାକୁ ଲେଉଟାଇ ପକାଇଲା ଏବଂ ଘୋର ଗର୍ଜନ କରିବାକୁ ଲାଗିଲା । ଭୂଇଁରେ ପିଟିହୋଇଯାଇ ଦୁନ୍ଦୁଭିର ଦୁଇ କାନରୁ ରକ୍ତ ବୋହିବାକୁ ଲାଗିଲା । ୪୧ । କ୍ରୋଧହେତୁରୁ ପରସ୍ପରକୁ ଜିଣିବା ଇଚ୍ଛାରେ ବାଲୀ ଏବଂ ଦୁନ୍ଦୁଭିମଧ୍ୟରେ ଘୋର ଯୁଦ୍ଧ ଲାଗିଲା । ୪୨ । ଇନ୍ଦ୍ରସଦୃଶ ପରାକ୍ରମୀ ବାଲୀ ମୁଠି,

ଅଯୁଧ୍ୟତ ତଦା ବାଲୀ ଶକ୍ରତୁଲ୍ୟପରାକ୍ରମଃ ।
ମୁଷ୍ଟିଭିର୍ଜାନୁଭିଃ ପଦ୍ଭିଃ ଶିଳାଭିଃ ପାଦପୈସ୍ତଥା । ୪୩ ।
ପରସ୍ପରଂ ଘ୍ନତୋସ୍ତତ୍ର ବାନରାସୁରୟୋସ୍ତଦା ।
ଆସୀଦ୍ଧୀନୋଽସୁରୋ ଯୁଦ୍ଧେ ଶକ୍ରସୂନୁର୍ବ୍ୟବର୍ଦ୍ଧତ । ୪୪ ।
ତଂ ତୁ ଦୁନ୍ଦୁଭିମୁଦ୍ୟମ୍ୟ ଧରଣ୍ୟାମଭ୍ୟପାତୟତ୍ ।
ଯୁଦ୍ଧେ ପ୍ରାଣହରେ ତସ୍ମିନ୍ନିଷ୍ପିଷ୍ଟୋ ଦୁନ୍ଦୁଭିସ୍ତଦା । ୪୫ ।
ଶ୍ରୋତ୍ରେଭ୍ୟୋ ବହୁ ରକ୍ତଂ ତୁ ତସ୍ୟ ସୁସ୍ରାବ ପାତ୍ୟତଃ ।
ପପାତ ଚ ମହାବାହୁଃ କ୍ଷିତୌ ପଞ୍ଚତ୍ୱମାଗତଃ । ୪୬ ।
ତଂ ତୋଲୟିତ୍ୱା ବାହୁଭ୍ୟାଂ ଗତସତ୍ତ୍ୱମଚେତନମ୍ ।
ଚିକ୍ଷେପ ବେଗବାନ୍ବାଲୀ ବେଗେନୈକେନ ଯୋଜନମ୍ । ୪୭ ।
ତସ୍ୟ ବେଗପ୍ରବିଦ୍ଧସ୍ୟ ବକ୍ତ୍ରାତ୍ କ୍ଷତଜବିନ୍ଦବଃ ।
ପ୍ରପେତୁର୍ମାରୁତୋତ୍କ୍ଷିପ୍ତା ମତଙ୍ଗସ୍ୟାଶ୍ରମଂ ପ୍ରତି । ୪୮ ।
ତାନ୍ ଦୃଷ୍ଟ୍ୱା ପତିତାଂସ୍ତତ୍ର ମୁନିଃ ଶୋଣିତବିପ୍ରୁଷଃ ।
କ୍ରୁଦ୍ଧସ୍ତସ୍ୟ ମହାଭାଗଶ୍ଚିନ୍ତୟାମାସ କୋନ୍ୱୟମ୍ । ୪୯ ।
ଯେନାହଂ ସହସା ସ୍ପୃଷ୍ଟଃ ଶୋଣିତେନ ଦୁରାତ୍ମନା ।
କୋଽୟଂ ଦୁରାତ୍ମା ଦୁର୍ବୁଦ୍ଧିରକୃତାତ୍ମା ଚ ବାଲିଶଃ । ୫୦ ।

---

ଜଙ୍ଘ, ପାଦ, ପଥର ତଥା ବୃକ୍ଷସାହାଯ୍ୟରେ ଯୁଦ୍ଧକଲା । ୪୩ । ସେ ଯୁଦ୍ଧରେ ପରସ୍ପରକୁ ପ୍ରହାର କରୁ କରୁ ଅସୁରର ବଳ କମି ଆସିଲା ଏବଂ ଇନ୍ଦ୍ରପୁତ୍ର ବାନରର ବଳ ବଢ଼ିବାକୁ ଲାଗିଲା । ୪୪ । ସେହି ପ୍ରାଣସଂହାରକାରୀ ଯୁଦ୍ଧରେ, ବାଲୀ ଦୁନ୍ଦୁଭିକୁ ଉଠାଇ ଭୂଇଁ ଉପରେ କଚାଡ଼ିଦେଲା ଏବଂ ତାକୁ ଦଳିଦେଲା ।୪୫। ପୃଥିବୀ ଉପରେ ପଡ଼ି ସେ ରାକ୍ଷସର ନାକ କାନ ଆଦିରୁ ବହୁତ ରକ୍ତସ୍ରାବ ହେଲା ଏବଂ ସେ ମରିଗଲା । ୪୬ । ବେଗବାନ୍ ବାଲୀ ମୃତ ଓ ଅଚେତନ ସେହି ରାକ୍ଷସକୁ ହାତରେ ଉଠାଇ ବେଗରେ ଏକଯୋଜନ ଦୂରରେ ଫୋପାଡ଼ିଦେଲା । ୪୭ । ଅତି ବେଗରେ ନିକ୍ଷିପ୍ତ ହେଉଥିବାବେଳେ ଦୁନ୍ଦୁଭିର ମୁଖରୁ ବାହାରୁଥିବା ରକ୍ତ, ପବନରେ ଉଡ଼ି ଯାଇ ମତଙ୍ଗ ମୁନିଙ୍କର ଆଶ୍ରମରେ ପଡ଼ିଲା । ୪୮ । ସେ ରକ୍ତବିନ୍ଦୁ ସବୁ ସେଠାରେ ପଡ଼ିବାର ଦେଖି ମହାଭାଗ ମୁନି ଅତିଶୟ କ୍ରୁଦ୍ଧ ହେଲେ ଏବଂ ଏ ରକ୍ତ ପକାଇବା ଲୋକ କିଏ ତାହା ଚିନ୍ତା କରିବାକୁ ଲାଗିଲେ । ୪୯ । ଏ କେଉଁ ଦୁର୍ବୁଦ୍ଧି ମୋ ଶରୀରରେ ରୁଧିର ବିନ୍ଦୁ

ଇତ୍ୟୁକ୍ତ୍ୱା ସ ବନସ୍ଥମସ୍ୟ ଦଦୃଶେ ମୁନସତ୍ତମଃ ।
ମହିଷଂ ପର୍ବତାକାରଂ ଗତାସୁଂ ପତିତଂ ଭୁବି । ୫୧ ।
ସ ତୁ ବିଜ୍ଞାୟ ତପସା ବାନରେଣ କୃତଂ ହି ତତ୍ ।
ଉତ୍ସସର୍ଜ ମହାଶାପଂ କ୍ଷେପ୍ତାରଂ ବାନରଂ ପ୍ରତି । ୫୨ ।
ଇହ ତେନାପ୍ରବେଷ୍ଟବ୍ୟଂ ପ୍ରବିଷ୍ଟସ୍ୟ ବଧୋ ଭବେତ୍ ।
ବନଂ ମତ୍ସଂଶ୍ରୟଂ ଯେନ ଦୂଷିତଂ ରୁଧିରସ୍ରବୈଃ । ୫୩ ।
କ୍ଷିପତା ପାଦପାଶ୍ଚେମେ ସଂଭାଗ୍ନାଶ୍ଚାସୁରୀଂ ତନୁମ୍ ।
ସମନ୍ତାଦାଶ୍ରମଂ ପୂର୍ଣ୍ଣଂ ଯୋଜନଂ ମାମକଂ ଯଦି । ୫୪ ।
ଆକ୍ରମିଷ୍ୟତି ଦୁର୍ବୁଦ୍ଧିର୍ବ୍ୟକ୍ତଂ ସ ନ ଭବିଷ୍ୟତି ।
ଯେ ଚାସ୍ୟ ସଚିବାସ୍ତସ୍ୟ ସଂଶ୍ରିତା ମାମକଂ ବନମ୍ । ୫୫ ।
ନ ଚ ତୈରିହ ବସ୍ତବ୍ୟଂ ଶ୍ରୁତ୍ୱା ଯାନ୍ତୁ ଯଥାସୁଖମ୍ ।
ତେଽପି ବା ଯଦି ତିଷ୍ଠନ୍ତି ଶପିଷ୍ୟେ ତାନପି ଧ୍ରୁବମ୍ । ୫୬ ।
ବନେଽସ୍ମିନ୍ମାମକେ ନିତ୍ୟଂ ପୁତ୍ରବତ୍ପରିରକ୍ଷିତେ ।
ପତ୍ରାଙ୍କୁରବିନାଶାୟ ଫଳମୂଳାଭବାୟ ଚ । ୫୭ ।

---

ପକାଇଲା । ଏ ମୂର୍ଖ ଦୁରାତ୍ମା ପାପୀ କିଏ ? ୫୦ । ଏହାକହି ନିଜ ଆଶ୍ରମରୁ ବାହାରି ମହାମୁନି ପର୍ବତସଦୃଶ ଓ ପ୍ରାଣହୀନ ହୋଇ ଭୂମିରେ ପଡ଼ିଥିବା ଏକ ମଇଁଷିକୁ ଦେଖିଲେ । ୫୧ । ତପସ୍ୟାବଳରେ ମୁନି ଜାଣିପାରିଲେ ଯେ ଏହା ବାନରର କାର୍ଯ୍ୟ ଅଟେ । ସୁତରାଂ ନିକ୍ଷେପକାରୀ ବାନରକୁ ସେ ଏକ ମହାଶାପ ଦେଲେ ।୫୨। "ମୋର ଆବାସସ୍ଥାନ ବନକୁ ଯେ ରକ୍ତଧାରାଦ୍ୱାରା ଦୂଷିତ କଲା, ସେ ଏଠାକୁ କଦାପି ଆସିପାରିବ ନାହିଁ; ଯଦି ଏଠାକୁ ଆସେ ତେବେ ସେ ନିଶ୍ଚୟ ମରିଯିବ । ୫୩ । ରାକ୍ଷସର ଶରୀରକୁ ପକାଇ ଯେ ଏସବୁ ବୃକ୍ଷକୁ ଭାଙ୍ଗିଦେଲା, ସେ ଯଦି ନିଜେ ମୋ ଆଶ୍ରମର ପାଖଆଖ ଏକଯୋଜନ ମଧ୍ୟକୁ ଆସେ, ତେବେ ଏ ବନ କଦାପି ରହିବ ନାହିଁ (ନଷ୍ଟ ହୋଇଯିବ) ଏକଥା ସ୍ପଷ୍ଟ ଜଣାଯାଉଛି । ତାହାର କୌଣସି ମନ୍ତ୍ରୀ ଯଦି ଏ ବନରେ ଥାଆନ୍ତି, ତେବେ ସେମାନଙ୍କର ମଧ୍ୟ ଏଠାରେ ରହିବା ଉଚିତ ନୁହେଁ । ମୋର ଏ ଶାପ ଶୁଣି ସେମାନେ ଇଚ୍ଛାନୁସାରେ ଚାଲିଯାଆନ୍ତୁ । ଯଦି ସେମାନେ ଚାଲି ନ ଯାଆନ୍ତି ତେବେ ତାଙ୍କୁ ମଧ୍ୟ ମୁଁ ଶାପ ଦେବି, ଏହା ନିଶ୍ଚିତ । ୫୪–୫୬ । ଏ ବନକୁ ପୁତ୍ର ସମାନ ମୁଁ ସର୍ବଦା ପାଳନ କରିଅଛି । ଏହାର ପତ୍ର, ଅଙ୍କୁର, ଫଳ ମୂଳ ଆଦି ନାଶ କରିବା ପାଇଁ ଯେଉଁ ବାନରକୁ କାଲି ଏଠାରେ ଦେଖିବି ସେ

ଶିବସଣ୍ଡାଦ୍ୟ ମର୍ଯାଦା ଯଂ ଦ୍ରକ୍ଷ୍ୟତି ଶ୍ୱୋଽସ୍ମି ବାନରମ୍ ।
ବହୁବର୍ଷସହସ୍ରାଣି ସ ବୈ ଶୈଲୋ ଭବିଷ୍ୟତି । ୫୮ ।
ତତସ୍ତେ ବାନରାଃ ଶ୍ରୁତ୍ୱା ଗିରଂ ମୁନିସମୀରିତାମ୍ ।
ନିଷ୍କ୍ରାନ୍ତା ମୁନିନାତସ୍ମାତ୍ତାନ୍ ଦୃଷ୍ଟ୍ୱା ବାଲିରବ୍ରବୀତ୍ । ୫୯ ।
କିଂ ଭବନ୍ତଃ ସମସ୍ତାଶ୍ଚ ମତଙ୍ଗବନବାସିନଃ ।
ମତ୍ସମୀପମନୁପ୍ରାପ୍ତା ଅପି ସ୍ୱସ୍ତି ବନୌକସାମ୍ । ୬୦ ।
ତତସ୍ତେ କାରଣଂ ସର୍ବଂ ତଥା ଶାପଂ ଚ ବାଲିନଃ ।
ଶଶଂସୁର୍ବାନରାଃ ସର୍ବେ ବାଲିନେ ହେମମାଳିନେ । ୬୧ ।
ଏତଚ୍ଛ୍ରୁତ୍ୱା ତଦା ବାଲୀ ବଚନଂ ବାନରେରିତମ୍ ।
ସ ମହର୍ଷିଂ ସମାସାଦ୍ୟ ଯାଚତେ ସ୍ମ କୃତାଞ୍ଜଳିଃ । ୬୨ ।
ମହର୍ଷିସ୍ତମନାଦୃତ୍ୟ ପ୍ରବିବେଶାଶ୍ରମଂ ପ୍ରତି ।
ଶାପଧାରଣଭୀତସ୍ତୁ ବାଲୀ ବିହ୍ୱଳତାଂ ଗତଃ । ୬୩ ।
ତତଃ ଶାପଭୟାଦ୍ଭୀତୋ ଋଶ୍ୟମୂକଂ ମହାଗିରିମ୍ ।
ପ୍ରବେଷ୍ଟୁଂ ନେଚ୍ଛତି ହରିର୍ଦ୍ରଷ୍ଟୁଂ ବାପି ନରେଶ୍ୱର । ୬୪ ।
ତସ୍ୟାପ୍ରବେଶଂ ଜ୍ଞାତ୍ୱାହମିଦଂ ରାମ ମହାବନମ୍ ।
ବିଚରାମି ସହାମାତ୍ୟୋ ବିଷାଦେନ ବିବର୍ଜିତଃ । ୬୫ ।

---

ବହୁ ସହସ୍ର ବର୍ଷପର୍ଯ୍ୟନ୍ତ ପଥର ହୋଇଯିବ । ଆଜ ଠାରୁ ମୁଁ କହି ଦେଲି ।” । ୫୭-୫୮ । ମୁନିଙ୍କ ଉଚ୍ଚାରିତ ଏ କଥା ଶୁଣି ସବୁ ବାନର ସେ ବନରୁ ବାହାରଗଲେ । ସେମାନଙ୍କୁ ଦେଖି ବାଲୀ କହିଲା । ୫୯ । “ମତଙ୍ଗ ବନରେ ବାସ କରୁଥିବା ଆପଣ ସବୁ ବାନର ମୋ ପାଖକୁ କାହିଁକି ଆସିଛ ? ବନବାସୀ-ମାନଙ୍କର ସବୁ କୁଶଳ ତ ?” । ୬୦ । ବାନରମାନେ ସୁବର୍ଣ୍ଣମାଳା ପିନ୍ଧିଥିବା ବାଲୀକୁ ସମସ୍ତ କାରଣ ଏବଂ ତାହା ପ୍ରତି ଶାପ କଥା କହିଲେ । ୬୧ । ବାନରମାନଙ୍କ କଥା ଶୁଣି ବାଲୀ ମୁନିଙ୍କ ନିକଟକୁ ଗଲା ଏବଂ ହାତଯୋଡ଼ି ତାଙ୍କୁ ପ୍ରାର୍ଥନା କଲା । ୬୨ । ବାଲୀ ପ୍ରତି କୌଣସି ଭ୍ରୂକ୍ଷେପ ନ କରି ମହର୍ଷି ନିଜ ଆଶ୍ରମଭିତରକୁ ଗୃଲିଗଲେ । ଶାପଭୟରେ ବାଲୀ ବ୍ୟାକୁଳ ହୋଇପଡ଼ିଲା । ୬୩ । ହେ ନରେଶ୍ୱର ! ସେହି ଦିନ-ଠାରୁ ଶାପଭୟରେ ଭୀତହୋଇ ବାଲୀ ଋଷ୍ୟମୂକ ମହାପର୍ବତରେ ପ୍ରବେଶ କରେ ନାହିଁ; ଏପରିକି ଏ ପର୍ବତଆଡ଼କୁ ଗୃହିଁବାକୁ ମଧ୍ୟ ଇଚ୍ଛା କରେ ନାହିଁ । ୬୪ । ସେ ଏଠାକୁ ଆସିବ ନାହିଁ ଏହା ଜାଣି ମୁଁ ନିଜର ମନ୍ତ୍ରୀମାନଙ୍କ ସହିତ ଏ ବନରେ ନିର୍ଭୟରେ ଚଳପ୍ରଚଳ ହେଉଅଛି । ୬୫ । ଯେଉଁ ଦୁନ୍ଦୁଭି ବଳଦର୍ପହେତୁରୁ ହତ

ଏଷୋଽସ୍ତି ନିଚୟସ୍ତସ୍ୟ ଦୁନ୍ଦୁଭେଃ ସଂପ୍ରକାଶତେ ।
କୀର୍ଯୋଦ୍ରେକାନ୍ତିରସ୍ତସ୍ୟ ଗିରକୂଟନରୋ ମହାନ୍ । ୭୬ ।
ଇମେ ଚ ବିପୁଲାଃ ସାଲାଃ ସପ୍ତଶାଖାବଲମ୍ବିନଃ ।
ଯତ୍ରୈକଂ ଘଟତେ ବାଲୀ ନିଷ୍ପତ୍ରୟିତୁମୋଜସା । ୭୭ ।
ଏତଦସ୍ୟାସମଂ ବୀର୍ଯଂ ମୟା ରାମ ପ୍ରକାଶିତମ୍ ।
କଥଂ ତଂ ବାଲିନଂ ହନ୍ତୁଂ ସମରେ ଶକ୍ଷ୍ୟସେ ନୃପ । ୭୮ ।
ତଥା ବ୍ରୁବାଣଂ ସୁଗ୍ରୀବଂ ପ୍ରହସଁଲ୍ଲକ୍ଷ୍ମଣୋଽବ୍ରବୀତ୍ ।
କସ୍ମିନ୍ କର୍ମଣି ନିବୃତ୍ତେ ଶ୍ରଦ୍ଧଧ୍ୟା ବାଲିନୋ ବଧମ୍ । ୭୯ ।
ତମୁବାଚାଥ ସୁଗ୍ରୀବଃ ସପ୍ତ ସାଲାନିମାନ୍ ପୁରା ।
ଏବମେକୈକଶୋ ବାଲୀ ବିବ୍ୟାଧାଥ ସ ଚାସକୃତ୍ । ୮୦ ।
ରାମୋ ନିର୍ଦାରୟେଦେଷାଂ ବାଣେନୈକେନ ଚ ଦ୍ରୁମମ୍ ।
ବାଲିନଂ ନିହତଂ ମନ୍ୟେ ଦୃଷ୍ଟ୍ବା ରାମସ୍ୟ ବିକ୍ରମମ୍ । ୮୧ ।
ହତସ୍ୟ ମହିଷସ୍ୟାସ୍ଥି ପାଦେନୈକେନ ଲକ୍ଷ୍ମଣ ।
ଉଦ୍ୟମ୍ୟ ପ୍ରକ୍ଷିପେଚ୍ଚାପି ତରସା ଦ୍ୱେ ଧନୁଃଶତେ । ୮୨ ।

---

ହୋଇଥିଲା ତାହାର ହାଡ଼ଗଦା, ହୋଇଛି, ପର୍ବତଶୃଙ୍ଗସଦୃଶ ପଡ଼ି ରହିଅଛି, ଦେଖନ୍ତୁ । ୭୬ । ଏଇ ଦେଖନ୍ତୁ, ସାତଟି ମୋଟା ଶାଳବୃକ୍ଷ ଶାଖା ବିସ୍ତାରକରି ରହିଅଛି । ଏକାଥରକେ ଏ ସମସ୍ତ ବୃକ୍ଷକୁ ନିଜବଳରେ ହଲାଇ ବାଲୀ ଏହାର ପତ୍ରସବୁକୁ ଝାଡ଼ିଦେଇପାରେ । ୭୭ । ହେ ରାଜନ୍ ! ବାଳୀର ଏହି ଅସୀମ ପରାକ୍ରମ କଥା ମୁଁ ତୁମକୁ ଜଣାଇଲି । ସେ ବାଳୀକୁ ତୁମେ ଯୁଦ୍ଧରେ କପରି ମାରି ପାରିବ ? । ୭୮ । ସୁଗ୍ରୀବ ଏପରି କହିବାପରେ ଲକ୍ଷ୍ମଣ ହସି ହସି କହିଲେ "କଅଣ କଲେ ତୁମର ବିଶ୍ୱାସ ହେବ ଯେ ଆମେ ବାଳୀକୁ ମାରି ପାରିବୁଁ" । ୭୯ । ଅନନ୍ତର ସୁଗ୍ରୀବ ତାଙ୍କୁ କହିଲେ, "ପୂର୍ବେ ଏହି ଶାଳବୃକ୍ଷମାନଙ୍କୁ ଗୋଟି ଗୋଟି କରି ବାଳୀ ବହୁବାର ଭେଦ କରିଥିଲା । ୮୦ । ରାମଚନ୍ଦ୍ର ଯଦି ଏହି ବୃକ୍ଷମଧ୍ୟରୁ କୌଣସି ଗୋଟିଏ ବୃକ୍ଷକୁ ଗୋଟିଏ ବାଣଦ୍ୱାରା ଭେଦ କରିପାରିବେ, ତେବେ ମୁଁ ରାମଙ୍କର ବିକ୍ରମ ଦେଖି ବୁଝିବି ଯେ ସେ ବାଳୀକୁ ମାରିପାରିବେ ।୮୧। ହେ ଲକ୍ଷ୍ମଣ ! ମୃତ ମହିଷାସୁରର ଅସ୍ଥିକୁ ଗୋଟିଏ ପାଦରେ ଉଠାଇ ଦୁଇ ଶତ ଧନୁ * ଦୂରକୁ ଯଦି ଫିଙ୍ଗିଦେଇ ପାରିବେ, ତେବେ ମୁଁ ବୁଝିବି ଯେ ରାମଚନ୍ଦ୍ର ନିଶ୍ଚୟ ବାଳୀକୁ ମାରି ପାରିବେ"।୮୨।

*—ଏକ ଧନୁ = ୪ ହାତ ।

ଏବମୁକ୍ତ୍ୱା ତୁ ସୁଗ୍ରୀବୋ ରାମଂ ରକ୍ତାକ୍ତଲୋଚନଃ ।
ଧ୍ୟାତ୍ୱା ମୁହୂର୍ତ୍ତଂ କାକୁତ୍ସ୍ଥଂ ପୁନରେବ ବଚୋଽବ୍ରବୀତ୍ । ୭୩ ।
ଶୂରଶ୍ଚ ଶୂରମାନୀ ଚ ପ୍ରଖ୍ୟାତବଲପୌରୁଷଃ ।
ବଲବାନ୍ ବାନରୋ ବାଲୀ ସଂଯୁଗେଷ୍ୱପରାଜିତଃ । ୭୪ ।
ଦୃଶ୍ୟନ୍ତେ ଚାସ୍ୟ କର୍ମାଣି ଦୁଷ୍କରାଣି ସୁରୈରପି ।
ଯାନି ସଂଚିନ୍ତ୍ୟ ଭୀତୋଽହମୃଶ୍ୟମୂକମୁପାଶ୍ରିତଃ । ୭୫ ।
ତମଜୟ୍ୟମଧୃଷ୍ୟଂ ଚ ବାନରେନ୍ଦ୍ରମମର୍ଷଣମ୍ ।
ବିଚିନ୍ତୟନ୍ନ ମୁଞ୍ଚାମି ଋଶ୍ୟମୂକମମୁଂ ତ୍ୱହମ୍ । ୭୬ ।
ଉଦ୍ୱିଗ୍ନଃ ଶଙ୍କିତଶ୍ଚାହଂ ବିଚରାମି ମହାବନେ ।
ଅନୁରକ୍ତୈଃ ମହାମାତ୍ୟୈର୍ହନୁମତ୍ପ୍ରମୁଖୈର୍ବରୈଃ । ୭୭ ।
ଉପଲବ୍ଧଂ ଚ ମେ ଶ୍ଲାଘ୍ୟଂ ସନ୍ମିତ୍ରଂ ମିତ୍ରବତ୍ସଲ ।
ତ୍ୱାମହଂ ପୁରୁଷବ୍ୟାଘ୍ର ହିମବନ୍ତମିବାଶ୍ରିତଃ । ୭୮ ।
କିଂ ତୁ ତସ୍ୟ ବଲଜ୍ଞୋଽହଂ ଦୁର୍ଭ୍ରାତୁର୍ବଲଶାଳିନଃ ।
ଅପ୍ରତ୍ୟକ୍ଷଂ ତୁ ମେ ବୀର୍ଯ୍ୟଂ ସମରେ ତବ ରାଘବ । ୭୯ ।

---

ଏହି ପ୍ରକାରେ କହି ଏବଂ ଚକ୍ଷୁକୁ ରକ୍ତାକ୍ତ କରି ସୁଗ୍ରୀବ କିଛି ସମୟ ଚିନ୍ତା କରି ପୁଣି ରାମଚନ୍ଦ୍ରଙ୍କୁ କହିଲେ । ୭୩ । "ବାଲୀ ବୀର ଅଟେ ଏବଂ ନିଜକୁ ବୀର ବୋଲି ଅଭିମାନ କରେ । ତାହାର ବଳ ଏବଂ ପରାକ୍ରମ ପ୍ରସିଦ୍ଧ ଅଟେ । ସେ ବଳୀ ଅଟେ ଏବଂ ଯୁଦ୍ଧରେ ତାହାର କେବେହେଲେ ପରାଜୟ ହୋଇ ନାହିଁ । ୭୪ । ଦେବତାମାନେ ଯାହା କରିପାରିବେ ନାହିଁ ଏପରି ଅସାଧ୍ୟ କାର୍ଯ୍ୟ ମଧ୍ୟ ସେ ସାଧନ କରିପାରେ । ତାହାର ସେହିସବୁ ଶକ୍ତି ଚିନ୍ତାକରି ମୁଁ ଭୟରେ ଆସି ଋଷ୍ୟମୂକ ପର୍ବତରେ ଆଶ୍ରୟ ନେଇଛି । ୭୫ । ଯେଉଁ ବାନରେନ୍ଦ୍ର ବାଳୀକୁ ଜୟ କରି ହେବ ନାହିଁ ଏବଂ ଯେ କଦାପି କ୍ଷମା କରେ ନାହିଁ, ତାହାର ବିଷୟ ଚିନ୍ତାକରି ମୁଁ ଏହି ଋଷ୍ୟମୂକ ପର୍ବତକୁଛାଡ଼ି କୁଆଡ଼େ ଯାଉ ନାହିଁ ।୭୬। ଉଦ୍ୱିଗ୍ନ ଏବଂ ଶଙ୍କିତ ହୋଇ ହନୁମାନ ପ୍ରଭୃତି ଅନୁରକ୍ତ ଶ୍ରେଷ୍ଠ ସଚିବମାନଙ୍କ ସହିତ ମୁଁ ଏ ବନରେ ବିଚରଣ କରୁଅଛି ।୭୭। ହେ ମିତ୍ରବତ୍ସଳ ! ମୋତେ ବର୍ତ୍ତମାନ ଶ୍ଳାଘନୀୟ ସତ୍ ମିତ୍ର ମିଳିଯାଇଅଛି । ହେ ପୁରୁଷଶ୍ରେଷ୍ଠ ! ମୁଁ ହିମାଳୟସଦୃଶ ତୁମ୍ଭର ଆଶ୍ରୟ ଗ୍ରହଣ କରିଅଛି । ୭୮ । କିନ୍ତୁ ମୋର ସେ ବଳବାନ୍ ଦୁଷ୍ଟ ଭାଇର ବଳ ମୁଁ ଜାଣେ । ମାତ୍ର ହେ ରାଘବ ! ଯୁଦ୍ଧରେ ତୁମ୍ଭର ବଳ କେତେଦୂର, ସେ କଥା ମୋତେ

ନ ଖଲ୍ୱହଂ ତ୍ୱାଂ ତୁଲୟେ ନାବମନ୍ୟେ ନ ଭୀଷୟେ ।
କର୍ମଭିସ୍ତସ୍ୟ ଭୀମୈଶ୍ଚ କାତର୍ଯ୍ୟଂ ଜନିତଂ ମମ । ୮୦ ।
କାମଂ ରାଘବ ତେ ବାଣୀ ପ୍ରମାଣଂ ଧୈର୍ଯ୍ୟମାକୃତିଃ ।
ସୂଚୟନ୍ତି ପରଂ ତେଜୋ ଭସ୍ମଚ୍ଛନ୍ନମିବାନଲମ୍ । ୮୧ ।
ତସ୍ୟ ତଦ୍ୱଚନଂ ଶ୍ରୁତ୍ୱା ସୁଗ୍ରୀବସ୍ୟ ମହାତ୍ମନଃ ।
ସ୍ମିତପୂର୍ବମଥୋ ରାମଃ ପ୍ରତ୍ୟୁବାଚ ହରିଂ ପ୍ରତି । ୮୨ ।
ଯଦି ନ ପ୍ରତ୍ୟୟୋଽସ୍ମାସୁ ବିକ୍ରମେ ତବ ବାନର ।
ପ୍ରତ୍ୟୟଂ ସମରେ ଶ୍ଳାଘ୍ୟମହମୁତ୍ପାଦୟାମି ତେ । ୮୩ ।
ଏବମୁକ୍ତ୍ୱା ତୁ ସୁଗ୍ରୀବଂ ସାନ୍ତ୍ୱୟଁଲ୍ଲକ୍ଷ୍ମଣାଗ୍ରଜଃ ।
ରାଘବୋ ଦୁନ୍ଦୁଭେଃ କାୟଂ ପାଦାଙ୍ଗୁଷ୍ଠେନ ଲୀଳୟା । ୮୪ ।
ତୋଲୟିତ୍ୱା ମହାବାହୁଶ୍ଚିକ୍ଷେପ ଦଶଯୋଜନମ୍ ।
ଅସୁରସ୍ୟ ତନୁଂ ଶୁଷ୍କାଂ ପାଦାଙ୍ଗୁଷ୍ଠେନ ବୀର୍ଯ୍ୟବାନ୍ । ୮୫ ।
କ୍ଷିପ୍ତଂ ଦୃଷ୍ଟ୍ୱା ତତଃ କାୟଂ ସୁଗ୍ରୀବଃ ପୁନରବ୍ରବୀତ୍ ।
ଲକ୍ଷ୍ମଣସ୍ୟାଗ୍ରତୋ ରାମଂ ତପନ୍ତମିବ ଭାସ୍କରମ୍ ।
ହରୀଣାମଗ୍ରତୋ ବୀରମିଦଂ ବଚନମର୍ଥବତ୍ । ୮୬ ।

---

ଅଧୋ ଜଣା ନାହିଁ । ୭୯ । ମୁଁ ତୁମ୍ଭର ବଳ ପରୀକ୍ଷା କରୁ ନାହିଁ କି ତୁମକୁ ଅବଜ୍ଞା କରୁ ନାହିଁ ବା ତୁମକୁ ଭୟ ଦେଖାଉ ନାହିଁ ; ମାତ୍ର ବାଲୀର ଭୟଙ୍କର କାର୍ଯ୍ୟମାନ ଦେଖି ମୁଁ କାତର ହୋଇପଡ଼ିଅଛି । ୮୦ । ହେ ରାଘବ ! ଆପଣଙ୍କର ବଚନ, ଆପଣଙ୍କ ଶରୀରର ଉଚ୍ଚତା, ଆପଣଙ୍କ ଧୈର୍ଯ୍ୟ ଏବଂ ଆପଣଙ୍କ ଆକୃତି ଏସବୁ ଭସ୍ମମଧ୍ୟରେ ଲୁଚି ରହିଥିବା ଅଗ୍ନି ପରି ଆପଣଙ୍କର ତେଜକୁ ସୂଚିତ କରୁଅଛି" । ୮୧ । ମହାତ୍ମା ସୁଗ୍ରୀବଙ୍କର ଏ ବଚନ ଶୁଣି ରାମଚନ୍ଦ୍ର ହସି ହସି ତାଙ୍କୁ କହିଲେ । ୮୨। "ହେ ବାନର ! ଯଦି ମୋର ପରାକ୍ରମରେ ତୁମ୍ଭର ବିଶ୍ୱାସ ନ ହେଉଛି, ତେବେ ଯୁଦ୍ଧରେ ମୁଁ ନିଜର ପରାକ୍ରମରେ ତୁମ୍ଭର ବିଶ୍ୱାସ ଜନ୍ମାଇ ଦେବି" । ୮୩ । ଲକ୍ଷ୍ମଣଙ୍କର ବଡ଼ ଭାଇ ରାମଚନ୍ଦ୍ର ଏହା କହି ସୁଗ୍ରୀବଙ୍କୁ ସାନ୍ତ୍ୱନା ଦେଇ ଅତି ଅକ୍ଳେଶରେ ଦୁନ୍ଦୁଭିର ଶୁଷ୍କଶରୀରକୁ ପାଦ ଆଙ୍ଗୁଠିରେ ଉଠାଇ ଦଶଯୋଜନ ଦୂରକୁ ଫୋପାଡ଼ିଦେଲେ । ଅସୁରର ଶରୀର ଏପରି ନିକ୍ଷିପ୍ତ ହେବାର ଦେଖି ସୁଗ୍ରୀବ ବାନରମାନଙ୍କ ସମ୍ମୁଖରେ ରାମଚନ୍ଦ୍ରଙ୍କୁ ପୁଣି ଅର୍ଥଯୁକ୍ତ ବଚନ କହିଲେ । ସେତେବେଳେ ରାମଚନ୍ଦ୍ର ଲକ୍ଷ୍ମଣଙ୍କ ସମ୍ମୁଖରେ ଜ୍ୱଳନ୍ତ ସୂର୍ଯ୍ୟପରି ଶୋଭାପାଉଥିଲେ । ୮୪-୮୬ । "ହେ ମିତ୍ର ! ଯୁଦ୍ଧକ୍ଳାନ୍ତ ମୋର ଭାଇ ରାକ୍ଷସର ଯେଉଁ

ଆର୍ଦ୍ରଃ ସମାଂସଃ ପ୍ରତ୍ୟଗ୍ରଃ କ୍ଷିପ୍ତଃ କାୟଃ ପୁରା ସଖେ ।
ପରିଶ୍ରାନ୍ତେନ ମତ୍ତେନ ଭ୍ରାତ୍ରା ମେ ବାଲିନା ତଦା ୮୭ ।
ଲଘୁଃ ସଂପ୍ରତି ନିର୍ମାଂସସ୍ତୃଣଭୂତଶ୍ଚ ରାଘବ ।
କ୍ଷିପ୍ତମେବଂ ପ୍ରହର୍ଷେଣ ଭବତା ରଘୁନନ୍ଦନ । ୮୮ ।
ନାତ୍ର ଶକ୍ୟଂ ବଲଂ ଜ୍ଞାତୁଂ ତବ ବା ତସ୍ୟ ବାଧିକମ୍ ।
ଆର୍ଦ୍ରଂ ଶୁଷ୍କମିତି ହ୍ୟେତତ୍ସୁମହଦ୍ରାଘବାନ୍ତରମ୍ । ୮୯ ।
ସ ଏବ ସଂଶୟସ୍ତାତ ତବ ତସ୍ୟ ଚ ଯଦ୍ବଲମ୍ ।
ସାଲମେକଂ ବିନିର୍ଭିଦ୍ୟ ଭବେଦ୍‌ବ୍ୟକ୍ତିର୍ବଲାବଲେ । ୯୦ ।
କୃତ୍ୱୈତତ୍କାର୍ମୁକଂ ସଜ୍ୟଂ ହସ୍ତିହସ୍ତମିବାପରମ୍ ।
ଆକର୍ଣପୂର୍ଣମାୟମ୍ୟ ବିସୃଜସ୍ୱ ମହାଶରମ୍ । ୯୧ ।
ଇମଂ ହି ସାଲଂ ପ୍ରହିତସ୍ତ୍ୱୟା ଶରୋ
ନ ସଂଶୟୋଽତ୍ରାସ୍ତି ବିଦାରୟିଷ୍ୟତି ।
ଅଲଂ ବିମର୍ଶେନ ମମ ପ୍ରିୟଂ ଧ୍ରୁବମ୍
କୁରୁଷ୍ୱ ରାଜନ୍ ପ୍ରତି ଶାପିତୋ ମୟା । ୯୨ ।

---

ଶରୀରକୁ ନିକ୍ଷେପ କରିଥିଲି ସେଥିରେ ମାଂସ ଥିଲା, ତାହା ଓଦା ଥିବାରୁ ଭାରି ଥିଲା ଏବଂ ସେ ସେହି ମୁହୂର୍ତ୍ତରେ ମରିଥିଲା ।୮୭। ମାତ୍ର ହେ ରାମଚନ୍ଦ୍ର ! ତୁମେ ବର୍ତ୍ତମାନ ବେଶ୍ ସୁସ୍ଥ (ଅକ୍ଳାନ୍ତ) ଅଛ ଏବଂ ତୁମେ ଯେଉଁ ଅସ୍ଥିକୁ ଫିଙ୍ଗିଦେଲ ତାହା ମାଂସହୀନ; ସୁତରାଂ ତୃଣପରି ହାଲୁକା ହୋଇଯାଇଅଛି । ୮୮ । ଏଥିରୁ ତୁମ୍ଭର ବଳ ଅଧିକ,କି ତାର ବଳ ଅଧିକ ଏ କଥା ଜଣାଯାଇ ପାରିବ ନାହିଁ; କାରଣ ଓଦା ଏବଂ ଶୁଖିଲା ଏ ଦୁଇଟି ମଧ୍ୟରେ ବିଶେଷ ପ୍ରଭେଦ ଅଛି । ୮୯ । ହେ ମିତ୍ର ! ଅତଏବ ତୁମ୍ଭର ଏବଂ ତାର ବଳର ସନ୍ଦେହ ବର୍ତ୍ତମାନ ଦୂର ହେଲା ନାହିଁ । ତୁମେ ଯଦି ଗୋଟିଏ ଶାଳବୃକ୍ଷ ଭେଦ କରିଦେବ, ତେବେ ମୋତେ ବଳାବଳର ନିଷ୍ପତ୍ତି ଜଣାପଡ଼ିଯିବ । ୯୦ । ହସ୍ତିଶୁଣ୍ଡସଦୃଶ ଏ ଧନୁରେ ଗୁଣ ଚଢ଼ାଇ ଏବଂ କର୍ଣ୍ଣ ପର୍ଯ୍ୟନ୍ତ ଟାଣି ଏ ମହାଶରକୁ ଛାଡ଼ିଦିଅ ।୯୧। ହେ ରାଜନ ଆପଣଙ୍କ ନିକ୍ଷିପ୍ତ ବାଣ ଏ ଶାଳବୃକ୍ଷକୁ ଭେଦ କରିବ, ଏଥିରେ ସନ୍ଦେହ ନାହିଁ । ମୋ ରାଣ; ଆପଣ କୌଣସି ବିଚାର ନ କରି ମୋର ଏ ପ୍ରିୟକାର୍ଯ୍ୟ ସାଧନ କରନ୍ତୁ ।୯୨। ଯେପରି ତେଜମାନଙ୍କ

ଯଥା ହି ତେଜଃସୁ ବରଃ ସଦା ରବି-
ର୍ଯଥା ହି ଶୈଳୋ ହିମବାନ୍ମହାଦ୍ରିଷୁ ।
ଯଥା ଚତୁଷ୍ପତ୍ସୁ ଚ କେସରୀ ବର-
ସ୍ତଥା ନରାଣାମସି ବିକ୍ରମେ ବରଃ । ୯୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ବାଲିବଳାବିଷ୍କରଣମ୍
ନାମ ଏକାଦଶଃ ସର୍ଗଃ ।

---

ମଧ୍ୟରେ ସୂର୍ଯ୍ୟ ସର୍ବଶ୍ରେଷ୍ଠ ଅଟେ, ମହାପର୍ବତମଧ୍ୟରେ ହିମାଳୟ ସର୍ବଶ୍ରେଷ୍ଠ ଅଟେ ଏବଂ ପଶୁମାନଙ୍କ ମଧ୍ୟରେ ସିଂହ ସର୍ବଶ୍ରେଷ୍ଠ ଅଟେ, ସେହିପରି ମନୁଷ୍ୟମାନଙ୍କ ମଧ୍ୟରେ ଆପଣ ସମସ୍ତଙ୍କଠାରୁ ଅଧିକ ପରାକ୍ରମୀ ଅଟନ୍ତି” । ୯୩ ।

# ଦ୍ୱାଦଶଃ ସର୍ଗଃ

## ସୁଗ୍ରୀବପ୍ରତ୍ୟୟପ୍ରଦାନମ୍

ଏତଚ୍ଚ ବଚନଂ ଶ୍ରୁତ୍ୱା ସୁଗ୍ରୀବସ୍ୟ ସୁଭାଷିତମ୍ ।
ପ୍ରତ୍ୟୟାର୍ଥଂ ମହାତେଜା ରାମୋ ଜଗ୍ରାହ କାର୍ମୁକମ୍ । ୧ ।
ସ ଗୃହୀତ୍ୱା ଧନୁର୍ଘୋରଂ ଶରମେକଂ ଚ ମାନଦଃ ।
ସାଲମୁଦ୍ଦିଶ୍ୟ ଚିକ୍ଷେପ ପୂରୟନ୍ ସ ରବୈର୍ଦିଶଃ । ୨ ।
ସ ବିସୃଷ୍ଟୋ ବଲବତା ବାଣଃ ସ୍ୱର୍ଣପରିଷ୍କୃତଃ ।
ଭିତ୍ତ୍ୱା ସାଲାନ୍ ଗିରିପ୍ରସ୍ଥଂ ସପ୍ତ ଭୂମିଂ ବିବେଶ ହ । ୩ ।
ସାୟକସ୍ତୁ ମୁହୂର୍ତ୍ତେନ ଧରାଂ ଭିତ୍ତ୍ୱା ମହାଜବଃ ।
ନିଷ୍ପତ୍ୟ ଚ ପୁନସ୍ତୂର୍ଣଂ ତମେବ ପ୍ରବିବେଶ ହ । ୪ ।
ତାନ୍ ଦୃଷ୍ଟ୍ୱା ସପ୍ତ ନିର୍ଭିନ୍ନାନ୍ ସାଲାନ୍ ବାନରପୁଙ୍ଗବଃ ।
ରାମସ୍ୟ ଶରବେଗେନ ବିସ୍ମୟଂ ପରମଂ ଗତଃ । ୫ ।
ସ ମୂର୍ଦ୍ଧ୍ନା ନ୍ୟପତଦ୍ ଭୂମୌ ପ୍ରଲମ୍ବୀକୃତଭୂଷଣଃ ।
ସୁଗ୍ରୀବଃ ପରମପ୍ରୀତୋ ରାଘବାୟ କୃତାଞ୍ଜଳିଃ । ୬ ।

---

## ୧୨ଶ ସର୍ଗ

(ସୁଗ୍ରୀବଙ୍କ ମନରେ ବିଶ୍ୱାସ ଜନ୍ମାଇଲେ)

ସୁଗ୍ରୀବଙ୍କର ଏ ସୁନ୍ଦର ବଚନ ଶୁଣି ବିଶ୍ୱାସ ଜନ୍ମାଇବା ନିମନ୍ତେ ତେଜସ୍ୱୀ ରାମଚନ୍ଦ୍ର ଧନୁ ଧାରଣ କଲେ ।୧। ବିଶାଳ ଧନୁ ଏବଂ ଗୋଟିଏ ବାଣ ଧରି ମାନଦାତା ରାମଚନ୍ଦ୍ର ଶାଳବୃକ୍ଷକୁ ଲକ୍ଷ୍ୟକରି ଶର ନିକ୍ଷେପ କଲେ । ସେ ଶବ୍ଦଦ୍ୱାରା ଚାରି ଦିଗ ପୂର୍ଣ୍ଣ ହୋଇଗଲା ।୨। ବଳବାନ୍ ରାମଚନ୍ଦ୍ରଙ୍କଦ୍ୱାରା ନିକ୍ଷିପ୍ତ ସେହି ସ୍ୱର୍ଣ୍ଣସଦୃଶ ପରିଷ୍କୃତ ଶର ସାତଟାଯାକ ଶାଳଗଛ ଭେଦକରି ଏବଂ ପର୍ବତର ସାନୁଦେଶ ଭେଦକରି ଭୂମିରେ ପଶିଗଲା । ୩ । ସେହି ବେଗବାନ୍ ଶର ମୁହୂର୍ତ୍ତକମଧ୍ୟରେ ସାତ ଶାଳ-ବୃକ୍ଷକୁ ଭେଦକରି ପୁଣି ତାଙ୍କ ଶରତୂଣୀଭିତରକୁ ଫେରି ଆସିଲା । ୪ । ବାନର-ଶ୍ରେଷ୍ଠ ସୁଗ୍ରୀବ ସାତଟାଯାକ ଶାଳବୃକ୍ଷ ରାମଚନ୍ଦ୍ରଙ୍କ ବାଣରେ ବିଦ୍ଧ ହୋଇଯିବାର ଦେଖି ଅତିଶୟ ବିସ୍ମିତ ହେଲେ । ୫ । ସୁଗ୍ରୀବ ଅତିଶୟ ଆନନ୍ଦିତ ହୋଇ ରାମଚନ୍ଦ୍ରଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ଭୂମିରେ ମୁଣ୍ଡିଆମାରି ଲମ୍ବିଭାବରେ

ଇଦଂ ଶ୍ରୁତ୍ୱାବାଚ ଧର୍ମଜ୍ଞଂ କର୍ମଣା ତେନ ହର୍ଷିତଃ ।
ରାମଂ ସର୍ବାସ୍ତ୍ରବିଦୁଷାଂ ଶ୍ରେଷ୍ଠଂ ଶୂରମବସ୍ଥିତମ୍ । ୭ ।
ସେନ୍ଦ୍ରାନପି ସୁରାନ୍ ସର୍ବାସ୍ତ୍ୱଂ ବାଣୈଃ ପୁରୁଷର୍ଷଭ ।
ସମର୍ଥଃ ସମରେ ହନ୍ତୁଂ କିଂ ପୁନର୍ବାଲିନଂ ପ୍ରଭୋ । ୮ ।
ଯେନ ସପ୍ତ ମହାସାଲା ଗିରିର୍ଭୂମିଶ୍ଚ ଦାରିତାଃ ।
ବାଣେନୈକେନ କାକୁତ୍ସ୍ଥ ସ୍ଥାତା ତେ କୋ ରଣାଗ୍ରତଃ । ୯ ।
ଅଦ୍ୟ ମେ ବିଗତଃ ଶୋକଃ ପ୍ରୀତିରଦ୍ୟ ପରା ମମ ।
ସୁହୃଦଂ ତ୍ୱାଂ ସମାସାଦ୍ୟ ମହେନ୍ଦ୍ରବରୁଣୋପମମ୍ । ୧୦ ।
ତମଦ୍ୟୈବ ପ୍ରିୟାର୍ଥଂ ମେ ବୈରିଣଂ ଭ୍ରାତୃରୂପିଣମ୍ ।
ବାଲିନଂ ଜହି କାକୁତ୍ସ୍ଥ ମୟା ବଦ୍ଧୋଽୟମଞ୍ଜଳିଃ । ୧୧ ।
ତତୋ ରାମଃ ପରିଷ୍ୱଜ୍ୟ ସୁଗ୍ରୀବଂ ପ୍ରିୟଦର୍ଶନମ୍ ।
ପ୍ରତ୍ୟୁବାଚ ମହାପ୍ରାଜ୍ଞୋ ଲକ୍ଷ୍ମଣାନୁମତଂ ବଚଃ । ୧୨ ।
ଅସ୍ମାଦ୍ଗଚ୍ଛାମ କିଷ୍କିନ୍ଧାଂ କ୍ଷିପ୍ରଂ ଗଚ୍ଛ ତ୍ୱମଗ୍ରତଃ ।
ଗତ୍ୱା ଚାହ୍ୱୟ ସୁଗ୍ରୀବ ବାଲିନଂ ଭ୍ରାତୃଗନ୍ଧିନମ୍ । ୧୩ ।
ସର୍ବେ ତେ ତ୍ୱରିତଂ ଗତ୍ୱା କିଷ୍କିନ୍ଧାଂ ବାଲିନଃ ପୁରୀମ୍ ।
ବୃକ୍ଷୈରାତ୍ମାନମାବୃତ୍ୟ ହ୍ୟତିଷ୍ଠନ୍ ଗହନେ ବନେ । ୧୪ ।

---

ପଡ଼ିଗଲେ ।୭। ଏହି କାର୍ଯ୍ୟରେ ପ୍ରସନ୍ନ ହୋଇ ସୁଗ୍ରୀବ ଧର୍ମାତ୍ମା ସକଳ ଅସ୍ତ୍ରବିତ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୀର ରାମଚନ୍ଦ୍ରଙ୍କୁ ଏହି କଥା କହିଲେ ।୭। "ହେ ପ୍ରଭୋ ! ଦେବତାମାନଙ୍କ ସହିତ ଇନ୍ଦ୍ରଙ୍କୁ ମଧ୍ୟ ଯୁଦ୍ଧରେ ଆପଣ ବାଣରେ ମାରିପାରନ୍ତି । ବାଲୀ କି ଛାର ? ।୮। ହେ କାକୁତ୍ସ୍ଥ ! ଯେ ବଡ଼ ବଡ଼ ସାତ ଶାଳବୃକ୍ଷକୁ ତଥା ପର୍ବତ ଏବଂ ଭୂମିକୁ ଏକମାତ୍ର ବାଣଦ୍ୱାରା ଭେଦ କରିଦେଲେ, ତାଙ୍କ ସମ୍ମୁଖରେ ଯୁଦ୍ଧରେ କିଏ ଠିଆ ହୋଇପାରିବ ।୯। ମହେନ୍ଦ୍ର ଏବଂ ବରୁଣଙ୍କ ସଦୃଶ ଆପଣଙ୍କୁ ଆଜି ମିତ୍ରକରି ପାଇ ମୋର ସମସ୍ତ ଦୁଃଖ ଦୂର ହୋଇଗଲା । ମୁଁ ବଡ଼ ଆନନ୍ଦିତ ହେଲି । ୧୦ । ହେ କାକୁତ୍ସ୍ଥ ! ମୁଁ ହାତଯୋଡ଼ି ପ୍ରାର୍ଥନା କରୁଛି, ମୋର ପ୍ରୀତି ନିମନ୍ତେ ମୋର ଭାଇରୂପୀ ଶତ୍ରୁକୁ ଆଜି ଆପଣ ବଧ କରନ୍ତୁ" । ୧୧ । ଅନନ୍ତର ପ୍ରିୟଦର୍ଶନ ସୁଗ୍ରୀବଙ୍କୁ ରାମଚନ୍ଦ୍ର ଆଲିଙ୍ଗନ କଲେ ଏବଂ ଲକ୍ଷ୍ମଣଙ୍କ ମନକୁ ପାଇଲାଭଳି କଥା କହିଲେ ।୧୨। "ଆମେ ଏଠାରୁ ଶୀଘ୍ର କିଷ୍କିନ୍ଧାକୁ ଯାଉଛୁଁ, ତୁମେ ଆଗରେ ଯାଅ ଏବଂ ତୁମର ତଥାକଥିତ ଭାଇ ବାଲୀକୁ ଆହ୍ୱାନ କର" । ୧୩। ସେ ସମସ୍ତେ ସେଠାରୁ ଶୀଘ୍ର ବାଲୀର ନଗରୀ କିଷ୍କିନ୍ଧାକୁ ଗଲେ ଏବଂ ଗହନବନରେ ବୃକ୍ଷ ଅନ୍ତରାଳରେ ନିଜ ନିଜ ଶରୀରକୁ ଲୁଚାଇ ରହିଲେ । ୧୪ ।

ସୁଗ୍ରୀବୋଽପ୍ୟନଦଦ୍ ଘୋରଂ ବାଲିନୋ ହ୍ୱାନକାରଣାତ୍ ।
ଗାଢ଼ଂ ପରିହିତୋ ବେଗାନ୍ନାଦୈର୍ଭିନ୍ଦନ୍ନିବାମ୍ବରମ୍ । ୧୫ ।
ତଂ ଶ୍ରୁତ୍ୱା ନିନଦଂ ଭ୍ରାତୁଃ କ୍ରୁଦ୍ଧୋ ବାଲୀ ମହାବଲଃ ।
ନିଷ୍ପପାତ ସୁସଂରବ୍ଧୋ ଭାସ୍କରୋଽସ୍ତତଟାଦିବ । ୧୬ ।
ତତଃ ସୁତୁମୁଲଂ ଯୁଦ୍ଧଂ ବାଲିସୁଗ୍ରୀବୟୋରଭୂତ୍ ।
ଗଗନେ ଗ୍ରହୟୋର୍ଘୋରଂ ବୁଧାଙ୍ଗାରକୟୋରିବ । ୧୭ ।
ତଲୈରଶନିକଲ୍ପୈଶ୍ଚ ବଜ୍ରକଲ୍ପୈଶ୍ଚ ମୁଷ୍ଟିଭିଃ ।
ଜଘ୍ନତୁଃ ସମରେଽନ୍ୟୋନ୍ୟଂ ଭ୍ରାତରୌ କ୍ରୋଧମୂର୍ଚ୍ଛିତୌ ।୧୮।
ତତୋ ରାମୋ ଧନୁଷ୍ପାଣିସ୍ତାବୁଭୌ ସମୁଦୈକ୍ଷତ ।
ଅନ୍ୟୋନ୍ୟସଦୃଶୌ ବୀରାବୁଭୌ ଦେବାବିବାଶ୍ୱିନୌ ।୧୯।
ଯନ୍ନାବଗଚ୍ଛତ୍ସୁଗ୍ରୀବଂ ବାଲିନଂ ବାପି ରାଘବଃ ।
ତତୋ ନ କୃତବାନ୍ ବୁଦ୍ଧିଂ ମୋକ୍ତୁମନ୍ତକରଂ ଶରମ୍ । ୨୦।
ଏତସ୍ମିନ୍ନନ୍ତରେ ଭଗ୍ନଃ ସୁଗ୍ରୀବସ୍ତେନ ବାଲିନା ।
ଅପଶ୍ୟନ୍ ରାଘବଂ ନାଥମୃଶ୍ୟମୂକଂ ପ୍ରଦୁଦ୍ରୁବେ ।୨୧।

---

ସୁଗ୍ରୀବ ଖୁବ୍ କଷିକାଷି କମର ପିନ୍ଧିଥିଲା । ବାଲୀକୁ ଡାକିବା ଉଦ୍ଦେଶ୍ୟରେ ସେ ଘୋର ଗର୍ଜନ କରିବାକୁ ଲାଗିଲା । ତାହାର ଗର୍ଜନରେ ସତେ ଯେପରି ଆକାଶ ବିଦୀର୍ଣ୍ଣ ହୋଇଯିବ, ଏହିପରି ବୋଧହେଲା । ୧୫ । ଭାଇର ଏ ଗର୍ଜନ ଶୁଣି ମହାବଳୀ ବାଳୀ ଅସ୍ତାଚଳରୁ ସୂର୍ଯ୍ୟ ତଳକୁ ଆସିବାପରି କ୍ରୋଧରେ ଯୁଦ୍ଧ କରିବାପାଇଁ ଶୀଘ୍ର ଆସି ପହଞ୍ଚିଗଲା । ୧୬ । ଅନନ୍ତର ବାଳୀ ଏବଂ ସୁଗ୍ରୀବମଧ୍ୟରେ ଏପରି ଘୋର ଯୁଦ୍ଧ ହେଲା, ବୋଧ ହେଲା ଯେପରି ଆକାଶରେ ବୁଧ ଏବଂ ମଙ୍ଗଳ ଏହି ଦୁଇ ଗ୍ରହଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ଲାଗିଛି । ୧୭ । ଦୁଇ ଭାଇ ଅତି କ୍ରୋଧରେ ଜ୍ଞାନ ହରାଇ ବଜ୍ରସଦୃଶ ହାତ, ପାଦ ଏବଂ ମୁଠଦ୍ୱାରା ପରସ୍ପରକୁ ମାରିବାକୁ ଲାଗିଲେ । ୧୮ । ଧନୁର୍ଦ୍ଧାରୀ ରାମଚନ୍ଦ୍ର ଏ ଦୁହିଁଙ୍କୁ ଦେଖିଲେ । ଦୁଇ ଦେବତା ଅଶ୍ୱିନୀକୁମାରଙ୍କ ପରି ଏ ଦୁଇ ବୀରଙ୍କର ପରସ୍ପରମଧ୍ୟରେ ଅତ୍ୟନ୍ତ ସାଦୃଶ୍ୟ ଥିଲା । ୧୯ । ଏ ଦୁହିଙ୍କ ମଧ୍ୟରୁ କିଏ ସୁଗ୍ରୀବ, କିଏ ବାଳୀ ନ ଜାଣି ପାରିବାରୁ ରାମଚନ୍ଦ୍ର ପ୍ରାଣଘାତୀ ନିଜର ବାଣ ଛାଡ଼ିବାକୁ ଇଚ୍ଛାକଲେ ନାହିଁ । ୨୦ । ଏମଧ୍ୟରେ ସୁଗ୍ରୀବ ବାଳୀଦ୍ୱାରା ପରାସ୍ତ ହୋଇ ଓ ନିଜର ସ୍ୱାମୀ ରାମଚନ୍ଦ୍ରଙ୍କୁ ସେଠାରେ ନ ଦେଖି ଋଷ୍ୟମୂକ ପର୍ବତକୁ ପଳାଇଗଲେ ।୨୧। ସୁଗ୍ରୀବ କ୍ଳାନ୍ତ ହୋଇ ପଡ଼ିଥିଲେ,

କ୍ଲାନ୍ତୋ ରୁଧିରସିକ୍ତାଙ୍ଗଃ ପ୍ରହାରୈର୍ଜର୍ଜରୀକୃତଃ ।
ବାଲିନାଭିଦ୍ରୁତଃ କ୍ରୋଧାତ୍ପ୍ରବିବେଶ ମହାବନମ୍ । ୨୨ ।
ତଂ ପ୍ରବିଷ୍ଟଂ ବନଂ ଦୃଷ୍ଟ୍ୱା ବାଲୀ ଶାପଭୟାତ୍ତତଃ ।
ମୁକ୍ତୋ ହ୍ୟସି ତ୍ୱମିତ୍ୟୁକ୍ତ୍ୱା ସ ନିବୃତ୍ତୋ ମହାବଲଃ । ୨୩ ।
ରାଘବୋଽପି ସହ ଭ୍ରାତ୍ରା ସହ ଚୈବ ହନୂମତା ।
ତଦେବ ବନମାଗଚ୍ଛତ୍ସୁଗ୍ରୀବୋ ଯତ୍ର ବାନରଃ । ୨୪ ।
ତଂ ସମୀକ୍ଷ୍ୟାଗତଂ ରାମଂ ସୁଗ୍ରୀବଃ ସହଲକ୍ଷ୍ମଣମ୍ ।
ହ୍ରୀମାନ୍ଦୀନମୁବାଚେଦଂ ବସୁଧାମବଲୋକୟନ୍ । ୨୫ ।
ଆହ୍ୱୟସ୍ୱେତି ମାମୁକ୍ତ୍ୱା ଦର୍ଶୟିତ୍ୱା ଚ ବିକ୍ରମମ୍ ।
ବୈରିଣା ଘାତୟିତ୍ୱା ଚ କିମିଦାନୀଂ ତ୍ୱୟା କୃତମ୍ । ୨୬ ।
ତାମେବ ବେଲାଂ ବକ୍ତବ୍ୟଂ ତ୍ୱୟା ରାଘବ ତତ୍ତ୍ୱତଃ ।
ବାଲିନଂ ନ ନିହନ୍ମୀତି ତତୋ ନାହମିତୋ ବ୍ରଜେ । ୨୭ ।
ତସ୍ୟ ଚୈବଂ ବ୍ରୁବାଣସ୍ୟ ସୁଗ୍ରୀବସ୍ୟ ମହାତ୍ମନଃ ।
କରୁଣଂ ଦୀନୟା ବାଚା ରାଘବଃ ପୁନରବ୍ରବୀତ୍ । ୨୮ ।

---

ରକ୍ତରେ ତାହାର ସର୍ବ ଶରୀର ବୁଡ଼ି ଯାଇଥିଲା ଏବଂ ପ୍ରହାରରେ ତାହାର ଶରୀର ଜର୍ଜରିତ ହୋଇ ଯାଇଥିଲା । ବାଲୀ କ୍ରୋଧରେ ତା ପଛରେ ଗୋଡ଼ାଇବାରୁ ସେ ଋଷ୍ୟମୂକ ଜଙ୍ଗଲରେ ପଶିଗଲା । ୨୨ । ତାକୁ ବନମଧ୍ୟରେ ପଶିଯିବାର ଦେଖି ବାଲୀ କହିଲା, "ଯାଃ, ତୋତେ ଛାଡ଼ିଦେଲି ।" ଏହା କହି ଶାପଭୟରେ ସେ ସେଠାରୁ ଫେରିଗଲା । ୨୩ । ରାମଚନ୍ଦ୍ର ମଧ୍ୟ ନିଜର ଭାଇ ଏବଂ ହନୁମାନ ସହିତ ଯେଉଁ ବନରେ ସୁଗ୍ରୀବ ଥିଲେ ସେହିଠାକୁ ଫେରି ଆସିଲେ । ୨୪ । ଲକ୍ଷ୍ମଣଙ୍କ ସହିତ ରାମଚନ୍ଦ୍ରଙ୍କୁ ଆସିବାର ଦେଖି ସୁଗ୍ରୀବ ଲଜ୍ଜିତଭାବରେ ତଳକୁ ମୁହଁ ପୋତି କହିଲେ ।୨୫। "ଆପଣ ବାଲୀକୁ ଆହ୍ୱାନ କରିବାକୁ କହିଲେ, ତାକୁ ମାରିପାରିବାର ସାମର୍ଥ୍ୟ ଦେଖାଇଲେ, ପୁଣି ଶତ୍ରୁ ହାତରେ ମୋତେ ମାଡ଼ ମରାଇଲେ । ଆପଣ ଏ କ'ଣ କଲେ ? ।୨୬। ହେ ରାଘବ ! ଯଦି ଆପଣ ସେତିକିବେଳେ ସାଫ୍ ସାଫ୍ କହିଦେଇଥାଆନ୍ତେ କି—ମୁଁ ବାଲୀକୁ ମାରିବି ନାହିଁ, ତେବେତ ମୁଁ ଏଠାରୁ ଆଦୌ ଯାଇ ନ ଥାନ୍ତି ?" ।୨୭। ମହାତ୍ମା ସୁଗ୍ରୀବଙ୍କର ଏପରି ଦୀନ କରୁଣ କଥା ଶୁଣି ରାମଚନ୍ଦ୍ର ପୁଣି କହିଲେ । ୨୮ । "ଭାଇ ସୁଗ୍ରୀବ ! କ୍ରୋଧ ଦୂରକର । ମୁଁ

ସୁଗ୍ରୀବ ଶ୍ରୂୟତାଂ ତାତ କ୍ରୋଧଶ୍ଚ ବ୍ୟପନୀୟତାମ୍ ।
କାରଣଂ ଯେନ ବାଣୋଽୟଂ ନ ମୟା ନ ବିସର୍ଜିତଃ । ୨୯।
ଅଲଂକାରେଣ ବେଷେଣ ପ୍ରମାଣେନ ଗତେନ ଚ ।
ତ୍ୱଂ ଚ ସୁଗ୍ରୀବ ବାଲୀ ଚ ସଦୃଶୌ ସ୍ଥଃ ପରସ୍ପରମ୍ । ୩୦ ।
ସ୍ୱରେଣ ବର୍ଚସା ଚୈବ ପ୍ରେକ୍ଷିତେନ ଚ ବାନର ।
ବିକ୍ରମେଣ ଚ ବାକ୍ୟୈଶ୍ଚ ବ୍ୟକ୍ତିଂ ବାଂ ନୋପଲକ୍ଷୟେ ।୩୧ ।
ତତୋଽହଂ ରୂପସାଦୃଶ୍ୟାନ୍ମୋହିତୋ ବାନରୋତ୍ତମ ।
ନୋତ୍ସୃଜାମି ମହାବେଗଂ ଶରଂ ଶତ୍ରୁନିବର୍ହଣମ୍ । ୩୨ ।
ଜୀବିତାନ୍ତକରଂ ଘୋରଂ ସାଦୃଶ୍ୟାତ୍ତୁ ବିଶଙ୍କିତଃ ।
ମୂଳଘାତୋ ନ ନୌ ସ୍ୟାଦ୍ଧି ଦ୍ୱୟୋରପି କୃତୋ ମୟା ।୩୩ ।
ତ୍ୱୟି ବୀର ବିପନ୍ନେ ହି ଅଜ୍ଞାନାଲ୍ଲାଘବାନ୍ମୟା ।
ମୌଢ୍ୟଂ ଚ ମମ ବାଲ୍ୟଂ ଚ ଖ୍ୟାପିତଂ ସ୍ୟାତ୍କପୀଶ୍ୱର । ୩୪ ।
ଦତ୍ତାଭୟବଧୋ ନାମ ପାତକଂ ମହାଦଦ୍ଭୁତମ୍ ।
ଅହଂ ଚ ଲକ୍ଷ୍ମଣଶ୍ଚୈବ ସୀତା ଚ ବରବର୍ଣ୍ଣିନୀ । ୩୫ ।
ତ୍ୱଦଧୀନା ବୟଂ ସର୍ବେ ବନେଽସ୍ମିନ୍ ଶରଣଂ ଭବାନ୍ ।
ତସ୍ମାଦ୍ୟୁଧ୍ୟସ୍ୱ ଭୂୟସ୍ତ୍ୱଂ ମା ମା ଶଙ୍କୀଶ୍ଚ ବାନର । ୩୬ ।

---

ଯେ କାରଣରୁ ବାଣନିକ୍ଷେପ ନ କଲି ସେ କଥା ଶୁଣ । ୨୯ । ଅଳଙ୍କାର, ବେଶ, ଉଚ୍ଚତା ଏବଂ ଗୃଳଚଳନରେ ତୁମେ ଏବଂ ବାଳୀ ପରସ୍ପର ଅତ୍ୟନ୍ତ ସଦୃଶ ଦେଖାଗଲ । ୩୦ । ସ୍ୱର, ତେଜ, ଦୃଷ୍ଟି, ପରାକ୍ରମ ବା ବଚନ କୌଣସିଥିରେ ତୁମ ଦୁହିଁଙ୍କର ଭେଦ ମୋତେ ଆଦୌ ଜଣାପଡ଼ିଲା ନାହିଁ । ୩୧ । ହେ ବାନରଶ୍ରେଷ୍ଠ ! ଏହି ପ୍ରକାର ରୂପସାଦୃଶ୍ୟହେତୁରୁ ଭ୍ରମରେ ପଡ଼ି ମୁଁ ଶତ୍ରୁସଂହାରକାରୀ ନିଜର ବାଣକୁ ନିକ୍ଷେପ କଲି ନାହିଁ । ୩୨ । ଏହି ରୂପସାଦୃଶ୍ୟ ଶଙ୍କାରେ ମୁଁ ଭାବିଲି ଯେ ଆମ ଦୁହିଙ୍କର ମୂଳନାଶ ନ ହୋଇଯାଉ । ଏହା ଭାବି ମୁଁ ଏ ପ୍ରାଣବିନାଶକାରୀ ଶରନିକ୍ଷେପରୁ ବିରତ ହେଲି । ୩୩ । ହେ ବୀର ! ମୋର ଅଜ୍ଞତା ବା ଲଘୁବିଗ୍ରହହେତୁରୁ ଯଦି ତୁମେ ମରିଯାଇଥାନ୍ତ ତାହାହେଲେ ମୋର ମୂର୍ଖତା ଏବଂ ବାଲ୍ୟତା ପ୍ରକାଶିତ ହୋଇଥାନ୍ତା । ୩୪ । ଯାହାକୁ ଅଭୟ ଦିଆଯାଇଥାଏ ତାହାକୁ ବଧ କରିବା ଅତି ଗୁରୁତର ପାପ । ମୁଁ, ଲକ୍ଷ୍ମଣ ଏବଂ ସୀତା ବର୍ତ୍ତମାନ ତୁମ୍ଭର ଅଧୀନ ଅଛୁଁ । ଏ ବନମଧ୍ୟରେ ତୁମେହିଁ ଆମମାନଙ୍କର ରକ୍ଷକ ଅଛ । ତୁମେ କୌଣସି ଶଙ୍କା କର ନାହିଁ, ପୁଣି ଯୁଦ୍ଧକର । ୩୫-୩୬ । ଏହି ମୁହୂର୍ତ୍ତରେ ଯୁଦ୍ଧରେ ମୋର ଗୋଟିଏମାତ୍ର ବାଣରେ ବାଳୀ ଭୂମିରେ ଲୋଟିବ ଏହା ତୁମେ ଦେଖିବ । ୩୭ । ବାଳୀ

ଏତନ୍ମୁହୂର୍ତ୍ତେ ତୁ ମୟା ପଶ୍ୟ ବାଳିନମାହବେ ।
ନିରସ୍ତମିଷୁଣୈକେନ ଚେଷ୍ଟମାନଂ ମହୀତଲେ । ୩୭ ।
ଅଭିଜ୍ଞାନଂ କୁରୁଷ୍ୱ ତ୍ୱମାତ୍ମନୋ ବାନରେଶ୍ୱର ।
ଯେନ ତ୍ୱାମଭିଜାନୀୟାଂ ଦ୍ୱନ୍ଦ୍ୱଯୁଦ୍ଧମୁପାଗତମ୍ । ୩୮ ।
ଗଜପୁଷ୍ପୀମିମାଂ ଫୁଲ୍ଲାମୁତ୍ପାଟ୍ୟ ଶୁଭଲକ୍ଷଣାମ୍ ।
କୁରୁ ଲକ୍ଷ୍ମଣ କଣ୍ଠେଽସ୍ୟ ସୁଗ୍ରୀବସ୍ୟ ମହାତ୍ମନଃ । ୩୯ ।
ତତୋ ଗିରିତଟେ ଜାତାମୁତ୍ପାଟ୍ୟ କୁସୁମାୟୁତାମ୍ ।
ଲକ୍ଷ୍ମଣୋ ଗଜପୁଷ୍ପୀଂ ତାଂ ତସ୍ୟ କଣ୍ଠେ ବ୍ୟସର୍ଜୟତ୍ । ୪୦ ।
ସ ତୟା ଶୁଶୁଭେ ଶ୍ରୀମାଁଲ୍ଲତୟା କଣ୍ଠସକ୍ତୟା ।
ମାଲୟେବ ବଲାକାନାଂ ସସନ୍ଧ୍ୟ ଇବ ତୋୟଦଃ । ୪୧ ।
ବିଭ୍ରାଜମାନୋ ବପୁଷା ରାମବାକ୍ୟସମାହିତଃ ।
ଜଗାମ ସହ ରାମେଣ କିଷ୍କିନ୍ଧାଂ ପୁନରପି ସଃ । ୪୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସୁଗ୍ରୀବପ୍ରତ୍ୟୟପ୍ରଦାନ
ନାମ ଦ୍ୱାଦଶଃ ସର୍ଗଃ

---

"ଅହିତ ପରସ୍ପର ଯୁଦ୍ଧ କରିବାବେଳେ ମୁଁ ଯେଉଁ ସଙ୍କେତଦ୍ୱାରା ତୁମକୁ ଚିହ୍ନିପାରିବି, ଏପରି ଏକ ସଙ୍କେତ ତୁମେ ଠିକ୍ କରି ନଅ । ୩୮ । ହେ ଲକ୍ଷ୍ମଣ ! ମହାତ୍ମା ସୁଗ୍ରୀବଙ୍କ ଗଳାରେ ଏହି ଶୁଭସୂଚକ ପ୍ରସ୍ଫୁଟିତ ଗଜପୁଷ୍ପୀ ଲତାକୁ ଉପାଡ଼ି ପିନ୍ଧାଇ ଦିଅ" ।୩୯। ଅନନ୍ତର ପର୍ବତ ଉପରେ ଜାତହୋଇଥିବା ପୁଷ୍ପଯୁକ୍ତ ଗଜପୁଷ୍ପୀ ଲତା ନେଇ ଲକ୍ଷ୍ମଣ ସୁଗ୍ରୀବଙ୍କ ଗଳାରେ ପିନ୍ଧାଇ ଦେଲେ । ୪୦ । ସେ ଲତା ଗଳାରେ ଲମ୍ବିବାରୁ ସୁଗ୍ରୀବ ବିଶେଷ ସୁନ୍ଦର ଦେଖାଗଲେ । ବକପଙ୍କ୍ତିଯୁକ୍ତ ସନ୍ଧ୍ୟାକାଳୀନ ମେଘ-ସଦୃଶ ସେ ଦେଖାଗଲେ । ୪୧ । ଅତି ତେଜସ୍ୱୀ ଶରୀର ଧାରଣ କରି ରାମଚନ୍ଦ୍ରଙ୍କ କଥା ଅନୁସାରେ ସାବଧାନ ହୋଇ ସୁଗ୍ରୀବ ତାଙ୍କ ସହିତ ଗଲେ ଏବଂ ପୁଣି ଯାଇ କିଷ୍କିନ୍ଧାରେ ଉପସ୍ଥିତ ହେଲେ । ୪୨ ।

# ତ୍ରୟୋଦଶଃ ସର୍ଗଃ

## ସପ୍ତଜନାଶ୍ରମପ୍ରଣାମଃ

ଋଶ୍ୟମୂକାତ୍ତୁ ଧର୍ମାତ୍ମା କିଷ୍କିନ୍ଧାଂ ଲକ୍ଷ୍ମଣାଗ୍ରଜଃ ।
ଜଗାମ ସହସୁଗ୍ରୀବୋ ବାଲିବିକ୍ରମପାଲିତାମ୍ । ୧ ।
ସମୁଦ୍ୟମ୍ୟ ମହଚ୍ଚାପଂ ରାମଃ କାଞ୍ଚନଭୂଷିତମ୍ ।
ଶରାଂଶ୍ଚାଦିତ୍ୟସଂକାଶାନ୍ ଗୃହୀତ୍ୱା ରଣସାଧକାନ୍ । ୨ ।
ଅଗ୍ରତସ୍ତୁ ଯଯୌ ତସ୍ୟ ରାଘବସ୍ୟ ମହାତ୍ମନଃ ।
ସୁଗ୍ରୀବଃ ସଂହତଗ୍ରୀବୋ ଲକ୍ଷ୍ମଣଶ୍ଚ ମହାବଲଃ । ୩ ।
ପୃଷ୍ଠତୋ ହନୁମାନ୍ବୀରୋ ନଲୋ ନୀଲଶ୍ଚ ବୀର୍ଯ୍ୟବାନ୍ ।
ତାରଶ୍ଚୈବ ମହାତେଜା ହରିଯୂଥପଯୂଥପଃ । ୪ ।
ତେ ବୀକ୍ଷମାଣା ବୃକ୍ଷାଂଶ୍ଚ ପୁଷ୍ପଭାରାବଲମ୍ବିନଃ ।
ପ୍ରସନ୍ନାମ୍ବୁବହାଶ୍ଚୈବ ସରିତଃ ସାଗରଂଗମାଃ । ୫ ।
କନ୍ଦରାଣି ଚ ଶୈଲାଂଶ୍ଚ ନିର୍ଦ୍ଦରାଣି ଗୁହାସ୍ତଥା ।
ଶିଖରାଣି ଚ ମୁଖ୍ୟାନି ଦରୀଶ୍ଚ ପ୍ରିୟଦର୍ଶନାଃ । ୬ ।

---

## ୧୩ଶ ସର୍ଗ

( ରାମଙ୍କର ସପ୍ତଜନାଶ୍ରମ ପ୍ରଣାମ )

ଧର୍ମାତ୍ମା ରାମଚନ୍ଦ୍ର, ଋଷ୍ୟମୂକ ପର୍ବତରୁ ସୁଗ୍ରୀବଙ୍କ ସହିତ ବାଳୀର ପରାକ୍ରମ ଦ୍ୱାରା ପାଳିତ କିଷ୍କିନ୍ଧା ନଗରୀକୁ ଗଲେ ।୧। ଯୁଦ୍ଧରେ ସଫଳତା ଦେବାରେ ଉପଯୁକ୍ତ ତଥା ସୂର୍ଯ୍ୟତୁଲ୍ୟ ଦୀପ୍ୟମାନ ଶର ଏବଂ ସୁନା ଛୁଆଣି ହୋଇଥିବା ନିଜର ବଡ଼ ଧନୁ ଧରି ରାମଚନ୍ଦ୍ର ଚାଲିଲେ । ୨ । ତାଙ୍କ ଆଗେ ଆଗେ ଗ୍ରୀବା ଉଚ୍ଚକରି ସୁଗ୍ରୀବ ଏବଂ ମହାବଳୀ ଲକ୍ଷ୍ମଣ ଚାଲିଲେ । ୩ । ତାଙ୍କ ପଛେ ପଛେ ବୀର ହନୁମାନ୍, ନଳ, ନୀଳ ଏବଂ ବାନରଦଳପତିମାନଙ୍କର ସେନାପତି ମହାତେଜା ତାର ଚାଲିଲେ । ୪ । ପୁଷ୍ପଭାରନତ ବୃକ୍ଷମାନଙ୍କୁ ଏବଂ ସାଗରଗାମୀ ନିର୍ମଳ ଜଳବାହୀ ନଦୀମାନଙ୍କୁ ବାଟରେ ଦେଖି ଦେଖି ସେମାନେ ଗଲେ । ୫ । କନ୍ଦର, ପର୍ବତ, ନିର୍ଝର, ଗୁହା, ପ୍ରଧାନ ପ୍ରଧାନ ଶିଖର ତଥା ସୁନ୍ଦର ଗୁମ୍ଫାମାନ ଦେଖି ଦେଖି ସେମାନେ ଚାଲିଲେ । ୬ ।

ବୈଦୂର୍ଯ୍ୟବିମଲୈସ୍ତୋୟୈଃ ପଦ୍ମୈଶ୍ଚାକୋଶକୁଡ୍ମଲୈଃ ।
ଶୋଭିତାନ୍ ସଜଲାନ୍ମାର୍ଗେ ତଟାକାଂଶ୍ଚାବଲୋକୟନ୍ । ୭ ।
କାରଣ୍ଡୈଃ ସାରସୈର୍ହଂସୈର୍ବଞ୍ଜୁଲୈର୍ଜଲକୁକ୍କୁଟୈଃ ।
ଚକ୍ରବାକୈସ୍ତଥା ଚାନ୍ୟୈଃ ଶକୁନୈଃ ପ୍ରତିନାଦିତାନ୍ । ୮ ।
ମୃଦୁଶଷ୍ପାଙ୍କୁରାହାରାନ୍ନିର୍ଭୟାନ୍ ବନଗୋଚରଃ ।
ଚରତଃ ସର୍ବତଃ ପଶ୍ୟନ୍ ସ୍ଥଲୀଷୁ ହରିଣାନ୍ ସ୍ଥିତାନ୍ । ୯ ।
ତଟାକବୈରିଣଶ୍ଚାପି ଶୁକ୍ଳଦନ୍ତବିଭୂଷିତାନ୍ ।
ଘୋରାନେକଚରାନ୍ ବନ୍ୟାନ୍ ଦ୍ୱିରଦାନ୍ କୂଲଘାତିନଃ । ୧୦ ।
ମତ୍ତାନ୍ ଗିରିତଟୋଦ୍ଘୃଷ୍ଟାନ୍ ପର୍ବତାନିବ ଜଙ୍ଗମାନ୍ ।
ବାନରାନ୍ ଦ୍ୱିରଦପ୍ରଖ୍ୟାନ୍ମହୀରେଣୁସମୁକ୍ଷିତାନ୍ । ୧୧ ।
ବନେ ବନଚରାଂଶ୍ଚାନ୍ୟାନ୍ ଖେଚରାଂଶ୍ଚ ବିହଙ୍ଗମାନ୍ ।
ପଶ୍ୟନ୍ତସ୍ତ୍ୱରିତା ଜଗ୍ମୁଃ ସୁଗ୍ରୀବବଶବର୍ତ୍ତିନଃ । ୧୨ ।
ତେଷାଂ ତୁ ଗଚ୍ଛତାଂ ତତ୍ର ତ୍ୱରିତଂ ରଘୁନନ୍ଦନଃ ।
ଦ୍ରୁମଷଣ୍ଡବନଂ ଦୃଷ୍ଟ୍ୱା ରାମଃ ସୁଗ୍ରୀବମବ୍ରବୀତ୍ । ୧୩ ।

---

ବାଟରେ ସେମାନେ ଜଳପୂର୍ଣ୍ଣ ପୁଷ୍କରିଣୀ ମଧ୍ୟ ଦେଖିଲେ । ତାହାର ଜଳ ବୈଦୂର୍ଯ୍ୟ ସଦୃଶ ବିମଳ ଥିଲା ଏବଂ ସେଥିରେ ଅର୍ଦ୍ଧବିକଶିତ ପଦ୍ମକଢ଼ିମାନ ପୂରି ରହିଥିଲା । ୭ । କାରଣ୍ଡ, ସାରସ, ହଂସ, ଜଳକୁକ୍କୁଟ, ଚକ୍ରବାକ ଏବଂ ଅନ୍ୟାନ୍ୟ ପକ୍ଷୀମାନଙ୍କ ରାବରେ ସେ ସବୁ ପୁଷ୍କରିଣୀ ପ୍ରତିଧ୍ୱନିତ ହେଉଥିଲା । ୮ । ନିର୍ଭୟଭାବରେ ବନରେ ବିଚରଣ କରୁଥିବା ହରିଣମାନେ ପଡ଼ିଆରେ ଠିଆହୋଇ କୋମଳ ଘାସ ଖାଉଥିବାର ସେମାନେ ଦେଖିଲେ । ୯ । ଶ୍ୱେତଦନ୍ତଶୋଭିତ ଯେଉଁ ଏକାକୀ-ବିହାରୀ ବନ୍ୟହସ୍ତୀମାନେ ପୁଷ୍କରିଣୀର ଘାଟମାନ ଭଙ୍ଗ କରିଦେବାରୁ ତାହାର ଶତ୍ରୁ ବୋଲି ବିବେଚିତ ହୁଅନ୍ତି ସେମାନଙ୍କୁ ମଧ୍ୟ ଏମାନେ ବାଟରେ ଦେଖିଲେ । ୧୦ । ପର୍ବତର ତଟଭଗ୍ନକାରୀ, ଜଙ୍ଗମ ପର୍ବତସଦୃଶ ଉନ୍ମତ୍ତ ବାନରମାନଙ୍କୁ ମଧ୍ୟ ଏମାନେ ଦେଖିଲେ । ସେମାନଙ୍କର ସମସ୍ତ ଶରୀର ଧୂଳିରେ ଧୂସରିତ ହୋଇଥିଲା । ୧୧ । ସୁଗ୍ରୀବଙ୍କ ଇଚ୍ଛାଧୀନ ହୋଇଥିବାରୁ ଏମାନେ ଅତି ଶୀଘ୍ରଗତିରେ ଯାଉଥିଲେ । ସେମାନେ ବନରେ ଅନେକ ବନଚର ତଥା ଗଗନଗାମୀ ପକ୍ଷୀମାନଙ୍କୁ ଦେଖି ଦେଖି ଚାଲିଲେ । ୧୨ । ଶୀଘ୍ରତାପୂର୍ବକ ଯାଉଁ ଯାଉଁ ବୃକ୍ଷପୂର୍ଣ୍ଣ ଏକ ବନ ଦେଖି ରାମଚନ୍ଦ୍ର

ଏଷ ମେଘ ଇବାକାଶେ ବୃକ୍ଷଷଣ୍ଡଃ ପ୍ରକାଶତେ ।
ମେଘସଂଘାତବିପୁଲଃ ପର୍ଯ୍ୟନ୍ତକଦଳୀବୃତଃ । ୧୪ ।
କିମେତଜ୍ଜ୍ଞାତୁମିଚ୍ଛାମି ସଖେ କୌତୂହଳଂ ମମ ।
କୌତୂହଳାପନୟନଂ କର୍ତୁମିଚ୍ଛାମ୍ୟହଂ ତ୍ୱୟା । ୧୫ ।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ରାଘବସ୍ୟ ମହାତ୍ମନଃ ।
ଗଚ୍ଛନ୍ନେବାଚଚକ୍ଷେଽଥ ସୁଗ୍ରୀବସ୍ତନ୍ମହଦ୍‌ବନମ୍ । ୧୬ ।
ଏତଦ୍ରାଘବ ବିସ୍ତୀର୍ଣମାଶ୍ରମଂ ଶ୍ରମନାଶନମ୍ ।
ଉଦ୍ୟାନବନସଂପନ୍ନଂ ସ୍ୱାଦୁମୂଲଫଲୋଦକମ୍ । ୧୭ ।
ଅତ୍ର ସପ୍ତଜନା ନାମ ମୁନୟଃ ଶଂସିତବ୍ରତାଃ ।
ସପ୍ତୈବାସନ୍ନଧଃଶୀର୍ଷା ନିୟତଂ ଜଲଶାୟିନଃ । ୧୮ ।
ସପ୍ତରାତ୍ରେ କୃତାହାରା ବାୟୁନାଚଲବାସିନଃ ।
ଦିବଂ ବର୍ଷଶତୈର୍ଯାତାଃ ସପ୍ତଭିଃ ସକଲେବରାଃ । ୧୯ ।
ତେଷାମେତତ୍ପ୍ରଭାବେଣ ଦ୍ରୁମପ୍ରାକାରସଂବୃତମ୍ ।
ଆଶ୍ରମଂ ସୁଦୁରାଧର୍ଷମପି ସେନ୍ଦ୍ରୈଃ ସୁରାସୁରୈଃ । ୨୦ ।

---

ସୁଗ୍ରୀବଙ୍କୁ କହିଲେ । ୧୩ । "ଆକାଶରେ ମେଘସଦୃଶ ବୃକ୍ଷସମୂହ ଏଠାରେ ଦେଖାଯାଉଛି । ଏହାର ଚାରିପାଖରେ କଦଳୀ ବୃକ୍ଷମାନ ବେଢ଼ି ରହିଛି ଏବଂ ମେଘସମଷ୍ଟି ପରି ଏହି ବନ ଅତିଶୟ ବିଶାଳ ଦେଖାଯାଉଛି । ୧୪ । ହେ ମିତ୍ର ! ଏ କଣ, ଜାଣିବାକୁ ମୋର କୌତୂହଳ ହେଉଛି । ତୁମେ ମୋର ଏ କୌତୂହଳ ଦୂର କରିବ ଏହା ମୁଁ ଇଚ୍ଛା କରେଁ" । ୧୫ । ମହାତ୍ମା ରାମଚନ୍ଦ୍ରଙ୍କ କଥା ଶୁଣି ଚାଲୁ ଚାଲୁ ସୁଗ୍ରୀବ ସେ ବନସମ୍ବନ୍ଧରେ କହିଲେ । ୧୬ । "ହେ ରାଘବ ! କ୍ଳାନ୍ତିଦୂରକାରୀ ଏ ଆଶ୍ରମ ଅତିଶୟ ବିସ୍ତୀର୍ଣ୍ଣ ଅଟେ । ଏଥିରେ ବନ ଓ ଉପବନ ଅଛି, ସୁସ୍ୱାଦୁ ଫଳ ମୂଳ ଏବଂ ଜଳ ମଧ୍ୟ ଅଛି । ୧୭ । ଏଠାରେ ପ୍ରସିଦ୍ଧ ବ୍ରତଧାରୀ ସପ୍ତଜନା ନାମରେ ସାତଜଣ ମୁନି ଥିଲେ । ସେମାନେ ମୁଣ୍ଡ ତଳକୁ କରି ସର୍ବଦା ଜଳରେ ବାସ କରୁଥିଲେ । ୧୮ । ସାତରାତ୍ରି ପରେ ଏମାନେ ଥରେମାତ୍ର ବାୟୁ ଆହାର କରୁଥିଲେ ଏବଂ ସାତ ଶହ ବର୍ଷ ଏହିପରି କରି ଏମାନେ ସଶରୀରରେ ସ୍ୱର୍ଗକୁ ଗଲେ । ୧୯ । ସେହିମାନଙ୍କ ତପସ୍ୟା ପ୍ରଭାବରୁ ଏହି ଆଶ୍ରମ ବୃକ୍ଷ-ପ୍ରାଚୀରଦ୍ୱାରା ସୁରକ୍ଷିତ ହୋଇ ରହିଅଛି । ଇନ୍ଦ୍ର ପ୍ରଭୃତି ଦେବତା ବା ଅସୁରମାନେ ମଧ୍ୟ ଏ ସ୍ଥାନକୁ ଆକ୍ରମଣ କରିପାରନ୍ତି ନାହିଁ । ୨୦ । ପକ୍ଷୀ ବା ଅନ୍ୟ ବନଚରମାନେ

ପକ୍ଷିଣୋ ବର୍ଜୟନ୍ତ୍ୟେତତ୍ତଥାନ୍ୟେ ବନଚାରିଣଃ ।
ବିଶନ୍ତି ମୋହାଦ୍ ଯେଽପ୍ୟତ୍ର ନ ନିବର୍ତ୍ତନ୍ତି ତେ ପୁନଃ । ୨୧ ।
ବିଭୂଷଣରବାଶ୍ଚାତ୍ର ଶ୍ରୂୟନ୍ତେ ସକଳାକ୍ଷରାଃ ।
ତୂର୍ଯ୍ୟଗୀତସ୍ୱନଶ୍ଚାପି ଗନ୍ଧୋ ଦିବ୍ୟଶ୍ଚ ରାଘବ । ୨୨ ।
ତ୍ରେତାଗ୍ନୟୋଽପି ଦୀପ୍ୟନ୍ତେ ଧୂମୋ ହ୍ୟେଷ ପ୍ରଦୃଶ୍ୟତେ ।
ବେଷ୍ଟୟନ୍ନିବ ବୃକ୍ଷାଗ୍ରାନ୍ କପୋତାଙ୍ଗାରୁଣୋ ଘନଃ । ୨୩ ।
ଏତେ ବୃକ୍ଷାଃ ପ୍ରକାଶନ୍ତେ ଧୂମସଂସକ୍ତମସ୍ତକାଃ ।
ମେଘଜାଲପ୍ରତିଚ୍ଛନ୍ନା ବୈଦୂର୍ଯ୍ୟଗିରୟୋ ଯଥା । ୨୪ ।
କୁରୁ ପ୍ରଣାମଂ ଧର୍ମାତ୍ମଂସ୍ତେଷାମୁଦ୍ଦିଶ୍ୟ ରାଘବ ।
ଲକ୍ଷ୍ମଣେନ ସହ ଭ୍ରାତ୍ରା ପ୍ରୟତଃ ସଂହତାଞ୍ଜଳିଃ ।୨୫।
ପ୍ରଣମନ୍ତି ହି ଯେ ତେଷାମୃଷୀଣାଂ ଭାବିତାତ୍ମନାମ୍ ।
ନ ତେଷାମଶୁଭଂ କିଂଚିଚ୍ଛରୀରେ ରାମ ଦୃଶ୍ୟତେ । ୨୬।
ତତୋ ରାମଃ ସହ ଭ୍ରାତ୍ରା ଲକ୍ଷ୍ମଣେନ କୃତାଞ୍ଜଳିଃ ।
ସମୁଦ୍ଦିଶ୍ୟ ମହାତ୍ମାନସ୍ତାନୃଷୀନଭ୍ୟବାଦୟତ୍ । ୨୭ ।
ଅଭିବାଦ୍ୟ ସ ଧର୍ମାତ୍ମା ରାମୋ ଭ୍ରାତା ଚ ଲକ୍ଷ୍ମଣଃ ।
ସୁଗ୍ରୀବୋ ବାନରାଶ୍ଚୈବ ଜଗ୍ମୁଃ ସଂହୃଷ୍ଟମାନସାଃ । ୨୮ ।

---

ଏ ବନକୁ ଯାଆନ୍ତି ନାହିଁ । କେହି ଯଦି ଭୂଲବଶରେ ଚାଲିଯାଆନ୍ତି ତାହାହେଲେ ସେ ଆଉ ଫେରନ୍ତି ନାହିଁ ।୨୧। ହେ ରାଘବ ! ଏଠାରେ ଅଳଙ୍କାରର ଶବ୍ଦ ଶୁଣାଯାଏ ତୂରୀ ବାଜଣାର ଶବ୍ଦ ସ୍ପଷ୍ଟ ଶୁଣାଯାଏ ଏବଂ ସ୍ୱର୍ଗୀୟ ଗନ୍ଧ ମଧ୍ୟ ଏଠାରୁ ବାହାରେ । ୨୨ । ଅଗ୍ନିହୋତ୍ରୀମାନଙ୍କ ତ୍ରେତାଗ୍ନି ଏଠାରେ ପ୍ରଜ୍ୱଳିତ ହେଉଅଛି ଏବଂ ତାହାର ଧୂମ କପୋତର ଶରୀରପରି ଅରୁଣବର୍ଣ୍ଣର ମେଘ ହୋଇ ବୃକ୍ଷମାନଙ୍କୁ ବେଷ୍ଟିତ କରୁଅଛି ଦେଖ । ୨୩ । ଏହିସବୁ ବୃକ୍ଷର ଅଗ୍ରଭାଗ ଧୂଆଁରେ ପୂରିଯାଇଛି, ସୁତରାଂ ଏହା ମେଘାବୃତ ବୈଦୁର୍ଯ୍ୟର ପର୍ବତପରି ଦେଖାଯାଉଛି ।୨୪। ହେ ଧର୍ମାତ୍ମନ୍, ରାଘବ ! ସେମାନଙ୍କ ଉଦ୍ଦେଶ୍ୟରେ ଲକ୍ଷ୍ମଣ ଏବଂ ତୁମେ ଦୁହେଁ ହାତ-ଯୋଡ଼ି ପ୍ରଣାମ କର । ୨୫ । ହେ ରାମ ! ଯେ ସେହି ବ୍ରହ୍ମଜ୍ଞାନୀ ଋଷିମାନଙ୍କୁ ପ୍ରଣାମ କରନ୍ତି ତାଙ୍କର ଶାରୀରିକ କୌଣସି ଅନିଷ୍ଟ କେବେ ହୁଏ ନାହିଁ" । ୨୬ । ଅନନ୍ତର ରାମଚନ୍ଦ୍ର ଭାଇ ଲକ୍ଷ୍ମଣଙ୍କ ସହିତ ହାତଯୋଡ଼ି ସେହି ମହାତ୍ମା ଋଷିମାନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ନିମନ୍ତେ ପ୍ରଣାମ କଲେ ।୨୭। ଭାଇଙ୍କ ସହିତ ପ୍ରଣାମ କରି ଧର୍ମାତ୍ମା ରାମଚନ୍ଦ୍ର, ସୁଗ୍ରୀବ ଏବଂ ଅନ୍ୟାନ୍ୟ ବାନରମାନେ ହୃଷ୍ଟମନରେ ସେଠାରୁ

ତେ ଗତ୍ୱା ଦୂରମଧ୍ୱାନଂ ତସ୍ମାତ୍ସପ୍ତଜନାଶ୍ରମାତ୍ ।
ଦଦୃଶୁସ୍ତାଂ ଦୁରାଧର୍ଷାଂ କିଷ୍କିନ୍ଧାଂ ବାଲିପାଳିତାମ୍ । ୨୯ ।
ତତସ୍ତୁ ରାମାନୁଜରାମବାନରାଃ
ପ୍ରଗୃହ୍ୟ ଶସ୍ତ୍ରାଣ୍ୟୁଦିତୋଗ୍ରତେଜସଃ ।
ପୁରୀଂ ସୁରେଶାତ୍ମଜବୀର୍ଯପାଳିତାମ୍
ବଧାୟ ଶତ୍ରୋଃ ପୁନରାଗତାସ୍ତ୍ୱିହ । ୩୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସପ୍ତଜନାଶ୍ରମପ୍ରଣାମୋ
ନାମ ତ୍ରୟୋଦଶଃ ସର୍ଗଃ

---

ଚାଲିଲେ । ୨୮ । ସପ୍ତଜନାଶ୍ରମଠାରୁ ବହୁତ ଦୂର ବାଟ ଯାଇ ସେମାନେ ବାଳୀଦ୍ୱାରା ରକ୍ଷିତ ଏବଂ ଶତ୍ରୁପ୍ରବେଶର ଦୁଃସାଧ୍ୟ କିଷ୍କିନ୍ଧାନଗରୀ ଦେଖିଲେ । ୨୯ । ଅନନ୍ତର ରାମଙ୍କ ସାନ ଭାଇ(ଲକ୍ଷ୍ମଣ), ରାମ ଏବଂ ବାନରମାନେ ଶସ୍ତ୍ର ଧରି ବାଳୀଦ୍ୱାରା ପାଳିତ ନଗରୀରେ ଶତ୍ରୁବଧ ନିମନ୍ତେ ପୁନର୍ବାର ପ୍ରବେଶ କଲେ । ସେତେବେଳେ ସେମାନଙ୍କର ତେଜ ବହୁତ ବଢ଼ିଯାଇଥିଲା । ୩୦ ।

# ଚତୁର୍ଦ୍ଦଶଃ ସର୍ଗଃ

## ସୁଗ୍ରୀବ ଗର୍ଜନମ୍

ସର୍ବେ ତେ ତ୍ୱରିତଂ ଗତ୍ୱା କିଷ୍କିନ୍ଧାଂ ବାଳିନଃ ପୁରୀମ୍ ।
ବୃକ୍ଷୈରାତ୍ମାନମାବୃତ୍ୟ ବ୍ୟତିଷ୍ଠନ୍ ଗହନେ ବନେ । ୧।
ବିସ୍ତୀର୍ଯ୍ୟ ସର୍ବତୋ ଦୃଷ୍ଟିଂ କାନନେ କାନନପ୍ରିୟଃ ।
ସୁଗ୍ରୀବୋ ବିପୁଳଗ୍ରୀବଃ କ୍ରୋଧମାହାରୟଦ୍ଭୃଶମ୍ । ୨ ।
ତତସ୍ତୁ ନିନଦଂ ଘୋରଂ କୃତ୍ୱା ଯୁଦ୍ଧାୟ ଚାହ୍ୱୟତ୍ ।
ପରିବାରୈଃ ପରିବୃତୋ ନାଦୈର୍ଭିନ୍ଦନ୍ନିବାମ୍ବରମ୍ । ୩ ।
ଗର୍ଜନ୍ନିବ ମହାମେଘୋ ବାୟୁବେଗପୁରଃସରଃ ।
ଅଥ ବାଲାର୍କସଦୃଶୋ ଦୃପ୍ତସିଂହଗତିସ୍ତତଃ । ୪ ।
ଦୃଷ୍ଟ୍ୱା ରାମଂ କ୍ରିୟାଦକ୍ଷଂ ସୁଗ୍ରୀବୋ ବାକ୍ୟମବ୍ରବୀତ୍ ।
ହରିବାଗୁରୟା ବ୍ୟାପ୍ତାଂ ତପ୍ତ କାଞ୍ଚନଭୂଷଣାମ୍ । ୫ ।
ପ୍ରାପ୍ତାଃ ସ୍ମ ଧ୍ୱଜଯନ୍ତ୍ରାଢ଼୍ୟାଂ କିଷ୍କିନ୍ଧାଂ ବାଳିନଃ ପୁରୀମ୍ ।
ପ୍ରତିଜ୍ଞା ଯା କୃତା ବୀର ତ୍ୱୟା ବାଳିବଧେ ପୁରା । ୬ ।

---

## ୧୪ଶ ସର୍ଗ

### ( ସୁଗ୍ରୀବଙ୍କର ଗର୍ଜନ )

ଶୀଘ୍ର ବାଳୀର କିଷ୍କିନ୍ଧା ନଗରୀକୁ ଯାଇ ସେମାନେ ସମସ୍ତେ ଘୋର ଜଙ୍ଗଲରେ ବୃକ୍ଷ ଆଡ଼ୁଆଳରେ ଲୁଚି ବସିରହିଲେ । ୧ । ବନପ୍ରିୟ ସୁଗ୍ରୀବ ବନର ଚାରିଆଡ଼କୁ ଦୃଷ୍ଟି ପକାଇଲେ । ଦୀର୍ଘଗ୍ରୀବ ସୁଗ୍ରୀବ ତାପରେ ଆପଣା କ୍ରୋଧକୁ ଖୁବ୍ ବଢ଼ାଇଲେ । ୨ । ଅନନ୍ତର ସୁଗ୍ରୀବ ନିଜର ସାଥିମାନଙ୍କଦ୍ୱାରା ବେଷ୍ଟିତ ହୋଇ ଘୋର ଗର୍ଜନ କରି ବାଳୀକୁ ଯୁଦ୍ଧପାଇଁ ଆହ୍ୱାନ କଲେ । ତାଙ୍କ ଗର୍ଜନରେ ଆକାଶ ଫାଟିଗଲାପରି ଜଣାପଡ଼ିଲା । ୩ । ବାୟୁବେଗରେ ସଂଚାଳିତ ମହାମେଘ ସଦୃଶ ଗର୍ଜନକରି ଉନ୍ମତ୍ତ ସିଂହସଦୃଶ ଗତିଶୀଳ ଏବଂ ବାଳସୂର୍ଯ୍ୟସଦୃଶ ତେଜୀୟାନ୍ ସୁଗ୍ରୀବ କାର୍ଯ୍ୟଦକ୍ଷ ରାମଚନ୍ଦ୍ରଙ୍କୁ ଚାହିଁ କହିଲେ । "ହେ ବୀର, ଆମେମାନେ କିଷ୍କିନ୍ଧା ନଗରୀରେ ପହଞ୍ଚିଗଲେଣି । ଏହା ବାନରରୂପକ ଜାଲଦ୍ୱାରା ଘେରି ହୋଇଛି ଏବଂ ସୁବର୍ଣ୍ଣଦ୍ୱାରା ମଣ୍ଡିତ ହୋଇଅଛି । ପତାକା ଏବଂ ତୋପ ଆଦି ଯନ୍ତ୍ରମାନ ଏଥିରେ ଖଞ୍ଜାହୋଇଛି । ଏହା ବାଳୀର ରାଜଧାନୀ କିଷ୍କିନ୍ଧା ଅଟେ । ବାଳୀର ବଧନିମନ୍ତେ ଆପଣ ଯେ ପ୍ରତିଜ୍ଞା କରିଛନ୍ତି, ତାକୁ ଆଜି ସଫଳ କରନ୍ତୁ ।

ସଫଲାଂ କୁରୁ ତାଂ କ୍ଷିପ୍ରଂ ଲତାଂ କାଲ ଇବାଗତଃ ।
ଏବମୁକ୍ତସ୍ତୁ ଧର୍ମାତ୍ମା ସୁଗ୍ରୀବେଣ ସ ରାଘବଃ ।୭ ।
ତମେବୋବାଚ ବଚନଂ ସୁଗ୍ରୀବଂ ଶତ୍ରୁସୂଦନଃ ।
କୃତାଭିଜ୍ଞାନଚିହ୍ନସ୍ତ୍ୱମନୟା ଗଜସାହ୍ୱୟା । ୮ ।
ଲକ୍ଷ୍ମଣେନ ସମୁତ୍ପାଟ୍ୟ ଏଷା କଣ୍ଠେ କୃତା ତବ ।
ଶୋଭସେଽପ୍ୟଧିକଂ ବୀର ଲତୟା କଣ୍ଠସକ୍ତୟା । ୯ ।
ବିପରୀତ ଇବାକାଶେ ସୂର୍ଯ୍ୟୋ ନକ୍ଷତ୍ରମାଳୟା ।
ଅଦ୍ୟ ବାଲିସମୁତ୍ଥଂ ତେ ଭୟଂ ବୈରଂ ଚ ବାନର । ୧୦ ।
ଏକେନାହଂ ପ୍ରମୋକ୍ଷ୍ୟାମି ବାଣମୋକ୍ଷେଣ ସଂଯୁଗେ ।
ମମ ଦର୍ଶୟ ସୁଗ୍ରୀବ ବୈରିଣଂ ଭ୍ରାତୃରୂପିଣମ୍ । ୧୧ ।
ବାଲୀ ବିନିହତୋ ଯାବଦ୍‌ବନେ ପାଂସୁଷୁ ଚେଷ୍ଟତେ ।
ଯଦି ଦୃଷ୍ଟିପଥଂ ପ୍ରାପ୍ତୋ ଜୀବନ୍ ସ ବିନିବର୍ତ୍ତତେ । ୧୨।
ତତୋ ଦୋଷେଣ ମା ଗଚ୍ଛେତ୍ସଦ୍ୟୋ ଗର୍ହେଚ ମାଂ ଭବାନ୍ ।
ପ୍ରତ୍ୟକ୍ଷଂ ସପ୍ତ ତେ ସାଲା ମୟା ବାଣେନ ଦାରିତାଃ । ୧୩ ।
ତତୋବେତ୍ସି ବଲେନାଦ୍ୟ ବାଲିନଂ ନିହତଂ ରଣେ ।
ଅନୃତଂ ନୋକ୍ତପୂର୍ବଂ ମେ ଚିରଂ କୃଚ୍ଛ୍ରେଽପି ତିଷ୍ଠତା । ୧୪ ।

---

ବର୍ଷାକାଳ ଯେପରି ଲତାମାନଙ୍କୁ ଫଳଯୁକ୍ତ କରେ, ଆପଣ ସେହିପରି ମୋର ପ୍ରତିଜ୍ଞାକୁ ସଫଳ କରନ୍ତୁ” । ସୁଗ୍ରୀବ ଏପରି କହିବାପରେ ଧର୍ମାତ୍ମା ଶତ୍ରୁହନ୍ତା ରାମଚନ୍ଦ୍ର ତାଙ୍କୁ କହିଲେ । “ଏହି ଗଜପୁଷ୍ପୀ ଲତାଦ୍ୱାରା ତୁମକୁ ଚିହ୍ନିତ କରି ଦିଆଯାଇଅଛି । ଅତଏବ ତୁମକୁ ବେଶ୍ ଚିହ୍ନିହେବ ।୪-୮। ଯେପରି ଆକାଶରେ ସୂର୍ଯ୍ୟ ନକ୍ଷତ୍ରମାଳା-ଦ୍ୱାରା ପରିବେଷ୍ଟିତ ହୋଇ ଶୋଭାପାଏ, ତୁମେ ଲକ୍ଷ୍ମଣଦ୍ୱାରା ଉତ୍ପାଟିତ ଗଜପୁଷ୍ପୀଲତା ଗଳାରେ ପିନ୍ଧି ସେହିପରି ଶୋଭାପାଉଛ । ଆଜି ବାଲୀଠାରୁ ଉତ୍ପନ୍ନ ତୁମର ଶତ୍ରୁତା ଏବଂ ଭୟକୁ ଯୁଦ୍ଧରେ ଗୋଟିଏମାତ୍ର ବାଣ ନିକ୍ଷେପକରି ନଷ୍ଟ କରିଦେବି । ଭାଇ ରୂପଧାରୀ ତୁମର ସେ ଶତ୍ରୁକୁ ତୁମେ ମୋତେ ଦେଖାଇଦିଅ । ୯-୧୧ । ବାଲୀ ମରି ଶୀଘ୍ର ବନରେ ଧୂଳି ଉପରେ ଲୋଟିବ । ଯଦି ମୋ ଆଗକୁ ସେ ଜୀଇଁ କରି ଫେରିଯିବ, ତେବେ ତୁମେ ମୋତେ ଦୋଷ ଦେବ ଏବଂ ନିନ୍ଦା କରିବ । ତୁମର ଆଖି ଆଗରେତ ମୁଁ ଗୋଟିଏ ବାଣରେ ସାତଟା ଶାଳଗଛକୁ ଭେଦ କରିଛି । ୧୨-୧୩ । ଅତଏବ ତୁମେ ଆଜି ନିଶ୍ଚୟ ଦେଖିବ ଯେ ବାଲୀ ଯୁଦ୍ଧରେ ନିହତ ହେବ । ଚିରକାଳ ବିପଦରେ ପଡ଼ିଥିଲେ ମଧ୍ୟ ମୁଁ ପୂର୍ବେ କେବେହେଲେ

ଧର୍ମଲୋଭପରୀତେନ ନ ଚ ବକ୍ଷେ କଥଂଚନ ।
ସଫଲାଂ ଚ କରିଷ୍ୟାମି ପ୍ରତିଜ୍ଞାଂ ଜହି ସଂଭ୍ରମମ୍ । ୧୫ ।
ପ୍ରସୃଷ୍ଟଂ କଲମଂ କ୍ଷେତ୍ରଂ ବର୍ଷେଣେବ ଶତକ୍ରତୁଃ ।
ତଦାହ୍ୱାନନିମିତ୍ତଂ ଚ ବାଲିନୋ ହେମମାଲିନଃ । ୧୬ ।
ସୁଗ୍ରୀବ କୁରୁ ତଂ ଶବ୍ଦଂ ନିଷ୍ପତେଦ୍ ଯେନ ବାନରଃ ।
ଜିତକାଶୀ ଜୟଶ୍ଲାଘୀ ତ୍ୱୟା ଚାଧର୍ଷିତଃ ପୁରା । ୧୭ ।
ନିଷ୍ପତିଷ୍ୟତ୍ୟସଙ୍ଗେନ ବାଲୀ ସ ପ୍ରିୟସଂଯୁଗଃ ।
ରିପୂଣାଂ ଧର୍ଷିତଂ ଶ୍ରୁତ୍ୱା ମର୍ଷୟନ୍ତି ନ ସଂଯୁଗେ । ୧୮ ।
ଜାନନ୍ତସ୍ତୁ ସ୍ୱକଂ ବୀର୍ଯ୍ୟଂ ସ୍ତ୍ରୀସମକ୍ଷଂ ବିଶେଷତଃ ।
ସ ତୁ ରାମବଚଃ ଶ୍ରୁତ୍ୱା ସୁଗ୍ରୀବୋ ହେମପିଙ୍ଗଳଃ । ୧୯ ।
ନନର୍ଦ୍ଦ କ୍ରୂରନାଦେନ ବିନିର୍ଭିନ୍ଦନ୍ନିବାମ୍ବରମ୍ ।
ତସ୍ୟ ଶବ୍ଦେନ ବିତ୍ରସ୍ତା ଗାବୋ ଯାନ୍ତି ହତପ୍ରଭାଃ । ୨୦ ।
ରାଜଦୋଷପରାମୃଷ୍ଟାଃ କୁଲସ୍ତ୍ରିୟ ଇବାକୁଲାଃ ।
ଦ୍ରବନ୍ତି ଚ ମୃଗାଃ ଶୀଘ୍ରଂ ଭଗ୍ନା ଇବ ରଣେ ହୟାଃ ।
ପତନ୍ତି ଚ ଖଗା ଭୂମୌ କ୍ଷୀଣପୁଣ୍ୟା ଇବ ଗ୍ରହାଃ । ୨୧ ।

---

ମିଥ୍ୟା କହିନାହିଁ । ୧୪ । ଧର୍ମପ୍ରତି ମୋର ସର୍ବଦା ଲୋଭ ରହିଛି; ସୁତରାଂ ଭବିଷ୍ୟତରେ ମଧ୍ୟ ମୁଁ କେବେ ମିଥ୍ୟା କହିବ ନାହିଁ । ମୋର ପ୍ରତିଜ୍ଞାକୁ ମୁଁ ନିଶ୍ଚୟ ସଫଳ କରିବି । ତୁମେ ବ୍ୟାକୁଳତା ତ୍ୟାଗକର । ୧୫। ଇନ୍ଦ୍ର ଧାନ୍ୟକ୍ଷେତ୍ରରେ ବାରି ବର୍ଷଣ କରି ତାହାକୁ ଫଳବାନ୍ କରେ (ସେହିପରି ମୁଁ ମୋର ପ୍ରତିଜ୍ଞାକୁ ନିଶ୍ଚୟ ସଫଳ କରିବି)। ସୁଗ୍ରୀବ ! ସୁନାର ମାଳା ପିନ୍ଧିଥିବା ବାଲିକୁ ଆହ୍ୱାନ କରିବା ନିମନ୍ତେ ତୁମେ ଏପରି ଗର୍ଜନ କର, ଯାହା ଶୁଣି ସେ ନିଶ୍ଚୟ ତୁମକୁ ଆକ୍ରମଣ କରିବାକୁ ବାହାରି ଆସିବ । କାରଣ ସେ ଜୟଲିପ୍ସୁ, ଜିଣିବାରେ ବିଶେଷ ଶ୍ଲାଘା ଅନୁଭବ କରେ ଏବଂ ପୂର୍ବେ ସେ କେବେ ତୁମଦ୍ୱାରା ପରାଜିତ ହୋଇନାହିଁ । ସେ ଯୁଦ୍ଧରେ ଭାରି ପ୍ରିୟ, ସୁତରାଂ ସେ ନିଶ୍ଚୟ ଶୀଘ୍ର ବାହାରି ଆସିବ । ଶତ୍ରୁର ଧର୍ଷଣ ଶୁଣି ବୀର କଦାପି କ୍ଷମା କରେ ନାହିଁ ।୧୭-୧୮। ନିଜର ପରାକ୍ରମକୁ ଜାଣିଥିବା ବ୍ୟକ୍ତି କଦାପି ଶତ୍ରୁର ଆହ୍ୱାନ ସହିପାରେ ନାହିଁ, ବିଶେଷତଃ ନିଜର ସ୍ତ୍ରୀମାନଙ୍କ ନିକଟରେ ଥିବାବେଳେ ସେ କଦାପି ସହ୍ୟ କରିବ ନାହିଁ ।" ସୁବର୍ଣ୍ଣସଦୃଶ ପିଙ୍ଗଳବର୍ଣ୍ଣ ସୁଗ୍ରୀବ ରାମଚନ୍ଦ୍ରଙ୍କର ବଚନ ଶୁଣି ଆକାଶ ବିଦାରି କଲାଭଳି ଭୀଷଣ ଗର୍ଜନ କଲେ । ସେ ଶବ୍ଦରେ ଭୀତତ୍ରସ୍ତ ହୋଇ ଗାଈମାନେ ନିଷ୍ପ୍ରଭ ହୋଇପଡ଼ିଲେ । ୧୯-୨୦ । ରାଜାର ଦୋଷଦ୍ୱାରା ଆକ୍ରାନ୍ତ ହୋଇ (ଅର୍ଥାତ୍ ନଷ୍ଟଚରିତ୍ର ରାଜାର ଆକ୍ରମଣ ଭୟରେ)

**ତତଃ ସ ଜୀମୂତକୃତପ୍ରଣାଦୋ**
**ନାଦଂ ହ୍ୟମୁଞ୍ଚତ୍ତ୍ୱରୟା ପ୍ରତୀତଃ**
**ସୂର୍ଯ୍ୟାତ୍ମଜଃ ଶୌର୍ଯ୍ୟବିବୃଦ୍ଧତେଜାଃ**
**ସରିତ୍ପତିର୍ବାନିଲଚଞ୍ଚଲୋର୍ମିଃ । ୨୨ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କଷ୍କିନ୍ଧାକାଣ୍ଡେ ସୁଗ୍ରୀବଗର୍ଜନମ୍
ନାମ ଚତୁର୍ଦ୍ଦଶଃ ସର୍ଗଃ

---

କୁଳସ୍ତ୍ରୀମାନେ ଯେପରି ବ୍ୟାକୁଳ ହୋଇଉଠନ୍ତି, ସେହିପରି ଯୁଦ୍ଧରୁ ପଳାଉଥିବା ଘୋଡ଼ାପରି ମୃଗମାନେ ଶୀଘ୍ର ପଳାଇଗଲେ ଏବଂ କ୍ଷୀଣପୁଣ୍ୟ ନକ୍ଷତ୍ରସଦୃଶ ପକ୍ଷୀମାନେ ଆକାଶରୁ ଖସିପଡ଼ିଲେ । ୨୧ । ରାମଚନ୍ଦ୍ରଙ୍କ ପ୍ରତି ଅଟଳ ବିଶ୍ୱାସର ଦମ୍ଭରେ ସୁଗ୍ରୀବ ମେଘର ଗର୍ଜନପରି ଶୀଘ୍ର ଗର୍ଜନ କଲେ । ସମୁଦ୍ର ବାୟୁସଞ୍ଚାଳିତ ହୋଇ ଯେପରି ତରଙ୍ଗାୟିତ ହୁଏ, ସେହିପରି ରାମଚନ୍ଦ୍ରଙ୍କ ଶୌର୍ଯ୍ୟରେ ସୂର୍ଯ୍ୟପୁତ୍ର ସୁଗ୍ରୀବଙ୍କର ତେଜ ବିଶେଷ ବୃଦ୍ଧି ପାଇଥିଲା । ୨୨ ।

# ପଞ୍ଚଦଶଃ ସର୍ଗଃ

## ତାରାହିତୋକ୍ତିଃ

ଅଥ ତସ୍ୟ ନିନାଦଂ ତଂ ସୁଗ୍ରୀବସ୍ୟ ମହାତ୍ମନଃ ।
ଶୁଶ୍ରାବାନ୍ତଃପୁରଗତୋ ବାଲୀ ଭ୍ରାତୁରମର୍ଷଣଃ । ୧ ।
ଶ୍ରୁତ୍ୱା ତୁ ତସ୍ୟ ନିନଦଂ ସର୍ବଭୂତପ୍ରକମ୍ପନମ୍ ।
ମଦଶ୍ଚୈକପଦେ ନଷ୍ଟଃ କ୍ରୋଧଶ୍ଚାପାଦିତୋ ମହାନ୍ । ୨ ।
ତତୋ ରୋଷପରୀତାଙ୍ଗୋ ବାଲୀ ସ କନକପ୍ରଭଃ ।
ଉପରକ୍ତ ଇବାଦିତ୍ୟଃ ସଦ୍ୟୋ ନିଷ୍ପ୍ରଭତାଂ ଗତଃ । ୩ ।
ବାଲୀ ଦଂଷ୍ଟ୍ରାକରାଳସ୍ତୁ କ୍ରୋଧାଦ୍ଦୀପ୍ତାଗ୍ନିଲୋଚନଃ ।
ଭାତ୍ୟୁତ୍ପତିତପଦ୍ମାଭଃ ସମୃଣାଳ ଇବ ହ୍ରଦଃ । ୪ ।
ଶବ୍ଦଂ ଦୁର୍ମର୍ଷଣଂ ଶ୍ରୁତ୍ୱା ନିଷ୍ପପାତ ତତୋ ହରିଃ ।
ବେଗେନ ଚ ପଦନ୍ୟାସୈର୍ଦାରୟନ୍ନିବ ମେଦିନୀମ୍ । ୫ ।
ତଂ ତୁ ତାରା ପରିଷ୍ୱଜ୍ୟ ସ୍ନେହାଦ୍ଦର୍ଶିତସୌହୃଦା ।
ଉବାଚ ତ୍ରସ୍ତସଂଭ୍ରାନ୍ତା ହିତୋଦର୍କମିଦଂ ବଚଃ । ୬ ।

---

# ୧୫ଶ ସର୍ଗ

## (ବାଳୀପ୍ରତି ତାରଙ୍କର ହିତକଥନ)

କ୍ଷମାହୀନ ବାଲୀ ଅନ୍ତଃପୁରରେ ଥାଇ ନିଜର ଭାଇ ମହାତ୍ମା ସୁଗ୍ରୀବଙ୍କର ସେ ଗର୍ଜନ ଶୁଣିଲା । ୧ । ସମସ୍ତ ପ୍ରାଣୀଙ୍କୁ ପ୍ରକମ୍ପିତ କରିବାଭଳି ସେ ଗର୍ଜନ ଶୁଣି ବାଲୀର ନିଶା ଏକାବେଳକେ ଛୁଟିଗଲା ଏବଂ ସେ ଅତିଶୟ କ୍ରୁଦ୍ଧ ହୋଇ ଉଠିଲା । ୨ । ସୁବର୍ଣ୍ଣସଦୃଶ ପୀତବର୍ଣ୍ଣ ବାଲୀର ଶରୀର କ୍ରୋଧରେ ପରିପୂର୍ଣ୍ଣ ହୋଇଗଲା ଏବଂ ଗ୍ରହଣଗ୍ରସ୍ତ ସୂର୍ଯ୍ୟପରି ତାହାର ପ୍ରଭା ମଳିନ ହୋଇଗଲା । ୩ । ଭୀଷଣ ଦନ୍ତ ଥିବାରୁ ବାଲୀର ମୁଖ ଭୟଙ୍କର ହୋଇଉଠିଲା ଏବଂ କ୍ରୋଧରେ ତାହାର ଚକ୍ଷୁ ଜ୍ୱଳନ୍ତ ଅଗ୍ନିପରି ଦେଖାଗଲା । ଅତଏବ ସେ ସମୃଣାଳ, ପ୍ରସ୍ଫୁଟିତ ରକ୍ତପଦ୍ମ-ଯୁକ୍ତ ହ୍ରଦସଦୃଶ ଦେଖାଗଲା । ୪ । ଅସହ୍ୟ ଶବ୍ଦ ଶୁଣିକରି ବାଲୀ ଅତି ବେଗରେ ବାହାରି ଆସିଲା । ତାହାର ପଦକ୍ଷେପରେ ପୃଥିବୀ ବିଦୀର୍ଣ୍ଣ ହୋଇଗଲାପରି ଜଣା-ପଡ଼ୁଥିଲା । ୫ । ସ୍ନେହହେତୁରୁ ସୌହାର୍ଦ୍ଦ୍ୟ ପ୍ରକାଶକରି ଭୀତ ଏବଂ ବ୍ୟାକୁଳିତ-ଭାବରେ ତାରା ତାକୁ ଆଲିଙ୍ଗନ କରି ଏହି ହିତଗର୍ଭକ ବଚନ କହିଲା । ୬ ।

ସାଧୁ କ୍ରୋଧମିମଂ ବୀର ନଦୀବେଗମିବାଗତମ୍ ।
ଶୟନାତ୍ପୁତ୍ଥିତଃ କଲ୍ୟଂ ତ୍ୟଜ ଭୁକ୍ତାମିବ ସ୍ରଜମ୍ । ୭ ।
କଲ୍ୟମେତେନ ସଂଗ୍ରାମଂ କରିଷ୍ୟସି ଚ ବାନର ।
ବୀର ତେ ଶତ୍ରୁବାହୁଲ୍ୟଂ ଫଲ୍ଗୁତା ବା ନ ବିଦ୍ୟତେ । ୮ ।
ସହସା ତବ ନିଷ୍କ୍ରାମୋ ମମ ତାବନ୍ନ ରୋଚତେ ।
ଶ୍ରୂୟତାମଭିଧାସ୍ୟାମି ଯନ୍ନିମିତ୍ତଂ ନିବାର୍ଯତେ । ୯ ।
ପୂର୍ବମାପତିତଃ କ୍ରୋଧାତ୍ସ ତ୍ୱାମାହ୍ୱୟତେ ଯୁଧି ।
ନିଷ୍ପତ୍ୟ ଚ ନିରସ୍ତସ୍ତେ ହନ୍ୟମାନୋ ଦିଶୋ ଗତଃ । ୧୦ ।
ତ୍ୱୟା ତସ୍ୟ ନିରସ୍ତସ୍ୟ ପୀଡ଼ିତସ୍ୟ ବିଶେଷତଃ ।
ଇହେତ୍ୟ ପୁନରାହ୍ୱାନଂ ଶଙ୍କାଂ ଜନୟତୀବ ମେ । ୧୧ ।
ଦର୍ପଶ୍ଚ ବ୍ୟବସାୟଶ୍ଚ ଯାଦୃଶସ୍ତସ୍ୟ ନର୍ଦତଃ ।
ନିନାଦସ୍ୟ ଚ ସଂରମ୍ଭୋ ନୈତଦଳ୍ପଂ ହି କାରଣମ୍ । ୧୨ ।
ନାସହାୟମହଂ ମନ୍ୟେ ସୁଗ୍ରୀବଂ ତମିହାଗତମ୍ ।
ଅବଷ୍ଟବ୍ଧସହାୟଶ୍ଚ ଯମାଶ୍ରିତ୍ୟୈଷ ଗର୍ଜତି । ୧୩ ।
ପ୍ରକୃତ୍ୟା ନିପୁଣଶ୍ଚୈବ ବୁଦ୍ଧିମାଂଶ୍ଚୈବ ବାନରଃ ।
ନାପରୀକ୍ଷିତବୀର୍ଯେଣ ସୁଗ୍ରୀବଃ ସଖ୍ୟମେଷ୍ୟତି । ୧୪ ।

---

"ହେ ବୀର ! ରାତ୍ରିରେ ପରିଧାନ କରିଥିବା ଫୁଲହାରକୁ ଯେପରି ପ୍ରାତଃକାଳରେ ଶେଯରୁ ଉଠି ଛାଡ଼ିଦିଆଯାଏ, ସେହିପରି ନଦୀବେଗସଦୃଶ ଆଗତ ଏ କ୍ରୋଧକୁ ତୁମେ ପରିତ୍ୟାଗକର । ୭ । ହେ ବାନର ! ତୁମେ କାଲି ଏହା ସହିତ ଯୁଦ୍ଧ କରିବ । ତୁମର ବେଶି ଶତ୍ରୁ ନାହାନ୍ତି ବା ତୁମେ ବଳହୀନ ନୁହଁ । ୮ । ହଠାତ୍ ତୁମେ ଏପରି ବାହାରି ପଡ଼ିବା ମୋତେ ଭଲ ଲାଗୁ ନାହିଁ । ଯେ କାରଣରୁ ମୁଁ ତୁମକୁ ନିବାରିଁଉଛି ତାହା ଶୁଣ । ୯ । ପୂର୍ବେ ସେ କ୍ରୋଧକରି ଆସି ତୁମକୁ ଯୁଦ୍ଧପାଇଁ ଆହ୍ୱାନ କରିଥିଲା ଏବଂ ତୁମଦ୍ୱାରା ପରାଜିତ ଓ ପ୍ରହୃତ ହୋଇ ପଳାଇଯାଇଥିଲା । ୧୦ । ଏପ୍ରକାର ତୁମଦ୍ୱାରା ପରାଜିତ ଏବଂ ବିଶେଷ ପୀଡ଼ିତ ହୋଇ ମଧ୍ୟ ପୁଣି ଥରେ ସେ ଏଠାକୁ ଆସିବାଟା ମୋ ମନରେ ଶଙ୍କା ଜାତ କରାଉଅଛି । ୧୧ । ତାହାର ଗର୍ବ, ତାହାର ଉତ୍ସାହ ଏବଂ ସେ ଯେପରି ଗର୍ଜନ କରୁଛି ତହିଁର ଭୀଷଣତା ଏ ସବୁର ନିଶ୍ଚୟ କିଛି ବିଶେଷ କାରଣ ଅଛି । ୧୨ । ବିନା କାହାର ସାହାଯ୍ୟ ନ ପାଇ ସୁଗ୍ରୀବ ଏଠାକୁ ଆସି ନାହିଁ । ସେ ନିଶ୍ଚୟ ସାହାଯ୍ୟ ପାଇ ଏଠାକୁ ଆସି ଏପରି ଗର୍ଜନ କରୁଛି । ୧୩ । ସେ ବାନର ସ୍ୱଭାବତଃ ନିପୁଣ ଏବଂ ବୁଦ୍ଧିମାନ୍ ଅଟେ । ବଳ ପରୀକ୍ଷା ନ କରି ସେ କଦାପି କାହାର ସହିତ ବନ୍ଧୁତା କରି ନ ଥିବ । ୧୪ ।

ପୂର୍ବମେବ ମୟା ବୀର ଶ୍ରୁତଂ କଥୟତୋ ବଚଃ ।
ଅଙ୍ଗଦସ୍ୟ କୁମାରସ୍ୟ ବକ୍ଷ୍ୟାମ୍ୟଦ୍ୟ ହିତଂ ବଚଃ । ୧୫ ।
ଅଙ୍ଗଦସ୍ତୁ କୁମାରୋଽୟଂ ବନାନ୍ତମୁପନିର୍ଗତଃ ।
ପ୍ରବୃତ୍ତିସ୍ତେନ କଥିତା ଚାରୈରାସୀନ୍ନିବେଦିତା । ୧୬ ।
ଅୟୋଧ୍ୟାଧିପତେଃ ପୁତ୍ରୌ ଶୂରୌ ସମରଦୁର୍ଜୟୌ ।
ଇକ୍ଷ୍ୱାକୂଣାଂ କୁଲେ ଜାତୌ ପ୍ରଥିତୌ ରାମଲକ୍ଷ୍ମଣୌ । ୧୭।
ସୁଗ୍ରୀବପ୍ରିୟକାମାର୍ଥଂ ପ୍ରାପ୍ତୌ ତତ୍ର ଦୁରାସଦୌ ।
ସ ତେ ଭ୍ରାତୁର୍ହି ବିଖ୍ୟାତଃ ସହାୟୋ ରଣକର୍ମଣି । ୧୮ ।
ରାମଃ ପରବଲାମର୍ଦୀ ଯୁଗାନ୍ତାଗ୍ନିରିବୋତ୍ଥିତଃ ।
ନିବାସବୃକ୍ଷଃ ସାଧୂନାମାପନ୍ନାନାଂ ପରା ଗତିଃ । ୧୯ ।
ଆର୍ତାନାଂ ସଂଶ୍ରୟଶ୍ଚୈବ ଯଶସଶ୍ଚୈକଭାଜନମ୍ ।
ଜ୍ଞାନବିଜ୍ଞାନସଂପନ୍ନୋ ନିଦେଶେ ନିରତଃ ପିତୁଃ । ୨୦ ।
ଧାତୂନାମିବ ଶୈଲେନ୍ଦ୍ରୋ ଗୁଣାନାମାକରୋ ମହାନ୍ ।
ତତ୍କ୍ଷମୋ ନ ବିରୋଧସ୍ତେ ସହ ତେନ ମହାତ୍ମନା ।୨୧ ।
ଦୁର୍ଜୟେନାପ୍ରମେୟେଣ ରାମେଣ ରଣକର୍ମସୁ ।
ଶୂର ବକ୍ଷ୍ୟାମି ତେ କିଂଚିନ୍ନଚେଚ୍ଛାମ୍ୟଭ୍ୟସୂୟିତୁମ୍ । ୨୨ ।

---

ହେ ବୀର ! କୁମାର ଅଙ୍ଗଦଠାରୁ ମୁଁ ଆଗରୁ ଏ କଥା ଶୁଣିଛି । ତୁମ୍ଭର ମଙ୍ଗଳ ନିମନ୍ତେ ମୁଁ ଆଜ ଏ କଥା କହୁଛି । କୁମାର ଅଙ୍ଗଦ ବନକୁ ଯାଇଥିଲା । ସେହିଠାରେ ଦୂତମାନେ ତାକୁ ଏକଥା ଜଣାଇଛନ୍ତି । ୧୬ । ଅଯୋଧ୍ୟା ଅଧିପତିଙ୍କର ଦୁଇପୁତ୍ର ରାମ ଏବଂ ଲକ୍ଷ୍ମଣ ବନକୁ ଆସିଛନ୍ତି । ସେ ଦୁହେଁ ବଡ଼ ବୀର ଏବଂ ଯୁଦ୍ଧରେ ଅଜେୟ ଅଟନ୍ତି ।୧୭। ଦୁର୍ଜେୟ ସେ ଦୁହେଁ ସୁଗ୍ରୀବର ହିତସାଧନ କରିବା ନିମନ୍ତେ ଆସିଛନ୍ତି । ସେ ଯୁଦ୍ଧରେ ତୁମ ଭାଇର ସହାୟ ହୋଇଛନ୍ତି । ୧୮। ରାମଚନ୍ଦ୍ର ଶତ୍ରୁ-ସୈନ୍ୟମାନଙ୍କୁ ବିନାଶ କରିବା ନିମନ୍ତେ ଉତ୍ଥିତ ପ୍ରଳୟ ଅଗ୍ନିସଦୃଶ ଅଟନ୍ତି । ସେ ସାଧୁମାନଙ୍କର ଆଶ୍ରୟଦାତା ଏବଂ ପୀଡ଼ିତମାନଙ୍କର ରକ୍ଷକ ଅଟନ୍ତି । ୧୯ । ସେ ଦୁଃଖୀମାନଙ୍କର ଆଶ୍ରୟସ୍ଥଳ, କୀର୍ତିଭାଜନ, ଜ୍ଞାନବିଜ୍ଞାନସମ୍ପନ୍ନ ଏବଂ ପିତୃ ଆଦେଶ-ପାଳନନିରତ ଅଟନ୍ତି । ୨୦ । ହିମାଳୟ ଯେପରି ଧାତୁମାନଙ୍କର ଆକର ଅଟେ ସେହିପରି ରାମଚନ୍ଦ୍ର ଗୁଣର ଆକର ଅଟନ୍ତି । ଅତଏବ ସେ ମହାତ୍ମାଙ୍କ ସହିତ ବିରୋଧ କରିବାକୁ ତୁମେ ସମର୍ଥ ନୁହଁ । ୨୧ । ଯୁଦ୍ଧରେ ତାଙ୍କୁ ଜିଣିହେବ ନାହିଁ ବା ତାଙ୍କ ବଳ କଳିହେବ ନାହିଁ; ହେବୀର ! ସୁତରାଂ ମୁଁ କହୁଛି,ତୁମର ତାଙ୍କସହିତ ବୈର

ଶ୍ରୂୟତାଂ କ୍ରିୟତାଂ ଚୈବ ତବ ବକ୍ଷ୍ୟାମି ଯଦ୍ଧିତମ୍ ।
ଯୌବରାଜ୍ୟେନ ସୁଗ୍ରୀବଂ ତୂର୍ଣଂ ସାଧ୍ୱଭିଷେଚୟ ॥ ୨୩ ॥
ବିଗ୍ରହଂ ମା କୃଥା ବୀର ଭ୍ରାତ୍ରା ରାଜନ୍ ଯବୀୟସା ।
ଅହଂ ହି ତେ କ୍ଷମଂ ମନ୍ୟେ ତେନ ରାମେଣ ସୌହୃଦମ୍ ॥ ୨୪ ॥
ସୁଗ୍ରୀବେଣ ଚ ସଂପ୍ରୀତିଂ ବୈରମୁତ୍ସୃଜ୍ୟ ଦୂରତଃ ।
ଲାଳନୀୟୋ ହି ତେ ଭ୍ରାତା ଯବୀୟାନେଷ ବାନରଃ ॥ ୨୫ ॥
ତତ୍ର ବା ସନ୍ନିହସ୍ଥୋ ବା ସର୍ବଥା ବନ୍ଧୁରେବ ତେ ।
ନ ହି ତେନ ସମଂ ବନ୍ଧୁଂ ଭୁବି ପଶ୍ୟାମି କଂଚନ ॥ ୨୬ ॥
ଦାନମାନାଦିସତ୍କାରୈଃ କୁରୁଷ୍ୱ ପ୍ରତ୍ୟନନ୍ତରମ୍ ।
ବୈରମେତତ୍ସମୁତ୍ସୃଜ୍ୟ ତବ ପାର୍ଶ୍ୱେ ସ ତିଷ୍ଠତୁ ॥ ୨୭ ॥
ସୁଗ୍ରୀବୋ ବିପୁଲଗ୍ରୀବୋ ମହାବନ୍ଧୁର୍ମତସ୍ତବ ।
ଭ୍ରାତୃସୌହୃଦମାଲମ୍ବ୍ୟ ନାନ୍ୟା ଗତିରିହାସ୍ତି ତେ ॥ ୨୮ ॥
ଯଦି ତେ ମତ୍ପ୍ରିୟଂ କାର୍ଯଂ ଯଦି ଚାବୈଷି ମାଂ ହିତାମ୍ ।
ଯାଚ୍ୟମାନଃ ପ୍ରିୟତ୍ୱେନ ସାଧୁବାକ୍ୟଂ କୁରୁଷ୍ୱ ମେ ॥ ୨୯ ॥

---

କରିବା ମୋର ଇଚ୍ଛା ନୁହେଁ ॥ ୨୨ ॥ ତୁମ୍ଭର ହିତକଥା ମୁଁ ଯାହା କହୁଛୁ ତାହା ଶୁଣ ଏବଂ ସେହି ଅନୁସାରେ କାର୍ଯ୍ୟ କର । ସୁଗ୍ରୀବଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରିଦିଅ ॥ ୨୩ ॥ ରାଜନ୍ ! ଶ୍ରେଷ୍ଠ ଭାଇ ସହିତ ବିରୋଧ କର ନାହିଁ । ରାମଙ୍କ ସହିତ ତୁମ୍ଭର ବନ୍ଧୁତା ସ୍ଥାପନ କରିବା ଉଚିତ ବୋଲି ମୋର ମନେହୁଏ ॥ ୨୪ ॥ ଶତ୍ରୁତା ଦୂର କରି ସୁଗ୍ରୀବ ସହିତ ତୁମ୍ଭର ପ୍ରୀତି କରିବା ଉଚିତ । ଯେ ବାନର ତୁମ୍ଭର ଶ୍ରେଷ୍ଠ ଭାଇ, ସୁତରାଂ ତାଙ୍କୁ ତୁମ୍ଭର ଆଦର କରିବା ଉଚିତ ॥ ୨୫ ॥ ସେ ଏଠାରେ ଥାଉ ବା ସେଠାରେ ଥାଉ ସେ ନିଶ୍ଚୟ ତୁମ୍ଭର ବନ୍ଧୁ । ଏ ସଂସାରରେ ତା ସମାନ ତୁମ୍ଭର ଅନ୍ୟ ବନ୍ଧୁ ମୁଁ ଦେଖୁନାହିଁ ॥ ୨୬ ॥ ଦାନ ମାନ ଆଦି ସତ୍କାରଦ୍ୱାରା ତାଙ୍କୁ ନିଜ ସହିତ ମିଳାଇ ନିଅ । ଏ ଶତ୍ରୁତା ଛାଡ଼ିଦିଅ; ସେ ତୁମ ପାଖରେ ଏହିଠାରେ ରହୁ ॥ ୨୭ ॥ ଦୀର୍ଘଗ୍ରୀବ ସୁଗ୍ରୀବ ତୁମ୍ଭର ପ୍ରଧାନ ବନ୍ଧୁ ଅଟେ । ଭ୍ରାତୃପ୍ରୀତି ବ୍ୟତୀତ ତୁମ୍ଭର ରକ୍ଷାର ବର୍ତ୍ତମାନ ଅନ୍ୟ ଉପାୟ ନାହିଁ ॥ ୨୮ ॥ ମୋର ପ୍ରିୟ କାର୍ଯ୍ୟ କରିବା ଯଦି ତୁମ୍ଭର କର୍ତ୍ତବ୍ୟ ଏବଂ ଯଦି ତୁମେ ମୋତେ ତୁମ୍ଭର ହିତକାରିଣୀ ବୋଲି ବୁଝୁଛ, ତେବେ ମୁଁ ପ୍ରିୟଭାବରେ ଯେ ପ୍ରାର୍ଥନା କରୁଛି,

ପ୍ରସୀଦ ପଥ୍ୟଂ ଶୃଣୁ ଜଳ୍ପିତଂ ହି ମେ
ନ ରୋଷମେବାନୁବିଧାତୁମର୍ହସି ।
କ୍ଷମୋ ହି ତେ କୋଶଲରାଜସୂନୁନା
ନ ବିଗ୍ରହଃ ଶକ୍ରସମାନତେଜସା । ୩୦ ।
ତଦା ହି ତାରା ହିତମେବବାକ୍ୟମ୍
ତଂ ବାଲିନଂ ପଥ୍ୟମିଦଂ ବଭାଷେ ।
ନ ରୋଚତେ ତଦ୍ବଚନଂ ହି ତସ୍ୟ
କାଲାଭିପନ୍ନସ୍ୟ ବିନାଶକାଲେ । ୩୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ତାରାହିତୋକ୍ତିର୍ନାମ
ପଞ୍ଚଦଶଃ ସର୍ଗଃ

---

ମୋର ସେ କଥା ରକ୍ଷାକର । ୨୯ । ପ୍ରସନ୍ନ ହୁଅ; ହିତକାଂକ୍ଷିଣୀ ମୋର କଥା ଶୁଣ; କ୍ରୋଧ କରିବା ଉଚିତ ନୁହେ । ଇନ୍ଦ୍ର ସଦୃଶ ତେଜସ୍ୱୀ କୋଶଳରାଜପୁତ୍ରଙ୍କ ସହିତ ବିରୋଧ କରିବା ଉଚିତ ନୁହେ”।୩୦।ତାରା ବାଲୀକୁ ଏହି ହିତ ବଚନ କହିଲା,ମାତ୍ର ତାକୁ ତାହା ଭଲ ଲାଗିଲା ନାହିଁ । କାରଣ ତାହାର ବିନାଶକାଳ ଉପସ୍ଥିତ ହୋଇଥିଲା ଏବଂ କାଳ ତାହାକୁ ଗ୍ରାସ କରି ସାରିଥିଲା । ୩୧ ।

---

# ଷୋଡ଼ଶଃ ସର୍ଗଃ

## ବାଳସଂହାରଃ

ତାମେବଂ ବ୍ରୁବତୀଂ ତାରାଂ ତାରାଧିପନିଭାନନାମ୍ ।
ବାଲୀ ନିର୍ଭର୍ତ୍ସୟାମାସ ବଚନଂ ଚେଦମବ୍ରବୀତ୍ । ୧ ।
ଗର୍ଜତୋଽସ୍ୟ ସୁସଂରବ୍ଧଂ ଭ୍ରାତୁଃ ଶତ୍ରୋର୍ବିଶେଷତଃ ।
ମର୍ଷୟିଷ୍ୟାମି କେନାପି କାରଣେନ ବରାନନେ । ୨ ।
ଅଧର୍ଷିତାନାଂ ଶୂରାଣାଂ ସମରେଷ୍ୱନିବର୍ତ୍ତିନାମ୍ ।
ଧର୍ଷଣାମର୍ଷଣଂ ଭୀରୁ ମରଣାଦତିରିଚ୍ୟତେ । ୩ ।
ସୋଢୁଂ ନ ଚ ସମର୍ଥୋଽହଂ ଯୁଦ୍ଧକାମସ୍ୟ ସଂଯୁଗେ ।
ସୁଗ୍ରୀବସ୍ୟ ଚ ସଂରମ୍ଭଂ ହୀନଗ୍ରୀବସ୍ୟ ଗର୍ଜିତମ୍ । ୪ ।
ନ ଚ କାର୍ଯ୍ୟୋ ବିଷାଦସ୍ତେ ରାଘବଂ ପ୍ରତି ମତ୍କୃତେ ।
ଧର୍ମଜ୍ଞଶ୍ଚ କୃତଜ୍ଞଶ୍ଚ କଥଂ ପାପଂ କରିଷ୍ୟତି । ୫ ।
ନିବର୍ତ୍ତସ୍ୱ ସହ ସ୍ତ୍ରୀଭିଃ କଥଂ ଭୂୟୋଽନୁଗଚ୍ଛସି ।
ସୌହୃଦଂ ଦର୍ଶିତଂ ତାବନ୍ମୟି ଭକ୍ତିସ୍ତ୍ୱୟା କୃତା । ୬ ।

---

## ୧୬ଶ ସର୍ଗ

### ( ବାଳସଂହାର )

ଚନ୍ଦ୍ରମୁଖୀ ତାରାର ଏ ବଚନ ଶୁଣି ବାଲୀ ତାହାକୁ ଭର୍ତ୍ସନା କଲା ଏବଂ ଏହି ପ୍ରକାରେ କହିଲା । ୧। "ହେ ସୁମୁଖି ! ଗର୍ଜନକାରୀ ଏହି ଶତ୍ରୁ ଭାଇର ଏ ଗର୍ବ ମୁଁ କି କାରଣରୁ କ୍ଷମା କରିବି ? । ୨ । ଯେ କେବେହେଲେ ପରାଜିତ ହୋଇ ନାହିଁ ବା ଯୁଦ୍ଧରେ ପଛ ଫେରାଇ ନାହିଁ, ସେପ୍ରକାର ବୀରପକ୍ଷରେ ଶତ୍ରୁର ଧମକ ସହ୍ୟ କରିବା ମରଣରୁ ବଳି ଅପମାନଜନକ ଅଟେ । ୩ । ଏ ହୀନପ୍ରଭ ସୁଗ୍ରୀବର ଗର୍ବ ଏବଂ ଯୁଦ୍ଧନିମନ୍ତେ ଆହ୍ୱାନ ମୁଁ କଦାପି ସହି ପାରିବି ନାହିଁ । ୪ । ରାମଚନ୍ଦ୍ରଙ୍କ ଲାଗି ମୋ ବିଷୟରେ ତୁମ୍ଭର ଦୁଃଖ କରିବା ଉଚିତ ନୁହେଁ । ସେ ଧର୍ମଜ୍ଞ ଏବଂ କୃତଜ୍ଞ ଅଟନ୍ତି । ସେ କାହିଁକି ଏପରି ପାପ ଆଚରଣ କରିବେ । ୫ । ତୁମେ ଏ ସ୍ତ୍ରୀଲୋକମାନଙ୍କ ସହିତ ଫେରିଯାଅ । କାହିଁକି ପୁଣି ମୋ ପଛେ ପଛେ ଆସୁଛ ? ତୁମେ ମୋ ପ୍ରତି ନିଜର ପ୍ରେମ ଏବଂ ଭକ୍ତି ଦେଖାଇଲ । ୬ । ତୁମେ

ପ୍ରତଯୋତ୍ସ୍ୟାମ୍ୟହଂ ଗତ୍ୱା ସୁଗ୍ରୀବଂ ଜନ୍ଯ ସଂମ୍ଯୁମମ୍ ।
ଦର୍ପଂ ଚାସ୍ୟ ବିନେଷ୍ୟାମି ନ ଚ ପ୍ରାଣୈର୍ବିଯୋକ୍ଷ୍ୟତେ । ୭ ।
ଅହଂ ହ୍ୟାଜିସ୍ଥିତସ୍ୟାସ୍ୟ କରିଷ୍ୟାମି ଯଦୀପ୍ସିତମ୍ ।
ବୃକ୍ଷୈର୍ମୁଷ୍ଟିପ୍ରହାରୈଶ୍ଚ ପୀଡ଼ିତଃ ପ୍ରତଯାସ୍ୟତି । ୮ ।
ନ ମେ ଗର୍ବିତମାୟସ୍ତଂ ସହିଷ୍ୟତି ଦୁରାତ୍ମବାନ୍ ।
କୃତଂ ତାରେ ସହାୟତ୍ୱଂ ଦର୍ଶିତଂ ସୌହୃଦଂ ମୟି । ୯ ।
ଶପିତାସି ମମ ପ୍ରାଣୈର୍ନିବର୍ତସ୍ୱ ଜନେନ ଚ ।
ଅଲଂ ଜିତ୍ୱା ନିବର୍ତିଷ୍ୟେ ତମହଂ ଭ୍ରାତରଂ ରଣେ ।୧୦ ।
ତଂ ତୁ ତାରା ପରିଷ୍ୱଜ୍ୟ ବାଳିନଂ ପ୍ରିୟବାଦିନୀ ।
ଚକାର ରୁଦତୀ ମନ୍ଦଂ ଦକ୍ଷିଣା ସା ପ୍ରଦକ୍ଷିଣମ୍ । ୧୧ ।
ତତଃ ସ୍ୱସ୍ତ୍ୟୟନଂ କୃତ୍ୱା ମନ୍ତ୍ରବଦ୍ ବିଜୟୈଷିଣୀ ।
ଅନ୍ତଃପୁରଂ ସହ ସ୍ତ୍ରୀଭିଃ ପ୍ରବିଷ୍ଟା ଶୋକମୋହିତା । ୧୨ ।
ପ୍ରବିଷ୍ଟାୟାଂ ତୁ ତାରାୟାଂ ସହ ସ୍ତ୍ରୀଭିଃ ସ୍ୱମାଳୟମ୍ ।
ନଗର୍ଯା ନିର୍ଯଯୌ କ୍ରୁଦ୍ଧୋ ମହାସର୍ପ ଇବ ଶ୍ୱସନ୍ । ୧୩ ।
ସ ନିଃଶ୍ୱସ୍ୟ ମହାରୋଷୋ ବାଳୀ ପରମବେଗବାନ୍ ।
ସର୍ବତଶ୍ଚାରୟନ୍ ଦୃଷ୍ଟିଂ ଶତ୍ରୁଦର୍ଶନକାଙ୍କ୍ଷୟା । ୧୪ ।

---

କିଛିମାତ୍ର ବ୍ୟସ୍ତ ହୁଅ ନାହିଁ । ମୁଁ ଯାଇ ସୁଗ୍ରୀବ ସହିତ ଯୁଦ୍ଧ କରିବି, ତାହାର ଦର୍ପ ଦୂର କରିଦେବି, ମାତ୍ର ତାହାର ପ୍ରାଣ ନେବି ନାହିଁ । ୭ । ଯୁଦ୍ଧକ୍ଷେତ୍ରରେ ସେ ଯାହା ଚାହିଁବ ମୁଁ ତାହାହିଁ କରିବି । ବୃକ୍ଷ ଏବଂ ମୁଷ୍ଟିପ୍ରହାରରେ ବ୍ୟତିବ୍ୟସ୍ତ ହୋଇ ସେ ଆପେ ଫେରିଯିବ । ୮ । ଗର୍ବଯୁକ୍ତ ମୋର ଯୁଦ୍ଧପ୍ରସଙ୍ଗକୁ ସେ ଦୁରାତ୍ମା କଦାପି ସହ୍ୟ କରି ପାରିବ ନାହିଁ । ତାରେ ! ତୁମେ ମୋତେ ସହାୟତା କଲ ଏବଂ ସୌହାର୍ଦ୍ୟ ମଧ୍ୟ ଦେଖାଇଲ । ୯। ମୁଁ ତୁମକୁ ମୋର ପ୍ରାଣର ଶପଥ ଦେଉଛି, ସେବୁ ଲୋକଙ୍କ ସହିତ ତୁମେ ଫେରିଯାଅ । ମୁଁ ସେ ଭାଇକୁ ଯୁଦ୍ଧରେ ଜିଣି ଶୀଘ୍ର ଫେରି ଆସିବି, ଏଥିରେ ସନ୍ଦେହ ନାହିଁ" ।୧୦ । ପ୍ରିୟବାଦିନୀ ଉଦାରହୃଦୟା ତାରା ବାଳୀକୁ ଆଲିଙ୍ଗନ କରି କାନ୍ଦି କାନ୍ଦି ତାହାର ଚତୁଃପାର୍ଶ୍ୱରେ ପ୍ରଦକ୍ଷିଣ କଲା । ୧୧ । ମନ୍ତ୍ରଜ୍ଞା ଏବଂ ବାଳୀର ବିଜୟ ଅଭିଳାଷିଣୀ ତାରା ସ୍ୱସ୍ତ୍ୟୟନ କଲା ଏବଂ ଶୋକପୀଡ଼ିତ ହୋଇ ଅନ୍ୟ ସ୍ତ୍ରୀମାନଙ୍କ ସହିତ ଅନ୍ତଃପୁରକୁ ଚାଲିଗଲା । ୧୨ । ତାରା ଅନ୍ୟ ସ୍ତ୍ରୀମାନଙ୍କ ସହିତ ନିଜ ଘରେ ପ୍ରବେଶ କରିବା ପରେ, ବାଳୀ ମହାସର୍ପସଦୃଶ ସୁ ସୁ ହୋଇ ନିଶ୍ୱାସ ଛାଡ଼ି ନଗରରୁ ବାହାରିଲା । ୧୩ । ମହାକ୍ରୋଧୀ ଅତିବେଗଶାଳୀ ବାଳୀ ନିଶ୍ୱାସ ପକାଇ ଶତ୍ରୁକୁ ଦେଖିବା ଇଚ୍ଛାରେ ଚାରିଆଡ଼କୁ ଦୃଷ୍ଟି ପକାଇ ଶେଷରେ ସୁବର୍ଣ୍ଣ-

ସ ଦଦର୍ଶ ତତଃ ଶ୍ରୀମାନ୍ ସୁଗ୍ରୀବଂ ହେମପିଙ୍ଗଳମ୍ ।
ସୁସଂବୀତମବଷ୍ଟବ୍ଧଂ ଦୀପ୍ୟମାନମିବାନଳମ୍ । ୧୫ ।
ତଂ ସ ଦୃଷ୍ଟ୍ୱା ମହାବାହୁଃ ସୁଗ୍ରୀବଂ ପର୍ଯ୍ୟବସ୍ଥିତମ୍ ।
ଗାଢ଼ଂ ପରିଦଧେ ବାସୋ ବାଲୀ ପରମକୋପନଃ ।୧୬।
ସ ବାଲୀ ଗାଢ଼ସଂବୀତୋ ମୁଷ୍ଟିମୁଦ୍ୟମ୍ୟ ବୀର୍ଯ୍ୟବାନ୍ ।
ସୁଗ୍ରୀବମେବାଭିମୁଖୋ ଯଯୌ ଯୋଦ୍ଧୁଂ କୃତକ୍ଷଣଃ । ୧୭ ।
ଶ୍ଳିଷ୍ଟଂ ମୁଷ୍ଟିଂ ସମୁଦ୍ୟମ୍ୟ ସଂରବ୍ଧତରମାଗତଃ ।
ସୁଗ୍ରୀବୋଽପି ସମୁଦ୍ଦିଶ୍ୟ ବାଳିନଂ ହେମମାଳିନମ୍ । ୧୮ ।
ତଂ ବାଲୀ କ୍ରୋଧତାମ୍ରାକ୍ଷଂ ସୁଗ୍ରୀବଂ ରଣକୋବିଦମ୍ ।
ଆପତନ୍ତଂ ମହାବେଗମିଦଂ ବଚନମବ୍ରବୀତ୍ । ୧୯ ।
ଏଷ ମୁଷ୍ଟିର୍ମହାନ୍ ବଦ୍ଧୋ ଗାଢ଼ଃ ସୁନିୟତାଙ୍ଗୁଳିଃ ।
ମୟା ବେଗବିମୁକ୍ତସ୍ତେ ପ୍ରାଣାନାଦାୟ ଯାସ୍ୟତି । ୨୦ ।
ଏବମୁକ୍ତସ୍ତୁ ସୁଗ୍ରୀବଃ କ୍ରୁଦ୍ଧୋ ବାଳିନମବ୍ରବୀତ୍ ।
ତବ ଚୈଷ ହରନ୍ ପ୍ରାଣାନ୍ମୁଷ୍ଟିଃ ପତତୁ ମୂର୍ଦ୍ଧନି । ୨୧ ।
ତାଡ଼ିତସ୍ତେନ ସଂକ୍ରୁଦ୍ଧଃ ସମଭିକ୍ରମ୍ୟ ବେଗତଃ ।
ଅଭବଚ୍ଛୋଣିତୋଦ୍ଗାରୀ ସାପୀଡ଼ ଇବ ପର୍ବତଃ । ୨୨ ।

---

ସବୃଣ ପିଙ୍ଗଳବର୍ଣ୍ଣ ସୁଗ୍ରୀବକୁ ଦେଖିଲା । ସେ କାଛ ପିନ୍ଧି ଏକ ସୁଦୃଢ଼ ସ୍ଥାନରେ ଠିଆ ହୋଇଥିଲା ଏବଂ ଜ୍ୱଳନ୍ତ ଅଗ୍ନି ସଦୃଶ ଦେଖାଯାଉଥିଲା । ୧୪-୧୫ । ମହାକ୍ରୋଧୀ ମହାବାହୁ ବାଲୀ ସୁଗ୍ରୀବକୁ ପ୍ରସ୍ତୁତ ହୋଇ ଛିଡ଼ା ହୋଇଥିବାର ଦେଖି ନିଜର ଲୁଗାକୁ କଷି କାଛି କମର ଭିଡ଼ିଲା ।୧୬। କମର ଭିଡ଼ ଏବଂ ମୁଥ ଉଠାଇ ବାଲୀ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇ ସୁଗ୍ରୀବ ଆଡ଼କୁ ଅଗ୍ରସର ହେଲା । ୧୭ । ସୁଗ୍ରୀବ ମଧ ମୁଷ୍ଟିକୁ ଦୃଢ଼କରି ସୁନାହାର ପିନ୍ଧିଥିବା ବାଲୀ ଆଡ଼କୁ ବେଗରେ ଆସିଲା । ୧୮ । କ୍ରୋଧରେ ଆରକ୍ତଚକ୍ଷୁ, ଯୁଦ୍ଧନିପୁଣ ସୁଗ୍ରୀବ ଅତିବେଗରେ ଆକ୍ରମଣ କରୁଥିବାର ଦେଖି ବାଲୀ ତାକୁ କହିଲା ।୧୯। "ଏଇ ଦେଖ, ମୁଁ ଆଙ୍ଗୁଠିମାନ ଚିପିକରି ଏହି ଯେ ମୂଠା ବାନ୍ଧିଛି ଏହାକୁ ତୋ ଉପରେ ଚଳାଇଲେ ଏ ତୋର ପ୍ରାଣ ନେଇ ଫେରିବ" । ୨୦ । ବାଲୀ ଏପରି କହିବାପରେ ସୁଗ୍ରୀବ କ୍ରୁଦ୍ଧହୋଇ ତାକୁ କହିଲା । "ମୋର ଏ ମୁଷ୍ଟି ତୋର ଟାଙ୍କ ଉପରେ ପଡ଼ି ତୋର ପ୍ରାଣ ହରଣ କରୁ" ।୨୧। ସୁଗ୍ରୀବର ପ୍ରହାରରେ କ୍ରୁଦ୍ଧହୋଇ ବାଲୀ ଅତିବେଗରେ ତାକୁ ଆକ୍ରମଣ କଲା । ତାହାର ଶରୀରରୁ ରକ୍ତଧାରା ବହୁଥିବାରୁ ସେ ସେତେବେଳେ ନିର୍ଝରଧାରାବାହୀ ପର୍ବତପରି ଦେଖାଯାଉଥିଲା । ୨୨ । ସୁଗ୍ରୀବ ନିଃଶଙ୍କଭାବରେ

ସୁଗ୍ରୀବେଣ ତୁ ନିଃଶଙ୍କଂ ସାଲମୁତ୍ପାଟ୍ୟ ତେଜସା ।
ଗାତ୍ରେଷ୍ୱଭିହତୋ ବାଲୀ ବଜ୍ରେଣେବ ମହାଗିରିଃ । ୨୩ ।
ସ ତୁ ବୃକ୍ଷେଣ ନିର୍ଭଗ୍ନଃ ସାଲତାଡ଼ନବିହ୍ୱଳଃ ।
ଗୁରୁଭାରସମାକ୍ରାନ୍ତା ନୌଃ ସସାର୍ଥେବ ସାଗରେ । ୨୪ ।
ତୌ ଭୀମବଲବିକ୍ରାନ୍ତୌ ସୁପର୍ଣସମବେଗିତୌ ।
ପ୍ରଯୁଦ୍ଧୌ ଘୋରବପୁଷୌ ଚନ୍ଦ୍ରସୂର୍ଯାବିବାମ୍ବରେ । ୨୫ ।
ପରସ୍ପରମମିତ୍ରଘ୍ନୌ ଛିଦ୍ରାନ୍ୱେଷଣତତ୍ପରୌ ।
ତତୋଽବର୍ଧତ ବାଲୀ ତୁ ବଲବୀର୍ଯସମନ୍ୱିତଃ । ୨୬ ।
ସୂର୍ଯପୁତ୍ରୋ ମହାବୀର୍ଯଃ ସୁଗ୍ରୀବଃ ପରିହୀୟତେ ।
ବାଲିନା ଭଗ୍ନଦର୍ପସ୍ତୁ ସୁଗ୍ରୀବୋ ମନ୍ଦବିକ୍ରମଃ । ୨୭ ।
ବାଲିନଂ ପ୍ରତି ସାମର୍ଷୋ ଦର୍ଶୟାମାସ ରାଘବମ୍ ।
ବୃକ୍ଷୈଃ ସଶାଖୈଃ ଶିଖରୈର୍ବଜ୍ରକୋଟିନିଭୈର୍ନଖୈଃ । ୨୮ ।
ମୁଷ୍ଟିଭିର୍ଜାନୁଭିଃ ପଦ୍ଭିର୍ବାହୁଭିଶ୍ଚ ପୁନଃପୁନଃ ।
ତୟୋର୍ଯୁଦ୍ଧମଭୂଦ୍‌ଘୋରଂ ବୃତ୍ରବାସବୟୋରିବ । ୨୯ ।

---

ଏକ ଶାଳବୃକ୍ଷ ଉପାଡ଼ି ଖୁବ୍ ଜୋରରେ ବାଳୀ ଉପରେ ପ୍ରହାରକଲା । ସତେ ଯେପରି ମହାପର୍ବତ ଉପରେ ବଜ୍ର ପ୍ରହାର ହେଲା । ୨୩ । ବିଶେଷ ବୋଝାଇ ହୋଇଥିବା ଆରୋହୀସହିତ ନୌକା ଯେପରି ସମୁଦ୍ରରେ ଟଳମଳ ହେଉଥାଏ, ଏ ଶାଳବୃକ୍ଷର ପ୍ରହାର ଖାଇ ବାଳୀ ସେହିପରି ବ୍ୟାକୁଳ ହୋଇ ଉଠିଲା । ୨୪ । ଭୀଷଣ ବଳପରାକ୍ରମୀ, ଗରୁଡ଼ସଦୃଶ ବେଗବାନ୍, ଭୀମବପୁ ସେ ଦୁହେଁ ପରସ୍ପର ଯୁଦ୍ଧ କରିବାକୁ ଲାଗିଲେ । ବୋଧହେଲା ଯେପରିକି ଆକାଶରେ ଚନ୍ଦ୍ର ଏବଂ ସୂର୍ଯ୍ୟ ଦୁହେଁ ଯୁଦ୍ଧ କରୁଛନ୍ତି । ୨୫। ଉଭୟେ ପରସ୍ପରକୁ ମାରିବାକୁ ବ୍ୟାକୁଳ ଥିଲେ ଏବଂ ପରସ୍ପରର ଦୁର୍ବଳତାର ସୁଯୋଗ ଖୋଜୁଥିଲେ; ମାତ୍ର ବାଳୀର ବଳ ଓ ବୀର୍ଯ୍ୟ ଅଧିକ ବଢ଼ିବାକୁ ଲାଗିଲା । ୨୬ । ବାଳୀ ସୂର୍ଯ୍ୟପୁତ୍ର ମହାବଳୀ ସୁଗ୍ରୀବର ଦର୍ପ ଚୂର୍ଣ୍ଣ କରିଦେଲା । ଅତଏବ ତାହାର ପରାକ୍ରମ ଶିଥିଳ ହେବାକୁ ଲାଗିଲା । ୨୭ । ବାଳୀପ୍ରତି କ୍ରୁଦ୍ଧହୋଇ ସୁଗ୍ରୀବ ତାହାକୁ ରାମଚନ୍ଦ୍ରଙ୍କୁ ଦେଖାଇଦେଲା । ଶାଖାଯୁକ୍ତ ବୃକ୍ଷ, ପର୍ବତଶିଖର, ବଜ୍ରସମାନ ନଖ, ମୁଥ, ଜଂଘ, ପାଦ, ବାହୁ ସାହାଯ୍ୟରେ ସେ ଦୁହିଁଙ୍କର ବାରମ୍ବାର ପରସ୍ପର ଯୁଦ୍ଧହେଲା । ଇନ୍ଦ୍ର ଏବଂ ବୃତ୍ରାସୁର ମଧ୍ୟରେ ଯେପରି ଯୁଦ୍ଧ ହୋଇଥିଲା ଏ ଦୁହିଁଙ୍କର ସେହିପରି ଯୁଦ୍ଧ ଚାଲିଲା । ୨୮-୨୯।

ତୌ ଶୋଣିତାକ୍ତୌ ଯୁଧ୍ୟେତାଂ ବାନରୌ ବନଚାରିଣୌ ।
ମେଘାବିବ ମହାଶବ୍ଦୈସ୍ତର୍ଜମାନୌ ପରସ୍ପରମ୍ । ୩୦ ।
ହୀୟମାନମଥାପଶ୍ୟତ୍ସୁଗ୍ରୀବଂ ବାନରେଶ୍ୱରମ୍ ।
ପ୍ରେକ୍ଷମାଣଂ ଦିଶଶ୍ଚୈବ ରାଘବଃ ସ ମୁହୁର୍ମୁହୁଃ । ୩୧ ।
ତତୋ ରାମୋ ମହାତେଜା ଆର୍ତ୍ତଂ ଦୃଷ୍ଟ୍ୱା ହରୀଶ୍ୱରମ୍ ।
ଶରଂ ବୀକ୍ଷତେ ବୀରୋ ବାଲିନୋ ବଧକାଙ୍‌କ୍ଷୟା । ୩୨ ।
ତତୋ ଧନୁଷି ସଂଧାୟ ଶରମାଶୀବିଷୋପମମ୍ ।
ପୂରୟାମାସ ତଚ୍ଚାପଂ କାଲଚକ୍ରମିବାନ୍ତକଃ । ୩୩ ।
ତସ୍ୟ ଜ୍ୟାତଲଘୋଷେଣ ତ୍ରସ୍ତାଃ ପତ୍ରରଥେଶ୍ୱରାଃ ।
ପ୍ରଦୁଦ୍ରୁବୁର୍ମୃଗାଶ୍ଚୈବ ଯୁଗାନ୍ତ ଇବ ମୋହିତାଃ । ୩୪ ।
ମୁକ୍ତସ୍ତୁ ବଜ୍ରନିର୍ଘୋଷଃ ପ୍ରଦୀପ୍ତାଶନିସଂନିଭଃ ।
ରାଘବେଣ ମହାବାଣୋ ବାଲିବକ୍ଷସି ପାତିତଃ । ୩୫ ।
ତତସ୍ତେନ ମହାତେଜା ବୀର୍ଯ୍ୟଯୁକ୍ତଃ କପୀଶ୍ୱରଃ ।
ବେଗେନାଭିହତୋ ବାଲୀ ନିପପାତ ମହୀତଲେ । ୩୬ ।

---

ବନଚାରୀ ଏ ଦୁଇ ବାନର ରକ୍ତରେ ଜର୍ଜରିତ ହୋଇ ଯୁଦ୍ଧ କରିବାକୁ ଲାଗିଲେ ଏବଂ ଦୁଇଟି ମେଘପରି ଘୋର ଶବ୍ଦକରି ପରସ୍ପରପ୍ରତି ଗର୍ଜନ କରିବାକୁ ଲାଗିଲେ ।୩୦। ବାନରାଧିପତି ସୁଗ୍ରୀବ କମଜୋର ହୋଇ ପଡ଼ୁଛନ୍ତି ଏବଂ ବାରମ୍ବାର ଏଣେତେଣେ ଚାହୁଁଛନ୍ତି—ଏହା ରାମଚନ୍ଦ୍ର ଦେଖିପାରିଲେ ।୩୧। ମହାତେଜସ୍ୱୀ ରାମଚନ୍ଦ୍ର ସୁଗ୍ରୀବଙ୍କୁ ବ୍ୟତିବ୍ୟସ୍ତ ହେବାର ଦେଖି ବାଲୀଙ୍କୁ ବଧ କରିବା ଉଦ୍ଦେଶ୍ୟରେ ନିଜର ଶର ଖୋଜିଲେ (ଅର୍ଥାତ୍ ତୂଣୀରରେ ହାତ ପକାଇ ଶର ବାହାର କଲେ) ।୩୨। ଯମରାଜ ଯେପରି କାଳଚକ୍ର ଚଳାଏ ସେହିପରି ସେ ସର୍ପସମାନ ବାଣକୁ ଧନୁ ଉପରେ ଚଢ଼ାଇ ଗୁଣ ଟାଣିଲେ ।୩୩। ଧନୁର ଟଙ୍କାର ଶବ୍ଦରେ ବଡ଼ ବଡ଼ ପକ୍ଷୀମାନେ ଏବଂ ମୃଗମାନେ ପ୍ରଳୟକାଳ ଉପସ୍ଥିତ ହେଲା ବୋଲି ଭାବିକରି ବ୍ୟସ୍ତବ୍ୟସ୍ତ ହୋଇ ପଳାଇଗଲେ ।୩୪। ବଜ୍ରସଦୃଶ ଶବ୍ଦକାରୀ ଜ୍ୱଳନ୍ତ ବଜ୍ରସଦୃଶ ଶର ରାମଚନ୍ଦ୍ର ବାଲୀର ବକ୍ଷକୁ ମାରିଲେ ।୩୫। ସେ ବାଣରେ ଆହତ ହୋଇ ମହାବଳୀ ବାନରାଧିପତି ବାଲୀ ପୃଥିବୀ ଉପରେ ପଡ଼ିଗଲା ।୩୬। ଆଶ୍ୱିନ

ଇନ୍ଦ୍ରଧ୍ୱଜ ଇବୋଦ୍ଧୃତଃ ପୌର୍ଣମାସ୍ୟାଂ ମହୀତଳେ ।
ଆଶ୍ୱୟୁକ୍‌ସମୟେ ମାସି ଗତସତ୍ତ୍ୱୋ ବ୍ୟଚେତନଃ ।
ବାଷ୍ପସଂରୁଦ୍ଧକଣ୍ଠସ୍ତୁ ବାଲୀ ଚୃତ୍ତସ୍ୱରଃ ଶନୈଃ । ୩୭ ।
ନରୋତ୍ତମଃ କାଲ ଇବାନ୍ତକୋପମମ୍
ଶରୋତ୍ତମଂ କାଞ୍ଚନରୂପ୍ୟଭୂଷିତମ୍ ।
ସସର୍ଜ ଦୀପ୍ତଂ ତମମିତ୍ରମର୍ଦ୍ଦନମ୍
ସଧୂମମଗ୍ନିଂ ମୁଖତୋ ଯଥା ହରଃ । ୩୮ ।
ଅଥୋକ୍ଷିତଃ ଶୋଣିତତୋୟବିସ୍ରବୈଃ
ପ୍ରପୁଷ୍ପିତାଶୋକ ଇବାଚଲୋଦ୍‌ଗତଃ ।
ବ୍ୟଚେତନୋ ବାସବସୂନୁରାହବେ
ପ୍ରଭ୍ରଂଶିତେନ୍ଦ୍ରଧ୍ୱଜବତ୍‌କ୍ଷିତିଂ ଗତଃ । ୩୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ବାଲିସଂହାରୋ
ନାମ ଷୋଡ଼ଶଃ ସର୍ଗଃ

---

ପୂର୍ଣ୍ଣିମାରେ ଇନ୍ଦ୍ରଧ୍ୱଜ ପରି ଥରି ଥରି ବାଲୀ ଅଚେତନ ହୋଇ ଭୂମିରେ ପଡ଼ିଗଲା । ଲୋତକରେ ତାର କଣ୍ଠ ରୁଦ୍ଧହୋଇ ତାର ସ୍ୱର କ୍ଷୀଣ ହୋଇପଡ଼ିଲା ।୩୭। ସୁନା ଏବଂ ରୂପାରେ ଛୁଆଁଣି ହୋଇଥିବା, ଶତ୍ରୁବିନାଶକାରୀ, ପ୍ରଳୟକାଳସଦୃଶ ଶରକୁ ନରଶ୍ରେଷ୍ଠ ରାମଚନ୍ଦ୍ର ନିକ୍ଷେପ କଲେ । ମହାଦେବ ଯେପରି ମୁଖରୁ ଧୂମଯୁକ୍ତ ଅଗ୍ନି ବାହାର କରିଥିଲେ ରାମ ଏ ଶରକୁ ସେହିପରି ନିର୍ଗତ କଲେ ।୩୮। ରକ୍ତ ଏବଂ ଘର୍ମରେ ବାଲୀର ସମସ୍ତ ଶରୀର ଆର୍ଦ୍ର ହୋଇଗଲା । ଅତଏବ ପର୍ବତ ଉପରେ ଉତ୍ପନ୍ନ ପୁଷ୍ପିତ ଅଶୋକ ବୃକ୍ଷସଦୃଶ ସେ ଦେଖାଗଲା । ଇନ୍ଦ୍ରପୁତ୍ର ବାଲୀ ନିପାତିତ ଇନ୍ଦ୍ରଧ୍ୱଜସଦୃଶ ଅଚେତନ ହୋଇ ଭୂମିରେ ପଡ଼ିଗଲା । ୩୯ ।

# ସପ୍ତଦଶଃ ସର୍ଗଃ

## ରାମାଧିକ୍ଷେପଃ

ତତଃ ଶରେଣାଭିହତୋ ରାମେଣ ରଣକର୍କଶଃ ।
ପପାତ ସହସା ବାଲୀ ନିକୃତ୍ତ ଇବ ପାଦପଃ । ୧ ।
ସ ଭୂମୌ ନ୍ୟସ୍ତସର୍ବାଙ୍ଗସ୍ତପ୍ତକାଞ୍ଚନଭୂଷଣଃ ।
ଅପତଦ୍ଦେବରାଜସ୍ୟ ମୁକ୍ତରଶ୍ମିରିବ ଧ୍ୱଜଃ । ୨ ।
ଅସ୍ମିନ୍ନିପତିତେ ଭୂମୌ ହର୍ଯ୍ୟକ୍ଷାଣାଂ ଗଣେଶ୍ୱରେ ।
ନଷ୍ଟଚନ୍ଦ୍ରମିବ ବ୍ୟୋମ ନ ବ୍ୟରାଜତ ମେଦିନୀ । ୩ ।
ଭୂମୌ ନିପତିତସ୍ୟାପି ତସ୍ୟ ଦେହଂ ମହାତ୍ମନଃ ।
ନ ଶ୍ରୀର୍ଜହାତି ନ ପ୍ରାଣାସ୍ତ୍ରିନ ତେଜୋ ନ ପରାକ୍ରମଃ । ୪ ।
ଶକ୍ରଦତ୍ତା ବରା ମାଲା କାଞ୍ଚନୀ ରତ୍ନଭୂଷିତା ।
ଦଧାର ହରିମୁଖ୍ୟସ୍ୟ ପ୍ରାଣାଂସ୍ତେଜଃ ଶ୍ରିୟଂ ଚ ସା । ୫ ।
ସ ତୟା ମାଲୟା ବୀରୋ ହୈମୟା ହରିୟୂଥପଃ ।
ସନ୍ଧ୍ୟାନୁଗତପର୍ଯ୍ୟନ୍ତଃ ପୟୋଧର ଇବାଭବତ୍ । ୬ ।

---

## ୧୭ଶ ସର୍ଗ

(ବାଲୀର ରାମଙ୍କୁ ଭର୍ତ୍ସନା)

ଯୁଦ୍ଧରେ ନିଷ୍ଠୁର ବାଲୀ ରାମଙ୍କ ବାଣରେ ଆହତ ହୋଇ କାଟିଦେଲା ଗଛପରି ଭୂମିରେ ପଡ଼ିଗଲା । ୧। ସୁବର୍ଣ୍ଣଭୂଷିତ ବାଲୀର ସମସ୍ତ ଶରୀର ପୃଥିବୀ ଉପରେ ପଡ଼ି ରହିଥିଲା । ରଜ୍ଜୁ ଛିଣ୍ଡିଗଲେ ଇନ୍ଦ୍ରଙ୍କର ଧ୍ୱଜା ଯେପରି ପୃଥିବୀଉପରେ ପଡ଼ିଯାଏ, ସେହିପରି ବାଲୀ ପଡ଼ି ରହିଥିଲା । ୨ । ବାନର ଏବଂ ଭାଲୁମାନଙ୍କର ରାଜା ବାଲୀ ଭୂମିରେ ପଡ଼ିଯିବାରୁ ଚନ୍ଦ୍ରହୀନ ଆକାଶପରି ପୃଥିବୀ ଶୋଭାହୀନ ହୋଇଥିଲା । ୩ । ସେ ମହାତ୍ମାର ଶରୀର ପୃଥିବୀ ଉପରେ ପଡ଼ିଗଲେ ମଧ୍ୟ ସୌନ୍ଦର୍ଯ୍ୟ, ପ୍ରାଣ, ତେଜ ଏବଂ ପରାକ୍ରମ ତାହାକୁ ଛାଡ଼ି ନ ଥିଲା । ୪ । ଇନ୍ଦ୍ରଙ୍କ ପ୍ରଦତ୍ତ ରତ୍ନଖଚିତ ସୁବର୍ଣ୍ଣହାର ବାଲୀର ପ୍ରାଣ, ତେଜ ଏବଂ ସୌନ୍ଦର୍ଯ୍ୟ ଆଦି ରକ୍ଷା କରିଥିଲା । ୫ । ବାନରାଧିପତି ସେହି ସୁନାର ମାଳାଦ୍ୱାରା ସନ୍ଧ୍ୟାରାଗରକ୍ତ ମେଘସଦୃଶ ଦେଖାଯାଉଥିଲା । ୬ ।

ତସ୍ୟ ମାଲା ଚ ଦେହଶ୍ଚ ମର୍ମଘାତୀ ଚ ଯଃ ଶରଃ ।
ତ୍ରିଧେବ ରଚିତା ଲକ୍ଷ୍ମୀଃ ପତିତସ୍ୟାପି ଶୋଭତେ । ୭ ।
ତଦସ୍ତ୍ରଂ ତସ୍ୟ ବୀରସ୍ୟ ସ୍ୱର୍ଗମାର୍ଗପ୍ରଭାବନମ୍ ।
ରାମବାଣାସନୋତ୍କ୍ଷିପ୍ତମାବହତ୍ପରମାଂ ଗତମ୍ । ୮ ।
ତଂ ତଥା ପତିତଂ ସଂଖ୍ୟେ ଗତାର୍ଚିଷମିବାନଲମ୍ ।
ଯଯାତିମିବ ପୁଣ୍ୟାନ୍ତେ ଦେବଲୋକାଦିହ ଚ୍ୟୁତମ୍ । ୯ ।
ଆଦିତ୍ୟମିବ କାଲେନ ଯୁଗାନ୍ତେ ଭୁବି ପାତିତମ୍ ।
ମହେନ୍ଦ୍ରମିବ ଦୁର୍ଧର୍ଷଂ ମୃଗେନ୍ଦ୍ରମିବ ଦୁଃସହମ୍ । ୧୦ ।
ମହେନ୍ଦ୍ରପୁତ୍ରଂ ପତିତଂ ବାଲିନଂ ହେମମାଲିନମ୍ ।
ବ୍ୟୂଢୋରସ୍କଂ ମହାବାହୁଂ ଦୀପ୍ତାସ୍ୟଂ ହରିଲୋଚନମ୍ । ୧୧ ।
ଲକ୍ଷ୍ମଣାନୁଚରୋ ରାମୋ ଦଦର୍ଶୋପସସର୍ପ ଚ ।
ତଂ ତଥା ପତିତଂ ବୀରଂ ଗତାର୍ଚିଷମିବାନଲମ୍ । ୧୨ ।
ବହୁମାନ୍ୟଂ ଚ ତଂ ବୀରଂ ବୀକ୍ଷମାଣଂ ଶନୈରିବ ।
ଉପଯାତୌ ମହାବୀର୍ଯୌ ଭ୍ରାତରୌ ରାମଲକ୍ଷ୍ମଣୌ । ୧୩ ।

---

ସେହି ମାଳା, ବାଳୀର ଶରୀର ଏବଂ ମର୍ମଘାତୀ ସେହି ଶର ଏହି ତିନୋଟିଯାକ ପୃଥକ୍ ଶୋଭା ଧାରଣ କରିଥିଲେ । ଜଣାଯାଉଥିଲା, ଯେପରିକ ଲକ୍ଷ୍ମୀ ତିନ ଭାଗରେ ବିଭକ୍ତ ହୋଇ ରହିଛନ୍ତି । ୭ । ସେହି ଅସ୍ତ୍ର ସେ ବୀରକୁ ସ୍ୱର୍ଗକୁ ନେବାର ସହାୟକ ହେଲା । ରାମଚନ୍ଦ୍ରଙ୍କ ଧନୁରୁ ନିକ୍ଷିପ୍ତ ଶର ତାହାକୁ ଉତ୍ତମଗତି ପ୍ରଦାନକଲା । ୮ । ଏହି ପ୍ରକାରେ ଯୁଦ୍ଧଭୂମିରେ ପଡ଼ିଥିବା ବାଳୀ ଜ୍ୟୋତିହୀନ ଅଗ୍ନି ସଦୃଶ ଦେଖାଯାଉଥିଲା । ପୁଣ୍ୟସମାପ୍ତି ପରେ ଦେବଲୋକରୁ ଚ୍ୟୁତ ଯଯାତିଙ୍କପରି ସେ ଦେଖାଯାଉଥିଲା । ୯ । ପ୍ରଳୟ ସମୟରେ କାଳଦ୍ୱାରା ପୃଥିବୀ ଉପରେ ନିପାତିତ ସୂର୍ଯ୍ୟପରି, ଇନ୍ଦ୍ରଙ୍କ ସମାନ ଅଜେୟ, ଉପେନ୍ଦ୍ରଙ୍କ ସମାନ ଅସହ୍ୟ, ସୁବର୍ଣ୍ଣମାଳାଧାରୀ ବାଳୀକୁ ରାମଚନ୍ଦ୍ର ଦେଖିଲେ । ତାହାର ପ୍ରଶସ୍ତ ବକ୍ଷ, ଦୀର୍ଘବାହୁ, ଦୀପ୍ୟମାନ ମୁଖ ଏବଂ ପୀତଚକ୍ଷୁକୁ ଲକ୍ଷ୍ମଣଙ୍କ ସହିତ ରାମଚନ୍ଦ୍ର ଦେଖିଲେ ଏବଂ ତାହା ନିକଟକୁ ଗଲେ । ସେ ଏହିପରି ପଡ଼ିରହି ପ୍ରଭାହୀନ ଅଗ୍ନି ସଦୃଶ ଦେଖାଯାଉଥିଲା । ୧୦-୧୨ । ଧୀରେ ତାହା ଆଡ଼କୁ ନିରୀକ୍ଷଣ କରି ମହାପରାକ୍ରମୀ ରାମ ଏବଂ ଲକ୍ଷ୍ମଣ ଦୁଇଭାଇ ତାହାପ୍ରତି ସମ୍ମାନ ଦେଖାଇଲେ ଏବଂ ତାହା ନିକଟକୁ ଗଲେ ।୧୩। ବାଳୀ ବଳବାନ୍ ରାମ ଓ ଲକ୍ଷ୍ମଣଙ୍କୁ

ତଂ ଦୃଷ୍ଟ୍ୱା ରାଘବଂ ବାଲୀ ଲକ୍ଷ୍ମଣଂ ଚ ମହାବଲମ୍ ।
ଅବ୍ରବୀତ୍ପରୁଷଂ ବାକ୍ୟଂ ପ୍ରଶ୍ରିତଂ ଧର୍ମସଂହିତମ୍ । ୧୪ ।
ସ ଭୂମାବଲ୍ପତେଜୋଽସୁର୍ନିହତୋ ନଷ୍ଟଚେତନଃ ।
ଅର୍ଥସଂହିତୟା ବାଚା ଗର୍ବିତଂ ରଣଗର୍ବିତମ୍ । ୧୫ ।
ପରାଙ୍ମୁଖବଧଂ କୃତ୍ୱା କୋଽତ୍ର ପ୍ରାପ୍ତସ୍ତ୍ୱୟା ଗୁଣଃ ।
ଯଦହଂ ଯୁଦ୍ଧସଂରବ୍ଧସ୍ତ୍ୱତ୍କୃତେ ନିଧନଂ ଗତଃ । ୧୬ ।
କୁଲୀନଃ ସତ୍ତ୍ୱସଂପନ୍ନସ୍ତେଜସ୍ୱୀ ଚରିତବ୍ରତଃ ।
ରାମଃ କରୁଣବେଦୀ ଚ ପ୍ରଜାନାଂ ଚ ହିତେ ରତଃ । ୧୭ ।
ସାନୁକ୍ରୋଶୋ ମହୋତ୍ସାହଃ ସମୟଜ୍ଞୋ ଦୃଢ଼ବ୍ରତଃ ।
ଇତ୍ୟେତତ୍ସର୍ବଭୂତାନି କଥୟନ୍ତି ଯଶୋ ଭୁବି । ୧୮ ।
ଦମଃ ଶମଃ କ୍ଷମା ଧର୍ମୋ ଧୃତିଃ ସତ୍ତ୍ୱଂ ପରାକ୍ରମଃ ।
ପାର୍ଥିବାନାଂ ଗୁଣା ରାଜନ୍ ଦଣ୍ଡଶ୍ଚାପ୍ୟପକାରିଷୁ । ୧୯ ।
ତାନ୍ ଗୁଣାନ୍ ସଂପ୍ରଧାର୍ଯ୍ୟାହମଗ୍ର୍ୟଂ ଚାଭିଜନଂ ତବ ।
ତାରୟା ପ୍ରତିଷିଦ୍ଧଃ ସନ୍ ସୁଗ୍ରୀବେଣ ସମାଗତଃ । ୨୦ ।
ନ ମାମନ୍ୟେନ ସଂରବ୍ଧଂ ପ୍ରମତ୍ତଂ ବେଦ୍ଧୁମର୍ହସି ।
ଇତି ମେ ବୁଦ୍ଧିରୁତ୍ପନ୍ନା ବଭୂବାଦର୍ଶନେ ତବ । ୨୧ ।

---

ଦେଖି ଧର୍ମସମ୍ମତ,ବିନୟପୂର୍ଣ୍ଣ ଏବଂ କଠୋର ବଚନ କହିଲା । ୧୪ । ଭୂମି ଉପରେ ପଡ଼ି ବାଳୀର ପ୍ରାଣ ଏବଂ ତେଜ କମିଯାଇଥିଲା ଓ ତାହାର ଚେତନା ମଧ୍ୟ ଲୋପ ହୋଇ ଆସୁଥିଲା । ସେ ରଣଗର୍ବିତ ରାମଚନ୍ଦ୍ରଙ୍କୁ ଗର୍ବପୂର୍ଣ୍ଣଭାବରେ ଅର୍ଥଯୁକ୍ତ ବଚନ କହିଲା । ୧୫ । "ଏପରି ଲୁଚିରହି ମୁଁ ଅନ୍ୟ ସହିତ ଯୁଦ୍ଧରେ ବ୍ୟାପୃତ ଥିବାବେଳେ ମୋତେ ମାରିବାଦ୍ୱାରା ତୁମେ କି ବିଶେଷ ଗୁଣରେ ପରିଚୟ ଦେଲ ? । ୧୬ । ରାମଚନ୍ଦ୍ର ! ତୁମେ କୁଳୀନ, ବଳବାନ୍, ତେଜସ୍ୱୀ, ଚରିତ୍ରବାନ୍, ପରଦୁଃଖ-କାତର ଏବଂ ପ୍ରଜାମାନଙ୍କର ହିତକାଂକ୍ଷୀ ଅଟ । ୧୭ । ତୁମେ ଦୟାଳୁ, ଉତ୍ସାହୀ, ଉଚିତାନୁଚିତବିବେଚକ ଏବଂ ଦୃଢ଼ପ୍ରତିଜ୍ଞ ବୋଲି ପୃଥିବୀରେ ସମସ୍ତ ପ୍ରାଣୀ ତୁମ୍ଭର ଯଶୋଗାନ କରୁଛନ୍ତି ।୧୮। ଦମ, ଶମ, କ୍ଷମା, ଧର୍ମ, ଧୈର୍ଯ୍ୟ, ସତ୍ତ୍ୱ, ପରାକ୍ରମ ଏବଂ ଅପକାରୀ ପ୍ରତି ଦଣ୍ଡବିଧାନ କରିବା ରଜାଙ୍କର ଗୁଣ ଅଟେ । ୧୯ । ଆପଣଙ୍କର ଏହିସବୁ ସଦ୍‌ଗୁଣ ତଥା ଆପଣଙ୍କର ଶ୍ରେଷ୍ଠ କୁଳ ଜାଣିକିି ମୁଁ ତାରାର ନିଷେଧସତ୍ତ୍ୱେ ସୁଗ୍ରୀବ ସହିତ ଯୁଦ୍ଧ କରିବାକୁ ଆସିଥିଲି ।୨୦। ସୁତରାଂ ଅନ୍ୟ ସହିତ ଯୁଦ୍ଧ କରୁଥିବାବେଳେ ଅସାବଧାନ ଅବସ୍ଥାରେ ଆପଣ ମୋତେ କେବେ ମାରିବେ ନାହିଁ, ଏ କଥା ଆପଣଙ୍କୁ କେବେ ନ ଦେଖିଥିଲେ ମଧ୍ୟ ମୁଁ ଭଲକରି

ସ ତ୍ୱାଂ ବିନିହତାତ୍ମାନଂ ଧର୍ମଧ୍ୱଜମଧାର୍ମିକମ୍ ।
ଜାନେ ପାପସମାଚାରଂ ତୃଣୈଃ କୂପମିବାବୃତମ୍ । ୨୨ ।
ସତାଂ ବେଷଧରଂ ପାପଂ ପ୍ରଚ୍ଛନ୍ନମିବ ପାବକମ୍ ।
ନାହଂ ତ୍ୱାମଭିଜାନାମି ଧର୍ମଚ୍ଛଦ୍ମାଭିସଂବୃତମ୍ । ୨୩ ।
ବିଷୟେ ବା ପୁରେ ବା ତେ ଯଦା ପାପଂ କରୋମ୍ୟହମ୍ ।
ନ ଚ ତ୍ୱାମବଜାନେଽହଂ କସ୍ମାତ୍ତ୍ୱଂ ହଂସ୍ୟକିଲ୍ବିଷମ୍ । ୨୪ ।
ଫଲମୂଲାଶନଂ ନିତ୍ୟଂ ବାନରଂ ବନଗୋଚରମ୍ ।
ମାମିହାପ୍ରତିଯୁଧ୍ୟନ୍ତମନ୍ୟେନ ଚ ସମାଗତମ୍ । ୨୫ ।
ତ୍ୱଂ ନରାଧିପତେଃ ପୁତ୍ରଃ ପ୍ରତୀତଃ ପ୍ରିୟଦର୍ଶନଃ ।
ଲିଙ୍ଗମପ୍ୟସ୍ତି ତେ ରାଜନ୍ ଦୃଶ୍ୟତେ ଧର୍ମସଂହିତମ୍ । ୨୬ ।
କଃ କ୍ଷତ୍ରିୟକୁଲେ ଜାତଃ ଶ୍ରୁତବାନ୍ନଷ୍ଟସଂଶୟଃ ।
ଧର୍ମଲିଙ୍ଗପ୍ରତିଚ୍ଛନ୍ନଃ କ୍ରୂରଂ କର୍ମ ସମାଚରେତ୍ । ୨୭ ।
ତ୍ୱଂ ରାଘବକୁଲେ ଜାତୋ ଧର୍ମବାନିତି ବିଶ୍ରୁତଃ ।
ଅଭବ୍ୟୋ ଭବ୍ୟରୂପେଣ କିମର୍ଥଂ ପରିଧାବସେ । ୨୮ ।

---

ବୁଝିଥିଲି । ୨୧ । ବର୍ତ୍ତମାନ ମୁଁ ତୁମକୁ ଆତ୍ମାନଷ୍ଟକାରୀ, ଧର୍ମଚିହ୍ନଧାରୀ, ଅଧାର୍ମିକ ବୋଲି ବୁଝୁଛି । ତୁମେ ତୃଣଦ୍ୱାରା ଆବୃତ ହୋଇ ରହିଥିବା କୂପପରି ଅଟ । ୨୨ । ତୁମେ ସାଧୁବେଶଧାରୀ ପାପୀ ଏବଂ ଲୁକ୍କାୟିତ ଅଗ୍ନିପରି ଅଟ । ଧର୍ମର ଅବଜ୍ଞା ଘୋଡ଼ାଇ ହୋଇ ରହିଥିବାରୁ ମୁଁ ତୁମକୁ ଜାଣିପାରି ନ ଥିଲି । ୨୩ । ମୁଁ ତୁମ ଦେଶରେ ବା ନଗରରେ କୌଣସି ଅନ୍ୟାୟ କରି ନାହିଁ ବା ତୁମକୁ ଅବଜ୍ଞା କରି ନାହିଁ । ଅତଏବ ମୋପରି ନିର୍ଦ୍ଦୋଷୀକୁ ତୁମେ କାହିଁକି ମାରିଲ ? । ୨୪ । ମୁଁ ବାନର ଅଟେ, ବନରେ ରହେଁ ଏବଂ ସର୍ବଦା ଫଳମୂଳ ଖାଏଁ । ମୁଁ ତୁମ ସହିତ ଯୁଦ୍ଧ କରୁ ନ ଥିଲି, ଅନ୍ୟ ଜଣକ ସହିତ ଯୁଦ୍ଧ କରୁଥିଲି (ତେବେ ତୁମେ ମୋତେ କାହିଁକି ମାରିଲ ? ) । ୨୫ । ତୁମେ ରାଜାର ପୁତ୍ର, ବିଖ୍ୟାତ ଏବଂ ପ୍ରିୟଦର୍ଶନ ଅଟ । ତୁମଠାରେ ଧର୍ମର ଚିହ୍ନ ମଧ୍ୟ ବିଦ୍ୟମାନ ଥିବାର ଦେଖାଯାଉଛି । ୨୬ । କ୍ଷତ୍ରିୟକୁଳରେ ଜାତ, ଶାସ୍ତ୍ରବେତ୍ତା, ସନ୍ଦେହରହିତ ତଥା ଧର୍ମଚିହ୍ନଧାରୀ କେଉଁ ବ୍ୟକ୍ତି ଏପରି କ୍ରୂରକର୍ମ ସମ୍ପାଦନ କରିପାରେ ? । ୨୭ । ତୁମେ ରଘୁବଂଶରେ ଉତ୍ପନ୍ନ ହୋଇଛ ଏବଂ ଧର୍ମାତ୍ମା ନାମରେ ପ୍ରସିଦ୍ଧ । ତୁମେ କ୍ରୂର ଅଟ, ମାତ୍ର ଏପରି ସୌମ୍ୟରୂପ ଧାରଣ କରି କାହିଁକି ଏପରି ବୁଲୁଛ ? । ୨୮ । ସାମ, ଦାନ, କ୍ଷମା,

ସାମ ଦାନଂ କ୍ଷମା ଧର୍ମଃ ସତ୍ୟଂ ଧୃତିପରାକ୍ରମୌ ।
ପାର୍ଥିବାନାଂ ଗୁଣା ରାଜନ୍ ଦଣ୍ଡଶ୍ଚାପ୍ୟପକାରିଷୁ । ୨୯ ।
ବୟଂ ବନଚରା ରାମ ମୃଗା ମୂଳଫଳାଶିନଃ ।
ଏଷା ପ୍ରକୃତିରସ୍ମାକଂ ପୁରୁଷସ୍ତ୍ୱଂ ନରେଶ୍ୱର । ୩୦ ।
ଭୂମିର୍ହିରଣ୍ୟଂ ରୂପ୍ୟଂ ଚ ନିଗ୍ରହେ କାରଣାନି ଚ ।
ତତ୍ର କସ୍ତେ ବନେ ଲୋଭୋ ମଦୀୟେଷୁ ଫଲେଷୁ ବା । ୩୧ ।
ନୟଶ୍ଚ ବିନୟଶ୍ଚୋଭୌ ନିଗ୍ରହାନୁଗ୍ରହାବପି ।
ରାଜବୃତ୍ତିରସଂକୀର୍ଣ୍ଣା ନ ନୃପାଃ କାମବୃତ୍ତୟଃ । ୩୨ ।
ତ୍ୱଂ ତୁ କାମପ୍ରଧାନଶ୍ଚ କୋପନଶ୍ଚାନବସ୍ଥିତଃ ।
ରାଜବୃତ୍ତେଷୁ ସଂକୀର୍ଣ୍ଣଃ ଶରାସନପରାୟଣଃ । ୩୩ ।
ନ ତେଽସ୍ତ୍ୟପଚିତିର୍ଧର୍ମେ ନାର୍ଥେ ବୁଦ୍ଧିରବସ୍ଥିତା ।
ଇନ୍ଦ୍ରିୟୈଃ କାମବୃତ୍ତଃ ସନ୍ କୃଷ୍ୟସେ ମନୁଜେଶ୍ୱର । ୩୪ ।
ହତ୍ୱା ବାଣେନ କାକୁତ୍ସ୍ଥ ମାମିହାନପରାଧିନମ୍ ।
କିଂ ବକ୍ଷ୍ୟସି ସତାଂ ମଧ୍ୟେ କର୍ମ କୃତ୍ୱା ଜୁଗୁପ୍ସିତମ୍ । ୩୫ ।

---

ଧର୍ମ, ସତ୍ୟ, ଧୈର୍ଯ୍ୟ, ପରାକ୍ରମ ଏବଂ ଅପକାରୀର ଦଣ୍ଡବିଧାନ କରିବା ରାଜାର ଗୁଣ ଅଟେ । ୨୯ । ରାମଚନ୍ଦ୍ର ! ଆମେମାନେ ବନବାସୀ ପଶୁ, ଫଳ ମୂଳ ଆଦ ଖାଉଁ ; ଏହାହିଁ ଆମମାନଙ୍କର ସ୍ୱଭାବ । ମାତ୍ର ହେ ନରେଶ୍ୱର ! ତୁମେ ପୁରୁଷ ଅଟ । ୩୦ ଭୂମି, ସ୍ୱର୍ଣ୍ଣ ଏବଂ ରୌପ୍ୟଲାଭହିଁ କାହାରିକୁ ମାରିବାର କାରଣ ଅଟେ । ମୋ ଅଧୀନସ୍ଥ ଏ ବନରେ ଏଥିରୁ କେଉଁଟି ଅଛି ଯେ ଆପଣଙ୍କର ଲୋଭ ହେଲା ? ମୋର ଏସବୁ ଫଳପ୍ରତି କଣ ତୁମ୍ଭର ଲୋଭ ? ।୩୧। ନୀତି ଏବଂ ନମ୍ରତା, ନିଗ୍ରହ ଏବଂ ଅନୁଗ୍ରହ ଏସବୁର ଉପଯୋଗ କରିବା ଉଦାର ରାଜଧର୍ମ ଅଟେ । ରାଜାମାନେ ଯଥେଚ୍ଛାଚାରୀ ହୁଅନ୍ତି ନାହିଁ । ୩୨ । ମାତ୍ର ତୁମେ କାମବୃତ୍ତି, କୋପନସ୍ୱଭାବ ଏବଂ ଅନବସ୍ଥିତ ଅଟ । ରାଜୋଚିତ ବ୍ୟବହାରରେ ତୁମେ ସଂକୀର୍ଣ୍ଣ ଅଟ । ତୁମେ କେବଳ ଧନୁ-ଶରର ବ୍ୟବହାର କରିବାରେ ତତ୍ପର । ୩୩ । ଧର୍ମରେ ତୁମ୍ଭର ଶ୍ରଦ୍ଧା ନାହିଁ ଏବଂ ଅର୍ଥପ୍ରତି ମଧ୍ୟ ତୁମ୍ଭର ଧ୍ୟାନ ନାହିଁ । ହେ ରାଜନ୍ ! ତୁମେ କେବଳ ଇନ୍ଦ୍ରିୟର ବଶବର୍ତ୍ତୀ ହୋଇ ଯଥେଚ୍ଛାଭାବରେ କାର୍ଯ୍ୟ କରୁଛ । ୩୪ । ହେ କାକୁତ୍ସ୍ଥ ! ନିରପରାଧ ମୋତେ ତୁମେ ବାଣରେ ମାରି ଏ ଗର୍ହିତ କାର୍ଯ୍ୟକରି ସାଧୁ ସଜ୍ଜନ ଲୋକଙ୍କ

ରାଜହା ବ୍ରହ୍ମହା ଗୋଘ୍ନଶ୍ଚୋରଃ ପ୍ରାଣିବଧେ ରତଃ ।
ନାସ୍ତିକଃ ପରିବେତ୍ତା ଚ ସର୍ବେ ନିରୟଗାମିନଃ ।୩୬ ।
ସୂଚକଶ୍ଚ କଦର୍ଯଶ୍ଚ ମିତ୍ରଘ୍ନୋ ଗୁରୁତଳ୍ପଗଃ ।
ଲୋକଂ ପାପାତ୍ମନାମେତେ ଗଚ୍ଛନ୍ତେ ନାତ୍ର ସଂଶୟଃ । ୩୭।
ଅଧାର୍ଯଂ ଚର୍ମ ମେ ସଦ୍ଭି ରୋମାଣ୍ୟସ୍ଥି ଚ ବର୍ଜିତମ୍ ।
ଅଭକ୍ଷ୍ୟାଣି ଚ ମାଂସାନି ତ୍ୱଦ୍‌ବିଧୈର୍ଧର୍ମଚାରିଭିଃ । ୩୮ ।
ପଞ୍ଚ ପଞ୍ଚନଖା ଭକ୍ଷ୍ୟା ବ୍ରହ୍ମକ୍ଷତ୍ରେଣ ରାଘବ ।
ଶଲ୍ୟକଃ ଶ୍ୱାବିଧୋ ଗୋଧା ଶଶଃ କୂର୍ମଶ୍ଚ ପଞ୍ଚମଃ । ୩୯ ।
ଚର୍ମ ଚାସ୍ଥି ଚ ମେ ରାମ ନ ସ୍ପୃଶନ୍ତି ମନୀଷିଣଃ ।
ଅଭକ୍ଷ୍ୟାଣି ଚ ମାଂସାନି ସୋଽହଂ ପଞ୍ଚନଖୋ ହତଃ । ୪୦ ।
ତାରୟା ବାକ୍ୟମୁକ୍ତୋଽହଂ ସତ୍ୟଂ ସର୍ବଜ୍ଞୟା ହିତମ୍ ।
ତଦତିକ୍ରମ୍ୟ ମୋହେନ କାଲସ୍ୟ ବଶମାଗତଃ । ୪୧ ।
ତ୍ୱୟା ନାଥେନ କାକୁତ୍ସ୍ଥ ନ ସନାଥା ବସୁନ୍ଧରା ।
ପ୍ରମଦା ଶୀଲସଂପନ୍ନା ପତ୍ୟେବ ଚ ବିଧର୍ମଣା । ୪୨ ।

---

ସମ୍ମୁଖରେ କ'ଣ କହିବ ? ।୩୫। ରାଜା ଓ ବ୍ରାହ୍ମଣଘାତି ଏବଂ ଗୋହତ୍ୟାକାରୀ, ଚୋର, ପ୍ରାଣିବଧନିରତ, ନାସ୍ତିକ ଏବଂ ପରିବେତ୍ତା (ବଡ଼ ଭାଇ ବିବାହ ନ କରିବା ପୂର୍ବରୁ ଯେ ବିବାହ କରେ) ଏମାନେ ସମସ୍ତେ ନରକଗାମୀ ହୁଅନ୍ତି । ୩୬ । ଚୁଗୁଲିଆ, ଲୋଭୀ, ମିତ୍ରଘାତି ଏବଂ ଗୁରୁସ୍ତ୍ରୀଗାମୀ ଏମାନେ ପାପୀମାନଙ୍କ ଲୋକକୁ ଯାଆନ୍ତି; ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ୩୭ । ଆପଣଙ୍କ ଭଳି ଧର୍ମାଚରଣକାରୀ ବ୍ୟକ୍ତିମାନେ ମୋର ଚର୍ମ ମଧ୍ୟ ଧାରଣ କରନ୍ତି ନାହିଁ । ମୋର ବାଳ ଓ ଅସ୍ଥି ସେମାନଙ୍କର ଅସ୍ପୃଶ୍ୟ ଅଟେ ଏବଂ ମୋର ମାଂସ ସେମାନଙ୍କର ଅଭକ୍ଷ୍ୟ ଅଟେ ।୩୮। ଶଲ୍ୟକ(ଝିଙ୍କ),ଶ୍ୱାବିଧ, ଗୋଧା, ଶଶ ଏବଂ କୂର୍ମ ଏହି ପାଞ୍ଚଟି ପଞ୍ଚନଖଧାରୀ ପ୍ରାଣୀଙ୍କୁ ବ୍ରାହ୍ମଣ ଏବଂ କ୍ଷତ୍ରିୟମାନେ ଭକ୍ଷଣ କରନ୍ତି । ୩୯ । ମୋର ଚର୍ମ, ରୋମ ଏବଂ ମୋର ଅସ୍ଥି ସଜ୍ଜନମାନଙ୍କର ଅସ୍ପୃଶ୍ୟ ବିବେଚିତ ହୁଏ ଏବଂ ମୋର ମାଂସ ମଧ୍ୟ ଅଭକ୍ଷ୍ୟ ଅଟେ । ଅଥଚ ଆପଣ ମୋତେ ଏ ପଞ୍ଚନଖୀ ପ୍ରାଣୀକୁ ବଧକଲ । ୪୦। ବାସ୍ତବିକ ସର୍ବଜ୍ଞା ତାରା ମୋତେ ହିତଉପଦେଶ ଦେଇଥିଲା । ମୁଁ ମୋହବଶରୁ ତାହା ନ ମାନି କାଳବଶ ହେଲି । ୪୧ । ହେ କାକୁତ୍ସ୍ଥ ! ବିଧର୍ମୀ ପତିକୁ ପାଇ ଶୀଳବତୀ ସ୍ତ୍ରୀ ଯେପରି ସନାଥ ହୁଏ ନାହିଁ, ସେହିପରି ତୁମକୁ ସ୍ୱାମୀରୂପେ ପାଇ ପୃଥିବୀ ସନାଥା ହୋଇ ନାହିଁ । ୪୨ । ଠକ, ପରର ଅପକାରୀ, ନୀଚ ଏବଂ ଛଳର

ଶଠୋ ନୈଷ୍କୃତିକଃ କ୍ଷୁଦ୍ରୋ ମିଥ୍ୟାପ୍ରଶ୍ରିତମାନସଃ ।
କଥଂ ଦଶରଥେନ ତ୍ୱଂ ଜାତଃ ପାପୋ ମହାତ୍ମନା । ୪୩ ।
ଛିନ୍ନଚାରିତ୍ର୍ୟକକ୍ଷେଣ ସତାଂ ଧର୍ମାତିବର୍ତ୍ତିନା ।
ତ୍ୟକ୍ତଧର୍ମାଙ୍କୁଶେନାହଂ ନିହତୋ ରାମହସ୍ତିନା । ୪୪ ।
ଅଶୁଭଂ ଚାପ୍ୟଯୁକ୍ତଂ ଚ ସତାଂ ଚୈବ ବିଗର୍ହିତମ୍ ।
ବକ୍ଷ୍ୟସେ ଚେଦୃଶଂ କୃତ୍ୱା ସଦ୍ଭିଃ ସହ ସମାଗତଃ । ୪୫।
ଉଦାସୀନେଷୁ ଯୋଽସ୍ମାସୁ ବିକ୍ରମୋଽୟଂ ପ୍ରକାଶିତଃ ।
ଅପକାରିଷୁ ତେ ରାମ ନୈବଂ ପଶ୍ୟାମି ବିକ୍ରମମ୍ । ୪୬।
ଦୃଶ୍ୟମାନସ୍ତୁ ଯୁଧ୍ୟେଥା ମୟା ଯୁଧି ନୃପାତ୍ମଜ ।
ଅଦ୍ୟ ବୈବସ୍ୱତଂ ଦେବଂ ପଶ୍ୟେସ୍ତ୍ୱଂ ନିହତୋ ମୟା ।୪୭।
ତ୍ୱୟାଽଦୃଶ୍ୟେନ ତୁ ରଣେ ନିହତୋଽହଂ ଦୁରାସଦଃ ।
ପ୍ରସୁପ୍ତଃ ପନ୍ନଗେନେବ ନରଃ ପାନବଶଂ ଗତଃ । ୪୮ ।
ସୁଗ୍ରୀବପ୍ରିୟକାମେନ ଯଦହଂ ନିହତସ୍ତ୍ୱୟା ।
ମାମେବ ଯଦି ପୂର୍ବଂ ତ୍ୱମେତଦର୍ଥମଚୋଦୟଃ ।
ମୈଥିଲୀମହମେକାହ୍ନା ତବ ଚାନୀତବାନ୍ ଭବେଃ । ୪୯ ।

---

ମନ ଉପରେ ବଶହୀନ ତୁମ ସଦୃଶ ପାପୀ ପୁତ୍ର ମହାତ୍ମା ଦଶରଥ କିପରି ଜନ୍ମ କଲେ ? ।୪୩। ଚରିତ୍ରର ମର୍ଯ୍ୟାଦା ଲଙ୍ଘନକାରୀ, ସଜ୍ଜନମାନଙ୍କର ଧର୍ମ ଉଲ୍ଲଙ୍ଘନକାରୀ, ଧର୍ମାଙ୍କୁଶତ୍ୟାଗୀ, ରାମନାମଧାରୀ ହସ୍ତିଦ୍ୱାରା ମୁଁ ନିହତ ହୋଇଅଛି ।୪୪। ଅମଙ୍ଗଳ, ଅନୁଚିତ ଏବଂ ସଜ୍ଜନନିନ୍ଦିତ ଏ କାର୍ଯ୍ୟ କରି ସାଧୁମାନଙ୍କ ସହିତ ମିଳିତ ହେଲେ ତୁମେ କଅଣ କହିବ ?।୪୫। ମୋଭଳି ଉଦାସୀନ ବ୍ୟକ୍ତିପ୍ରତି ତୁମେ ନିଜର ଯେ ବିକ୍ରମ ଦେଖାଇଲ, ତୁମର ଏପରି ବିକ୍ରମତ କାହିଁ ଅପକାରୀପ୍ରତି ପ୍ରକାଶ କରିବାର ମୁଁ ଦେଖୁନାହିଁ ?।୪୬। ରାଜପୁତ୍ର ! ଯୁଦ୍ଧରେ ସମ୍ମୁଖରେ ଆସି ତୁମେ ଯଦି ମୋ ସହିତ ଯୁଦ୍ଧ କରିଥାନ୍ତ, ତାହାହେଲେ ତୁମେ ମୋଦ୍ୱାରା ନିହତ ହୋଇ ଯମଦେବତାଙ୍କୁ ଦର୍ଶନ କରିଥାନ୍ତ ।୪୭। ମୁଁ ଅଜେୟ ଅଟେ । ତୁମେ ଲୁଚିରହି ମୋତେ ଯୁଦ୍ଧରେ ମାରିଅଛ, ଯେପରି ସୁପ୍ତଲୋକ ସର୍ପଦ୍ୱାରା ଦଷ୍ଟ ହୋଇ ମୃତ ହୁଏ ।୪୮। ସୁଗ୍ରୀବର ପ୍ରିୟ କରିବା ନିମନ୍ତେ ତୁମେ ଯେ ମୋତେ ମାରିଲ, ତୁମେ ଯଦି ନିଜର ସେ ଅଭିପ୍ରାୟ ମୋତେ ପୂର୍ବରୁ କହିଥାନ୍ତ, ତାହାହେଲେ ଏକାଦିନକେ ମୁଁ ଜାନକୀଙ୍କୁ ଆଣିଦେଇଥାନ୍ତି ।୪୯।

ରାକ୍ଷସଂ ଚ ଦୁରାତ୍ମାନং ତବ ଭାର୍ଯାପହାରିଣମ୍ ।
କଣ୍ଠେ ବଦ୍ଧ୍ୱା ପ୍ରଦଦ୍ୟାଂ ତେଽନିହତଂ ରାବଣଂ ରଣେ । ୫୦ ।
ନ୍ୟସ୍ତାଂ ସାଗରତୋୟେ ବା ପାତାଳେ ବାପି ମୈଥିଲୀମ୍ ।
ଆନୟେୟଂ ତବାଦେଶାଚ୍ଛ୍ୱେତାମଶ୍ୱତରୀମିବ । ୫୧ ।
ଯୁକ୍ତଂ ଯତ୍ ପ୍ରାପ୍ନୁୟାଦ୍ରାଜ୍ୟଂ ସୁଗ୍ରୀବଃ ସ୍ୱର୍ଗତେ ମୟି ।
ଅଯୁକ୍ତଂ ଯଦଧର୍ମେଣ ତ୍ୱୟାହଂ ନିହତୋ ରଣେ । ୫୨ ।
କାମମେବଂବିଧୋ ଲୋକଃ କାଲେନ ବିନିଯୁଜ୍ୟତେ ।
କ୍ଷମଂ ଚେଦ୍ଭବତା ପ୍ରାପ୍ତମୁତ୍ତରଂ ସାଧୁ ଚିନ୍ତ୍ୟତାମ୍ । ୫୩ ।

ଇତ୍ୟେବମୁକ୍ତ୍ୱା ପରିଶୁଷ୍କବକ୍ତ୍ରଃ
ଶରାଭିଘାତାଦ୍ୱ୍ୟଥିତୋ ମହାତ୍ମା ।
ସମୀକ୍ଷ୍ୟ ରାମଂ ରବିସଂନିକାଶମ୍
ତୂଷ୍ଣୀଂ ବଭୌ ବାନରରାଜସୂନୁଃ । ୫୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ରାମାଧିକ୍ଷେପୋ
ନାମ ସପ୍ତଦଶଃ ସର୍ଗଃ ।

---

ଥାଆନ୍ତି । ୪୯ । ତୁମର ପତ୍ନୀହରଣକାରୀ ଦୁରାତ୍ମା ରାକ୍ଷସ ରାବଣର ଗଳା ବାନ୍ଧି ଆଣି ମୁଁ ତାକୁ ଜୀବନ୍ତ ଅବସ୍ଥାରେ ତୁମ ନିକଟରେ ଉପସ୍ଥିତ କରିଦେଇଥାଆନ୍ତି । । ୫୦ । ଯେପରି ଶ୍ୱେତାଶ୍ୱତରୀ (ଶ୍ରୁତି) ଅଣାଯାଇଥିଲା, ସେହିପରି ସମୁଦ୍ର ଜଳମଧ୍ୟରେ ଥାଆନ୍ତୁ ବା ପାତାଳରେ ଥାଆନ୍ତୁ, ମୁଁ ସୀତାଙ୍କୁ ନିଶ୍ଚୟ ଆଣିଦେଇଥାଆନ୍ତି । ୫୧ । ମୁଁ ସ୍ୱର୍ଗଗମନ କରିବାପରେ ସୁଗ୍ରୀବ ଏ ରାଜ୍ୟ ପାଇବ, ଏହା ଉଚିତ ଅଟେ । ମାତ୍ର ଅଧର୍ମରେ ତୁମେ ଯେ ମୋତେ ମାରିଲ ଏହା ଅନୁଚିତ ହେଲା । ୫୨ । ମୋସଦୃଶ ବ୍ୟକ୍ତି ଯଥାକାଳରେ କାଳଦ୍ୱାରା ନିଶ୍ଚୟ ଅପସାରିତ ହୁଅନ୍ତି । ମାତ୍ର ତୁମେ ଯେ ଅଧର୍ମରେ ମୋତେ ମାରିଲ ତାହାର କିଛି ଉପଯୁକ୍ତ ଉତ୍ତର ଥିଲେ ଚିନ୍ତାକର" । ୫୩ । ଏହିପରି କହି ସୂର୍ଯ୍ୟସମାନ ତେଜସ୍ୱୀ ରାମଙ୍କୁ ଦେଖି ବାଳୀ ଚୁପ ହୋଇଗଲା । ତାହାର ମୁହଁ ଶୁଖି ଯାଇଥିଲା ଏବଂ ଶରର ଆଘାତହେତୁରୁ ସେ ବ୍ୟଥିତ ହେଉଥିଲା । ୫୪ ।

# ଅଷ୍ଟାଦଶଃ ସର୍ଗଃ

## ବାଳିବଧସମର୍ଥନମ୍

ଇତ୍ୟୁକ୍ତଃ ପ୍ରଶ୍ରିତଂ ବାକ୍ୟଂ ଧର୍ମାର୍ଥସହିତଂ ହିତମ୍ ।
ପରୁଷଂ ବାଳିନା ରାମୋ ନିହତେନ ବିଚେତସା । ୧ ।
ତଂ ନିଷ୍ପ୍ରଭମିବାଦିତ୍ୟଂ ମୁକ୍ତତୋୟମିବାମ୍ବୁଦମ୍ ।
ଉକ୍ତବାକ୍ୟଂ ହରିଶ୍ରେଷ୍ଠମୁପଶାନ୍ତମିବାନଳମ୍ । ୨ ।
ଧର୍ମାର୍ଥଗୁଣସଂପନ୍ନଂ ହରୀଶ୍ୱରମନୁତ୍ତମମ୍ ।
ଅଧିକ୍ଷିପ୍ତସ୍ତଦା ରାମଃ ପଶ୍ଚାଦ୍ ବାଳିନମବ୍ରବୀତ୍ । ୩ ।
ଧର୍ମମର୍ଥଂ ଚ କାମଂ ଚ ସମୟଂ ଚାପି ଲୌକିକମ୍ ।
ଅବିଜ୍ଞାୟ କଥଂ ବାଲ୍ୟାନ୍ମାମିହାଦ୍ୟ ବିଗର୍ହସେ । ୪ ।
ଅପୃଷ୍ଟ୍ୱା ବୁଦ୍ଧିସଂପନ୍ନାନ୍ ବୃଦ୍ଧାନାଚାର୍ଯସଂମତାନ୍ ।
ସୌମ୍ୟ ବାନରଚାପଲ୍ୟାତ୍ତ୍ୱଂ ମାଂ ବକ୍ତୁମିହେଚ୍ଛସି । ୫ ।
ଇକ୍ଷ୍ୱାକୂଣାମିୟଂ ଭୂମିଃ ସଶୈଳବନକାନନା ।
ମୃଗପକ୍ଷିମନୁଷ୍ୟାଣାଂ ନିଗ୍ରହାନୁଗ୍ରହେଷ୍ୱପି । ୬ ।

---

## ୧୮ଶ ସର୍ଗ

(ବାଳିବଧସମର୍ଥନ)

ଆହତ ଏବଂ ଅଚେତନ ବାଳୀ ରାମଚନ୍ଦ୍ରଙ୍କୁ ଏହି ପ୍ରକାର କଠୋର ଧର୍ମାର୍ଥ-ଯୁକ୍ତ, ହିତକାରୀ ଏବଂ ବିନୀତ ବଚନ କହିଲା । ୧ । ପ୍ରଭାହୀନ ସୂର୍ଯ୍ୟସଦୃଶ ଜଳହୀନ ମେଘସଦୃଶ, ନିର୍ବାପିତ ଅଗ୍ନିସଦୃଶ ଶ୍ରେଷ୍ଠ ବାନରର ଧର୍ମାର୍ଥଯୁକ୍ତ ବଚନରେ ତିରସ୍କୃତ ହୋଇ ରାମଚନ୍ଦ୍ର ତାକୁ କହିଲେ ।୨-୩। "ଧର୍ମ, ଅର୍ଥ, କାମ ଏବଂ ଲୌକିକ ଆଚାର ନ ଜାଣି କେବଳ ପିଲାମି ହେତୁରୁ ମୋତେ ତୁମେ କାହିଁକି ଭର୍ତ୍ସନା କରୁଛ ? ୪ । ବୁଦ୍ଧିମାନ୍ ଆଚାର୍ଯ୍ୟସମ୍ମତ ବୃଦ୍ଧମାନଙ୍କୁ ନ ପଚାରି, ତୁମେ ବାନରସୁଲଭ ଚପଳତାହେତୁରୁ ମୋତେ ଏ ଉପଦେଶ ଦେବାକୁ ବର୍ତ୍ତମାନ ଇଚ୍ଛା କରୁଛ । ୫ । ବନ ଏବଂ ପର୍ବତସମନ୍ୱିତ ଏ ସମସ୍ତ ପୃଥିବୀ ଇକ୍ଷ୍ୱାକୁମାନଙ୍କର ରାଜ୍ୟ ଅଟେ । ଅତଏବ ପଶୁ, ପକ୍ଷୀ ତଥା ମନୁଷ୍ୟମାନଙ୍କ ପ୍ରତି ଅନୁଗ୍ରହ ବା ନିଗ୍ରହ କରିବାର ସେମାନଙ୍କର ଅଧିକାର ଅଛି । ୬ । ଧର୍ମାତ୍ମା ସତ୍ୟବାଦୀ ଏବଂ ସରଳ

ତାଂ ପାଳୟତ ଧର୍ମାତ୍ମା ଭରତଃ ସତ୍ୟବାନୃଜୁଃ ।
ଧର୍ମକାମାର୍ଥତତ୍ତ୍ୱଜ୍ଞୋ ନିଗ୍ରହାନୁଗ୍ରହେ ରତଃ । ୭ ।
ନୟଶ୍ଚ ବିନୟଶ୍ଚୋଭୌ ଯସ୍ମିନ୍ ସତ୍ୟଂ ଚ ସୁସ୍ଥିତମ୍ ।
ବିକ୍ରମଶ୍ଚ ଯଥାଦୃଷ୍ଟଃ ସ ରାଜା ଦେଶକାଲବିତ୍ । ୮ ।
ତସ୍ୟ ଧର୍ମକୃତାଦେଶା ବୟମନ୍ୟେ ଚ ପାର୍ଥିବାଃ ।
ଚରାମୋ ବସୁଧାଂ କୃତ୍ସ୍ନାଂ ଧର୍ମସନ୍ତାନମିଚ୍ଛବଃ । ୯ ।
ଯସ୍ମିନ୍ନୃପତିଶାର୍ଦ୍ଦୂଲେ ଭରତେ ଧର୍ମବତ୍ସଲେ ।
ପାଳୟତ୍ୟଖିଳାଂ ପୃଥ୍ୱୀଂ କଶ୍ଚରେଦ୍ଧର୍ମବିପ୍ରିୟମ୍ । ୧୦ ।
ତେ ବୟଂ ମାର୍ଗବିଭ୍ରଷ୍ଟଂ ସ୍ୱଧର୍ମେ ପରମେ ସ୍ଥିତାଃ ।
ଭରତାଜ୍ଞାଂ ପୁରସ୍କୃତ୍ୟ ନିଗୃହ୍ଣୀମୋ ଯଥାବିଧି । ୧୧ ।
ତ୍ୱଂ ତୁ ସଂକ୍ଲିଷ୍ଟଧର୍ମଶ୍ଚ କର୍ମଣା ଚ ବିଗର୍ହିତଃ ।
କାମତନ୍ତ୍ରପ୍ରଧାନଶ୍ଚ ନ ସ୍ଥିତୋ ରାଜବର୍ତ୍ମନି । ୧୨ ।
ଜ୍ୟେଷ୍ଠୋ ଭ୍ରାତା ପିତା ବାପି ଯଶ୍ଚ ବିଦ୍ୟାଂ ପ୍ରଯଚ୍ଛତି ।
ତ୍ରୟସ୍ତେ ପିତରୋ ଜ୍ଞେୟା ଧର୍ମେ ଚ ପଥି ବର୍ତ୍ତିନଃ । ୧୩ ।
ଯବୀୟାନାତ୍ମନଃ ପୁତ୍ରଃ ଶିଷ୍ୟଶ୍ଚାପି ଗୁଣୋଦିତଃ ।
ପୁତ୍ରବତ୍ତେ ତ୍ରୟଶ୍ଚିନ୍ତ୍ୟା ଧର୍ମଶ୍ଚୈବାତ୍ର କାରଣମ୍ । ୧୪ ।

---

ଭରତ ସେ ସମସ୍ତଙ୍କ ପାଳନ କରୁଅଛନ୍ତି । ଧର୍ମ, କାମ ଏବଂ ଅର୍ଥର ତତ୍ତ୍ୱଜ୍ଞ ସେ ଅନୁଗ୍ରହ ଏବଂ ଶାସ୍ତି ମଧ୍ୟ ବିଧାନ କରୁଅଛନ୍ତି । ୭ । ନୟ, ବିନୟ, ସତ୍ୟ ତାହାଠାରେ ସୁପ୍ରତିଷ୍ଠିତ ଏବଂ ତାହାଠାରେ ବିକ୍ରମ ମଧ୍ୟ ଦେଖାଯାଏ; ସୁତରାଂ ସେହି (ଭରତ) ଦେଶକାଳବିତ୍ ରାଜା ଅଟନ୍ତି । ୮ । ମୁଁ ଏବଂ ଅନ୍ୟ ରାଜାମାନେ ଧର୍ମାନୁସାରେ ତାଙ୍କଦ୍ୱାରା ଆଦିଷ୍ଟ ହୋଇ ଧର୍ମବିସ୍ତାର ଉଦ୍ଦେଶ୍ୟରେ ଏ ପୃଥିବୀରେ ବିଚରଣ କରୁଅଛୁଁ । ୯ । ନୃପଶ୍ରେଷ୍ଠ ଧର୍ମବତ୍ସଳ ଭରତ ସମଗ୍ର ପୃଥିବୀ ପାଳନ କରୁଥିବା ସମୟରେ କିଏ ଧର୍ମବିରୁଦ୍ଧ କାର୍ଯ୍ୟ କରିପାରେ ? । ୧୦ । ଆମେ ନିଜେ ଧର୍ମରେ ରହି ଭରତ ଆଜ୍ଞାନୁସାରେ ବିଧିମୁତାବକ ଧର୍ମମାର୍ଗଚ୍ୟୁତ ବ୍ୟକ୍ତିର ବିଚାର କରିବୁଁ । ୧୧ । ତୁମେ ଧର୍ମର ବିରୁଦ୍ଧ କାର୍ଯ୍ୟ କରିଅଛ । ତୁମର କାର୍ଯ୍ୟ ନିନ୍ଦନୀୟ ଅଟେ । ତୁମେ କାମପ୍ରଧାନ ହୋଇ ରାଜୋଚିତ ମାର୍ଗରେ ଚଳୁ ନାହିଁ ।୧୨। ଜ୍ୟେଷ୍ଠ ଭ୍ରାତା, ପିତା ଏବଂ ବିଦ୍ୟାଦାତା ଏ ତିନିହେଁ ଧର୍ମପଥରେ ଚଳୁଥିବା ବ୍ୟକ୍ତି-ପକ୍ଷରେ ପିତାସଦୃଶ ଅଟନ୍ତି । ୧୩ । ସ୍ତେଷ୍ଠ ଭାଇ, ପୁତ୍ର ଏବଂ ଗୁଣବାନ୍ ଶିଷ୍ୟ ଏ ତିନିହେଁ ପୁତ୍ରସଦୃଶ ଅଟନ୍ତି; ଧର୍ମ ଅନୁସାରେ ଏହା ମଧ୍ୟ ବୁଝିବାକୁ

ସୂକ୍ଷ୍ମଃ ପରମଦୁର୍ଜ୍ଞେୟଃ ସତାଂ ଧର୍ମଃ ପ୍ଲବଙ୍ଗମ ।
ହୃଦିସ୍ଥଃ ସର୍ବଭୂତାନାମାତ୍ମା ବେଦ ଶୁଭାଶୁଭମ୍ ।୧୫।
ଚପଲଶ୍ଚପଲୈଃ ସାର୍ଦ୍ଧଂ ବାନରୈରକୃତାତ୍ମଭିଃ ।
ଜାତ୍ୟନ୍ଧ ଇବ ଜାତ୍ୟନ୍ଧୈର୍ମନ୍ତ୍ରୟନ୍ ପ୍ରେକ୍ଷସେ ନୁ କିମ୍ ।୧୬।
ଅହଂ ତୁ ବ୍ୟକ୍ତତାମସ୍ୟ ବଚନସ୍ୟ ବ୍ରବୀମି ତେ ।
ନ ହି ମାଂ କେବଲଂ ରୋଷାତ୍ତ୍ୱଂ ବିଗର୍ହିତୁମର୍ହସି ।୧୭।
ତଦେତତ୍କାରଣଂ ପଶ୍ୟ ଯଦର୍ଥଂ ତ୍ୱଂ ମୟା ହତଃ ।
ଭ୍ରାତୁର୍ବର୍ତ୍ତସି ଭାର୍ଯାୟାଂ ତ୍ୟକ୍ତ୍ୱା ଧର୍ମଂ ସନାତନମ୍ ।୧୮।
ଅସ୍ୟ ତ୍ୱଂ ଧରମାଣସ୍ୟ ସୁଗ୍ରୀବସ୍ୟ ମହାତ୍ମନଃ ।
ରୁମାୟାଂ ବର୍ତ୍ତସେ କାମାତ୍ ସ୍ନୁଷାୟାଂ ପାପକର୍ମକୃତ୍ ।୧୯।
ତଦ୍‌ବ୍ୟତୀତସ୍ୟ ତେ ଧର୍ମାତ୍କାମବୃତ୍ତସ୍ୟ ବାନର ।
ଭ୍ରାତୃଭାର୍ଯାଭିମର୍ଶେଽସ୍ମିନ୍ ଦଣ୍ଡୋଽୟଂ ପ୍ରତିପାଦିତଃ ।୨୦।
ନ ହି ଲୋକବିରୁଦ୍ଧସ୍ୟ ଲୋକବୃତ୍ତାଦପେୟୁଷଃ ।
ଦଣ୍ଡାଦନ୍ୟତ୍ର ପଶ୍ୟାମି ନିଗ୍ରହଂ ହରିଯୂଥପ ।୨୧।

---

ହେବ ।୧୪। ହେ ବାନର ! ସାଧୁମାନଙ୍କର ଧର୍ମ ସୂକ୍ଷ୍ମ ଅଟେ, ସୁତରାଂ ତାହା ଦୁର୍ଜ୍ଞେୟ ଅଟେ; ମାତ୍ର ସକଳ ପ୍ରାଣୀଙ୍କର ହୃଦୟରେ ଅଧିଷ୍ଠିତ ଆତ୍ମା, କଅଣ ଶୁଭ ଏବଂ କଅଣ ଅଶୁଭ ତାହା ବୁଝିପାରେ ।୧୫। ଜନ୍ମାନ୍ଧ ବ୍ୟକ୍ତି ଯେପରି ଅନ୍ୟ ଜନ୍ମାନ୍ଧ ସହିତ ପରାମର୍ଶ କରି କିଛି ଜାଣିପାରେ ନାହିଁ, ସେହିପରି ଚପଳ ବାନର ତୁମେ ଅନ୍ୟାନ୍ୟ ଚପଳମତି ବାନରମାନଙ୍କ ସହିତ ପରାମର୍ଶ କରି (ଧର୍ମର ବ୍ୟାପାର) କଅଣ ବୁଝିବ ? ।୧୬। ମୁଁ ଏ କଥା ତୁମକୁ ପରିଷ୍କାର କରି କହିଦେଉଛି, କେବଳ କ୍ରୋଧର ବଶବର୍ତ୍ତୀ ହୋଇ ତୁମେ ମୋତେ ନିନ୍ଦା କରିବା ଉଚିତ ନୁହେଁ ।୧୭। ସନାତନ ଧର୍ମକୁ ତ୍ୟାଗକରି ତୁମେ ସାନ ଭାଇର ସ୍ତ୍ରୀ ସହିତ ସହବାସ କରୁଅଛ । ସେହି କାରଣରୁ ମୁଁ ତୁମକୁ ମାରିଅଛି ।୧୮। ମହାତ୍ମା ସୁଗ୍ରୀବ ବଞ୍ଚି ଥାଉଁ ଥାଉଁ ତୁମେ କାମପରବଶ ହୋଇ ତାହାର ସ୍ତ୍ରୀ ନିଜର ପୁତ୍ରବଧୂ ରୁମା ସହିତ ପାପକର୍ମ ଆଚରଣ କରୁଅଛ ।୧୯। ତୁମେ ଧର୍ମ ଲଙ୍ଘନ କରି କାମପ୍ରବୃତ୍ତ ହୋଇ ଭାଇର ସ୍ତ୍ରୀ ସହିତ ବ୍ୟଭିଚାର କରୁଥିବାରୁ ତୁମକୁ ଏ ଦଣ୍ଡ ଦିଆଗଲା ।୨୦। ହେ ବାନରଦଳପତି ! ଏ ଲୋକବିରୁଦ୍ଧ ଏବଂ ଲୋକାଚାରବିଗର୍ହିତ ଆଚରଣ ଲାଗି ଏ ଦଣ୍ଡ ଛଡ଼ା ଅନ୍ୟ ଶାସ୍ତି ମୁଁ ଦେଖିପାରୁ ନାହିଁ ।୨୧। ମୁଁ କ୍ଷତ୍ରିୟ-

ନ ଚ ତେ ମର୍ଷୟେ ପାପଂ କ୍ଷତ୍ରିୟୋଽହଂ କୁଲୋଦ୍ଭବଃ ।
ଔରସୀଂ ଭଗିନୀଂ ବାପି ଭାର୍ଯାଂ ବାପ୍ୟନୁଜସ୍ୟ ଯଃ । ୨୨ ।
ପ୍ରଚରେତ ନରଃ କାମାତ୍ତସ୍ୟ ଦଣ୍ଡୋ ବଧଃ ସ୍ମୃତଃ ।
ଭରତସ୍ତୁ ମହୀପାଲୋ ବୟଂ ତ୍ୱାଦେଶବର୍ତ୍ତିନଃ । ୨୩ ।
ତ୍ୱଂ ଚ ଧର୍ମାଦତିକ୍ରାନ୍ତଃ କଥଂ ଶକ୍ୟମୁପେକ୍ଷିତୁମ୍ ।
ଗୁରୁଧର୍ମବ୍ୟତିକ୍ରାନ୍ତଂ ପ୍ରାଜ୍ଞୋ ଧର୍ମେଣ ପାଲୟନ୍ । ୨୪ ।
ଭରତଃ କାମଯୁକ୍ତାନାଂ ନିଗ୍ରହେ ପର୍ଯବସ୍ଥିତଃ ।
ବୟଂ ତୁ ଭରତାଦେଶାବଧିଂ କୃତ୍ୱା ହରୀଶ୍ୱର ।
ତ୍ୱଦ୍‌ବିଧାନ୍ ଭିନ୍ନମର୍ଯାଦାନ୍ନିଗ୍ରହୀତୁଂ ବ୍ୟବସ୍ଥିତାଃ ।୨୫ ।
ସୁଗ୍ରୀବେଣ ଚ ମେ ସଖ୍ୟଂ ଲକ୍ଷ୍ମଣେନ ଯଥାତଥା ।
ଦାରରାଜ୍ୟନିମିତ୍ତଂ ଚ ନିଃଶ୍ରେୟସକରଃ ସ ମେ । ୨୬ ।
ପ୍ରତିଜ୍ଞା ଚ ମୟା ଦତ୍ତା ତଦା ବାନରସନ୍ନିଧୌ ।
ପ୍ରତିଜ୍ଞା ଚ କଥଂ ଶକ୍ୟା ମଦ୍‌ବିଧେନାନବେକ୍ଷିତୁମ୍ । ୨୭ ।
ତଦେଭିଃ କାରଣୈଃ ସର୍ବୈର୍ମହଦ୍ଭିର୍ଧର୍ମସଂଶ୍ରିତୈଃ ।
ଶାସନଂ ତବ ଯଦ୍ୟୁକ୍ତଂ ତଦ୍ଭବାନନୁମନ୍ୟତାମ୍ । ୨୮ ।

---

କୁଳରେ ଜାତ ହୋଇଛି, ମୁଁ ତୁମ୍ଭର ଏ ପାପାଚରଣକୁ କ୍ଷମା କରି ନ ପାରେଁ । ନିଜର ସହୋଦରୀ ଭଗିନୀ ବା ସାନ ଭାଇର ସ୍ତ୍ରୀ—ଏମାନଙ୍କ ସହିତ ଯେ କାମ ବ୍ୟବହାର କରେ ତାହାର ଦଣ୍ଡ ପ୍ରାଣବଧ ଅଟେ । ଭରତ ରାଜା ଅଟନ୍ତି । ଆମେମାନେ ତାଙ୍କର ଆଜ୍ଞାପାଳନକାରୀ ଅଟୁଁ । ୨୨-୨୩ । ତୁମେ ଧର୍ମର ମର୍ଯ୍ୟାଦା ଲଙ୍ଘନ କରିଛ । ତୁମକୁ କିପରି କ୍ଷମା କରାଯାଇ ପାରେ ? ପ୍ରଧାନ ଧର୍ମଲଙ୍ଘନକାରୀର ଦଣ୍ଡବିଧାନ କରି ଭରତ ଧର୍ମ ଅନୁଯାୟୀ ପ୍ରଜାପାଳନ କରୁଅଛନ୍ତି ଏବଂ ଯଥେଚ୍ଛାଚାରୀ-ମାନଙ୍କୁ ଶାସ୍ତି ପ୍ରଦାନ କରୁଅଛନ୍ତି । ଆମେମାନେ ତାଙ୍କ ଆଜ୍ଞାନୁସାରେ ତୁମପରି ଧର୍ମଦ୍ରୋହୀମାନଙ୍କୁ ଦଣ୍ଡ ଦେବାପାଇଁ ନିଯୁକ୍ତ ହୋଇଅଛୁଁ ।୨୪-୨୫ । ଲକ୍ଷ୍ମଣ ସହିତ ମୋର ଯେପରି ମିତ୍ରତା, ସୁଗ୍ରୀବଙ୍କ ସହିତ ଠିକ୍ ସେହି ପ୍ରକାର ମିତ୍ରତା ହୋଇଅଛି । ସ୍ତ୍ରୀ ଏବଂ ରାଜ୍ୟପ୍ରାପ୍ତି ନିମନ୍ତେ ମୋର ସହାୟ କରିବା ପାଇଁ ସେ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି । ୨୬ । ମୁଁ ମଧ୍ୟ ସେ ବାନରଙ୍କ ନିକଟରେ ପ୍ରତିଜ୍ଞା ପ୍ରଦାନ କରିଅଛି । ମୋପରି ବ୍ୟକ୍ତି ପ୍ରତିଜ୍ଞାର କିପରି ଉପେକ୍ଷା କରିପାରେ । ୨୭ । ଧର୍ମବିହିତ ଏହି ସବୁ କାରଣହେତୁରୁ ତୁମକୁ ଯେପ୍ରକାର ଶାସ୍ତିବିଧାନ କରିବା ଉଚିତ ଥିଲା, ତାହାହିଁ ମୁଁ କରିଅଛି । ଏହା ଶାସ୍ତ୍ରାନୁମୋଦିତ ଅଟେ, ସୁତରାଂ ତୁମେ ଏହା ମାନିନିଅ । ୨୮ ।

ସର୍ବଥା ଧର୍ମ ଇତ୍ୟେବ ଦ୍ରଷ୍ଟବ୍ୟସ୍ତତ୍ର ନିଗ୍ରହଃ ।
ବୟସ୍ୟସ୍ୟୋପକର୍ତ୍ତବ୍ୟଂ ଧର୍ମମେବାନୁପଶ୍ୟତା ।
ଗୃହୀତୌ ଧର୍ମକୁଶଳୈସ୍ତଥା ତଚ୍ଚରିତଂ ମୟା । ୨୯ ।
ଶକ୍ୟଂ ତ୍ୱୟାପି ତତ୍କାର୍ଯ୍ୟଂ ଧର୍ମମେବାନୁବର୍ତ୍ତତା ।
ଶ୍ରୂୟତେ ମନୁନା ଗୀତୌ ଶ୍ଲୋକୌ ଚାରିତ୍ରବତ୍ସଳୌ । ୩୦।
ରାଜଭିର୍ଧୃତଦଣ୍ଡାସ୍ତୁ କୃତ୍ୱା ପାପାନି ମାନବାଃ ।
ନିର୍ମଳାଃ ସ୍ୱର୍ଗମାୟାନ୍ତି ସନ୍ତଃ ସୁକୃତିନୋ ଯଥା । ୩୧ ।
ଶାସନାଦ୍ ବାପି ମୋକ୍ଷାଦ୍ ବା ସ୍ତେନଃ ପାପାତ୍ ପ୍ରମୁଚ୍ୟତେ ।
ରାଜା ତ୍ୱଶାସନ୍ ପାପସ୍ୟ ତଦବାପ୍ନୋତି କିଲ୍ବିଷମ୍ । ୩୨।
ଆର୍ଯ୍ୟେଣ ମମ ମାନ୍ଧାତ୍ରା ବ୍ୟସନଂ ଘୋରମୀପ୍ସିତମ୍ ।
ଶ୍ରମଣେନ କୃତେ ପାପେ ଯଥା ପାପଂ କୃତଂ ତ୍ୱୟା । ୩୩ ।
ଅନ୍ୟୈରପି କୃତଂ ପାପଂ ପ୍ରମତ୍ତୈର୍ବସୁଧାଧିପୈଃ ।
ପ୍ରାୟଶ୍ଚିତ୍ତଂ ଚ କୁର୍ବନ୍ତି ତେନ ତଚ୍ଛାମ୍ୟତେ ରଜଃ ।୩୪ ।
ତଦଲଂ ପରିତାପେନ ଧର୍ମତଃ ପରିକଳ୍ପିତଃ ।
ବଧୋ ବାନରଶାର୍ଦ୍ଦୂଳ ନ ବୟଂ ସ୍ୱବଶେ ସ୍ଥିତାଃ । ୩୫।

---

ମୁଁ ତୁମକୁ ଯେ ଦଣ୍ଡ ଦେଇଅଛି ତାହା କେବଳ ଧର୍ମଦୃଷ୍ଟିରୁ ଦେଖିବା ଉଚିତ । ମିତ୍ରରୁ ଉପକାର ସାଧନ କରିବା ମଧ୍ୟ ଧର୍ମ ଅଟେ ।୨୯। ଧର୍ମ ପାଳନ କରିବା ପାଇଁ ତୁମକୁ ମଧ୍ୟ ଏହା ହିଁ କରିବାକୁ ପଡ଼ିଥାନ୍ତା । ଏହି ଚରିତ୍ରସମ୍ବନ୍ଧରେ ମନୁ ମଧ୍ୟ ଦୁଇଟି ଶ୍ଲୋକ ଗାନ କରିଥିବା (ଲେଖିଥିବା)ର ଶୁଣାଯାଏ ।୩୦। ମନୁଷ୍ୟ ପାପାଚରଣ କରି ରାଜବିହିତ ଦଣ୍ଡ ଭୋଗକରିବାଦ୍ୱାରା ନିର୍ମଳ ହୋଇଯାଏ ଏବଂ ସୁକୃତିବାନ୍ ସାଧୁ ଲୋକଙ୍କପରି ସ୍ୱର୍ଗକୁ ଯାଏ । ୩୧ । ଚୋର ଦଣ୍ଡ ପାଇବାଦ୍ୱାରା ବା ମୁକ୍ତି ପାଇବାଦ୍ୱାରା ପାପରୁ ମୁକ୍ତ ହୁଏ । ରାଜା ଯଦି ପାପର ଦଣ୍ଡବିଧାନ ନ କରେ, ତାହାହେଲେ ସେହି ପାପରେ ଦୂଷିତ ହୁଏ । ୩୨ । ତୁମେ ଯେପରି ପାପ କରିଛ ସେହି ପ୍ରକାର ପାପ କରିଥିବାରୁ ମୋର ପୂର୍ବପୁରୁଷ ମାନ୍ଧାତା ଜଣେ ସନ୍ନ୍ୟାସୀକୁ ଶାସ୍ତ୍ରବିହିତ କଠୋର ଦଣ୍ଡଦେଇଥିଲେ । ୩୩ । ଅନ୍ୟାନ୍ୟ ପ୍ରମତ୍ତ ରାଜାମାନେ ମଧ୍ୟ ପାପ କରିଛନ୍ତି । ମାତ୍ର ସେମାନେ ମଧ୍ୟ ପ୍ରାୟଶ୍ଚିତ୍ତ କରି ସେ ପାପର ଶାନ୍ତି କରିଛନ୍ତି । ୩୪ । ଅତଏବ ହେ ବାନରଶ୍ରେଷ୍ଠ ! ପଶ୍ଚାତ୍ତାପ କର ନାହିଁ । ତୁମ୍ଭର ବଧ ଶାସ୍ତ୍ରାନୁମୋଦିତ ଅଟେ । ଆମେମାନେ ନିଜର ଅଧୀନ ନୋହୁଁ (ଅର୍ଥାତ୍ ଧର୍ମାନୁମୋଦିତଭାବରେ ଶାସ୍ତିବିଧାନ କରିବାକୁ ଆମେମାନେ

ଶୃଣୁ ଚାପ୍ୟପରଂ ଭୂୟଃ କାରଣଂ ହରିପୁଙ୍ଗବ ।
ତଚ୍ଛ୍ରୁତ୍ୱା ହି ମହଦ୍ବୀର ନ ମନ୍ୟୁଂ କର୍ତ୍ତୁମର୍ହସି । ୩୬ ।
ନ ମେ ତତ୍ର ମନସ୍ତାପୋ ନ ମନ୍ୟୁର୍ହରିପୁଙ୍ଗବ ।
ବାଗୁରାଭିଶ୍ଚ ପାଶୈଶ୍ଚ କୂଟୈଶ୍ଚ ବିବିଧୈର୍ନରାଃ । ୩୭ ।
ପ୍ରତିଚ୍ଛନ୍ନାଶ୍ଚ ଦୃଶ୍ୟାଶ୍ଚ ଗୃହ୍ଣନ୍ତି ସୁବହୂନ୍ମୃଗାନ୍ ।
ପ୍ରଧାବିତାନ୍ ବା ବିତ୍ରସ୍ତାନ୍ ବିସ୍ରବ୍ଧାନତିବିଷ୍ଠିତାନ୍ । ୩୮ ।
ପ୍ରମତ୍ତାନପ୍ରମତ୍ତାନ୍ ବା ନରା ମାଂସାଶିନୋ ଭୃଶମ୍ ।
ବିଧ୍ୟନ୍ତି ବିମୁଖାଂଶ୍ଚାପି ନ ଚ ଦୋଷୋଽତ୍ର ବିଦ୍ୟତେ । ୩୯ ।
ଯାନ୍ତି ରାଜର୍ଷୟଶ୍ଚାତ୍ର ମୃଗୟାଂ ଧର୍ମକୋବିଦାଃ ।
ତସ୍ମାତ୍ତ୍ୱଂ ନିହତୋ ଯୁଦ୍ଧେ ମୟା ବାଣେନ ବାନର ।
ଅଯୁଧ୍ୟନ୍ ପ୍ରତିଯୁଧ୍ୟନ୍ ବା ଯସ୍ମାଚ୍ଛାଖାମୃଗୋ ହ୍ୟସି । ୪୦ ।
ଦୁର୍ଲଭସ୍ୟ ଚ ଧର୍ମସ୍ୟ ଜୀବିତସ୍ୟ ଶୁଭସ୍ୟ ଚ ।
ରାଜାନୋ ବାନରଶ୍ରେଷ୍ଠ ପ୍ରଦାତାରୋ ନ ସଂଶୟଃ । ୪୧ ।
ତାନ୍ନ ହିଂସ୍ୟାନ୍ନ ଚାକ୍ରୋଶେନ୍ନାକ୍ଷିପେନ୍ନାପ୍ରିୟଂ ବଦେତ୍ ।
ଦେବା ମାନୁଷରୂପେଣ ଚରନ୍ତ୍ୟେତେ ମହୀତଳେ । ୪୨ ।

---

ବାଧ) । ୩୫ । ହେ ବାନରଶ୍ରେଷ୍ଠ ! ବର୍ତ୍ତମାନ ଆଉ ଗୋଟିଏ କାରଣ ଶୁଣ । ତାହା ଶୁଣି ତୁମ୍ଭର କ୍ରୋଧ କରିବା ଉଚିତ ନୁହେ । ୩୬ । ହେ ବାନରଶ୍ରେଷ୍ଠ ! (ତୁମକୁ ଯେ ଲୁଚିରହି ମାରିଲି) ସେଥିରେ ମୋର ମନରେ କୌଣସି ପଶ୍ଚାତ୍ତାପ ହେଉ ନାହିଁ ବା ଦୁଃଖ ହେଉ ନାହିଁ । ଜାଲ, ପାଶ ପ୍ରଭୃତି ଅନେକ ଉପାୟରେ ମନୁଷ୍ୟ ଲୁଚିରହି ବା ପ୍ରକାଶ୍ୟଭାବରେ ପଶୁପକ୍ଷୀମାନଙ୍କୁ ବଧକରେ । ସେମାନେ ସେତେବେଳେ ଦୌଡ଼ି ପଳାଉଥାନ୍ତି, ଡରିଯାଇଥାନ୍ତି ବା ନିର୍ଭୟରେ ଚୁପ୍‌ଚାପ ବସି ରହିଥାନ୍ତି । ମାଂସାଶୀ ମନୁଷ୍ୟମାନେ ସେମାନଙ୍କୁ ବଧକରନ୍ତି, ଅଥଚ ସେଥିରେ ସେମାନଙ୍କର କୌଣସି ଦୋଷ ଲାଗେନାହିଁ । ୩୭-୩୯ । ଧର୍ମଜ୍ଞ ରାଜର୍ଷିମାନେ ମଧ୍ୟ ମୃଗୟା କରନ୍ତି । ସେହିହେତୁରୁ ତୁମେ ମୋ ସହିତ ଯୁଦ୍ଧ କର ବା ଅନ୍ୟ ସହିତ ଯୁଦ୍ଧ କରୁଥାଅ, ମୁଁ ତୁମକୁ ଯୁଦ୍ଧରେ ଶରଦ୍ୱାରା ବଧ କରିଅଛି । ତୁମେ ମଧ୍ୟ ଶାଖାମୃଗ (ସୁତରାଂ ମୃଗୟାର ସାମଗ୍ରୀ) ଅଟ ।୪୦। ରାଜାମାନେ ଦୁର୍ଲଭ ଧର୍ମ, ଜୀବନ ଏବଂ ମଙ୍ଗଳ ପ୍ରଦାନ କରିବାର ବ୍ୟକ୍ତି ଅଟନ୍ତି, ଏଥିରେ ସନ୍ଦେହ ନାହିଁ । ୪୧ । ରାଜାମାନଙ୍କ ପ୍ରତି ହିଂସା କରିବା, ସେମାନଙ୍କୁ ନିନ୍ଦା ବା ତିରସ୍କାର କରିବା ଉଚିତ ନୁହେ; କାରଣ ସେମାନେ ଦେବତା ଅଟନ୍ତି, ମନୁଷ୍ୟରୂପ ଧାରଣକରି ପୃଥିବୀରେ ବିଚରଣ

ତ୍ୱଂ ତୁ ଧର୍ମମବିଜ୍ଞାୟ କେବଲଂ ରୋଷମାସ୍ଥିତଃ ।
ବିଦୂଷୟସି ମାଂ ଧର୍ମେ ପିତୃପୈତାମହେ ସ୍ଥିତମ୍ ।୪୩।
ଏବମୁକ୍ତସ୍ତୁ ରାମେଣ ବାଲୀ ପ୍ରବ୍ୟଥିତୋ ଭୃଶମ୍ ।
ନ ଦୋଷଂ ରାଘବେ ଦଧ୍ୟୌ ଧର୍ମେଽଧିଗତନିଶ୍ଚୟଃ ।୪୪।
ପ୍ରତ୍ୟୁବାଚ ତତୋ ରାମଂ ପ୍ରାଞ୍ଜଳିର୍ବାନରେଶ୍ୱରଃ ।
ଯତ୍ତ୍ୱମାତ୍ଥ ନରଶ୍ରେଷ୍ଠ ତତ୍ତଥୈବ ନ ସଂଶୟଃ ।୪୫।
ପ୍ରତିବକ୍ତୁଂ ପ୍ରକୃଷ୍ଟେ ହି ନାପକୃଷ୍ଟସ୍ତୁ ଶକ୍ନୁୟାତ୍ ।
ଯଦଯୁକ୍ତଂ ମୟା ପୂର୍ବଂ ପ୍ରମାଦାଦ୍ ବାକ୍ୟମପ୍ରିୟମ୍ ।୪୬।
ତତ୍ରାପି ଖଲୁ ମେ ଦୋଷଂ କର୍ତୁଂ ନାର୍ହସି ରାଘବ ।
ତ୍ୱଂ ହି ଦୃଷ୍ଟାର୍ଥତତ୍ତ୍ୱଜ୍ଞଃ ପ୍ରଜାନାଂ ଚ ହିତେ ରତଃ ।
କାର୍ଯକାରଣସିଦ୍ଧୌ ତେ ପ୍ରସନ୍ନା ବୁଦ୍ଧିରବ୍ୟୟା ।୪୭।
ମାମପ୍ୟବଗତଂ ଧର୍ମାଦ୍ ବ୍ୟତିକ୍ରାନ୍ତପୁରସ୍କୃତମ୍ ।
ଧର୍ମସଂହିତୟା ବାଚା ଧର୍ମଜ୍ଞ ପରିପାଲୟ ।୪୮।
ବାଷ୍ପସଂରୁଦ୍ଧକଣ୍ଠସ୍ତୁ ବାଲୀ ସାର୍ତରବଃ ଶନୈଃ ।
ଉବାଚ ରାମଂ ସଂପ୍ରେକ୍ଷ୍ୟ ପଙ୍କଲଗ୍ନ ଇବ ଦ୍ୱିପଃ ।୪୯।

---

କରୁଛନ୍ତି ।୪୨। ମୁଁ ପିତୃପିତାମହଙ୍କ ଅନୁମୋଦିତ ଧର୍ମରେ ରହିଅଛି । ତୁମେ ଧର୍ମ ନ ଜାଣି କେବଳ କ୍ରୋଧର ବଶବର୍ତ୍ତୀ ହୋଇ ମୋତେ ଦୋଷ ଦେଉଛ" ।୪୩। ରାମ ଏପରି କହିବା ପରେ ବାଳୀ ବିଶେଷ ବ୍ୟଥିତ ହେଲା । ସେ ନିଶ୍ଚୟକରି ଜାଣିପାରିଲା ଯେ ଧର୍ମଅନୁସାରେ ରାମଚନ୍ଦ୍ର ଏହା କରିଛନ୍ତି, ସୁତରାଂ ରାମଚନ୍ଦ୍ରଙ୍କ ପ୍ରତି ସେ ଆଉ ଦୋଷ ଦେଲା ନାହିଁ ।୪୪। ଅନନ୍ତର ବାନରେଶ୍ୱର ହାତଯୋଡ଼ି ରାମଚନ୍ଦ୍ରଙ୍କୁ କହିଲା, "ହେ ନରଶ୍ରେଷ୍ଠ ! ଆପଣ ଯାହା କହିଲେ, ତାହା ବାସ୍ତବିକ ଠିକ ଅଟେ, ଏଥିରେ ସନ୍ଦେହ ନାହିଁ ।୪୫। ପ୍ରକୃଷ୍ଟ ଲୋକକୁ ନିକୃଷ୍ଟ ବ୍ୟକ୍ତି ପ୍ରତ୍ୟୁତ୍ତର ଦେଇପାରେ ନାହିଁ । ପ୍ରଥମେ ଅଜ୍ଞତାବଶତଃ ମୁଁ ଆପଣଙ୍କୁ ଯେଉଁ ଅପ୍ରିୟ କଥା କହିଛି, ସେଥିଲାଗି ମୋର ଦୋଷ ଧରନ୍ତୁ ନାହିଁ । ଆପଣ ଯଥାର୍ଥ ତତ୍ତ୍ୱ ଜାଣନ୍ତି ଏବଂ ପ୍ରଜାମାନଙ୍କ ହିତରେ ରତ ରହିଛନ୍ତି । କାର୍ଯ୍ୟ ଏବଂ କାରଣ ବୁଝିବାରେ ଆପଣଙ୍କର ବୁଦ୍ଧି ନିର୍ମଳ ଅଟେ ।୪୬-୪୭। ଧର୍ମଭ୍ରଷ୍ଟ ମୁଁ ଧର୍ମଜ୍ଞ ଆପଣଙ୍କ ନିକଟକୁ ଆସିଛି, ଧର୍ମସମ୍ମତ ବଚନଦ୍ୱାରା ମୋତେ ରକ୍ଷାକରନ୍ତୁ" ।୪୮। ଲୋତକରେ ବାଳୀର କଣ୍ଠ ରୁଦ୍ଧ ହୋଇଆସିଲା । ପଙ୍କରେ ଲାଗିଯାଇଥିବା ହାତୀପରି ସେ ଆସ୍ତେ ଆସ୍ତେ ଆର୍ତ୍ତସ୍ୱରରେ ରାମଙ୍କ ଆଡ଼କୁ ଚାହିଁ କହିଲା ।୪୯।

ନ ତ୍ୱାମାନମହଂ ଶୋଚେ ନ ତାରାଂ ନାପି ବାନ୍ଧବାନ୍ ।
ଯଥା ପୁତ୍ରଂ ଗୁଣଜ୍ୟେଷ୍ଠମଙ୍ଗଦଂ କନକାଙ୍ଗଦମ୍ । ୫୦ ।
ସ ମମାଦର୍ଶନାଦ୍ଦୀନୋ ବାଲ୍ୟାତ୍ପ୍ରଭୃତି ଲାଳିତଃ ।
ତଟାକ ଇବ ପୀତାମ୍ବୁରୁପଶୋଷଂ ଗମିଷ୍ୟତି । ୫୧ ।
ବାଲଶ୍ଚାକୃତବୁଦ୍ଧିଶ୍ଚ ଏକପୁତ୍ରଶ୍ଚ ମେ ପ୍ରିୟଃ ।
ତାରେୟୋ ରାମ ଭବତା ରକ୍ଷଣୀୟୋ ମହାବଲଃ । ୫୨ ।
ସୁଗ୍ରୀବେ ଚାଙ୍ଗଦେ ଚୈବ ବିଧତ୍ସ୍ୱ ମତିମୁତ୍ତମାମ୍ ।
ତ୍ୱଂ ହି ଗୋପ୍ତା ଚ ଶାସ୍ତା ଚ କାର୍ଯ୍ୟାକାର୍ଯ୍ୟବିଧୌ ସ୍ଥିତଃ । ୫୩ ।
ଯା ତେ ନରପତେ ବୃତ୍ତିର୍ଭରତେ ଲକ୍ଷ୍ମଣେ ଚ ଯା ।
ସୁଗ୍ରୀବେ ଚାଙ୍ଗଦେ ରାଜଂସ୍ତାଂ ଚନ୍ତୟିତୁମର୍ହସି । ୫୪ ।
ମଦ୍ଦୋଷକୃତଦୋଷାଂ ତାଂ ଯଥା ତାରାଂ ତପସ୍ୱିନୀମ୍ ।
ସୁଗ୍ରୀବୋ ନାବମନ୍ୟେତ ତଥାବସ୍ଥାତୁମର୍ହସି । ୫୫ ।
ତ୍ୱୟା ହ୍ୟନୁଗୃହୀତେନ ଶକ୍ୟଂ ରାଜ୍ୟମୁପାସିତୁମ୍ ।
ତ୍ୱଦ୍ୱଶେ ବର୍ତ୍ତମାନେନ ତବ ଚିତ୍ତାନୁବର୍ତ୍ତିନା । ୫୬ ।

---

ମୋ ନିଜଲାଗି, ତାରାଲାଗି ତଥା ଅନ୍ୟ ବନ୍ଧୁମାନଙ୍କ ଲାଗି ମୋର ଶୋକ ନାହିଁ, କେବଳ ସୁବର୍ଣ୍ଣ ଅଙ୍ଗଦଧାରୀ ଶ୍ରେଷ୍ଠ ଗୁଣବାନ ଅଙ୍ଗଦ ନିମନ୍ତେ ମୋର ଶୋଚନା ହେଉଛି ।୫୦। ବାଲ୍ୟକାଳରୁ ସେ ମୋଦ୍ୱାରା ଲାଳିତ ପାଳିତ ହୋଇଅଛି । ପୁଷ୍କରିଣୀର ଜଳ ପାନ କରିଦେଲେ ପୁଷ୍କରିଣୀ ଯେପରି ଶୁଖିଯାଏ, ସେହିପରି ସେ ନିଶ୍ଚୟ ଦୁଃଖରେ ଶୁଷ୍କ ହୋଇଯିବ । ୫୧ । ସେ ପିଲା ଅଟେ, ଅଳ୍ପବୁଦ୍ଧି ଅଟେ ଏବଂ ମୋର ଓ ତାରାର ଏକମାତ୍ର ପୁତ୍ର ଅଟେ । ଅତଏବ ହେ ରାମ ! ଆପଣ ସେମହାବଳବାନକୁ ରକ୍ଷା କରିବେ ।୫୨। ସୁଗ୍ରୀବ ଏବଂ ଅଙ୍ଗଦ ପ୍ରତି ଆପଣ ସାଧୁଭାବ ପୋଷଣ କରିବେ; କାରଣ ଆପଣ ରକ୍ଷକ, ଶାସକ ଏବଂ କର୍ତ୍ତବ୍ୟାକର୍ତ୍ତବ୍ୟ ଜାଣିବା ଲୋକ ଅଟନ୍ତି ।୫୩। ହେ ରାଜନ୍ ! ଭରତ ଏବଂ ଲକ୍ଷ୍ମଣଙ୍କପ୍ରତି ଆପଣଙ୍କର ଯେପ୍ରକାର ବ୍ୟବହାର, ସୁଗ୍ରୀବ ଓ ଅଙ୍ଗଦ ପ୍ରତି ଆପଣ ସେହି ବ୍ୟବହାର କରିବେ ।୫୪। ମୋ ଦୋଷରେ ଦୋଷିଣୀ ବିଚାରୀ ତାରା ପ୍ରତି ସୁଗ୍ରୀବ ଯେପରି ଅବମାନନା ନ କରେ ତାହାର ବ୍ୟବସ୍ଥା ଆପଣ କରିବେ । ୫୫ । ଆପଣଙ୍କ ବଶରେ ରହିଲେ ଏବଂ ଆପଣଙ୍କ ଇଚ୍ଛା ଅନୁସାରେ ଚଳିଲେ, ଆପଣଙ୍କ ଅନୁଗ୍ରହରୁ ସୁଗ୍ରୀବ ରାଜ୍ୟ ଚଳାଇପାରିବ । ୫୬ । ଆପଣଙ୍କ

ଶକ୍ୟଂ ତ୍ୱଙ୍କ ସ୍ୱର୍ଗମପ୍ୟର୍ଜୟିତୁଂ ବସୁଧାଂ ତ୍ୱପି ଶାସିତୁମ୍ ।
ତ୍ୱତ୍ତୋଽହଂ ବଧମାକାଙ୍‌କ୍ଷନ୍ ବାର୍ଯମାଣୋଽପି ତାରୟା । ୫୭ ।
ସୁଗ୍ରୀବେଣ ସହ ଭ୍ରାତ୍ରା ଦ୍ୱନ୍ଦ୍ୱଯୁଦ୍ଧମୁପାଗତଃ ।
ଇତ୍ୟୁକ୍ତ୍ୱା ବାନରୋ ରାମଂ ବିରରାମ ହରୀଶ୍ୱରଃ । ୫୮ ।
ସ ତମାଶ୍ୱାସୟଦ୍ରାମୋ ବାଲିନଂ ବ୍ୟକ୍ତଦର୍ଶନମ୍ ।
ସାଧୁସଂମତୟା ବାଚା ଧର୍ମତତ୍ତ୍ୱାର୍ଥଯୁକ୍ତୟା । ୫୯ ।
ନ ସନ୍ତାପସ୍ତ୍ୱୟା କାର୍ଯ ଏତଦର୍ଥଂ ପ୍ଲବଙ୍ଗମ ।
ନ ବୟଂ ଭବତା ଚିନ୍ତ୍ୟା ନାପ୍ୟାତ୍ମା ହରିସତ୍ତମ ।
ବୟଂ ଭବଦ୍‌ବିଶେଷେଣ ଧର୍ମତଃ କୃତନିଶ୍ଚୟାଃ । ୬୦ ।
ଦଣ୍ଡ୍ୟେ ଯଃ ପାତୟେଦ୍ଦଣ୍ଡଂ ଦଣ୍ଡ୍ୟୋ ଯଶ୍ଚାପି ଦଣ୍ଡ୍ୟତେ ।
କାର୍ଯକାରଣସିଦ୍ଧାର୍ଥାବୁଭୌ ତୌ ନାବସୀଦତଃ । ୬୧ ।
ତଦ୍‌ଭବାନ୍ ଦଣ୍ଡସଂଯୋଗାଦସ୍ମାଦ୍ ବିଗତକଲ୍ମଷଃ ।
ଗତଃ ସ୍ୱାଂ ପ୍ରକୃତିଂ ଧର୍ମ୍ୟାଂ ଦଣ୍ଡଦିଷ୍ଟେନ ବର୍ତ୍ମନା । ୬୨ ।
ତ୍ୟଜ ଶୋକଂ ଚ ମୋହଂ ଚ ଭୟଂ ଚ ହୃଦୟେ ସ୍ଥିତମ୍ ।
ତ୍ୱୟା ବିଧାନଂ ହର୍ଯଗ୍ର୍ୟ ନ ଶକ୍ୟମତିବର୍ତ୍ତିତୁମ୍ । ୬୩ ।

---

ଆନୁକୂଲ୍ୟରୁ ସେ ସ୍ୱର୍ଗଲାଭ କରିପାରେ ଏବଂ ବସୁଧାକୁ ଶାସନ କରିପାରେ । ତାରା ମନାକରୁଥିଲେ ମଧ୍ୟ ଆପଣଙ୍କ ହାତରେ ବଧ ଇଚ୍ଛାକରି ମୁଁ ଭାଇ ସୁଗ୍ରୀବ ସହିତ ଦ୍ୱନ୍ଦ୍ୱଯୁଦ୍ଧ କରିବାକୁ ଆସି ଉପସ୍ଥିତ ହେଲି ।” ବାନରରାଜ ରାମଙ୍କୁ ଏତିକ କହି ଚୁପ୍ ହେଲେ । ୫୭-୫୮ । ରାମଚନ୍ଦ୍ର ଧର୍ମତତ୍ତ୍ୱାର୍ଥଯୁକ୍ତ ସଜ୍ଜନସମ୍ମତ ବଚନଦ୍ୱାରା ବାଲୀକୁ ସାନ୍ତ୍ୱନା ଦେଲେ । ୫୯ । “ହେ ବାନରଶ୍ରେଷ୍ଠ ! ଆମମାନଙ୍କ ନିମନ୍ତେ ତୁମ୍ଭର ଚିନ୍ତା କରିବା ଉଚିତ ନୁହେ ଏବଂ ନିଜ ଲାଗି ମଧ୍ୟ ଚିନ୍ତା କରିବା ଆବଶ୍ୟକ ନାହିଁ । ତୁମପ୍ରତି ବିଶେଷ ସ୍ନେହହେତୁରୁ ଧର୍ମତଃ ଆମର ଯାହା କରଣୀୟ ସେ ବିଷୟରେ ଆମେ ଆଗରୁ ସ୍ଥିରକରି ସାରିଅଛୁଁ । ୬୦ । ଯେଉଁ ରାଜା ଦଣ୍ଡ୍ୟ ବ୍ୟକ୍ତି ପ୍ରତି ଦଣ୍ଡବିଧାନ କରେ ଏବଂ ଯେଉଁ ବ୍ୟକ୍ତି ଦଣ୍ଡପାଏ, କାର୍ଯ୍ୟକାରଣ ସ୍ୱରୂପ ସମ୍ପୃକ୍ତ ଏ ଦୁହେଁ ଦୁଃଖୀ ହୁଅନ୍ତି ନାହିଁ । ୬୧ । ଏହିହେତୁରୁ ଦଣ୍ଡ ପାଇବାଦ୍ୱାରା ତୁମ୍ଭର ପାପକ୍ଷୟ ହୋଇଯାଇଅଛି ଏବଂ ଦଣ୍ଡପ୍ରଦର୍ଶିତ ମାର୍ଗଦ୍ୱାରା ତୁମେ ନିଜର ଧାର୍ମିକ ଗତି ଲାଭ କରିଅଛ ।୬୨। ହୃଦୟର ଶୋକ,ମୋହ ଏବଂ ଭୟ ତ୍ୟାଗକର । ହେ ବାନରଶ୍ରେଷ୍ଠ ! ତୁମେ ବିଧିକୁ ଉଲଂଘାଇ ଦେଇପାରିବ

ଯଥା ତ୍ୱୟ୍ୟଙ୍ଗଦୋ ନିତ୍ୟଂ ବର୍ତ୍ତତେ ବାନରେଶ୍ୱର ।
ତଥା ବର୍ତ୍ତେତ ସୁଗ୍ରୀବେ ମୟ୍ୟପି ତ୍ୱୟି ନ ସଂଶୟଃ । ୭୪ ।
ସ ତସ୍ୟ ବାକ୍ୟଂ ମଧୁରଂ ମହାତ୍ମନଃ
ସମାହିତଂ ଧର୍ମପଥାନୁବର୍ତ୍ତିତମ୍ ।
ନିଶମ୍ୟ ରାମସ୍ୟ ରଣାବମର୍ଦ୍ଦିନୋ-
ବଚଃ ସୁଯୁକ୍ତଂ ନିଜଗାଦ ବାନରଃ । ୭୫ ।
ଶରାଭିତପ୍ତେନ ବିଚେତସା ମୟା
ପ୍ରଭାଷିତସ୍ତ୍ୱଂ ଯଦଜାନତା ବିଭୋ ।
ଇଦଂ ମହେନ୍ଦ୍ରୋପମଭୀମବିକ୍ରମ
ପ୍ରସାଦିତସ୍ତ୍ୱଂ କ୍ଷମ ମେ ନରେଶ୍ୱର । ୭୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ବାଲିବଧସମର୍ଥନମ୍
ନାମ ଅଷ୍ଟାଦଶଃ ସର୍ଗଃ

---

ନାହିଁ । ୭୩ । ହେ ବାନରେଶ୍ୱର ! ଅଙ୍ଗଦ ତୁମଠାରେ ଯେପରି ଥିଲା, ସୁଗ୍ରୀବ ଏବଂ ମୋନିକଟରେ ମଧ୍ୟ ସେ ସେହିପରି ରହିବ; ଏଥିରେ କୌଣସି ସନ୍ଦେହ ନାହିଁ” ।୭୪। ମହାତ୍ମା ରଣଜୟୀ ରାମଚନ୍ଦ୍ରଙ୍କ ଧର୍ମାନୁମୋଦିତ ମଧୁର ବଚନ ଶୁଣି ବାନର ବାଲୀ ଉପଯୁକ୍ତ ବଚନ କହିଲା । ୭୫ । “ଶରାହତ ଏବଂ ଅଚେତନ ଅବସ୍ଥାରେ ମୁଁ ଯେଉଁ ସବୁକଥା କହିଛି, ହେ ଇନ୍ଦ୍ରତୁଲ୍ୟ, ହେ ଭୀମବିକ୍ରମ ରାମ ! ମୋ ପ୍ରତି ପ୍ରସନ୍ନ ହୋଇ ସେଥିଲାଗି ଆପଣ ମୋତେ କ୍ଷମାକରନ୍ତୁ” । ୭୬ ।

# ଏକୋନବିଂଶଃ ସର୍ଗଃ

## ତାରାଗମନମ୍

ସ ବାନରମହାରାଜଃ ଶୟାନଃ ଶରପୀଡ଼ିତଃ ।
ପ୍ରତ୍ୟୁକ୍ତୋ ହେତୁମଦ୍‌ବାକ୍ୟୈର୍ନୋତ୍ତରଂ ପ୍ରତ୍ୟପଦ୍ୟତ । ୧ ।
ଅଶ୍ମଭିଃ ପରିଭିନ୍ନାଙ୍ଗଃ ପାଦପୈରାହତୋ ଭୃଶମ୍ ।
ରାମ ବାଣେନ ଚାକ୍ରାନ୍ତୋ ଜୀବିତାନ୍ତେ ମୁମୋହ ସଃ । ୨ ।
ତଂ ଭାର୍ଯା ବାଣମୋକ୍ଷେଣ ରାମଦତ୍ତେନ ସଂଯୁଗେ ।
ହତଂ ପ୍ଲବଗଶାର୍ଦ୍ଦୂଳଂ ତାରା ଶୁଶ୍ରାବ ବାଳିନମ୍ । ୩ ।
ସା ସପୁତ୍ରାଽପ୍ରିୟଂ ଶ୍ରୁତ୍ୱା ବଧଂ ଭର୍ତ୍ତୁଃ ସୁଦାରୁଣମ୍ ।
ନିଷ୍ପପାତ ଭୃଶଂ ତସ୍ମାଦୁଦ୍‌ବିଗ୍ନା ଗିରିକନ୍ଦରାତ୍ । ୪ ।
ଯେ ତ୍ୱଙ୍ଗଦପରୀବାରା ବାନରା ହି ମହାବଳାଃ ।
ତେ ସକାର୍ମୁକମାଲୋକ୍ୟ ରାମଂ ତ୍ରସ୍ତାଃ ପ୍ରଦୁଦ୍ରୁବୁଃ । ୫ ।
ସା ଦଦର୍ଶ ତତସ୍ତ୍ରସ୍ତାନ୍ ହରୀନାପତତୋ ଦ୍ରୁତମ୍ ।
ଯୂଥାଦେବ ପରିଭ୍ରଷ୍ଟାନ୍ମୃଗାନ୍ନିହତଯୂଥପାନ୍ । ୬ ।

---

## ୧୯ଶ ସର୍ଗ

### ( ବାଳୀନିକଟକୁ ତାରାର ଗମନ )

ଶରଦ୍ୱାରା ଆହତ ହୋଇ ବାନରରାଜ ବାଳୀ ଭୂମି ଉପରେ ଶୋଇ ରହିଥିଲା । ଯୁକ୍ତିଯୁକ୍ତ ବାକ୍ୟରେ ରାମଚନ୍ଦ୍ରଙ୍କଠାରୁ ଉତ୍ତର ପାଇ ସେ ଆଉ କୌଣସି ପ୍ରତ୍ୟୁତ୍ତର ଦେଲା ନାହିଁ । ୧ । ପଥରଦ୍ୱାରା ତାହାର ଶରୀର କ୍ଷତବିକ୍ଷତ ହୋଇଯାଇଥିଲା ଏବଂ ବୃକ୍ଷଦ୍ୱାରା ମଧ୍ୟ ସେ ବିଶେଷ ଆହତ ହୋଇଥିଲା । ରାମଚନ୍ଦ୍ରଙ୍କ ଶରଦ୍ୱାରା ବିଦ୍ଧହୋଇ ପ୍ରାଣାନ୍ତ ସମୟରେ ସେ ମୂର୍ଚ୍ଛିତ ହୋଇପଡ଼ିଲା । ୨ । ବାନରଶ୍ରେଷ୍ଠ ବାଳୀ ଯୁଦ୍ଧରେ ରାମଚନ୍ଦ୍ରଙ୍କ ବାଣନିକ୍ଷେପଦ୍ୱାରା ହତ ହୋଇଅଛି ଏହି ସମ୍ବାଦ ତାହାର ଭାର୍ଯ୍ୟା ତାରା ଶୁଣିଲା । ୩ । ସ୍ୱାମୀର ନିଷ୍ଠୁର ଏବଂ ଅପ୍ରିୟ ମୃତ୍ୟୁର ସମ୍ବାଦ ପାଇ ସେ ଉଦ୍‌ବିଗ୍ନଭାବରେ ପୁତ୍ର ସହିତ ପର୍ବତକନ୍ଦରରୁ ବାହାରି ଆସିଲା । ୪ । ଯେଉଁ ମହାବଳୀ ବାନରମାନେ ଅଙ୍ଗଦର ରକ୍ଷକ ଥିଲେ, ସେମାନେ ରାମଚନ୍ଦ୍ରଙ୍କୁ ହାତରେ ଧନୁ ଧରିଥିବାର ଦେଖି ଭୟରେ ପଳାଇଗଲେ । ୫ । ତାରା ସେମାନଙ୍କୁ ଡରି ବେଗରେ ପଳାଇ ଯାଉଥିବାର ଦେଖିଲା । ଯୂଥପତି ମରିଯିବା ପରେ ମୃଗମାନେ ଯେପରି ଯୂଥମଧ୍ୟରୁ ବାହାରି ପଳାଇଯାଆନ୍ତି, ସେମାନେ ସେହିପରି ପଳାଇ-

ତାନୁବାଚ ସମାସାଦ୍ୟ ଦୁଃଖିତାନ୍ ଦୁଃଖିତା ସତୀ ।
ରାମବିତ୍ରାସିତାନ୍ ସର୍ବାନନୁବଦ୍ଧାନିବେଷୁଭିଃ । ୭ ।
ବାନରା ରାଜସିଂହସ୍ୟ ଯସ୍ୟ ଯୂୟଂ ପୁରଃସରାଃ ।
ତଂ ବିହାୟ ସୁବିତ୍ରସ୍ତାଃ କସ୍ମାଦ୍ଦ୍ରବଥ ଦୁର୍ଗତାଃ । ୮ ।
ରାଜ୍ୟହେତୋଃ ସ ଚେଦ୍ଭ୍ରାତା ଭ୍ରାତ୍ରା କ୍ରୂରେଣ ପାତିତଃ ।
ରାମେଣ ପ୍ରସୃତୈର୍ଦୂରାନ୍ମାର୍ଗଣୈର୍ଦୂରପାତିଭିଃ । ୯ ।
କପିପତ୍ନ୍ୟା ବଚଃ ଶ୍ରୁତ୍ୱା କପୟଃ କାମରୂପିଣଃ ।
ପ୍ରାପ୍ତକାଳମବିଶ୍ଳିଷ୍ଟମୂଚୁର୍ବଚନମଙ୍ଗନାମ୍ । ୧୦ ।
ଜୀବପୁତ୍ରେ ନିବର୍ତ୍ତସ୍ୱ ପୁତ୍ରଂ ରକ୍ଷସ୍ୱ ଚାଙ୍ଗଦମ୍ ।
ଅନ୍ତକୋ ରାମରୂପେଣ ହତ୍ୱା ନୟତି ବାଳିନମ୍ । ୧୧ ।
କ୍ଷିପ୍ତାନ୍ ବୃକ୍ଷାନ୍ ସମାବିଧ୍ୟ ବିପୁଲାଶ୍ଚ ତଥା ଶିଳାଃ ।
ବାଳୀ ବଜ୍ରସମୈର୍ବାଣୈର୍ବଜ୍ରେଣେବ ନିପାତିତଃ । ୧୨ ।
ଅଭିଭୂତମିଦଂ ସର୍ବଂ ବିଦ୍ରୁତଂ ବାନରଂ ବଳମ୍ ।
ଅସ୍ମିନ୍ ପ୍ଲବଗଶାର୍ଦ୍ଦୂଳେ ହତେ ଶକ୍ରସମପ୍ରଭେ । ୧୩ ।
ରକ୍ଷ୍ୟତାଂ ନଗରୀ ଶୂରୈରଙ୍ଗଦଶ୍ଚାଭିଷିଚ୍ୟତାମ୍ ।
ପଦସ୍ଥଂ ବାଳିନଃ ପୁତ୍ରଂ ଭଜିଷ୍ୟନ୍ତି ପ୍ଲବଙ୍ଗମାଃ । ୧୪ ।

---

ଯାଉଥିଲେ । ୬ । ରାମଙ୍କ ଉପରେ ଶରବଦ୍ଧ ହେବାପରି ପଳାଇ ଯାଉଥିବା ଭୀତ ଏବଂ ଦୁଃଖିତ ବାନରମାନଙ୍କ ନିକଟକୁ ଯାଇ ଦୁଃଖିନୀ ସତୀ ତାରା ସେମାନଙ୍କୁ କହିଲା ।୭। "ହେ ବାନରଗଣ ! ଯେଉଁ ଶ୍ରେଷ୍ଠ ରାଜାର ଆଗେ ଆଗେ ତୁମେମାନେ ଚାଲୁଥିଲ ତାଙ୍କୁ ଯୁଦ୍ଧ ଉପରେ କାହିଁକି ପଳାଇ ଯାଉଛ ?। ୮ । କ୍ରୂର ଭାଇ ଯଦି ରାଜ୍ୟପାଇଁ ଦୂରଗାମୀ ବାଣସାହାଯ୍ୟରେ ରାମଙ୍କଦ୍ୱାରା ସେ ବୀରଙ୍କୁ ହତ୍ୟା କରାଇଲା, ତେବେ ସେଥିରେ ତୁମେ କାହିଁକି ଭୟ କରୁଛ ?" । ୯ । କପିପତ୍ନୀର କଥା ଶୁଣି କାମରୂପୀ ବାନରମାନେ କାଳୋଚିତ ସ୍ପଷ୍ଟ ବଚନ ତାଙ୍କୁ କହିଲେ । ୧୦ । "ହେ ଜୀବତପୁତ୍ରିକେ ! ତୁମେ ଫେରିଯାଅ ! ନିଜର ପୁତ୍ର ଅଙ୍ଗଦକୁ ରକ୍ଷାକର । ଯମରାଜ ରାମଚନ୍ଦ୍ର ରୂପ ଧାରଣ କରି ଆସି ବାଳୀକୁ ହତ୍ୟାକରି ନେଇଯାଉଅଛି । ୧୧ । (ବାଳୀଦ୍ୱାରା ନିକ୍ଷିପ୍ତ) ବୃକ୍ଷ ଏବଂ ବଡ଼ ବଡ଼ ପଥରମାନଙ୍କୁ ପ୍ରତିରୋଧ କରି ବଜ୍ରସମାନ ବାଣଦ୍ୱାରା ସେ ବାଳୀକୁ ମାରିଦେଇଅଛି । ୧୨ । ଇନ୍ଦ୍ରସଦୃଶ ତେଜଃଶାଳୀ ଆମର ବାନରରାଜ ମରିଯିବାରେ ଆମମାନଙ୍କର ଏହି ସମସ୍ତ ବାନରସେନା ପରାଜିତ ହୋଇ ପଳାଇ ଯାଉଛନ୍ତି । ୧୩ । ବୀରମାନଙ୍କଦ୍ୱାରା ନଗରୀକୁ ରକ୍ଷାକର । ଅଙ୍ଗଦକୁ ରାଜ୍ୟରେ ଅଭିଷିକ୍ତ କର । ବାନରମାନେ ପଦସ୍ଥ ଅଙ୍ଗଦଙ୍କ ଅଧୀନରେ

ଅଥବା ରୁଚିତଂ ସ୍ଥାନମିହ ତେ ରୁଚିରାନନେ ।
ଆବିଶନ୍ତି ଚ ଦୁର୍ଗାଣି କ୍ଷିପ୍ରମଦ୍ୟୈବ ବାନରାଃ । ୧୫ ।
ଅଭାର୍ଯାଃ ସହଭାର୍ଯାଶ୍ଚ ସନ୍ତ୍ୟତ୍ର ବନଗୋଚରାଃ ।
ଲୁବ୍ଧେଭ୍ୟୋ ବିପ୍ରଲବ୍ଧେଭ୍ୟସ୍ତେଭ୍ୟୋ ନଃ ସୁମହଦ୍ଭୟମ୍ । ୧୬ ।
ଅଲ୍ପାନ୍ତରଗତାନାଂ ତୁ ଶ୍ରୁତ୍ୱା ବଚନମଙ୍ଗନା ।
ଆତ୍ମନଃ ପ୍ରତିରୂପଂ ସା ବଭାଷେ ଚାରୁହାସିନୀ । ୧୭ ।
ପୁତ୍ରେଣ ମମ କିଂ କାର୍ଯଂ ରାଜ୍ୟେନାପି କିମାତ୍ମନା ।
କପିସିଂହେ ମହାଭାଗେ ତସ୍ମିନ୍ ଭର୍ତ୍ତରି ନଶ୍ୟତି । ୧୮ ।
ପାଦମୂଳଂ ଗମିଷ୍ୟାମି ତସ୍ୟୈବାହଂ ମହାତ୍ମନଃ ।
ଯୋଽସୌ ରାମପ୍ରଯୁକ୍ତେନ ଶରେଣ ବିନିପାତିତଃ । ୧୯ ।
ଏବମୁକ୍ତ୍ୱା ପ୍ରଦୁଦ୍ରାବ ରୁଦତୀ ଶୋକମୂର୍ଚ୍ଛିତା ।
ଶିରଶ୍ଚୋରଶ୍ଚ ବାହୁଭ୍ୟାଂ ଦୁଃଖେନ ସମଭିଘ୍ନତୀ । ୨୦ ।
ସା ବ୍ରଜନ୍ତୀ ଦଦର୍ଶାଥ ପତିଂ ନିପତିତଂ ଭୁବି ।
ହନ୍ତାରଂ ଦାନବେନ୍ଦ୍ରାଣାଂ ସମରେଷ୍ୱନିବର୍ତ୍ତିନାମ୍ । ୨୧ ।

---

ରହିବେ । ୧୪ । ହେ ସୁମୁଖି ! ଯଦି ଏ ସ୍ଥାନ ତୁମକୁ ପସନ୍ଦ ହେଉଛି ତେବେ ରହ, ମାତ୍ର (ସୁଗ୍ରୀବପକ୍ଷ) ବାନରମାନେ ଶୀଘ୍ର ଆମ ଦୁର୍ଗମଧ୍ୟରେ ଆଜି ପ୍ରବେଶ କରିବେ । ୧୫ । ପତ୍ନୀହୀନ ଏବଂ ସପତ୍ନୀକ ଅନେକ ବନଗୃହୀ ବାନର, ସୁଗ୍ରୀବ-ପକ୍ଷରେ ଅଛନ୍ତି । ସେମାନେ ଆମ ରାଜ୍ୟପ୍ରତି ଲୋଭ କରୁଥିଲେ; ମାତ୍ର ଆମେମାନେ ସେମାନଙ୍କୁ ସେଥିରୁ ବଞ୍ଚିତ କରି ରଖିଥିଲୁ । ସୁତରାଂ ଆଜି ସେମାନଙ୍କୁ ଆମର ବିଶେଷ ଭୟ ହେଉଛି" । ୧୬ । ତାଙ୍କର ଅଳ୍ପଦୂରକୁ ଯେଉଁ ବାନରମାନେ ଆସି-ଯାଇଥିଲେ, ସେମାନଙ୍କ କଥା ଶୁଣି ସୁହାସିନୀ ତାରା ନିଜର ଅନୁରୂପ ବଚନ କହିଲା । ୧୭। "ବାନରଶ୍ରେଷ୍ଠ ମହାରାଜ ମୋର ସ୍ୱାମୀ ମୃତ ହେବାପରେ ମୋର ପୁତ୍ରରେ, ରାଜ୍ୟରେ ବା ନିଜଠାରେ କି କାର୍ଯ୍ୟ ଅଛି ? ୧୮ । ରାମଙ୍କ ନିକ୍ଷିପ୍ତ ଶରରେ ଯେ ପ୍ରାଣ ହରାଇଛନ୍ତି ସେହି ମହାତ୍ମାଙ୍କ ଚରଣତଳକୁ ମୁଁ ଯିବା କରିବି" ।୧୯। ଏହା କହି ଦୁଃଖରେ ମୁଣ୍ଡ ଏବଂ ଛାତିକୁ ହାତରେ ପିଟିପିଟି ଶୋକପୀଡ଼ିତା ତାରା କାନ୍ଦି କାନ୍ଦି ପତିଙ୍କ ଆଡ଼କୁ ଦୌଡ଼ିଲା । ୨୦ । ସେ ଯାଉଁ ଯାଉଁ ଦାନବେନ୍ଦ୍ର-ମାନଙ୍କର ହନ୍ତା ଏବଂ ଯୁଦ୍ଧରେ ପଛଘୁଞ୍ଚା ନ ଦେବା ନିଜର ସ୍ୱାମୀଙ୍କୁ ଭୂମିରେ ପଡ଼ିଥିବାର ଦେଖିଲା । ୨୧ । ଇନ୍ଦ୍ର ଯେପରି ବଜ୍ର ନିକ୍ଷେପ କରେ ସେହିପରି ବାଳି

କ୍ଷେପ୍ତାରଂ ପର୍ବତେନ୍ଦ୍ରାଣାଂ ବଜ୍ରାଣାମିବ ବାସବମ୍ ।
ମହାବାତସମାବିଷ୍ଟଂ ମହାମେଘୌଘନିଃସ୍ୱନମ୍ । ୨୨ ।
ଶକ୍ରତୁଲ୍ୟପରାକ୍ରାନ୍ତଂ ବୃଷ୍ଟ୍ୱେବୋପରତଂ ଘନମ୍ ।
ନର୍ଦନ୍ତଂ ନର୍ଦତାଂ ଭୀମଂ ଶୂରଂ ଶୂରେଣ ପାତିତମ୍ ।
ଶାର୍ଦୂଲେନାମିଷସ୍ୟାର୍ଥେ ମୃଗରାଜମିବାହତମ୍ । ୨୩ ।
ଅର୍ଚ୍ଚିତଂ ସର୍ବଲୋକସ୍ୟ ସପତାକଂ ସବେଦିକମ୍ ।
ନାଗହେତୋଃ ସୁପର୍ଣେନ ଚୈତ୍ୟମୁନ୍ମଥିତଂ ଯଥା । ୨୪ ।
ଅବଷ୍ଟଭ୍ୟାବତିଷ୍ଠନ୍ତଂ ଦଦର୍ଶ ଧନୁରୂର୍ଜ୍ଜିତମ୍ ।
ରାମଂ ରାମାନୁଜଂ ଚୈବ ଭର୍ତ୍ତୁଶ୍ଚୈବ ତଥାନୁଜମ୍ । ୨୫ ।
ତାନତୀତ୍ୟ ସମାସାଦ୍ୟ ଭର୍ତ୍ତାରଂ ନିହତଂ ରଣେ ।
ସମୀକ୍ଷ୍ୟ ବ୍ୟଥିତା ଭୂମୌ ସଂଭ୍ରାନ୍ତା ନିପପାତ ହ । ୨୬ ।
ସୁପ୍ତ୍ୱେବ ପୁନରୁତ୍ଥାୟ ଆର୍ଯପୁତ୍ରେତି ବାଦିନୀ ।
ରୁରୋଦ ସା ପତିଂ ଦୃଷ୍ଟ୍ୱା ସଂବୀତଂ ମୃତ୍ୟୁଦାମଭିଃ । ୨୭ ।

---

ପର୍ବତମାନଙ୍କୁ ନିକ୍ଷେପ କରୁଥିଲେ । ତାହାର ବଳ ବାୟୁସଦୃଶ ଥିଲା ଏବଂ ଶବ୍ଦ ମହାମେଘ ସଦୃଶ ଥିଲା । ୨୨ । ଇନ୍ଦ୍ରସଦୃଶ ପରାକ୍ରମୀ, ଜଳବର୍ଷୀ ମେଘସଦୃଶ ଗର୍ଜନକାରୀ ବାନରଶ୍ରେଷ୍ଠ ବାଳୀ, ମାଂସଲୋଭରେ ବ୍ୟାଘ୍ରଦ୍ୱାରା ବିଶାଳକାୟ ମୃଗ ହତ ହେଲାପରି, ବୀର ରାମଚନ୍ଦ୍ରଙ୍କଦ୍ୱାରା ନିହତ ହୋଇପଡ଼ିଥିଲେ । ୨୩ । ସର୍ବ-ପୂଜିତ ଏବଂ ବେଦୀ ଓ ପତାକାଯୁକ୍ତ ଦେବାଳୟକୁ ସର୍ପଲାଭନିମନ୍ତେ ଗରୁଡ଼ ଯେପରି ଭାଙ୍ଗି ଚୂରିଦିଏ, ସେହିପରି ରାମଚନ୍ଦ୍ର ବାଳୀକୁ ମାରିଦେଇଥିଲେ । ୨୪ । ବିଶାଳ ଧନୁ ଧାରଣ କରି ବସିଥିବା ରାମଚନ୍ଦ୍ରଙ୍କୁ ତାଙ୍କର ସାନ ଭାଇଙ୍କୁ ତଥା ନିଜ ସ୍ୱାମୀର ସାନ ଭାଇକୁ ତାରା ଦେଖିଲା ।୨୫। ସେମାନଙ୍କୁ ଅତିକ୍ରମ କରି ଯୁଦ୍ଧରେ ମୃତ ନିଜ ପତି ନିକଟରେ ସେ ଯାଇ ପହଞ୍ଚିଲା ଏବଂ ତାକୁ ଦେଖି ଦୁଃଖିତ ଏବଂ ଉଦ୍‌ବିଗ୍ନ ହୋଇ ସେ ଭୂମିରେ ପଡ଼ିଗଲା । ୨୬। ଶୋଇ ପଡ଼ି ପୁଣି ହଠାତ୍ ଉଠି ଲୋକ ଯେପରି କଥା କହେ, ସେହିପରି ସେ 'ଆର୍ଯ୍ୟପୁତ୍ର' ବୋଲି ଡାକଦେଇ ମୃତ୍ୟୁପାଶରେ ବନ୍ଧା ହୋଇଥିବା ନିଜ ସ୍ୱାମୀକୁ ଦେଖି ରୋଦନ କରିବାକୁ ଲାଗିଲା । ୨୭ । କୁରରୀ ସମାନ

**ତାମବେକ୍ଷ୍ୟ ତୁ ସୁଗ୍ରୀବଃ କ୍ରୋଶନ୍ତୀଂ କୁରରୀମିବ ।**
**ବିଷାଦମଗମତ୍କଷ୍ଟଂ ଦୃଷ୍ଟ୍ୱା ଚାଙ୍ଗଦମାତରମ୍ । ୨୮ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ତାରାଗମନମ୍
ନାମ ଏକୋନବିଂଶଃ ସର୍ଗଃ

---

ରୋଦନ କରୁଥିବା ଅଙ୍ଗଦର ମାତା ତାରାର କଷ୍ଟ ଦେଖି ସୁଗ୍ରୀବ ଅତିଶୟ ଦୁଃଖିତ ହେଲ୍ । ୨୮ ।

# ବିଂଶଃ ସର୍ଗଃ

## ତାରାବିଲାପଃ

ରାମଚାପବିସୃଷ୍ଟେନ ଶରେଣାନ୍ତକରେଣ ତମ୍ ।
ଦୃଷ୍ଟ୍ୱା ବିନିହତଂ ଭୂମୌ ତାରା ତାରାଧିପାନନା । ୧ ।
ସା ସମାସାଦ୍ୟ ଭର୍ତ୍ତାରଂ ପର୍ଯ୍ୟଷ୍ୱଜତ ଭାମିନୀ ।
ଇଷୁଣାଭିହତଂ ଦୃଷ୍ଟ୍ୱା ବାଳିନଂ କୁଞ୍ଜରୋପମମ୍ । ୨ ।
ବାନରଂ ପର୍ବତେନ୍ଦ୍ରାଭଂ ଶୋକସନ୍ତପ୍ତମାନସା ।
ତାରା ତରୁମିବୋନ୍ମୂଳଂ ପର୍ଯ୍ୟଦେବୟତାତୁରା । ୩ ।
ରଣେ ଦାରୁଣ ବିକ୍ରାନ୍ତ ପ୍ରବୀର ପ୍ଲବତାଂ ବର ।
କିମିଦାନୀଂ ପୁରୋଭାଗାମଦ୍ୟ ତ୍ୱଂ ନାଭିଭାଷସେ । ୪ ।
ଉତ୍ତିଷ୍ଠ ହରିଶାର୍ଦ୍ଦୂଳ ଭଜସ୍ୱ ଶୟନୋତ୍ତମମ୍ ।
ନୈବଂବିଧାଃ ଶେରତେ ହି ଭୂମୌ ନୃପତିସତ୍ତମାଃ । ୫ ।
ଅତୀବ ଖଲୁ ତେ କାନ୍ତା ବସୁଧା ବସୁଧାଧିପ ।
ଗତାସୁରପି ତାଂ ଗାତ୍ରୈର୍ମାଂ ବିହାୟ ନିଷେବସେ । ୬ ।

---

## ୨୦ଶ ସର୍ଗ

### (ତାରାର ବିଳାପ)

ରାମଙ୍କ ଧନୁରୁ ନିକ୍ଷିପ୍ତ ମାରାତ୍ମକ ଶରଦ୍ୱାରା ନିହତ ସ୍ୱାମୀକୁ ଭୂମିଉପରେ ପଡ଼ିଥିବାର ଦେଖି ଚନ୍ଦ୍ରାନନା ତାରା ତାହା ନିକଟକୁ ଯାଇ ତାକୁ ଆଲିଙ୍ଗନ କଲା । ହାତୀ ସମାନ ଏବଂ ବଡ଼ ପର୍ବତ ସମାନ ବାଳୀକୁ ବାଣରେ ମୃତ ହୋଇଥିବାର ଦେଖି ତାରାର ମନ ଶୋକରେ ସନ୍ତପ୍ତ ହୋଇଗଲା ଏବଂ ସେ ଆତୁର ହୋଇ ଉତ୍ପାଟିତ ବୃକ୍ଷସଦୃଶ ବାଳୀକୁ ପଡ଼ିଥିବାର ଦେଖି ରୋଦନ କରିବାକୁ ଲାଗିଲା । ୧-୩ । "ହେ ଯୁଦ୍ଧରେ ପ୍ରବଳପରାକ୍ରମୀ, ବାନରଶ୍ରେଷ୍ଠ, ବୀର ! ମୁଁ ତୁମ ସମ୍ମୁଖରେ ଆସି ଉଭା ହୋଇଛି, ତୁମେ ମୋତେ ଆଜି କଥା କହୁନାହଁ କାହିଁକି ? । ୪ । ହେ ବାନରଶ୍ରେଷ୍ଠ ! ଉଠ, ଉତ୍ତମ ଶଯ୍ୟାରେ ଯାଇ ଶୟନ କର । ତୁମସଦୃଶ ରାଜାମାନେ ଏପରି ଭୂମିଉପରେ ଶୁଅନ୍ତି ନାହିଁ । ୫ । ହେ ବସୁଧାଧିପ ! ପୃଥିବୀ ତୁମର ଅତିଶୟ ପ୍ରିୟ ଅଟେ; ସେହିହେତୁରୁ ପ୍ରାଣ ଛାଡ଼ିବା ପରେ ମୋତେ ଛାଡ଼ି ସେହି ପୃଥିବୀ ଉପରେ ଶରୀର ସ୍ଥାପନ

ବ୍ୟକ୍ତମଦ୍ୟ ତ୍ୱୟା ବୀର ଧର୍ମତଃ ସଂପ୍ରବର୍ତ୍ତତା ।
କିଷ୍କିନ୍ଧେବ ପୁରୀ ରମ୍ୟା ସ୍ୱର୍ଗମାର୍ଗେ ବିନିର୍ମିତା । ୭ ।
ଯାନ୍ୟସ୍ମାଭିସ୍ତ୍ୱୟା ସାର୍ଦ୍ଧଂ ବନେଷୁ ମଧୁଗନ୍ଧିଷୁ ।
ବିହୃତାନି ତ୍ୱୟା କାଲେ ତେଷାମୁପରମଃ କୃତଃ । ୮ ।
ନିରାନନ୍ଦା ନିରାଶାହଂ ନିମଗ୍ନା ଶୋକସାଗରେ ।
ତ୍ୱୟି ପଞ୍ଚତ୍ୱମାପନ୍ନେ ମହାଯୂଥପଯୂଥପେ । ୯ ।
ହୃଦୟଂ ସୁସ୍ଥିତଂ ମହ୍ୟଂ ଦୃଷ୍ଟ୍ୱା ନିପତିତଂ ଭୁବି ।
ଯନ୍ନ ଶୋକାଭିସଂତପ୍ତଂ ସ୍ଫୁଟତେଽଦ୍ୟ ସହସ୍ରଧା । ୧୦ ।
ସୁଗ୍ରୀବସ୍ୟ ତ୍ୱୟା ଭାର୍ଯା ହୃତା ସ ଚ ବିବାସିତଃ ।
ଯତ୍ତତସ୍ୟ ତ୍ୱୟା ବ୍ୟୁଷ୍ଟିଃ ପ୍ରାପ୍ତେୟଂ ପ୍ଲବଗାଧିପ । ୧୧ ।
ନିଃଶ୍ରେୟସପରା ମୋହାତ୍ତ୍ୱୟା ଚାହଂ ବିଗର୍ହିତା ।
ଯୈଷାବ୍ରୁବଂ ହିତଂ ବାକ୍ୟଂ ବାନରେନ୍ଦ୍ର ହିତୈଷିଣୀ । ୧୨ ।
ରୂପଯୌବନଦୃପ୍ତାନାଂ ଦକ୍ଷିଣାନାଂ ଚ ମାନଦ ।
ନୂନମପ୍ସରସାମାର୍ଯ ଚିତ୍ତାନି ପ୍ରମଥିଷ୍ୟସି । ୧୩ ।
କାଲୋ ନିଃସଂଶୟୋ ନୂନଂ ଜୀବିତାନ୍ତକରସ୍ତବ ।
ବଲାଦ୍‌ଯେନାବପନ୍ନୋଽସି ସୁଗ୍ରୀବସ୍ୟାବଶୋ ବଶୀ । ୧୪ ।

---

କରିଅଛ । ୬ । ସ୍ପଷ୍ଟ ଜଣାଯାଉଛି ଯେ ତୁମେ ଧର୍ମମାର୍ଗରେ ଚାଲି ଆଜି ସ୍ୱର୍ଗମାର୍ଗରେ କିଷ୍କିନ୍ଧାସଦୃଶ ରମଣୀୟ ନଗରୀ ନିର୍ମାଣ କରିନେଇଛ । ୭ । ତୁମ ସଙ୍ଗରେ ସୁଗନ୍ଧଯୁକ୍ତ ବନରେ, ସମୟରେ ଆମେମାନେ ଯେ ବିହାର କରୁଥିଲୁଁ, ତୁମେ ସେସବୁର ସମାପ୍ତି କରିଦେଇଅଛ । ୮ । ବଡ଼ ବଡ଼ ଯୂଥପତିମାନଙ୍କର ସ୍ୱାମୀ ତୁମେ ପ୍ରାଣ ତ୍ୟାଗ କରିବାରେ ମୋର ସମସ୍ତ ଆନନ୍ଦ ନଷ୍ଟହୋଇଗଲା, ସବୁ ଆଶା ତୁଟିଗଲା ଏବଂ ଶୋକସାଗରରେ ମୁଁ ବୁଡ଼ିଗଲି ।୯। ତୁମକୁ ଭୂମି ଉପରେ ପଡ଼ିଥିବାର ଦେଖି ମଧ୍ୟ ଯେ ଆଜି ମୋର ହୃଦୟ ଶୋକରେ ସହସ୍ର ଖଣ୍ଡ ହୋଇ ଭାଙ୍ଗି ଯାଉ ନାହିଁ, ଏଥିରୁ ଜଣାଯାଉଅଛି ଯେ ମୋର ହୃଦୟ ଅତିଶୟ କଠିନ । ୧୦ । ସୁଗ୍ରୀବ ସ୍ତ୍ରୀକୁ ତୁମେ ହରଣ କଲ ଏବଂ ତାକୁ ନିର୍ବାସିତ କରିଦେଲ, ହେ ବାନରରାଜ, ତାହାର ଏ ଫଳ ଏବେ ପାଇଲ । ୧୧ । ତୁମର ମଙ୍ଗଳ ଇଚ୍ଛାରେ ହିତାକାଙ୍କ୍ଷିଣୀ ମୁଁ ଯେଉଁ କଥା କହିଥିଲି, ମୋହବଶରୁ ତୁମେ ସେଥିଲାଗି ମୋତେ ଭର୍ତ୍ସନା କରିଥିଲ । ୧୨ । ହେ ଆର୍ଯ୍ୟ ! ତୁମେ ନିଶ୍ଚୟ ରୂପଯୌବନଗର୍ବିଣୀ ଅପ୍‌ସରାମାନଙ୍କର ମନ ହରଣ କରିବ । ୧୩ । ଏ ସମୟ ନିଶ୍ଚୟ ତୁମ୍ଭର ମୃତ୍ୟୁର କାଳ ଅଟେ, କାରଣ ତାହାଦ୍ୱାରା ବଳାତ୍କାରରେ ଆକୃଷ୍ଟ ହୋଇ ତୁମେ ସଂଯମୀ ହୋଇ ମଧ୍ୟ ଅସଂଯତ ହୋଇ ସୁଗ୍ରୀବ

ଅସ୍ଥାନେ ବାଳିନଂ ହତ୍ୱା ଯୁଧ୍ୟମାନଂ ପରେଣ ଚ ।
ନ ସଂତପ୍ୟତି କାକୁତ୍ସ୍ଥଃ କୃତ୍ୱା କର୍ମ ସୁଗର୍ହିତମ୍ । ୧୫ ।
ବୈଧବ୍ୟଂ ଶୋକସଂତାପଂ କୃପଣଂ କୃପଣା ସତୀ ।
ଅଦୁଃଖୋପଚିତା ପୂର୍ବଂ ବର୍ତ୍ତୟିଷ୍ୟାମ୍ୟନାଥବତ୍ । ୧୬ ।
ଲାଳିତଶ୍ଚାଙ୍ଗଦୋ ବୀରଃ ସୁକୁମାରଃ ସୁଖୋଚିତଃ ।
ବତ୍ସ୍ୟତେ କାମବସ୍ଥାଂ ମେ ପିତୃବ୍ୟେ କ୍ରୋଧମୂର୍ଚ୍ଛିତେ ।୧୭।
କୁରୁଷ୍ୱ ପିତରଂ ପୁତ୍ର ସୁଦୃଷ୍ଟଂ ଧର୍ମବତ୍ସଲମ୍ ।
ଦୁର୍ଲଭଂ ଦର୍ଶନଂ ତସ୍ୟ ତବ ବତ୍ସ ଭବିଷ୍ୟତି । ୧୮ ।
ସମାଶ୍ୱାସୟ ପୁତ୍ରଂ ତ୍ୱଂ ସଂଦେଶଂ ସଂଦିଶସ୍ୱ ମେ ।
ମୂର୍ଦ୍ଧ୍ନି ଚୈନଂ ସମାଘ୍ରାୟ ପ୍ରବାସଂ ପ୍ରସ୍ଥିତୋ ହ୍ୟସି । ୧୯ ।
ରାମେଣ ହି ମହତ୍କର୍ମ କୃତଂ ତ୍ୱାମଭିନିଘ୍ନତା ।
ଆନୃଣ୍ୟଂ ତୁ ଗତଂ ତସ୍ୟ ସୁଗ୍ରୀବସ୍ୟ ପ୍ରତିଶ୍ରବେ । ୨୦ ।
ସକାମୋ ଭବ ସୁଗ୍ରୀବ ରୁମାଂ ତ୍ୱଂ ପ୍ରତିପତ୍ସ୍ୟସେ ।
ଭୁଙ୍କ୍ଷ୍ୱ ରାଜ୍ୟମନୁଦ୍ୱିଗ୍ନଃ ଶସ୍ତୋ ଭ୍ରାତା ରିପୁସ୍ତବ । ୨୧ ।
କିଂ ମାମେବଂ ପ୍ରଲପତୀଂ ପ୍ରିୟାଂ ତ୍ୱଂ ନାଭିଭାଷସେ ।
ଇମାଂ ପଶ୍ୟ ବରା ବହ୍ୱୀ ଭାର୍ଯ୍ୟାସ୍ତେ ବାନରେଶ୍ୱର । ୨୨ ।

---

କବଳରେ ପଡ଼ିଲ । ୧୪ । ଅନ୍ୟସହିତ ଯୁଦ୍ଧ କରୁଥିବାବେଳେ ଅସମୟରେ ବାଳୀକୁ ମାରି ଏ ନିନ୍ଦନୀୟ କର୍ମ କରି ରାମଚନ୍ଦ୍ର କଣ ଅନୁତାପ କରୁ ନାହାନ୍ତି ? ।୧୫। ମୁଁ ଦୁଃଖ କଅଣ ପୂର୍ବେ କେବେ ଜାଣି ନାହିଁ; ମାତ୍ର ବର୍ତ୍ତମାନ ମୁଁ ଦରିଦ୍ର ଅନାଥା ସଦୃଶ ଦୁଃଖପ୍ରଦ ବୈଧବ୍ୟ ଦୁଃଖ ଘୋର ଭାବରେ ସହ୍ୟ କରିବି । ୧୬ । ସୁକୁମାର ବୀର ଅଙ୍ଗଦ ଅତି ସୁଖରେ ଲାଳିତପାଳିତ ହୋଇ ଆସିଅଛି । ଆଜି ତାହାର ପିତୃବ୍ୟ ତାହା ପ୍ରତି କ୍ରୁଦ୍ଧ ହେଲେ ତାର ଅବସ୍ଥା କଅଣ ହେବ ? ।୧୭। ହେ ପୁତ୍ର ! ତୋର ଧର୍ମବତ୍ସଳ ପିତାଙ୍କୁ ଭଲକରି ଦେଖିନେ । ହେ ବତ୍ସ ! ତାଙ୍କର ଦର୍ଶନ ଏଣିକି ତୋର ଦୁର୍ଲଭ ହୋଇଯିବ । ୧୮ । ତୁମେ ତୁମ ପୁତ୍ରକୁ ଆଶ୍ୱାସନା ଦିଅ । ତାହାର ମସ୍ତକ ଆଘ୍ରାଣ କରି ତାକୁ ଆଶ୍ୱାସନା ଦିଅ ଏବଂ ମୋତେ ଯାହା ସନ୍ଦେଶ ଦେବାର ଦିଅ ; କାରଣ ତୁମେ ବର୍ତ୍ତମାନ ପ୍ରବାସକୁ ଚାଲିଯାଉଅଛ । ୧୯ । ରାମଚନ୍ଦ୍ର ତୁମକୁ ମାରି ମହତ୍‌କର୍ମ କରିଅଛନ୍ତି ଏବଂ ସୁଗ୍ରୀବଠାରେ ଯେ ପ୍ରତିଜ୍ଞା କରିଥିଲେ ସେ ଋଣ ପରିଶୋଧ କରିଦେଇଛନ୍ତି ।୨୦। ହେ ସୁଗ୍ରୀବ ! ତୁମ୍ଭର ଶତ୍ରୁ ଭାଇ ଶାସ୍ତି ପାଇଲା । ତୁମେ ବର୍ତ୍ତମାନ ସୁସ୍ଥ ହୋଇ ରାଜ୍ୟ ଭୋଗକର; ତୁମେ ରୁମାକୁ ଫେରି ପାଇବ । ତୁମ୍ଭର ମନସ୍କାମ ପୂର୍ଣ୍ଣ ହେଲା । ୨୧ । ତୁମ୍ଭର ପ୍ରିୟା ମୁଁ ଏହିପ୍ରକାରେ ବିଳାପ କରୁଛି, ତୁମେ ମୋ ସହିତ କଥା କହୁ ନାହଁ କାହିଁକି ? ହେ ବାନରେଶ୍ୱର ! ତୁମ୍ଭର

**ତସ୍ୟା ବିଲପିତଂ ଶ୍ରୁତ୍ୱା ବାନର୍ଯ୍ୟଃ ସର୍ବତଶ୍ଚ ତାଃ ।**
**ପରିଗୃହ୍ୟାଙ୍ଗଦଂ ଦୀନା ଦୁଃଖାର୍ତ୍ତାଃ ପ୍ରଚୁକ୍ରୁଶୁଃ । ୨୩ ।**
**କିମଙ୍ଗଦଂ ସାଙ୍ଗଦବୀରବାହୋ**
**ବିହାୟ ଯାତୋଽସି ଚିରଂ ପ୍ରବାସମ୍ ।**
**ନ ଯୁକ୍ତମେବଂ ଗୁଣସନ୍ନିକୃଷ୍ଟମ୍**
**ବିହାୟ ପୁତ୍ରଂ ପ୍ରିୟଚାରୁବେଷମ୍ । ୨୪ ।**
**ଯଦ୍ୟପ୍ରିୟଂ କିଂଚିଦସଂପ୍ରଧାର୍ଯ୍ୟ**
**କୃତଂ ମୟା ସ୍ୟାତ୍ତବ ଦୀର୍ଘବାହୋ ।**
**କ୍ଷମସ୍ୱ ମେ ତଦ୍ଧରିବଂଶନାଥ**
**ବ୍ରଜାମି ମୂର୍ଦ୍ଧ୍ନା ତବ ବୀରପାଦୌ । ୨୫ ।**
**ତଥା ତୁ ତାରା କରୁଣଂ ରୁଦନ୍ତୀ**
**ଭର୍ତ୍ତୁଃ ସମୀପେ ସହ ବାନରୀଭିଃ ।**
**ବ୍ୟବସ୍ୟତ ପ୍ରାୟମନିନ୍ଦ୍ୟବର୍ଣ୍ଣା**
**ଉପୋପବେଷ୍ଟୁଂ ଭୁବି ଯତ୍ର ବାଲୀ । ୨୬ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ତାରା ବିଲାପୋ ନାମ ବିଂଶଃ ସର୍ଗଃ

---

ଏ ବହୁସଂଖ୍ୟକ ସୁନ୍ଦରୀ ସ୍ତ୍ରୀଙ୍କୁ ଦେଖ" । ୨୨ । ତାରାର ବିଳାପ ଶୁଣି ଅଙ୍ଗଦକୁ ଧରି ବାନରୀମାନେ ଅତି ଦୁଃଖିତଭାବରେ ରୋଦନ କରିବାକୁ ଲାଗିଲେ । ୨୩ । "ହେ ଅଙ୍ଗଦ (କଙ୍କଣ) ଧାରି ବୀରବାହୋ ! ତୁମେ ଅଙ୍ଗଦକୁ ଛାଡ଼ି କାହିଁକି ଏପରି ଚିରପ୍ରବାସକୁ ଯାଉଅଛ ? ଗୁଣବାନ୍ ଏବଂ ସୁନ୍ଦର ପୁତ୍ରକୁ ଛାଡ଼ି ଚାଲିଯିବା ତୁମ୍ଭର ଉଚିତ ନୁହେ । ୨୪। ହେ ଦୀର୍ଘବାହୋ ! ମୋ ଦ୍ୱାରା କୃତ କୌଣସି ଅପ୍ରିୟ କାର୍ଯ୍ୟକୁ ଦେଖି ଯଦି ତୁମେ ପ୍ରବାସକୁ ଚାଲିଯାଉଥାଅ, ତେବେ ମୋତେ କ୍ଷମାକର ! ମୁଁ ତୁମ ଚରଣତଳେ ମୁଣ୍ଡିଆ ମାରୁଛି" । ୨୫ । ବାନରୀମାନଙ୍କ ସହିତ ପତିଙ୍କ ନିକଟରେ ଏହିପ୍ରକାରେ ଦୀନଭାବରେ ବିଳାପ କରି ତାରା ଭୂପତିତ ବାଳୀ ନିକଟରେ ବସି ପ୍ରାୟୋପବେଶନ କରିବାକୁ ସ୍ଥିର କଲା । ୨୬ ।

---

# ଏକବିଂଶଃ ସର୍ଗଃ

## ହନୁମଦାଶ୍ୱାସନମ୍

ତତୋ ନିପତିତାଂ ତାରାଂ ଚ୍ୟୁତାଂ ତାରାମିବାମ୍ବରାତ୍ ।
ଶନୈରାଶ୍ୱାସୟାମାସ ହନୁମାନ୍ ହରିୟୂଥପଃ । ୧ ।
ଗୁଣଦୋଷକୃତଂ ଜନ୍ତୁଃ ସ୍ୱକର୍ମଫଲହେତୁକମ୍ ।
ଅବ୍ୟଗ୍ରସ୍ତଦବାପ୍ନୋତି ସର୍ବଂ ପ୍ରେତ୍ୟ ଶୁଭାଶୁଭମ୍ । ୨ ।
ଶୋଚ୍ୟା ଶୋଚସି କଂ ଶୋଚ୍ୟଂ ଦୀନଂ ଦୀନାନୁକମ୍ପସେ ।
କସ୍ତୁ କସ୍ୟାନୁଶୋଚ୍ୟୋଽସ୍ତି ଦେହେଽସ୍ମିନ୍ ବୁଦ୍‌ବୁଦୋପମେ।।୩।
ଅଂଗଦସ୍ତୁ କୁମାରୋଽୟଂ ଦ୍ରଷ୍ଟବ୍ୟୋ ଜୀବପୁତ୍ରୟା ।
ଆୟତ୍ୟାଂ ଚ ବିଧେୟାନି ସମର୍ଥାନ୍ୟସ୍ୟ ଚିନ୍ତୟ । ୪ ।
ଜାନାସ୍ୟନିୟତାମେବଂ ଭୂତାନାମାଗତିଂ ଗତିମ୍ ।
ତସ୍ମାଚ୍ଛୁଭଂ ହି କର୍ତ୍ତବ୍ୟଂ ପଣ୍ଡିତେନୈହଲୌକିକମ୍ । ୫ ।
ଯସ୍ମିନ୍ ହରିସହସ୍ରାଣି ଶତାନି ନିୟୁତାନି ଚ ।
ବର୍ତ୍ତୟନ୍ତି କୃତାଶାନି ସୋଽୟଂ ଦିଷ୍ଟାନ୍ତ ମାଗତଃ । ୬ ।

---

## ୨୧ଶ ସର୍ଗ

( ହନୁମାନଙ୍କର ଆଶ୍ୱାସନାପ୍ରଦାନ )

ଅନନ୍ତର ଆକାଶରୁ ଖସିପଡ଼ିଥିବା ତାରାସଦୃଶ, ଭୂମି ଉପରେ ପଡ଼ିଥିବା ତାରାଙ୍କୁ ବାନରଦଳପତି ହନୁମାନ୍ ଆସ୍ତେ ଆସ୍ତେ ଆଶ୍ୱାସନା ଦେବାକୁ ଲାଗିଲେ ।୧। "ପ୍ରାଣୀ ଭଲ ଏବଂ ମନ୍ଦ କର୍ମ କରି ତାହାର ଫଳ ସୁଖ ଓ ଦୁଃଖ ଅନ୍ୟ ଲୋକକୁ ଯାଇ ମଧ୍ୟ ଭୋଗ କରେ । ୨ । ତୁମେ ତ ନିଜେ ଶୋଚନୀୟା ଅଛ, ତୁମେ ଅନ୍ୟପାଇଁ କାହିଁକି ଶୋଚନା କରୁଛ ? ତୁମେ ତ ନିଜେ ଦୁଃଖିନୀ, ଅନ୍ୟର ଦୁଃଖରେ ତୁମେ ଦୁଃଖିତ ହେଉଛ କାହିଁକି ? ଏ ଶରୀର ବୁଦ୍‌ବୁଦସଦୃଶ କ୍ଷଣସ୍ଥାୟୀ, ସୁତରାଂ କିଏ କାହାପାଇଁ ଶୋଚନା କରିବ ? । ୩ । ତୁମ୍ଭର ପୁଅ ଜୀବିତ ଅଛି । ତୁମକୁ ଏ ପୁଅ ଅଙ୍ଗଦର ଦେଖାଶୁଣା କରିବାକୁ ହେବ । ଭବିଷ୍ୟତରେ ଯଦ୍ୱାରା ଏହାର ମଙ୍ଗଳ ହେବ, ତାହାର ବିଧାନ ତୁମକୁ କରିବାକୁ ହେବ । ସେହି ବିଷୟ ବର୍ତ୍ତମାନ ତୁମେ ଚିନ୍ତା କର । ୪ । ତୁମେ ଜାଣ, ପ୍ରାଣୀମାନଙ୍କର ଜୀବନ ମରଣ ଅତ୍ୟନ୍ତ ଅନିଶ୍ଚିତ ଅଟେ । ସୁତରାଂ ଇହଲୋକରେ ସର୍ବଦା ଶୁଭ କର୍ମ କରିବା ପଣ୍ଡିତଲୋକର କର୍ତ୍ତବ୍ୟ ଅଟେ । ୫ । ଯାହାଙ୍କର ଅଧୀନରେ ଶତ, ସହସ୍ର, ନିୟୁତ ବାନର ଆଶ୍ରୟ ନେଇ ନାନା ଆଶା ପୋଷଣ କରି ରହିଥିଲେ, ଆଜି ସେ ନିଜର ପରମାୟୁର ଅବଧିକୁ ମୃତ୍ୟୁ

ଯଦର୍ଥଂ ନ୍ୟାୟଦୃଷ୍ଟାର୍ଥଃ ସାମଦାନକ୍ଷମାପରଃ ।
ଗତୋ ଧର୍ମଜିତାଂ ଭୂମିଂ ନୈନଂ ଶୋଚିତୁମର୍ହସି । ୭ ।
ସର୍ବେ ଚ ହରିଶାର୍ଦ୍ଦୂଳାଃ ପୁତ୍ରଶ୍ଚାୟଂ ତବାଙ୍ଗଦଃ ।
ହର୍ଯ୍ୟୃକ୍ଷପତିରାଜ୍ୟଂ ଚ ତ୍ୱତ୍ସନାଥମନିନ୍ଦିତେ । ୮ ।
ତାବିମୌ ଶୋକସନ୍ତପ୍ତୌ ଶନୈଃ ପ୍ରେରୟ ଭାମିନି ।
ତ୍ୱୟା ପରିଗୃହୀତୋଽୟମଙ୍ଗଦଃ ଶାସ୍ତୁ ମେଦିନୀମ୍ । ୯ ।
ସନ୍ତତିଶ୍ଚ ଯଥା ଦୃଷ୍ଟା କୃତ୍ୟଂ ଯଚ୍ଚାପି ସାମ୍ପ୍ରତମ୍ ।
ରାଜ୍ଞସ୍ତତ୍କ୍ରିୟତାଂ ସର୍ବମେଷ କାଳସ୍ୟ ନିଶ୍ଚୟଃ । ୧୦ ।
ସଂସ୍କାର୍ଯ୍ୟୋ ହରିରାଜସ୍ତୁ ଅଙ୍ଗଦଶ୍ଚାଭିଷିଚ୍ୟତାମ୍ ।
ସିଂହାସନଗତଂ ପୁତ୍ରଂ ପଶ୍ୟନ୍ତୀ ଶାନ୍ତିମେଷ୍ୟସି । ୧୧ ।
ସା ତସ୍ୟ ବଚନଂ ଶ୍ରୁତ୍ୱା ଭର୍ତୃବ୍ୟସନପୀଡ଼ିତା ।
ଅବ୍ରବୀଦୁତ୍ତରଂ ତାରା ହନୂମନ୍ତମବସ୍ଥିତମ୍ । ୧୨ ।
ଅଙ୍ଗଦପ୍ରତିରୂପାଣାଂ ପୁତ୍ରାଣାମେକତଃ ଶତମ୍ ।
ହତସ୍ୟାପ୍ୟସ୍ୟ ବୀରସ୍ୟ ଗାତ୍ରସଂଶ୍ଲେଷଣଂ ବରମ୍ । ୧୩ ।

---

କରିଅଛନ୍ତି । ୭ । ମତ ଅନୁସାରେ ଯେ ରାଜ୍ୟପାଳନ କରୁଥିଲେ ଏବଂ ସାମ, ଦାନ ଓ କ୍ଷମାର ଉପଯୋଗ କରୁଥିଲେ, ସେ ବର୍ତ୍ତମାନ ଧର୍ମାତ୍ମାମାନଙ୍କ ଲୋକକୁ ଚାଲିଯାଇଅଛନ୍ତି । ସେଥିପାଇଁ ତୁମ୍ଭର ଶୋକ କରିବା ଉଚିତ ନୁହେ । ୭ । ଏ ଶ୍ରେଷ୍ଠ ବାନରସବୁ ଏବଂ ତୁମ୍ଭର ଏ ଅଙ୍ଗଦ ତୁମ୍ଭର ଅଧୀନ ଅଛି । ବାନର ଏବଂ ଭଲ୍ଲୁକମାନଙ୍କର ଏ ରାଜ୍ୟ ମଧ୍ୟ ତୁମ୍ଭର ଅଧୀନ ଅଛି । ସୁତରାଂ ହେ ଅନିନ୍ଦିତେ ! ତୁମେ ଅନାଥା ନୁହଁ । ୮ । ହେ ମଙ୍ଗଳମୟି ! ତୁମେ ଶୋକ ଏବଂ ସନ୍ତାପକୁ ଆସ୍ତେ ଆସ୍ତେ ଦୂର କର । ତୁମ ତତ୍ତ୍ୱାବଧାନରେ ରହି ଅଙ୍ଗଦ ପୃଥିବୀକୁ ପାଳନ କରୁ ।୯। ଶାସ୍ତ୍ର ଅନୁସାରେ ପୁତ୍ର ପ୍ରତି ଯାହା କର୍ତ୍ତବ୍ୟ ଏବଂ ରାଜା (ବାଳୀ)ଙ୍କ ପ୍ରତି ମଧ୍ୟ ଯାହା କର୍ତ୍ତବ୍ୟ ବର୍ତ୍ତମାନ ତାହାହିଁ କର । କାଳର ଏହାହିଁ ନିୟମ ଅଛି ।୧୦ । ବାନର-ରାଜଙ୍କର ଅନ୍ତ୍ୟସଂସ୍କାର କରିବାକୁ ହେବ ଏବଂ ଅଙ୍ଗଦର ଅଭିଷେକ କରିବାକୁ ହେବ । ପୁତ୍ରକୁ ସିଂହାସନରେ ଆରୂଢ଼ ହେବାର ଦେଖିଲେ ତୁମ ମନରେ ଶାନ୍ତି ଆସିବ" ।୧୧ । ପତିବିୟୋଗପୀଡ଼ିତା ତାରା ତାହାଙ୍କର (ହନୂମାନଙ୍କର) ଏ କଥା ଶୁଣି ପାଖରେ ବସିଥିବା ହନୂମାନଙ୍କୁ କହିଲେ । ୧୨ । "ଅଙ୍ଗଦସଦୃଶ ଏକଶତ ସୁପୁତ୍ର ଏକେଦିଗରେ ଏବଂ ଏହି ମୃତ ବୀରଙ୍କର ଶରୀର ଆଲିଙ୍ଗନ ଅନ୍ୟ ଦିଗରେ । ଏ ଦୁଇଟି ମଧ୍ୟରେ ଏ ବୀରଙ୍କର ଆଲିଙ୍ଗନକୁହିଁ ମୁଁ ଶ୍ରେଷ୍ଠତର ମନେକରୁଛି । ୧୩ । ମୁଁ ଏ

ନ ଗୃହଂ ହରିରାଜ୍ୟସ୍ୟ ପ୍ରଭବାମ୍ୟଙ୍ଗଦସ୍ୟ ବା ।
ପିତୃବ୍ୟସ୍ତସ୍ୟ ସୁଗ୍ରୀବଃ ସର୍ବକାର୍ଯ୍ୟେଷ୍ୱନନ୍ତରଃ । ୧୪ ।
ନ ହ୍ୟେଷା ବୁଦ୍ଧିରାସ୍ଥେୟା ହନୂମନ୍ନଙ୍ଗଦଂ ପ୍ରତି ।
ପିତା ହି ବନ୍ଧୁଃ ପୁତ୍ରସ୍ୟ ନ ମାତା ହରିସତ୍ତମ । ୧୫ ।
ନ ହି ମମ ହରିରାଜସଂଶ୍ରୟାତ୍
କ୍ଷମତରମସ୍ତି ପରତ୍ର ଚେହ ବା ।
ଅଭିମୁଖହତବୀରସେବିତମ୍
ଶୟନମିଦଂ ମମ ସେବିତୁଂ କ୍ଷମମ୍ । ୧୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ହନୂମଦାଶ୍ୱାସନମ୍
ନାମ ଏକତ୍ରିଂଶଃ ସର୍ଗଃ ।

---

ବାନରରାଜ୍ୟର ପ୍ରଭୁ ନୁହେଁ କି ଅଙ୍ଗଦର ମଧ୍ୟ ପ୍ରଭୁ ନୁହେଁ । ତାହାର ପିତୃବ୍ୟ ସୁଗ୍ରୀବ ସବୁ କାର୍ଯ୍ୟରେ ସମର୍ଥ ଅଟନ୍ତି । ୧୪ । ହେ ବାନରଶ୍ରେଷ୍ଠ ହନୂମନ୍ ! ଅଙ୍ଗଦ ପ୍ରତି ତୁମ୍ଭମାନଙ୍କର ଏପରି ବିଚାର କରିବା ଉଚିତ ନୁହେଁ । ପିତାହିଁ ପୁତ୍ରର ବନ୍ଧୁ ଅଟେ; ମାତା ନୁହେ । ୧୫ । ବାନରରାଜ ବାଳୀଙ୍କର ନିବାସସ୍ଥାନ ବ୍ୟତୀତ ମୋ ନିମନ୍ତେ ଇହଲୋକ ବା ପରଲୋକରେ କୌଣସି ସ୍ଥାନ ସୁଖକର ନୁହେଁ । ମୋ ସମ୍ମୁଖରେ ମୃତ ଏହି ବୀର ଯେଉଁ ଆସନରେ ଶୋଇ ରହିଛନ୍ତି ସେହି ଶଯ୍ୟାହିଁ ମୋର ଆଶ୍ରୟ କରିବାର ଯୋଗ୍ୟ ଅଟେ । ୧୬ ।

---

# ଦ୍ୱାବିଂଶଃ ସର୍ଗଃ

## ବାଲ୍ୟନୁଶାସନମ୍

ବୀକ୍ଷମାଣସ୍ତୁ ମନ୍ଦାସୁଃ ସର୍ବତୋ ମନ୍ଦମୁଚ୍ଛ୍ୱସନ୍ ।
ଆଦାବେବ ତୁ ସୁଗ୍ରୀବଂ ଦଦର୍ଶାନୁଜମଗ୍ରତଃ । ୧ ।
ତଂ ପ୍ରାପ୍ତବିଜୟଂ ବାଲୀ ସୁଗ୍ରୀବଂ ପ୍ଲବଗେଶ୍ୱରମ୍ ।
ଆଭାଷ୍ୟ ବ୍ୟକ୍ତୟା ବାଚା ସସ୍ନେହମିଦମବ୍ରବୀତ୍ । ୨ ।
ସୁଗ୍ରୀବ ଦୋଷେଣ ନ ମାଂ ଗନ୍ତୁମର୍ହସି କିଲ୍ବିଷାତ୍ ।
କୃଷ୍ୟମାଣଂ ଭବିଷ୍ୟେଣ ବୁଦ୍ଧିମୋହେନ ମାଂ ବଲାତ୍ । ୩ ।
ଯୁଗପଦ୍ବିହିତଂ ତାତ ନ ମନ୍ୟେ ସୁଖମାବୟୋଃ ।
ସୌହାର୍ଦଂ ଭ୍ରାତୃଯୁକ୍ତଂ ହି ତଦିଦଂ ଜାତମନ୍ୟଥା । ୪ ।
ପ୍ରତିପଦ୍ୟ ତ୍ୱମଦ୍ୟୈବ ରାଜ୍ୟମେଷାଂ ବନୌକସାମ୍ ।
ମାମପ୍ୟଦ୍ୟୈବ ଗଚ୍ଛନ୍ତଂ ବିଦ୍ଧି ବୈବସ୍ୱତକ୍ଷୟମ୍ । ୫ ।
ଜୀବିତଂ ଚ ହି ରାଜ୍ୟଂ ଚ ଶ୍ରିୟଂ ଚ ବିପୁଲାଂ ତଥା ।
ପ୍ରଜହାମ୍ୟେଷ ବୈ ତୂର୍ଣମହଂ ଚାଗର୍ହିତଂ ଯଶଃ । ୬ ।

---

# ୨୨ଶ ସର୍ଗ

## (ବାଳୀଙ୍କର ସୁଗ୍ରୀବଙ୍କୁ ଅନୁଶାସନ)

ବାଳୀଙ୍କ ପ୍ରାଣବାୟୁ ଅତଶସ୍ତ କ୍ଷୀଣ ହୋଇଯାଇଥିଲା ଏବଂ ସେ ଅତି ମୃଦୁଭାବରେ ଶ୍ୱାସ ଗ୍ରହଣ କରୁଥିଲେ । ଚାରିଆଡ଼କୁ ଦୃଷ୍ଟି ପକାଇ ସେ ପ୍ରଥମେ ନିଜର ସାନ ଭାଇ ସୁଗ୍ରୀବଙ୍କୁ ସମ୍ମୁଖରେ ଦେଖିଲେ । ୧ । ବିଜୟୀ ବାନରାଧିପତି ସୁଗ୍ରୀବଙ୍କୁ ସ୍ପଷ୍ଟଭାଷାରେ ସମ୍ବୋଧନ କରି ସ୍ନେହପୂର୍ବକ ବାଳୀ କହିଲେ ।୨। "ସୁଗ୍ରୀବ ! ପୂର୍ବଜନ୍ମର ପାପବଶରୁ ଏବଂ ଭବିତବ୍ୟ ଦୁର୍ବୁଦ୍ଧି ହେତୁରୁ ତୋ ପ୍ରତି ମୁଁ ଯେ ବ୍ୟବହାର କରିଛି ସେଥିଲାଗି ମୋତେ ଦୋଷୀ ବୋଲି ବିଚାରିବୁ ନାହିଁ ।୩ । ବାବୁ ! ଏକାସାଥିରେ ଆମ ଦୁହିଁଙ୍କର ଭ୍ରାତୃପ୍ରେମ ଏବଂ ରାଜ୍ୟସୁଖ ଭୋଗ ହୋଇ ପାରନ୍ତା ନାହିଁ, ସେଇଥିଲାଗି ଏ ବିପରୀତ ଘଟିଲା । ୪ । ମୁଁ ଆଜିହିଁ ଯମପୁରକୁ ଯାଉଛି, ଏ କଥା ତୁ ସ୍ଥିର କରି ଜାଣ । ଅତଏବ ବନବାସୀ ବାନରମାନଙ୍କର ରାଜ୍ୟ ତୁ ଆଜି ଗ୍ରହଣ କର । ୫ । ଜୀବନ, ରାଜ୍ୟ, ବିପୁଳ ସମ୍ପତ୍ତି ତଥା ଅନିନ୍ଦିତ ଯଶ, ଏ ସମସ୍ତ

ଅସ୍ୟାଂ ତ୍ୱହମବସ୍ଥାୟାଂ ବୀର ବକ୍ଷ୍ୟାମି ଯଦ୍‌ବଚଃ ।
ଯଦ୍ୟପ୍ୟସୁକରଂ ରାଜନ୍ କର୍ତୁମେବ ତ୍ୱମର୍ହସି । ୭ ।
ସୁଖାର୍ହଂ ସୁଖସଂବୃଦ୍ଧଂ ବାଲମେନମବାଲିଶମ୍ ।
ବାଷ୍ପପୂର୍ଣମୁଖଂ ପଶ୍ୟ ଭୂମୌ ପତିତମଙ୍ଗଦମ୍ । ୮ ।
ମମ ପ୍ରାଣୈଃ ପ୍ରିୟତରଂ ପୁତ୍ରଂ ପୁତ୍ରମିବୌରସମ୍ ।
ମୟା ହୀନମହୀନାର୍ଥଂ ସର୍ବତଃ ପରିପାଳୟ । ୯ ।
ତ୍ୱମପ୍ୟସ୍ୟ ପିତା ଦାତା ପରିତ୍ରାତା ଚ ସର୍ବଶଃ ।
ଭୟେଷ୍ୱଭୟଦଶ୍ଚୈବ ଯଥାହଂ ପ୍ଲବଗେଶ୍ୱର । ୧୦ ।
ଏଷ ତାରାତ୍ମଜଃ ଶ୍ରୀମାଂସ୍ତ୍ୱୟା ତୁଲ୍ୟପରାକ୍ରମଃ ।
ରକ୍ଷସାଂ ଚ ବଧେ ତେଷାମଗ୍ରତସ୍ତେ ଭବିଷ୍ୟତି । ୧୧ ।
ଅନୁରୂପାଣି କର୍ମାଣି ବିକ୍ରମ୍ୟ ବଲବାନ୍ ରଣେ ।
କରିଷ୍ୟତ୍ୟେଷ ତାରେୟସ୍ତରସ୍ୱୀ ତରୁଣୋଽଙ୍ଗଦଃ । ୧୨ ।
ସୁଷେଣଦୁହିତା ଚେୟମର୍ଥସୂକ୍ଷ୍ମବିନିଶ୍ଚୟେ ।
ଔତ୍ପାତିକେ ଚ ବିବିଧେ ସର୍ବତଃ ପରିନିଷ୍ଠିତା । ୧୩ ।

---

ମୁଁ ଏହିକ୍ଷଣି ପରିତ୍ୟାଗ କରୁଅଛି । ୬ । ହେ ବୀର ! ଏ ଅବସ୍ଥାରେ ଯେଉଁ କଥା ମୁଁ କହିବି ତାହା କରିବାକୁ କଷ୍ଟକର ହେଲେ ମଧ୍ୟ ତୁମ୍ଭର ଅବଶ୍ୟ କର୍ତ୍ତବ୍ୟ ଅଟେ । ୭ । ସୁଖଭୋଗ କରିବାର ଯୋଗ୍ୟ ଓ ସୁଖପାଳିତ ଏହି ବୁଦ୍ଧିମାନ୍ ବାଳକ ଅଙ୍ଗଦକୁ ଦେଖ । ସେ ଭୂମିରେ ପଡ଼ି ରୋଦନ କରୁଅଛି । ୮ । ପ୍ରାଣରୁ ବଳି ପ୍ରିୟ ମୋର ଏହି ପୁତ୍ରକୁ ତୁମେ ନିଜର ଔରସଜାତ ପୁତ୍ରସଦୃଶ ଦେଖିବ ଏବଂ ମୋ ବିଚ୍ଛେଦରେ ଏହାର ଯେପରି କୌଣସି ଅଭାବ ନ ହୁଏ, ସେହିପରିଭାବରେ ଏହାକୁ ସବୁପ୍ରକାରେ ପାଳନ କରିବ ।୯। ହେ ବାନରେଶ୍ୱର ! ତୁମେ ମଧ ମୋ ସମାନ ଏହାର ପିତା, ଦାତା, ରକ୍ଷକ ଏବଂ ଭୟ ସମୟରେ ସକଳ ପ୍ରକାରେ ଅଭୟଦାତା ହେବ । ୧୦ । ତାରାର ଏହି ଶ୍ରୀମାନ୍ ପୁତ୍ର ତୁମର ସଦୃଶ ପରାକ୍ରମୀ ଅଟେ । ରାକ୍ଷସମାନଙ୍କୁ ବଧ କରିବା ସମୟରେ ସେ ତୁମ୍ଭର ଆଗେ ଆଗେ ରହିବ । ୧୧ । ତାରାପୁତ୍ର ଏହି ତେଜସ୍ୱୀ ଯୁବକ ଅଙ୍ଗଦ ଯୁଦ୍ଧ ସମୟରେ ଅଗ୍ରସର ହୋଇ ଉପଯୁକ୍ତ କାର୍ଯ୍ୟ ସାଧନ କରିବ । ୧୨ । ସୁଷେଣଙ୍କର କନ୍ୟା ଏହି ତାରା ସୂକ୍ଷ୍ମ ବିଷୟ ନିର୍ଣ୍ଣୟ କରିବାରେ ଏବଂ ବିପଦସୂଚକ ସଙ୍କେତମାନ ଜାଣିବାରେ ଅତିଶୟ ନିପୁଣା

ଯଦେଷା ସାଧ୍ୱିତି ବ୍ରୂୟାତ୍କାର୍ଯଂ ତନ୍ମୁକ୍ତସଂଶୟମ୍ ।
ନ ହି ତାରାମତଂ କିଂଚିଦନ୍ୟଥା ପରିବର୍ତ୍ତତେ । ୧୪ ।
ରାଘବସ୍ୟ ଚ ତେ କାର୍ଯଂ କର୍ତ୍ତବ୍ୟମବିଶଙ୍କୟା ।
ସ୍ୟାଦଧର୍ମୋ ହ୍ୟକରଣେ ତ୍ୱାଂ ଚ ହିଂସ୍ୟାଦମାନିତଃ । ୧୫ ।
ଇମାଂ ଚ ମାଲାମାଧତ୍ସ୍ୱ ଦିବ୍ୟାଂ ସୁଗ୍ରୀବ କାଞ୍ଚନୀମ୍ ।
ଉଦାରା ଶ୍ରୀଃ ସ୍ଥିତା ହ୍ୟସ୍ୟାଂ ସଂପ୍ରଜହ୍ୟାନ୍ମୃତେ ମୟି ।୧୬।
ଇତ୍ୟେବମୁକ୍ତଃ ସୁଗ୍ରୀବୋ ବାଲିନା ଭ୍ରାତୃସୌହୃଦାତ୍ ।
ହର୍ଷଂ ତ୍ୟକ୍ତ୍ୱା ପୁନର୍ଦୀନୋ ଗ୍ରହଗ୍ରସ୍ତ ଇବୋଡୁରାଟ୍ । ୧୭।
ତଦ୍ବାଲିବଚନାଚ୍ଛାନ୍ତଃ କୁର୍ବନ୍ ଯୁକ୍ତମତନ୍ଦ୍ରିତଃ ।
ଜଗ୍ରାହ ସୋଽଭ୍ୟନୁଜ୍ଞାତୋ ମାଲାଂ ତାଂ ଚୈବ କାଞ୍ଚନୀମ୍ ।୧୮
ତାଂ ମାଲାଂ କାଞ୍ଚନୀଂ ଦତ୍ତ୍ୱା ଦୃଷ୍ଟ୍ୱା ଚୈବାତ୍ମଜଂ ସ୍ଥିତମ୍ ।
ସଂସିଦ୍ଧଃ ପ୍ରେତ୍ୟଭାବାୟ ସ୍ନେହାଦଙ୍ଗଦମବ୍ରବୀତ୍ । ୧୯ ।
ଦେଶକାଲୌ ଭଜସ୍ୱାଦ୍ୟ କ୍ଷମମାଣଃ ପ୍ରିୟାପ୍ରିୟେ ।
ସୁଖଦୁଃଖସହଃ କାଲେ ସୁଗ୍ରୀବବଶଗୋ ଭବ । ୨୦ ।

---

ଅଟେ । ୧୩ । ଯେଉଁ କାର୍ଯ୍ୟକୁ ସେ ଭଲ ବୋଲି କହିବ ତାହା ତୁମ୍ଭର ନିଃସନ୍ଦେହ-ଭାବରେ କରିବା ଉଚିତ । ତାରାର ମତ କଦାପି ଅନ୍ୟଥା ହୁଏ ନାହିଁ ।୧୪। ରାମଚନ୍ଦ୍ରଙ୍କ କାର୍ଯ୍ୟକୁ ତୁମେ ନିଃଶଙ୍କଭାବରେ ସାଧନ କରିବ । ତାହା ନ କଲେ ଅଧର୍ମ ହେବ ଏବଂ ସେ ଅବମାନିତ ହେଲେ ତୁମକୁ ମାରିଦେବେ । ୧୫ । ହେ ସୁଗ୍ରୀବ ! ତୁମେ ଏହି ସ୍ୱର୍ଗୀୟ ସୁବର୍ଣ୍ଣମାଳା ପରିଧାନ କର । ଏଥିରେ ଉଦାର ରାଜଲକ୍ଷ୍ମୀ ବିଦ୍ୟମାନ ଅଛନ୍ତି । ମୁଁ ମରିଗଲେ ଏହାର ଶ୍ରୀ ନଷ୍ଟ ହୋଇଯିବ । (ସୁତରାଂ ମୁଁ ବଞ୍ଚି ଥାଉଁ ଥାଉଁ ତୁମେ ଏହାକୁ ଧାରଣକର) । ୧୬। ଭ୍ରାତୃପ୍ରେମରେ ବାଳୀ ସୁଗ୍ରୀବକୁ ଏହି କଥା କହିଲା । ତାପରେ ସୁଗ୍ରୀବ ରାହୁଗ୍ରସ୍ତ ଚନ୍ଦ୍ରମାପରି ହର୍ଷ ତ୍ୟାଗକରି ମଳିନ ହୋଇଗଲା । ୧୭ । ବାଳୀର କଥା ରେ ତାହାର (ସୁଗ୍ରୀବର) ବୈରଭାବ ଶାନ୍ତ ହୋଇଗଲା ଏବଂ ସେ କର୍ମଠଭାବରେ ଯଥୋଚିତ କାର୍ଯ୍ୟ କରିବାକୁ ଲାଗିଲା । ଭାଇର ଆଦେଶ ଅନୁସାରେ ସେ କାଞ୍ଚନମାଳା ଗ୍ରହଣ କଲା । ୧୮ । ସୁବର୍ଣ୍ଣମାଳା ଦାନକରି ଓ ମରିବାକୁ ସ୍ଥିରକରି ସମ୍ମୁଖରେ ଉଭାହୋଇଥିବା ଅଙ୍ଗଦକୁ ଦେଖି ବାଳୀ ସ୍ନେହପୂର୍ବକ କହିଲା ।୧୯। "ଦେଶ ଏବଂ କାଳ ଅନୁଯାୟୀ କାର୍ଯ୍ୟ କର । ପ୍ରିୟ ଏବଂ ଅପ୍ରିୟକୁ କ୍ଷମାକରି ସୁଖ ଏବଂ ଦୁଃଖକୁ ସହ୍ୟ କରିବୁ ଓ ସୁଗ୍ରୀବର

ଯଥା ହି ତ୍ୱଂ ମହାବାହୋ ଲାଳିତଃ ସତତଂମୟା ।
ନ ତଥା ବର୍ତ୍ତମାନଂ ତ୍ୱାଂ ସୁଗ୍ରୀବୋ ବହୁମନ୍ୟତେ । ୨୧ ।
ନାସ୍ୟାମିତ୍ରୈର୍ଗତଂ ଗଚ୍ଛେର୍ମା ଶତ୍ରୁଭିରରିନ୍ଦମ ।
ଭର୍ତ୍ତୁରର୍ଥପରୋ ଦାନ୍ତଃ ସୁଗ୍ରୀବବଶଗୋ ଭବ । ୨୨ ।
ନ ଚାତିପ୍ରଣୟଃ କାର୍ଯ୍ୟଃ କର୍ତ୍ତବ୍ୟୋଽପ୍ରଣୟଶ୍ଚ ତେ ।
ଉଭୟଂ ହି ମହାଦୋଷଂ ତସ୍ମାଦନ୍ତରଦୃଗ୍ ଭବ । ୨୩ ।
ଇତ୍ୟୁକ୍ତ୍ୱାଥ ବିବୃତ୍ତାକ୍ଷଃ ଶରସଂପୀଡ଼ିତୋ ଭୃଶମ୍ ।
ବିବୃତୈର୍ଦଶନୈର୍ଭୀମୈର୍ବଭୂବୋତ୍କ୍ରାନ୍ତଜୀବିତଃ ।୨୪।
ତତୋ ବିଚୁକ୍ରୁଶୁସ୍ତତ୍ର ବାନରା ହତୟୂଥପାଃ ।
ପରିଦେବୟମାନାସ୍ତେ ସର୍ବେ ପ୍ଲବଗସତ୍ତମାଃ । ୨୫ ।
କିଷ୍କିନ୍ଧା ହ୍ୟଦ୍ୟ ଶୂନ୍ୟା ଚ ସ୍ୱର୍ଗତେ ବାନରେଶ୍ୱରେ ।
ଉଦ୍ୟାନାନି ଚ ଶୂନ୍ୟାନି ପର୍ବତାଃ କାନନାନି ଚ । ୨୬ ।
ହତେ ପ୍ଲବଗଶାର୍ଦ୍ଦୂଳେ ନିଷ୍ପ୍ରଭା ବାନରାଃ କୃତାଃ ।
ଯେନ ଦତ୍ତଂ ମହଦ୍ୟୁଦ୍ଧଂ ଗନ୍ଧର୍ବସ୍ୟ ମହାତ୍ମନଃ । ୨୭ ।
ଗୋଲଭସ୍ୟ ମହାବାହୋର୍ଦଶବର୍ଷାଣି ପଞ୍ଚ ଚ ।
ନୈବ ରାତ୍ରୌ ନ ଦିବସେ ତଦ୍ୟୁଦ୍ଧମୁପଶାମ୍ୟତ ।୨୮ ।

---

ବଶବର୍ତ୍ତୀ ହୋଇ ରହିବୁ ।୨୦। ହେ ମହାବାହୋ ! ମୁଁ ଯେ ପ୍ରକାରେ ତୋହର ଲାଳନ-ପାଳନ କରିଥିଲି ସେହିଭଳିବରେ ଚଳିଲେ ସୁଗ୍ରୀବ ତୋତେ ଆଦର କରିବ ନାହିଁ । ।୨୧। ସୁଗ୍ରୀବର ଶତ୍ରୁମାନଙ୍କ ସହିତ ସଂସର୍ଗ କରିବୁ ନାହିଁ, ଜିତେନ୍ଦ୍ରିୟ ହେବୁ ଏବଂ ପ୍ରଭୁର ହିତସାଧନ କରିବୁ । ଏହିପ୍ରକାରେ ସୁଗ୍ରୀବର ଅଧୀନ ରହିବୁ । ୨୨। ଅତି ପ୍ରୀତି କରିବୁ ନାହିଁ କି ଅପ୍ରୀତି କରିବୁ ନାହିଁ; କାରଣ ଏ ଉଭୟ ଦୋଷାବହ ଅଟେ, ଅତଏବ ମଧ୍ୟଭାବରେ ଚଳିବୁ” । ୨୩। ଏତିକି କହି ଶର ଆଘାତରେ ବ୍ୟଥିତ ହୋଇ ବାଳୀ ଚକ୍ଷୁ ମେଲିକରିଦେଲା । କରାଳଦନ୍ତଯୁକ୍ତ ତାହାର ମୁହଁ ମେଲା ହୋଇଗଲା ଏବଂ ତାହାର ପ୍ରାଣ ଉଡ଼ିଗଲା । ୨୪। ଅନନ୍ତର ଯୂଥପତି ମରିଯିବାରୁ ସବୁ ଶ୍ରେଷ୍ଠ ବାନର ସେଠାରେ ଚିତ୍କାର କରି ରୋଦନ କରିବାକୁ ଲାଗିଲେ ।୨୫। “ଆଜି ବାନରାଧିପତି ସ୍ୱର୍ଗ ଗମନ କରିବାରେ କିଷ୍କିନ୍ଧା ଶୂନ୍ୟ ହୋଇଗଲା, ଉଦ୍ୟାନ, ପର୍ବତ ଏବଂ ବନମାନ ଶୂନ୍ୟ ହୋଇଗଲା । ୨୬। ମହାତ୍ମା ମହାବାହୁ ଗୋଲଭ ଗନ୍ଧର୍ବ ସହିତ ଯେ ପନ୍ଦରବର୍ଷ ଦିବାରାତ୍ର ଅବିରତ ଘୋର ଯୁଦ୍ଧ କରିଥିଲେ ସେହି ବାନର-ଶ୍ରେଷ୍ଠ ମରିଯିବାରେ ବାନରମାନଙ୍କର ତେଜ ମଳିନ ହୋଇଗଲା । ୨୭-୨୮ ।

ତତସ୍ତୁ ଷୋଡ଼ଶେ ବର୍ଷେ ଗୋଲଭୋ ବିନିପାତିତଃ ।
ତଂ ହତ୍ୱା ଦୁର୍ବିନୀତଂ ତୁ ବାଲୀ ଦଂଷ୍ଟ୍ରାକରାଳବାନ୍ ।
ସର୍ବାଭୟଙ୍କରୋଽସ୍ମାକଂ କଥମେଷ ନିପାତିତଃ । ୨୯ ।

ହତେଽତୁ ବୀରେ ପ୍ଲବଗାଧିପେ ତଦା
ବନେଚରାସ୍ତତ୍ର ନ ଶର୍ମ ଲେଭିରେ ।
ବନେଚରାଃ ସିଂହଯୁତେ ମହାବନେ
ଯଥା ହି ଗାବୋ ନିହତେ ଗବାଂପତୌ । ୩୦ ।
ତତସ୍ତୁ ତାରା ବ୍ୟସନାର୍ଣ୍ଣବପ୍ଲୁତା
ମୃତସ୍ୟ ଭର୍ତ୍ତୁର୍ବଦନଂ ସମୀକ୍ଷ୍ୟ ସା ।
ଜଗାମ ଭୂମିଂ ପରିରଭ୍ୟ ବାଳିନମ୍
ମହାଦ୍ରୁମଂ ଛିନ୍ନମିବାଶ୍ରିତା ଲତା । ୩୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ବାଲ୍ୟନୁଶାସନମ୍
ନାମ ଦ୍ୱାବିଂଶଃ ସର୍ଗଃ

———

ଷୋଡ଼ଶ ବର୍ଷରେ ଗୋଲଭ ହତହେଲା । ଭୀମଦନ୍ତଯୁକ୍ତ ବାଳୀ ସେହି ଦୁର୍ବିନୀତକୁ ହତ୍ୟାକରି ଆମମାନଙ୍କୁ ସକଳପ୍ରକାର ଅଭୟ ଦାନ କରିଥିଲେ । ସେ ବାଳୀ ଆଜି କିପରି ହତହେଲେ ?" ।୨୯। ଗୌମାନଙ୍କର ସ୍ୱାମୀ (ବୃଷଭ)ହତହେଲେ ସିଂହ ଥିବା ମହାବନରେ ଗୌମାନଙ୍କର ଯେପରି ସୁଖ ହୁଏ ନାହିଁ, ସେହିପରି ବାନରାଧିପତି ବୀର ବାଳୀ ମରିଯିବାରେ ବନଚର ବାନରମାନଙ୍କର ସୁଖ ହେଲା ନାହିଁ ।୩୦। ଦୁଃଖସାଗରରେ ମଗ୍ନା ତାରା ପତିଙ୍କର ମୁହଁକୁ ଚାହିଁ ଛିନ୍ନବୃକ୍ଷକୁ ଲତା ଆଶ୍ରୟ କଲାପରି ବାଳୀକୁ ଆଲିଙ୍ଗନ କରି ଭୂମି ଉପରେ ପଡ଼ିଗଲା ।୩୧।

———

# ତ୍ରୟୋବିଂଶଃ ସର୍ଗଃ

## ଅଙ୍ଗଦାଭିବାଦନମ୍

ତତଃ ସମୁପଜିଘ୍ରନ୍ତୀ କପିରାଜସ୍ୟ ତନ୍ମୁଖମ୍ ।
ପତିଂ ଲୋକଶ୍ରୁତା ତାରା ମୃତଂ ବଚନମବ୍ରବୀତ୍ । ୧।
ଶେଷେ ତ୍ୱଂ ବିଷମେ ଦୁଃଖମକୃତ୍ୱା ବଚନଂ ମମ ।
ଉପଲୋପଚିତେ ବୀର ସୁଦୁଃଖେ ବସୁଧାତଲେ । ୨ ।
ମତ୍ତଃ ପ୍ରିୟତରା ନୂନଂ ବାନରେନ୍ଦ୍ର ମହୀ ତବ ।
ଶେଷେ ହି ତାଂ ପରିଷ୍ୱଜ୍ୟ ମାଂ ଚ ନ ପ୍ରତିଭାଷସେ । ୩ ।
ସୁଗ୍ରୀବସ୍ୟ ବଶଂ ପ୍ରାପ୍ତୋ ବିଧିରେଷ ଭବତ୍ୟହୋ ।
ସୁଗ୍ରୀବ ଏବ ବିକ୍ରାନ୍ତୋ ବୀର ସାହସିକ ପ୍ରିୟ । ୪ ।
ଋକ୍ଷବାନରମୁଖ୍ୟାସ୍ତ୍ୱାଂ ବଲିନଂ ପର୍ଯ୍ୟୁପାସତେ ।
ତେଷାଂ ବିଲପିତଂ କୃଚ୍ଛ୍ରମଙ୍ଗଦସ୍ୟ ଚ ଶୋଚତଃ । ୫ ।
ମମ ଚେମା ଗିରଃ ଶ୍ରୁତ୍ୱା କିଂ ତ୍ୱଂ ନ ପ୍ରତିବୁଧ୍ୟସେ ।
ଇଦଂ ତଦ୍ବୀରଶୟନଂ ତତ୍ର ଶେଷେ ହତୋ ଯୁଧି । ୬ ।

---

## ୨୩ଶ ସର୍ଗ

### ( ଅଙ୍ଗଦର ଅଭିବାଦନ )

କପିରାଜର ମୁଖକୁ ସୁଙ୍ଘି କରି ଲୋକପ୍ରସିଦ୍ଧା ତାରା ମୃତ ପତିଙ୍କୁ କହିଲା । ୧ । "ତୁମେ ମୋ କଥା ନ ମାନି ବର୍ତ୍ତମାନ ଏହି ଗୋଡ଼ ଗିଙ୍ଗିଟିପୂର୍ଣ୍ଣ ଆବୁଡ଼ା ଖାବୁଡ଼ା ଭୂମି ଉପରେ ଶୋଇରହିଛ । ୨ । ହେ ବାନରେନ୍ଦ୍ର ! ଏ ପୃଥିବୀ ମୋ ଅପେକ୍ଷା ତୁମ୍ଭର ଅଧିକ ପ୍ରିୟତର, ଏହା ନିଶ୍ଚୟ ଜଣାପଡ଼ୁଛି; କାରଣ ତୁମେ ମୋତେ ଛାଡ଼ି ଏହି ପୃଥିବୀ ଉପରେ ଶୋଇରହିଛ ଏବଂ ମୋତେ କଥା ସୁଦ୍ଧା କହୁନାହଁ । ୩ । ହେ ସାହସୀ ପ୍ରିୟତମ ! ବିଧି ବର୍ତ୍ତମାନ ସୁଗ୍ରୀବ ଅଧୀନ ଅଟେ; ସୁତରାଂ ବର୍ତ୍ତମାନ ସୁଗ୍ରୀବହିଁ ପରାକ୍ରମୀ ହେଲା । ୪ । ଯେଉଁ ଶ୍ରେଷ୍ଠ ଭାଲୁକ ଏବଂ ବାନରମାନେ ତୁମ୍ଭର ସେବା କରୁଥିଲେ, ସେମାନଙ୍କର ତଥା ଦୁଃଖୀ ଅଙ୍ଗଦର ବିଳାପ ଶୁଣି ଏବଂ ମୋର ବଚନ ଶୁଣି ମଧ୍ୟ ତୁମେ କାହିଁକି ଉଠୁନାହଁ ? ତୁମେ ଯୁଦ୍ଧରେ ହତହୋଇ ଏହି ବୀରଶଯ୍ୟାରେ ଶୋଇରହିଅଛ । ୫-୬ । ହେ ଯୁଦ୍ଧପ୍ରିୟ ମୋର

ଶାୟିତା ନିହତା ଯତ୍ର ତ୍ୱୟୈବ ରିପବଃ ପୁରା ।
ବିଶୁଦ୍ଧସତ୍ତ୍ୱାଭିଜନ ପ୍ରିୟଯୁଦ୍ଧ ମମ ପ୍ରିୟ । ୭ ।
ମାମନାଥାଂ ବିହାୟୈକାଂ ଗତସ୍ତ୍ୱମସି ମାନଦ ।
ଶୂରାୟ ନ ପ୍ରଦାତବ୍ୟା କନ୍ୟା ଖଲୁ ବିପଶ୍ଚିତା । ୮ ।
ଶୂରଭାର୍ଯ୍ୟାଂ ହତାଂ ପଶ୍ୟ ସଦ୍ୟୋ ମାଂ ବିଧବାଂ କୃତାମ୍ ।
ଅବଭଗ୍ନଶ୍ଚ ମେ ମାନୋ ଭଗ୍ନା ମେ ଶାଶ୍ୱତୀ ଗତିଃ । ୯ ।
ଅଗାଧେ ଚ ନିମଗ୍ନାସ୍ମି ବିପୁଲେ ଶୋକସାଗରେ ।
ଅଶ୍ମସାରମୟଂ ନୂନମିଦଂ ମେ ହୃଦୟଂ ଦୃଢମ୍ । ୧୦ ।
ଭର୍ତ୍ତାରଂ ନିହତଂ ଦୃଷ୍ଟ୍ୱା ଯନ୍ନାଦ୍ୟ ଶତଧା କୃତମ୍ ।
ସୁହୃଚ୍ଚୈବ ଚ ଭର୍ତ୍ତା ଚ ପ୍ରକୃତ୍ୟା ଚ ମମ ପ୍ରିୟଃ । ୧୧ ।
ପ୍ରହାରେ ଚ ପରାକ୍ରାନ୍ତଃ ଶୂରଃ ପଞ୍ଚତ୍ୱମାଗତଃ ।
ପତିହୀନା ତୁ ଯା ନାରୀ କାମଂ ଭବତୁ ପୁତ୍ରିଣୀ । ୧୨ ।
ଧନଧାନ୍ୟସମୃଦ୍ଧାପି ବିଧବେତ୍ୟୁଚ୍ୟତେ ବୁଧୈଃ ।
ସ୍ୱଗାତ୍ରପ୍ରଭବେ ବୀର ଶେଷେ ରୁଧିରମଣ୍ଡଲେ । ୧୩ ।

---

ପ୍ରିୟତମ ! ଆତ୍ମୀୟମାନଙ୍କର ପ୍ରିୟକାରୀ ହେ ବିଶୁଦ୍ଧାତ୍ମା ! ତୁମେ ଶତ୍ରୁମାନଙ୍କୁ ଯେଉଁ ଶଯ୍ୟାରେ ମାରି ପୂର୍ବେ ଶୁଆଇ ଦେଇଥିଲ, ବର୍ତ୍ତମାନ ସେହି ଶଯ୍ୟାରେ ନିଜେ ଶୋଇରହିଅଛ । ୭ । ହେ ମାନଦ ! ତୁମେ ମୋତେ ଏକାକୀ ଅନାଥା କରି ଛାଡ଼ିଦେଇ ଚାଲିଗଲ । ବିଦ୍ୱାନ୍ ବ୍ୟକ୍ତି ବୀରକୁ କଦାପି କନ୍ୟାଦେବା ଉଚିତ ନୁହେ ।୮। ଦେଖ, ମୁଁ ବୀରର ଭାର୍ଯ୍ୟା, ବର୍ତ୍ତମାନ କିପରି ବିଧବା ହୋଇ ମଲି । ମୋର ମାନ ଗଲା ଏବଂ ମୋର ସଦ୍‌ଗତି ନଷ୍ଟହେଲା । ୯ । ବିଶାଳ ଏବଂ ଗଭୀର ଶୋକସାଗରରେ ମୁଁ ନିମଗ୍ନ ହେଲି । ମୋର ହୃଦୟ ନିଶ୍ଚୟ ପଥରରେ ଗଢ଼ା ଏବଂ ଅତି କଠିନ ଅଟେ ।୧୦। କାରଣ ଯେ ସ୍ୱଭାବତଃ ମୋର ପ୍ରିୟ ଏବଂ ମିତ୍ର ଥିଲେ ସେପରି ସ୍ୱାମୀଙ୍କୁ ନିହତ ହେବାର ଦେଖି ମଧ୍ୟ ଆଜ ତାହା ଶତଧା ବିଦୀର୍ଣ୍ଣ ହେଉ ନାହିଁ । । ୧୧ । ଶତ୍ରୁକୁ ପ୍ରହାର କରିବାରେ ଯେଉଁ ବୀର ଅତିଶୟ ପରାକ୍ରମୀ ଥିଲେ, ସେ ବୀର ଆଜି ପଞ୍ଚତ୍ୱପ୍ରାପ୍ତ ହେଲେ । ପତିହୀନା ସ୍ତ୍ରୀ ପୁତ୍ରବତୀ ହେଲେ ମଧ୍ୟ ଏବଂ ଧନଧାନ୍ୟ-ସମ୍ପନ୍ନା ହେଲେ ମଧ୍ୟ ପଣ୍ଡିତମାନେ ତାହାକୁ ବିଧବା ବୋଲି କହନ୍ତି । ହେ ବୀର ରକ୍ତବର୍ଣ୍ଣ ନିଜର ବିଛଣା ପରି ତୁମେ ବର୍ତ୍ତମାନ ନିଜ ଶରୀରରୁ ନିର୍ଗତ ରକ୍ତମଣ୍ଡଳ ଉପରେ

କୃମିରାଗପରିସ୍ତୋମେ ସ୍ୱକୀୟେ ଶୟନେ ଯଥା ।
ରେଣୁଶୋଣିତସଂବୀତଂ ଗାତ୍ରଂ ତବ ସମନ୍ତତଃ । ୧୪ ।
ପରିରବ୍ଧୁଂ ନ ଶକ୍ନୋମି ଭୁଜାଭ୍ୟାଂ ପ୍ଲବଗର୍ଷଭ ।
କୃତକୃତ୍ୟୋଽଦ୍ୟ ସୁଗ୍ରୀବୋ ବୈରେଽସ୍ମିନ୍ନତିଦାରୁଣେ । ୧୫ ।
ଯସ୍ୟ ରାମବିମୁକ୍ତେନ ହୃତମେକେଷୁଣା ଭୟମ୍ ।
ଶରେଣ ହୃଦି ଲଗ୍ନେନ ଗାତ୍ରସଂସ୍ପର୍ଶନେ ତବ । ୧୬ ।
ବାର୍ୟାମି ତ୍ୱାଂ ନିରୀକ୍ଷନ୍ତୀ ତ୍ୱୟି ପଞ୍ଚତ୍ୱମାଗତେ ।
ଉଦ୍‌ବବର୍ହ ଶରଂ ନୀଲସ୍ତସ୍ୟ ଗାତ୍ରଗତଂ ତଦା । ୧୭ ।
ଗିରିଗହ୍ୱରସଂଲୀନଂ ଦୀପ୍ତମାଶୀବିଷଂ ଯଥା ।
ତସ୍ୟ ନିଷ୍କୃଷ୍ୟମାଣସ୍ୟ ବାଣସ୍ୟାପି ବଭୌ ଦ୍ୟୁତିଃ । ୧୮ ।
ଅସ୍ତମସ୍ତକସଂନଦ୍ଧରଶ୍ମେର୍ଦିନକରାଦିବ ।
ପେତୁଃ କ୍ଷତଜଧାରାସ୍ତୁ ବ୍ରଣେଭ୍ୟସ୍ତସ୍ୟ ସର୍ବଶଃ । ୧୯ ।
ତାମ୍ରଗୈରିକସଂପୃକ୍ତା ଧାରା ଇବ ଧରାଧରାତ୍ ।
ଅବକୀର୍ଣଂ ବିମାର୍ଜନ୍ତୀ ଭର୍ତାରଂ ରଣରେଣୁନା । ୨୦ ।
ଅସ୍ରୈର୍ନୟନଜୈଃ ଶୂରଂ ସିଷେଚାସ୍ତ୍ରସମାହତମ୍ ।
ରୁଧିରୋକ୍ଷିତସର୍ବାଙ୍ଗଂ ଦୃଷ୍ଟ୍ୱା ବାଳିହତଂ ପତିମ୍ । ୨୧ ।

---

ଶୟନ କରିଅଛ । ଧୂଳି ଏବଂ ରକ୍ତ ତୁମ୍ଭର ସମସ୍ତ ଶରୀରରେ ବୋଳିହୋଇ ରହିଛି । ୧୨-୧୪ । ହେ ବାନରରାଜ ! ମୁଁ ନିଜର ଭୁଜଦ୍ୱାରା ତୁମକୁ ଆଲିଙ୍ଗନ କରିପାରୁ ନାହିଁ । ଏ ନିଦାରୁଣ ଶତ୍ରୁତାରେ ସୁଗ୍ରୀବହିଁ ଆଜି ସିଦ୍ଧକାମ ହେଲା ।୧୫। ରାମଙ୍କଦ୍ୱାରା ନିକ୍ଷିପ୍ତ ଗୋଟିଏମାତ୍ର ବାଣଦ୍ୱାରା ତାହାର ଭୟ ଦୂର ହୋଇଗଲା । ତୁମ୍ଭର ହୃଦୟରେ ଶର ଲାଗିରହିଥିବାରୁ ମୁଁ ତୁମକୁ ଆଲିଙ୍ଗନ କରିବାକୁ ସମର୍ଥ ହୋଇପାରୁ ନାହିଁ । ୧୬ । ମୁଁ ତୁମକୁ ଚାହୁଁଛି ଅଥଚ ତୁମ୍ଭର ଗାତ୍ର ସ୍ପର୍ଶ କରିପାରୁ ନାହିଁ" । ଏହି ସମୟରେ ନୀଳ (ବାନର ମନ୍ତ୍ରୀ) ବାଳୀର ଶରୀରରୁ ସେହି ଶର ଟାଣି ଓପାଡ଼ି ଦେଲେ । ୧୭ । ଏହି ଉତ୍ପାଟିତ ଶରର ତେଜ ଗିରିଗହ୍ୱରରେ ଲୁଚିଥିବା ଦୀପ୍ତସର୍ପର ତେଜସଦୃଶ ଶୋଭା ପାଇଲା ।୧୮। ଅସ୍ତାଚଳଶିଖରର ଉପରେ ଅବସ୍ଥିତ ସୂର୍ଯ୍ୟର କିରଣପରି ବାଳୀର ବ୍ରଣରୁ ରକ୍ତଧାରା ନିର୍ଗତ ହେଲା ।୧୯। ସତେ ଯେପରି ପର୍ବତ ଗାତ୍ରରୁ ତାମ୍ରବର୍ଣ୍ଣ ଗୈରିକ ଧାର ନିର୍ଗତ ହେଉଛି ! ରଣଧୂଳିରେ ଧୂସରିତ ପତିଙ୍କୁ ପୋଛିଦେଇ ତାରା ଅସ୍ତ୍ରାହତ ପତିଙ୍କୁ ନିଜର ନୟନାଶ୍ରୁରେ ବୁଡ଼ାଇଦେଲା

ଉବାଚ ତାରା ପିଙ୍ଗାକ୍ଷଂ ପୁତ୍ରମଙ୍ଗଦମଙ୍ଗନା ।
ଅବସ୍ଥାଂ ପଶ୍ଚିମାଂ ପଶ୍ୟ ପିତୁଃ ପୁତ୍ର ସୁଦାରୁଣାମ୍ । ୨୨ ।
ସଂପ୍ରସକ୍ତସ୍ୟ ବୈରସ୍ୟ ଗତୋଽନ୍ତଃ ପାପକର୍ମଣା ।
ବାଲସୂର୍ଯ୍ୟୋଜ୍ଜ୍ୱଲତନୁଂ ପ୍ରୟାତଂ ଯମସାଦନମ୍ ।୨୩।
ଅଭିବାଦୟ ରାଜାନଂ ପିତରଂ ପୁତ୍ର ମାନଦମ୍ ।
ଏବମୁକ୍ତଃ ସମୁତ୍ଥାୟ ଜଗ୍ରାହ ଚରଣୌ ପିତୁଃ । ୨୪ ।
ଭୁଜାଭ୍ୟାଂ ପୀନବୃତ୍ତାଭ୍ୟାମଙ୍ଗଦୋଽହମିତି ବ୍ରୁବନ୍ ।
ଅଭିବାଦୟମାନଂ ତ୍ୱାମଙ୍ଗଦଂ ତ୍ୱଂ ଯଥା ପୁରା । ୨୫ ।
ଦୀର୍ଘାୟୁର୍ଭବ ପୁତ୍ରେତି କିମର୍ଥଂ ନାଭିଭାଷସେ ।
ଅହଂ ପୁତ୍ରସହାୟା ତ୍ୱାମୁପାସେ ଗତଚେତନମ୍ ।
ସିଂହେନ ପାତିତଂ ସଦ୍ୟୋ ଗୌଃ ସବତ୍ସେବ ଗୋବୃଷମ୍ ।୨୬।
ଇଷ୍ଟ୍ୱା ସଙ୍ଗ୍ରାମଯଜ୍ଞେନ ରାମପ୍ରହରଣାମ୍ଭସା ।
ତସ୍ମିନ୍ନବଭୃଥେ ସ୍ନାତଃ କଥଂ ପତ୍ନ୍ୟା ମୟା ବିନା । ୨୭ ।
ଯା ଦତ୍ତା ଦେବରାଜେନ ତବ ତୁଷ୍ଟେନ ସଂଯୁଗେ ।
ଶାତକୌମ୍ଭୀଂ ପ୍ରିୟାଂ ମାଲାଂ ତାଂ ତେ ପଶ୍ୟାମି ନେହ କିମ୍ ।୨୮

---

ଏବଂ ରକ୍ତାକ୍ତ କଳେବର ମୃତ ପତିଙ୍କୁ ଗୃହି ପୀତଚକ୍ଷୁଯୁକ୍ତ ପୁତ୍ର ଅଙ୍ଗଦକୁ କହିଲା । "ହେ ପୁତ୍ର ! ପିତାଙ୍କର ଏହି ଦାରୁଣ ଅନ୍ତିମ ଅବସ୍ଥାକୁ ଦେଖ ।୨୦-୨୨। ପାପକାର୍ଯ୍ୟରୁ ଉତ୍ପନ୍ନ ପ୍ରାକ୍ତନ ବୈରିତାର ଆଜ ଅନ୍ତ ହେଲା । ବାଳସୂର୍ଯ୍ୟସଦୃଶ ପ୍ରକାଶମାନ ଏ ଶରୀର ଆଜ ଯମାଳୟକୁ ଚାଲିଯାଉଛି । ୨୩ । ହେ ପୁତ୍ର ! ନିଜର ପିତା ମାନଦ ରାଜାଙ୍କୁ ପ୍ରଣାମ କର ।" ଏହିପରି କହିବା ପରେ ଅଙ୍ଗଦ ଉଠି ପିତାଙ୍କର ଚରଣ ଧାରଣ କଲା । ୨୪ । "ପୃଥୁଳ ଏବଂ ସୁଗୋଲ ଭୁଜଦ୍ୱାରା ଚରଣ ଧାରଣ କରି 'ମୁଁ ଅଙ୍ଗଦ' ଏହି କଥା କହି ପ୍ରଣାମ କଲେ ମଧ୍ୟ ହେ ଆର୍ଯ୍ୟପୁତ୍ର ! ତୁମେ କାହିଁକି କିଛି କହୁ ନାହଁ । ପୂର୍ବେ ତ ଅଙ୍ଗଦ ପ୍ରଣାମ କଲାବେଳେ ତୁମେ "ଦୀର୍ଘାୟୁ ହୁଅ" ବୋଲି କହୁଥିଲ । ଯେପରି ବୃଷଭ ସିଂହଦ୍ୱାରା ହତ ହେବା ପରେ ଗାଈ ବତ୍ସ ସହିତ ତାହା ନିକଟରେ ଉପସ୍ଥିତ ଥାଏ, ସେହିପରି ମୁଁ ପୁତ୍ର ସହିତ ବର୍ତ୍ତମାନ ତୁମ ଶବ ନିକଟରେ ଉପସ୍ଥିତ ରହିଛି । ୨୫-୨୬ । ତୁମେ ସଂଗ୍ରାମରୂପ ଯଜ୍ଞ କଲ; ମାତ୍ର ତହିଁରେ ରାମଚନ୍ଦ୍ରଙ୍କର ଅସ୍ତ୍ରରୂପ ଜଳରେ ମୋତେ ବାଦ ଦେଇ ଏକାକୀ କାହିଁକି ସ୍ନାନ କଲ ? । ୨୭ । ଇନ୍ଦ୍ର ଯୁଦ୍ଧରେ ପ୍ରସନ୍ନ ହୋଇ ତୁମକୁ ଯେ ସୁବର୍ଣ୍ଣମାଳା ଦେଇଥିଲେ ଏବଂ ଯେଉଁ ମାଳା ତୁମର ଅତିଶୟ ପ୍ରିୟ ଥିଲା, ତାହାକୁ ମୁଁ ବର୍ତ୍ତମାନ କାହିଁକି ତୁମ

ରାଜ୍ୟଶ୍ରୀର୍ନ ଜହାତି ତ୍ୱାଂ ଗତାସୁମପି ମାନଦ ।
ସୂର୍ଯସ୍ୟାବର୍ତ୍ତମାନସ୍ୟ ଶୈଳରାଜମିବ ପ୍ରଭା । ୨୯ ।
ନ ମେ ବଚଃ ପଥ୍ୟମିଦଂ ତ୍ୱୟା କୃତମ୍
ନ ଚାସ୍ମି ଶକ୍ତା ହି ନିବାରଣେ ତବ ।
ହତା ସପୁତ୍ରାସ୍ମି ହତେନ ସଂଯୁଗେ
ସହ ତ୍ୱୟା ଶ୍ରୀର୍ବିଜହାତି ମାମପି । ୩୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ଅଙ୍ଗଦାଭିବାଦନମ୍
ନାମ ଷଚ୍ଯୋବିଂଶଃ ସର୍ଗଃ

---

ଦେହରେ ଦେଖୁନାହିଁ ?।୨୮। ହେ ମାନଦ ! ଯେପରି ସୂର୍ଯ୍ୟ ବୁଡ଼ିଗଲେ ମଧ୍ୟ ତାହାଙ୍କର ପ୍ରଭା ମେରୁ ପର୍ବତକୁ ତ୍ୟାଗ କରେ ନାହିଁ; ସେହିପରି ତୁମେ ପ୍ରାଣ ଛାଡ଼ିଲେ ସୁଦ୍ଧା ରାଜ୍ୟଶ୍ରୀ ତୁମକୁ ତ୍ୟାଗ କରୁ ନାହିଁ । ୨୯ । ତୁମେ ମୋର ହିତ ପରାମର୍ଶ ମାନିଲ ନାହିଁ ଏବଂ ମୁଁ ତୁମକୁ ରୋକି ରଖିପାରିଲି ନାହିଁ । ଯୁଦ୍ଧରେ ତୁମେ ହତ ହେବାରେ ମୁଁ ମଧ୍ୟ ସପୁତ୍ର ହତ ହେଲି; ରାଜ୍ୟଶ୍ରୀ ତୁମ ସଙ୍ଗେ ସଙ୍ଗେ ମୋତେ ମଧ୍ୟ ତ୍ୟାଗ କଲା" । ୩୦ ।

# ଚତୁର୍ବିଂଶଃ ସର୍ଗଃ

## ସୁଗ୍ରୀବତାରାସମାଶ୍ୱାସନମ୍

ତାଂ ତ୍ୱଶ୍ରୁବେଗେନ ଦୁରାସଦେନ
ତ୍ୱଭିପ୍ଳୁତାଂ ଶୋକମହାର୍ଣବେନ ।
ପଶ୍ୟଂସ୍ତଦା ବାଲ୍ୟନୁଜସ୍ତରସ୍ୱୀ
ଭ୍ରାତୁର୍ବଧେନାପ୍ରତିମେନ ତେପେ ।୧।
ସ ବାଷ୍ପପୂର୍ଣେନ ମୁଖେନ ପଶ୍ୟନ୍
କ୍ଷଣେନ ନିର୍ବିଣ୍ଣମନା ମନସ୍ୱୀ ।
ଜଗାମ ରାମସ୍ୟ ଶନୈଃ ସମୀପମ୍
ଭୃତ୍ୟୈର୍ବୃତଃ ସଂପରିଦୂୟମାନଃ ।୨।
ସ ତଂ ସମାସାଦ୍ୟ ଗୃହୀତଚାପ -
ମୁଦାତ୍ତମାଶୀବିଷତୁଲ୍ୟବାଣମ୍ ।
ଯଶସ୍ୱିନଂ ଲକ୍ଷଣଲକ୍ଷିତାଙ୍ଗ-
ମବସ୍ଥିତଂ ରାଘବମିତ୍ୟୁବାଚ । ୩ ।
ଯଥାପ୍ରତିଜ୍ଞାତମିଦଂ ନରେନ୍ଦ୍ର
କୃତଂ ତ୍ୱୟା ଦୃଷ୍ଟଫଳଂ ଚ କର୍ମ ।
ମମାଦ୍ୟ ଭୋଗେଷୁ ନରେନ୍ଦ୍ରସୂନୋ
ମନୋ ନିବୃତ୍ତଂ ହତଜୀବିତେନ । ୪।

---

## ୨୪ଶ ସର୍ଗ

(ରାମଙ୍କର ସୁଗ୍ରୀବ ଏବଂ ତାରାଙ୍କୁ ଆଶ୍ୱାସନାପ୍ରଦାନ)

ବାଳୀର ବେଗବାନ୍ ଶ୍ରେଷ୍ଠ ଭାଇ ତାରାଙ୍କୁ ଅତି ବେଗରେ ଶୋକସାଗରରେ ନିମଗ୍ନ ହେବାର ଦେଖି ଏବଂ ଅସାଧାରଣ ଭ୍ରାତାର ବଧନିମନ୍ତେ ଅନୁତାପ କଲେ । ୧ । ତାଙ୍କର ମୁଖ ଅଶ୍ରୁରେ ପୂର୍ଣ୍ଣ ହୋଇଗଲା । ମନେ ମନେ ଦୁଃଖିତ ହୋଇ ନିଜର ଭୃତ୍ୟମାନଙ୍କ ସହିତ ସେ ଧୀରେ ଧୀରେ ରାମଚନ୍ଦ୍ରଙ୍କ ନିକଟକୁ ଗଲେ । ୨ । ରାମଚନ୍ଦ୍ର ଧନୁ ଏବଂ ସର୍ପତୁଲ୍ୟ ବାଣ ଧାରଣକରି ବସିଥିଲେ । ସେଠାରେ ବସି ରହିଥିବା ସର୍ବଲକ୍ଷଣସମ୍ପନ୍ନ, ଯଶସ୍ୱୀ, ରାମଚନ୍ଦ୍ରଙ୍କୁ ସୁଗ୍ରୀବ କହିଲେ ।୩। "ହେ ନରେନ୍ଦ୍ର ! ଆପଣ ଯେପ୍ରକାର ପ୍ରତିଜ୍ଞା କରିଥିଲେ ତାହା ପୂରଣ କଲେ ଏବଂ ତାହାର ଫଳ ମଧ୍ୟ ଦେଖାଗଲା । ମାତ୍ର, ହେ ରାଜପୁତ୍ର ! ଆଜ ଏ ଗର୍ହିତ ଜୀବନର ଭୋଗବାସନାରୁ ମୋର

ଅସ୍ୟାଂ ମହିଷ୍ୟାଂ ତୁ ଭୃଶଂ ରୁଦନ୍ତ୍ୟାମ୍
ପୁରେଽତିବକ୍ରୋଶତି ଦୁଃଖିତପ୍ତେ ।
ହତେ ନୃପେ ସଂଶୟିତେଽଙ୍ଗଦେ ଚ
ନ ରାମ ରାଜ୍ୟେ ରମତେ ମନୋ ମେ ।୫।
କ୍ରୋଧାଦମର୍ଷାଦତିବିପ୍ରଧର୍ଷାଦ୍-
ଭ୍ରାତୁର୍ବଧୋ ମେଽନୁମତଃ ପୁରସ୍ତାତ୍ ।
ହତେ ତ୍ୱିଦାନୀଂ ହରିୟୂଥପେଽସ୍ମିନ୍
ସୁତୀକ୍ଷ୍ଣମିକ୍ଷ୍ୱାକୁବର ପ୍ରତପ୍ସ୍ୟେ । ୬ ।
ଶ୍ରେୟୋଽଦ୍ୟ ମନ୍ୟେ ମମ ଶୈଳମୁଖ୍ୟେ
ତସ୍ମିନ୍ନିବାସଶ୍ଚିରମୃଶ୍ୟମୂକେ ।
ଯଥାତଥା ବର୍ତ୍ତୟତଃ ସ୍ୱବୃତ୍ତ୍ୟା
ନେମଂ ନିହତ୍ୟ ତ୍ରିଦିବସ୍ୟ ଲାଭଃ । ୭ ।
ନ ତ୍ୱାଂ ଜିଘାଂସାମି ଚରେତି ଯନ୍ମା-
ମୟଂ ମହାତ୍ମା ମତିମାନୁବାଚ ।
ତସ୍ୟୈବ ତଦ୍ରାମ ବଚୋଽନୁରୂପ-
ମିଦଂ ବଚଃ କର୍ମ ଚ ମେଽନୁରୂପମ୍ । ୮ ।

---

ମନ ନିବୃତ୍ତ ହୋଇ ଯାଇଅଛି । ୪ । ଏହି ମହାରାଣୀ ଅତ୍ୟନ୍ତ ରୋଦନ କରୁଥିବାରୁ, ପୁରବାସୀମାନଙ୍କର ଦୁଃଖିତ କ୍ରନ୍ଦନ ଶୁଣି ଏବଂ ରାଜା ମରିଯିବାଯୋଗୁଁ ଅଙ୍ଗଦର ମନରେ ସନ୍ଦେହ ଉତ୍ପନ୍ନ ହେଉଥିବାରୁ ମୋର ମନ ବର୍ତ୍ତମାନ ଆଉ ରାଜ୍ୟରେ ଲାଗୁ ନାହିଁ । ୫ । ଭାଇର ଅସହ୍ୟ ତିରସ୍କାରହେତୁରୁ କ୍ରୋଧବଶତଃ ମୁଁ ପ୍ରଥମେ ତାହାର ବଧ ଇଚ୍ଛା କରୁଥିଲି;ମାତ୍ର ହେ ଇକ୍ଷ୍ୱାକୁଶ୍ରେଷ୍ଠ ! ବର୍ତ୍ତମାନ ସେ ନିହତହେବାରୁ ମୋର ଅତ୍ୟନ୍ତ ଦୁଃଖ ହେଉଅଛି ।୬। ଆଜ ମୁଁ ପର୍ବତଶ୍ରେଷ୍ଠ ଋଷ୍ୟମୂକ ପର୍ବତଉପରେ ଚିରଦିନ ବାସ କରି, କୌଣସି ପ୍ରକାରେ ଜୀବନଯାତ୍ରା ନିର୍ବାହ କରିବାକୁ ଶ୍ରେୟସ୍କର ମନେକରୁଛି, ଅଥଚ ଏ ଭାଇକୁ ମାରି ସ୍ୱର୍ଗଲାଭ କରିବା ମଧ୍ୟ ମୋତେ ଶ୍ରେୟସ୍କର ବୋଧ ହେଉନାହିଁ । ୭ । ଉଦାରମନା ମହାତ୍ମା ବାଳୀ ମୋତେ କହିଥିଲେ କି "ମୁଁ ତୋତେ ମାରିବାକୁ ଚାହୁଁ ନାହିଁ, ତୁ ଏଠାରୁ ବାହାରି ଯା ।" ହେ ରାମ ! ସେ ବଚନ ବାସ୍ତବିକ ତାହାଙ୍କର ଯୋଗ୍ୟ ଥିଲା; ଆଉ ମୁଁ ଯେ ତାହାଙ୍କୁ ହତ୍ୟାକରାଇଲି ସେ କର୍ମ ମୋରହିଁ ଅନୁରୂପ ଅଟେ । ୮ । ପ୍ରଭୂତଗୌରବରେ ପୁରସ୍କାର ଲାଭ କଲେ

ଭ୍ରାତା କଥଂ ନାମ ମହାଗୁଣସ୍ୟ -
ଭ୍ରାତୁର୍ବଧଂ ରାମ ବିରୋଚୟେତ ।
ରାଜ୍ୟସ୍ୟ ଦୁଃଖସ୍ୟ ଚ ବୀର ସାରମ୍‌
ବିଚିନ୍ତୟନ୍‌ କାମପୁରସ୍କୃତୋଽପି । ୯ ।
ବଧୋ ହି ମେ ମତୋ ନାସୀତ୍ ସ୍ୱମାହାତ୍ମ୍ୟବ୍ୟତିକ୍ରମାତ୍ ।
ମମାସୀଦ୍‌ବୁଦ୍ଧି ଦୌରାତ୍ମ୍ୟାତ୍ ପ୍ରାଣହାରୀ ବ୍ୟତିକ୍ରମଃ । ୧୦ ।
ଦ୍ରୁମଶାଖାବଭଗ୍ନୋଽହଂ ମୁହୂର୍ତ୍ତଂ ପରିନିଷ୍ଟନନ୍ ।
ସାନ୍ତ୍ୱୟିତ୍ୱା ତ୍ୱନେନୋକ୍ତୋ ନ ପୁନଃ କର୍ତ୍ତୁମର୍ହସି । ୧୧ ।
ଭ୍ରାତୃତ୍ୱମାର୍ଯ୍ୟଭାବଶ୍ଚ ଧର୍ମଶ୍ଚାନେନ ରକ୍ଷିତଃ ।
ମୟା କ୍ରୋଧଶ୍ଚ କାମଶ୍ଚ କପିତ୍ୱଂ ଚ ପ୍ରଦର୍ଶିତମ୍ । ୧୨ ।
ଅଚିନ୍ତନୀୟଂ ପରିବର୍ଜନୀୟ-
ମନୀପ୍‌ସନୀୟଂ ତ୍ୱନବେକ୍ଷଣୀୟମ୍ ।
ପ୍ରାପ୍ତୋଽସ୍ମି ପାପ୍ମାନମିଦଂ ବୟସ୍ୟ
ଭ୍ରାତୁର୍ବଧାତ୍ତ୍ୱାଷ୍ଟ୍ରବଧାଦିବେନ୍ଦ୍ରଃ । ୧୩ ।
ପାପ୍ମାନମିନ୍ଦ୍ରସ୍ୟ ମହୀ ଜଲଂ ଚ
ବୃକ୍ଷାଶ୍ଚ କାମଂ ଜଗୃହୁଃ ସ୍ତ୍ରିୟଶ୍ଚ ।

---

ମଧ୍ୟ ରାଜ୍ୟଭୋଗ ଏବଂ ଭ୍ରାତୃବଧ ଦୁଃଖ ଏ ଦୁଇଟି ମଧ୍ୟରେ ପ୍ରଭେଦ ବିଚାର କଲେ ଭାଇକୁ କେବେହେଲେ ନିଜର ଗୁଣବାନ୍ ଭାଇର ବଧ ସୁଖକର ବୋଧ ହେବ କି ? ।୯। ବାଳୀ ମୋତେ ବଧ କରିବାକୁ ଇଚ୍ଛୁକ ନ ଥିଲା; କାରଣ ତଦ୍ୱାରା ତାହାର ନିଜର ଗୌରବରେ କଳଙ୍କ ଲାଗିବାର ଆଶଙ୍କା ଥିଲା । ମାତ୍ର ଦୁର୍ଜନତାବଶତଃ ମୁଁ ଭାଇର ପ୍ରାଣ ନେବାକୁ ଇଚ୍ଛା କରୁଥିଲି । ୧୦ । ସେ ବୃକ୍ଷଶାଖାଦ୍ୱାରା ମୋତେ ପ୍ରହାର କରିବାରେ ମୁଁ ଯେତେବେଳେ କିଛିକ୍ଷଣପାଇଁ ଏକାବେଳକେ ବିଚଳିତ ହୋଇପଡ଼ିଲି, ସେତେବେଳେ ବାଳୀ ମୋତେ ବୁଝାଇ କହିଲା, "ପୁଣି ଆଉ ଏପରି କେବେ କରିବୁ ନାହିଁ ।" ୧୧ । ବାଳୀ ଭ୍ରାତୃଭାବ, ନିଜର ମହତ୍ତ୍ୱ ଏବଂ ଧର୍ମ ରକ୍ଷା କରିଥିଲା, ମାତ୍ର ମୁଁ କ୍ରୋଧ, କାମ ଏବଂ ବାନରସ୍ୱଭାବସୁଲଭ ଚପଳତା ଦେଖାଇଲି ।୧୨। ହେ ବନ୍ଧୋ ! ଅଚିନ୍ତନୀୟ, ବର୍ଜନୀୟ, ଅନୀପ୍‌ସିତ ତଥା ଦେଖିବାର ଅଯୋଗ୍ୟ ଏହି ଯେ ଭ୍ରାତୃବଧ ପାପ ମୁଁ କଲି ତାହା ତ୍ୱଷ୍ଟା ବଧରେ ଇନ୍ଦ୍ରଙ୍କ ପାପପରି ହେଲା ।୧୩। ଇନ୍ଦ୍ରଙ୍କ ପାପକୁ ପୃଥିବୀ, ଜଳ, ବୃକ୍ଷ ଏବଂ ସ୍ତ୍ରୀମାନେ ସ୍ୱଇଚ୍ଛାରେ ବିଭାଗ କରି ନେଇଥିଲେ । ମାତ୍ର ମୋସଦୃଶ

କୋ ନାମ ପାପ୍ମାନମିଦଂ ସହେତ
ଶାଖାମୃଗସ୍ୟ ପ୍ରତିପତ୍ତୁମିଚ୍ଛେତ୍ । ୧୪ ।
ନାର୍ହାମି ସଂମାନମିମଂ ପ୍ରଜାନାମ୍
ନ ଯୌବରାଜ୍ୟଂ କୁତ ଏବ ରାଜ୍ୟମ୍ ।
ଅଧର୍ମଯୁକ୍ତଂ କୁଳନାଶଯୁକ୍ତ-
ମେବଂବିଧଂ ରାଘବ କର୍ମ କୃତ୍ୱା । ୧୫ ।
ପାପସ୍ୟ କର୍ତ୍ତାସ୍ମି ବିଗର୍ହିତସ୍ୟ
କ୍ଷୁଦ୍ରସ୍ୟ ଲୋକାପକୃତସ୍ୟ ଲୋକେ ।
ଶୋକୋ ମହାନ୍ମାମଭିବର୍ତ୍ତତେଽୟଂ
ବୃଷ୍ଟେର୍ଯଥା ନିମ୍ନମିବାମ୍ବୁବେଗଃ । ୧୬ ।
ସୋଦର୍ଯଘାତାପରଗାତ୍ରବାଲଃ
ସଂତାପହସ୍ତାକ୍ଷିଶିରୋବିଷାଣଃ ।
ଏନୋମୟୋ ମାମଭିହନ୍ତି ହସ୍ତୀ
ଦୃପ୍ତୋ ନଦୀକୂଳମିବ ପ୍ରବୃଦ୍ଧଃ । ୧୭ ।
ଅହୋ ବତେଦଂ ନୃବରାବିଷହ୍ୟମ୍
ନିବର୍ତ୍ତତେ ମେ ହୃଦି ସାଧୁ ବୃତ୍ତମ୍ ।
ଅଗ୍ନୌ ବିବର୍ଣଂ ପରିତପ୍ୟମାନମ୍
କିଟ୍ଟଂ ଯଥା ରାଘବ ଜାତରୂପମ୍ । ୧୮ ।

---

ବାନରର ପାପକୁ କିଏ ମୁଣ୍ଡାଇବାକୁ କାହିଁକି ଇଚ୍ଛାକରିବ ।୧୪। ଅଧର୍ମଯୁକ୍ତ ଏବଂ କୁଳନାଶୀ ଏପରି କର୍ମ କରି, ହେ ରାମଚନ୍ଦ୍ର ! ମୁଁ ପ୍ରଜାମାନଙ୍କର ସମ୍ମାନ ଲାଭ କରିବାକୁ ଇଚ୍ଛା କରୁନାହିଁ । ଯୁବରାଜ ହେବାକୁ ମଧ୍ୟ ଇଚ୍ଛା କରୁ ନାହିଁ ; ରାଜ୍ୟ ଗ୍ରହଣ କରିବା ତ ଦୂରର କଥା । ୧୫ । ଅଥଚ ଲୋକାପକାରୀ ବ୍ୟକ୍ତିର ଗର୍ହିତ ପାପ ମୁଁ କରିଅଛି । ଯେପରି ବୃଷ୍ଟିର ଜଳଧାରା ନିମ୍ନଆଡ଼କୁ ଗଡ଼ିଯାଏ, ସେହିପରି ଏ ମହାଶୋକସ୍ରୋତ ମୋଆଡ଼କୁ ମାଡ଼ିଆସୁଛି । । ୧୬ । ଯେପରି ଉନ୍ମତ୍ତ ହସ୍ତୀ ନଦୀତଟକୁ ଭାଙ୍ଗିପକାଏ, ସେହିପରି ଏ ପାପରୂପୀ ହସ୍ତୀ ମୋତେ ଆଘାତ କରୁଅଛି । ଭ୍ରାତୃବଧ ଏ ହସ୍ତୀର ଲାଙ୍ଗୁଳର ବାଳ ଅଟେ ଏବଂ ବହୁବିଧ ସନ୍ତାପ ତାହାର ଶୁଣ୍ଢ, ଆଖି, କାନ, ମସ୍ତକ ଏବଂ ଦାନ୍ତ ଅଟେ । ୧୭ । ହେ ନରଶ୍ରେଷ୍ଠ ! ଅଗ୍ନିରେ ଉତପ୍ତ ହେଲେ କୁତ୍ସିତ ମଳ ଯେପରି ସୁବର୍ଣ୍ଣର ସଂସର୍ଗ ତ୍ୟାଗକରେ ସେହିପରି ଏ ଅସହ୍ୟ ପାପ ମୋର ହୃଦୟର ସଚ୍ଚରିତ୍ରକୁ ନଷ୍ଟ କରି ଦେଉଅଛି ।୧୮। ହେ ରାଘବ ! ମୋରଯୋଗୁଁ ମହାବଳୀ

ମହାବଳାନାଂ ହରିୟୂଥପାନା-
ମିଦଂ କୁଳଂ ରାଘବ ମନ୍ନିମିତ୍ତମ୍ ।
ଅସ୍ୟାଙ୍ଗଦସ୍ୟାପି ଚ ଶୋକତାପା-
ଦର୍ଧସ୍ଥିତପ୍ରାଣମିତୀବ ମନ୍ୟେ । ୧୯ ।
ସୁତଃ ସୁଲଭ୍ୟଃ ସୁଜନଃ ସୁବଶ୍ୟଃ
କୁତସ୍ତୁ ପୁତ୍ରଃ ସଦୃଶୋଽଙ୍ଗଦେନ ।
ନ ଚାପି ବିଦ୍ୟେତ ସ ବୀର ଦେଶୋ
ଯସ୍ମିନ୍ ଭବେତ୍‌ସୋଦରସନ୍ନିକର୍ଷଃ । ୨୦ ।
ଅଦ୍ୟାଙ୍ଗଦୋ ବୀରବରୋ ନ ଜୀବେ-
ଜ୍ଜୀବେତ ମାତା ପରିପାଳନାର୍ଥମ୍ ।
ବିନା ତୁ ପୁତ୍ରଂ ପରିତାପଦୀନା
ସା ନୈବ ଜୀବେଦିତି ନିଶ୍ଚିତଂ ମେ । ୨୧ ।
ସୋଽହଂ ପ୍ରବେକ୍ଷ୍ୟାମ୍ୟତିଦୀପ୍ତମଗ୍ନିମ୍
ଭ୍ରାତ୍ରା ଚ ପୁତ୍ରେଣ ଚ ସଖ୍ୟମିଚ୍ଛନ୍ ।
ଇମେ ବିଚେଷ୍ୟନ୍ତି ହରିପ୍ରବୀରାଃ
ସୀତାଂ ନିଦେଶେ ପରିବର୍ତ୍ତମାନାଃ । ୨୨ ।
କୃତ୍ସ୍ନଂ ତୁ ତେ ସେତ୍ସ୍ୟତି କାର୍ଯମେତ-
ନ୍ମୟ୍ୟପ୍ୟତୀତେ ମନୁଜେନ୍ଦ୍ରପୁତ୍ର ।

---

ବାନରଦଳପତିମାନଙ୍କର ଏବଂ ଆମ ବଂଶର ତଥା ଏ ଅଙ୍ଗଦର ପ୍ରାଣ ଶୋକତାପରେ ଅର୍ଦ୍ଧେକ ବିନଷ୍ଟ ହୋଇ ଯାଇଥିବାର ମୁଁ ମନେକରୁଅଛି ।୧୯। ପୁତ୍ର ମିଳିପାରେ, ସେ ସଜ୍ଜନ ହୋଇପାରେ ଏବଂ ବଶରେ ରହିପାରେ; ମାତ୍ର ଅଙ୍ଗଦସଦୃଶ ପୁତ୍ର କେଉଁଠାରୁ ମିଳିବ ? ହେ ବୀର ! ଏପରି ଦେଶ ନାହିଁ, ଯେଉଁଠାକୁ ଗଲେ ସହୋଦର ଭାଇର ସାକ୍ଷାତ୍କାର ହୋଇ ପାରିବ । ୨୦। ବୀରବର ଅଙ୍ଗଦ ବୋଧହୁଏ ବଞ୍ଚିବ ନାହିଁ । ସେ ଯଦି ବଞ୍ଚନ୍ତା, ତାହାହେଲେ ତାହାକୁ ପରିପାଳନ କରିବାନିମନ୍ତେ ତାର ମାତା ଅବା ବଞ୍ଚିରହନ୍ତା । ପୁତ୍ର ବିନା ଅତ୍ୟନ୍ତ ଖେଦକ୍ଷୀଣ ହୋଇ ସେ (ତାରା) ମଧ୍ୟ ବଞ୍ଚିପାରିବ ନାହିଁ, ଏହା ମୋର ଧ୍ରୁବବିଶ୍ୱାସ ଅଟେ । ୨୧ । ଭାଇ ଏବଂ ପୁତ୍ର ସହିତ ସଖ୍ୟ ଇଚ୍ଛାକରି ମୁଁ ବର୍ତ୍ତମାନ ଜ୍ୱଳନ୍ତ ଅଗ୍ନିରେ ପ୍ରବେଶ କରିବି । ଏହି ବାନରବୀରମାନେ ଆପଣଙ୍କ ଆଦେଶ ଅନୁସାରେ ବୁଲି ବୁଲି ସୀତାଙ୍କର ଅନୁସନ୍ଧାନ କରିବେ । ୨୨ । ହେ ରାଜପୁତ୍ର ରାମ ! ମୁଁ ମରିଗଲେ ମଧ୍ୟ ଆପଣଙ୍କର ସବୁ କାର୍ଯ୍ୟ ସିଦ୍ଧ ହେବ । କୁଳନାଶକାରୀ, ଅଯୋଗ୍ୟ ଏବଂ ଅପରାଧୀ ମୋତେ ମରିବା ପାଇଁ ଅନୁମତି

କୁଳସ୍ୟ ହନ୍ତାରମଜୀବନାର୍ହମ୍
ରାମାନୁଜାନୀହି କୃତାଗସଂ ମାମ୍ । ୨୩ ।
ଇତ୍ୟେବମାର୍ତ୍ତସ୍ୟ ରଘୁପ୍ରବୀରଃ
ଶ୍ରୁତ୍ୱା ବଚୋ ବାଳିଜଘନ୍ୟଜସ୍ୟ ।
ସଂଜାତବାଷ୍ପଃ ପରବୀରହନ୍ତା
ରାମୋ ମୁହୂର୍ତ୍ତଂ ବିମନା ବଭୂବ । ୨୪ ।
ତସ୍ମିନ୍ କ୍ଷଣେଽଭୀକ୍ଷମବେକ୍ଷମାଣଃ
କ୍ଷିତିକ୍ଷମାବାନ୍ ଭୁବନସ୍ୟ ଗୋପ୍ତା ।
ରାମୋ ରୁଦନ୍ତୀଂ ବ୍ୟସନେ ନିମଗ୍ନାମ୍
ସମୁତ୍ସୁକଃ ସୋଽଥ ଦଦର୍ଶ ତାରାମ୍ । ୨୫ ।
ତାଂ ଚାରୁନେତ୍ରାଂ କପିସିଂହନାଥାମ୍
ପତିଂ ସମାଶ୍ଲିଷ୍ୟ ତଦା ଶୟାନାମ୍
ଉତ୍ଥାପୟାମାସୁରଦୀନସତ୍ତ୍ୱାମ୍
ମନ୍ତ୍ରିପ୍ରଧାନାଃ କପିରାଜପତ୍ନୀମ୍ । ୨୬ ।
ସା ବିସ୍ଫୁରନ୍ତୀ ପରିରଭ୍ୟମାଣା
ଭର୍ତ୍ତୁଃ ସମୀପାଦପନୀୟମାନା ।
ଦଦର୍ଶ ରାମଂ ଶରଚାପପାଣିମ୍
ସ୍ୱତେଜସା ସୂର୍ଯ୍ୟମିବ ଜ୍ୱଲନ୍ତମ୍ । ୨୭ ।
ସୁସଂବୃତଂ ପାର୍ଥିବଲକ୍ଷଣୈଶ୍ଚ
ତଂ ଚାରୁନେତ୍ରଂ ମୃଗଶାବନେତ୍ରା ।

---

ବଙ୍ଗ । ୨୩ । ବାଳୀର ସାନ ଭାଇ ଦୁଃଖୀ ସୁଗ୍ରୀବର ଏହି ପ୍ରକାର କଥା ଶୁଣି ରାମଚନ୍ଦ୍ରଙ୍କର ଚକ୍ଷୁ ଲୋତକରେ ପୂର୍ଣ୍ଣ ହୋଇଗଲା । ଶତ୍ରୁହନ୍ତା ରାମଚନ୍ଦ୍ର କିଛିକାଳ ପାଇଁ ବିମର୍ଷ ହୋଇ ପଡ଼ିଲେ ।୨୪। ଏହି ସମୟରେ ପୃଥିବୀସଦୃଶ କ୍ଷମାଶୀଳ ଏବଂ ଜଗତ୍‌ରକ୍ଷକ ରାମଚନ୍ଦ୍ର ବାରମ୍ବାର ଏଣେତେଣେ ଦୃଷ୍ଟିପାତ କରି ଶୋକମଗ୍ନା ତାରାକୁ ରୋଦନ କରୁଥିବାର ଦେଖିଲେ । ୨୫ । ସୁଲୋଚନା କପିରାଜପତ୍ନୀ ତାର ସ୍ୱାମୀଙ୍କୁ ଆଲିଙ୍ଗନ କରି ପଡ଼ିରହିଥିଲେ । ପ୍ରଧାନ ମନ୍ତ୍ରୀମାନେ ସେହି ତେଜସ୍ୱିନୀଙ୍କୁ ସେଠାରୁ ଉଠାଇଲେ । ୨୬ । ପତିଙ୍କ ଆଲିଙ୍ଗନରୁ ତାଙ୍କୁ ଛଡ଼ାଇ ନେଇଯିବାବେଳେ ଥରି ଥରି ତାରା ସୂର୍ଯ୍ୟସଦୃଶ ଦୀପ୍ତିମାନ ଧନୁର୍ବାଣଧାରୀ ରାମଚନ୍ଦ୍ରଙ୍କୁ ଦେଖିଲେ । ୨୭ ।

ଅଦୃଷ୍ଟପୂର୍ବଂ ପୁରୁଷପ୍ରଧାନ-
ମୟଂ ସ କାକୁତ୍‌ସ୍ଥ ଇତି ପ୍ରଜଜ୍ଞେ । ୨୮ ।
ତସ୍ୟେନ୍ଦ୍ରକଳ୍ପସ୍ୟ ଦୁରାସଦସ୍ୟ
ମହାନୁଭାବସ୍ୟ ସମୀପମାର୍ଯ୍ୟା ।
ଆର୍ତ୍ତାତ୍ତ୍ୱର୍ଣଂ ବ୍ୟସନେ ପ୍ରପନ୍ନା
ଜଗାମ ତାରା ପରିବହ୍ୱଳନ୍ତୀ । ୨୯ ।
ତଂ ସା ସମାସାଦ୍ୟ ବିଶୁଦ୍ଧସତ୍ତ୍ୱମ୍
ଶୋକେନ ସଂଭ୍ରାନ୍ତଶରୀରଭାବା ।
ମନସ୍ୱିନୀ ବାକ୍ୟମୁବାଚ ତାରା
ରାମଂ ରଣୋତ୍କର୍ଷଣଲବ୍ଧଲକ୍ଷମ୍ । ୩୦ ।
ତ୍ୱମପ୍ରମେୟଶ୍ଚ ଦୁରାସଦଶ୍ଚ
ଜିତେନ୍ଦ୍ରିୟଶ୍ଚୋତ୍ତମଧାର୍ମିକଶ୍ଚ ।
ଅକ୍ଷୀଣକୀର୍ତ୍ତିଶ୍ଚ ବିଚକ୍ଷଣଶ୍ଚ
କ୍ଷିତିକ୍ଷମାବାନ୍ କ୍ଷତଜୋପମାକ୍ଷଃ । ୩୧ ।
ତ୍ୱମାତ୍ତବାଣାସନବାଣପାଣି-
ର୍ମହାବଲଃ ସଂହନନୋପପନ୍ନଃ ।
ମନୁଷ୍ୟଦେହାଭ୍ୟୁଦୟଂ ବିହାୟ
ଦିବ୍ୟେନ ଦେହାଭ୍ୟୁଦୟେନ ଯୁକ୍ତଃ । ୩୨ ।

---

ସୁନ୍ଦରନେତ୍ରବିଶିଷ୍ଟ, ରାଜଲକ୍ଷଣସମ୍ପନ୍ନ, ଅଦୃଷ୍ଟପୂର୍ବ ଏହି ଶ୍ରେଷ୍ଠ ପୁରୁଷଙ୍କୁ ଦେଖି ମୃଗନୟନୀ ତାରା 'ଏ ରାମଚନ୍ଦ୍ର' ବୋଲି ଜାଣିଲେ । ୨୮ । ଦୁଃଖିତା ବିପଦ୍‌ଗ୍ରସ୍ତା ତାରା ବିହ୍ୱଳହୋଇ ଅତି ଦ୍ରୁତଭାବରେ ଇନ୍ଦ୍ରସଦୃଶ ଅଜେୟ ମହାନୁଭାବ ରାମଚନ୍ଦ୍ରଙ୍କ ନିକଟକୁ ଗଲେ । ୨୯ । ଶୋକରେ ତାଙ୍କର ଶରୀରର ପରିପାଟୀ ଠିକ ନ ଥିଲା । ସେ ମନସ୍ୱିନୀ ଶୁଦ୍ଧସ୍ୱଭାବ ରଣକୁଶଳହେତୁରୁ ଲକ୍ଷ୍ୟବନ୍ଧନରେ ଚତୁର ରାମଚନ୍ଦ୍ରଙ୍କୁ କହିଲେ । ୩୦ । "ଆପଣଙ୍କର ପ୍ରଭାବ ଅପରିମିତ । ଆପଣଙ୍କୁ କେହି ପରାସ୍ତ କରି ପାରେ ନାହିଁ । ଆପଣ ଜିତେନ୍ଦ୍ରିୟ ଏବଂ ପ୍ରଧାନ ଧାର୍ମିକ ଅଟନ୍ତି । ଆପଣଙ୍କର କୀର୍ତ୍ତି କଦାପି ହ୍ରାସ ହୁଏ ନାହିଁ । ଆପଣ ନିପୁଣ ଅଟନ୍ତି । ଆପଣ ପୃଥିବୀସଦୃଶ କ୍ଷମାଶୀଳ ଅଟନ୍ତି ଏବଂ ଆପଣଙ୍କର ଚକ୍ଷୁ ରକ୍ତସଦୃଶ ଲୋହିତବର୍ଣ୍ଣ ଅଟେ ।୩୧। ଆପଣ ହାତରେ ଧନୁର୍ବାଣ ଧାରଣ କରିଅଛନ୍ତି । ଆପଣ (ଶତ୍ରୁ) ହତ୍ୟା କରିବାରେ ସିଦ୍ଧହସ୍ତ । ମାନବଶରୀରର ସୌନ୍ଦର୍ଯ୍ୟ ତ୍ୟାଗକରି ଆପଣ ଦିବ୍ୟଶରୀରର କାନ୍ତି ଧାରଣ କରିଅଛନ୍ତି ।୩୨। ମୋର ପ୍ରିୟତମ

ଯେନୈବ ବାଣେନ ହତଃ ପ୍ରିୟୋ ମେ
ତେନୈବ ବାଣେନ ହି ମାଂ ଜହୀହି ।
ହତା ଗମିଷ୍ୟାମି ସମୀପମସ୍ୟ
ନ ମାଂ ବିନା ବୀର ରମେତ ବାଲୀ । ୩୩ ।
ସ୍ୱର୍ଗେଽପି ପଦ୍ମାମଲପତ୍ରନେତ୍ର
ସମେତ୍ୟ ସଂପ୍ରେକ୍ଷ୍ୟ ଚ ମାମପଶ୍ୟନ୍ ।
ନ ହ୍ୟେଷ ଉଚ୍ଚାବଚତାମ୍ରଚୂଡ଼ା
ବିଚିତ୍ରବେଷାପ୍ସରସୋଽଭଜିଷ୍ୟତ୍ । ୩୪ ।
ସ୍ୱର୍ଗେଽପି ଶୋକଂ ଚ ବିବର୍ଣତାଂ ଚ
ମୟା ବିନା ପ୍ରାପ୍ସ୍ୟତି ବୀର ବାଲୀ ।
ରମ୍ୟେ ନଗେନ୍ଦ୍ରସ୍ୟ ତଟାବକାଶେ
ବିଦେହକନ୍ୟାରହିତୋ ଯଥା ତ୍ୱମ୍ । ୩୫ ।
ତ୍ୱଂ ବେତ୍ଥ ତାବଦ୍ ବନିତାବିହୀନଃ
ପ୍ରାପ୍ନୋତି ଦୁଃଖଂ ପୁରୁଷଃ କୁମାରଃ ।
ତତ୍ତ୍ୱଂ ପ୍ରଜାନଞ୍ଜହି ମାଂ ନ ବାଲୀ
ଦୁଃଖଂ ମମାଦର୍ଶନଜଂ ଭଜେତ । ୩୬ ।
ଯଚ୍ଚାପି ମନ୍ୟେତ ଭବାନ୍ମହାତ୍ମା
ସ୍ତ୍ରୀଘାତଦୋଷସ୍ତୁ ଭବେନ୍ନ ମହ୍ୟମ୍ ।

---

ଯେଉଁ ବାଣରେ ହତ ହୋଇଛନ୍ତି, ତୁମେ ମୋତେ ମଧ୍ୟ ସେହି ବାଣରେ ବଧକର । ମୁଁ ମୃତ୍ୟୁ ଲଭି ତାଙ୍କର ନିକଟକୁ ଯିବି । ହେ ବୀର ! ମୋ ବ୍ୟତୀତ ବାଲୀ ସୁଖଲାଭ କରି ପାରିବେ ନାହିଁ । ୩୩ । ହେ ବିମଳପଦ୍ମପଲାଶଲୋଚନ ରାମଚନ୍ଦ୍ର ! ସ୍ୱର୍ଗରେ ପହଞ୍ଚି ସେଠାରେ ମୋତେ ନ ଦେଖିଲେ, ଉଚ୍ଚ ନୀଚ ରକ୍ତବର୍ଣ୍ଣ ଚୂଡ଼ା ଧାରଣ କରିଥିବା ଅପ୍ସରାମାନଙ୍କୁ ମଧ୍ୟ ସେ ପସନ୍ଦ କରିବେ ନାହିଁ । ୩୪ । ତୁମେ ଯେପରି ଏ ପର୍ବତର ସୁରମ୍ୟ ଉପତ୍ୟକାରେ ମଧ୍ୟ ସୀତାଙ୍କ ବିରହରେ ଦୁଃଖଭୋଗ କରୁଛ, ସେହିପରି ବୀରବାଲୀ ମୋ ବିହୁନରେ ସ୍ୱର୍ଗରେ ମଧ୍ୟ ଶୋକ ଏବଂ ବିଷାଦ ପାଇବେ ।୩୫। ସ୍ତ୍ରୀବିରହରେ ଯୁବା ପୁରୁଷ କିପରି ଦୁଃଖ ଅନୁଭବ କରେ, ତାହା ତୁମେ ଜାଣ । ସେ କଥା ଜାଣି ତୁମେ ମୋତେ ମାରିଦିଅ; ତାହାହେଲେ ମୋର ଅଦର୍ଶନଜନିତ ଦୁଃଖ ଆଉ ବାଲୀଙ୍କୁ ଭୋଗ କରିବାକୁ ହେବ ନାହିଁ । ୩୬ । ହେ ମହାତ୍ମା ! ଆପଣ ଯଦି ମନେ କରୁଥାନ୍ତି ଯେ 'ମୋତେ (ରାମଙ୍କୁ) ସ୍ତ୍ରୀବଧପାତକ ଲାଗିବ' ତାହାହେଲେ

ଆତ୍ମେତ୍ୟୟମସ୍ୟେତ ହି ମାଂ ଜହି ତ୍ୱମ୍
ନ ସ୍ତ୍ରୀବଧଃ ସ୍ୟାନ୍ମନୁଜେନ୍ଦ୍ରପୁତ୍ର । ୩୭ ।
ଶାସ୍ତ୍ରପ୍ରୟୋଗାଦ୍‌ବିବିଧାଚ୍ଚ ବେଦା-
ଦନନ୍ୟରୂପାଃ ପୁରୁଷସ୍ୟ ଦାରାଃ ।
ଦାରପ୍ରଦାନାଦ୍ଧି ନ ଦାନମନ୍ୟତ୍
ପ୍ରଦୃଶ୍ୟତେ ଜ୍ଞାନବତାଂ ହି ଲୋକେ । ୩୮ ।
ତ୍ୱଂ ଚାପି ମାଂ ତସ୍ୟ ମମ ପ୍ରିୟସ୍ୟ
ପ୍ରଦାସ୍ୟସେ ଧର୍ମମବେକ୍ଷ୍ୟ ବୀର ।
ଅନେନ ଦାନେନ ନ ଲପ୍ସ୍ୟସେ ତ୍ୱ-
ମଧର୍ମଯୋଗଂ ମମ ବୀର ଘାତାତ୍ । ୩୯ ।
ଆର୍ତ୍ତାମନାଥାମପନୀୟମାନା-
ମେବଂଗତାଂ ନାର୍ହସି ମାମହନ୍ତୁମ୍ ।
ଅହଂ ହି ମାତଙ୍ଗବିଳାସଗାମିନା
ପ୍ଲବଙ୍ଗମାନାମୃଷଭେଣ ଧୀମତା । ୪୦ ।
ବିନା ବରାର୍ହୋତ୍ତମହେମମାଳିନା
ଚିରଂ ନ ଶକ୍ଷ୍ୟାମି ନରେନ୍ଦ୍ର ଜୀବିତୁମ୍ ।
ଇତ୍ୟେବମୁକ୍ତସ୍ତୁ ବିଭୁର୍ମହାତ୍ମା
ତାରାଂ ସମାଶ୍ୱାସ୍ୟ ହିତଂ ବଭାଷେ । ୪୧ ।

---

ଏ (ଅର୍ଥାତ୍ ମୁଁ) ବାଳୀଙ୍କର ଆତ୍ମା ଅଟେ’ ଏହା ଭାବି ମୋତେ ମାରିଦିଅ । ତାହାହେଲେ ହେ ରାଜକୁମାର ! ଆପଣଙ୍କୁ ଆଉ ସ୍ତ୍ରୀବଧପାତକ ଲାଗିବ ନାହିଁ ।୩୭। ଶାସ୍ତ୍ରୀୟ ପ୍ରୟୋଗରେ ବିଭିନ୍ନ ବେଦରେ ସ୍ତ୍ରୀ ପୁରୁଷର ଅନନ୍ୟରୂପା ବୋଲି କୁହାଯାଇଅଛି । ଏ ସଂସାରରେ ଜ୍ଞାନୀମାନଙ୍କ ପକ୍ଷରେ ସ୍ତ୍ରୀଦାନଠାରୁ ବଳି ଅନ୍ୟ ଦାନ ନାହିଁ ।୩୮। ହେ ବୀର ! ତୁମେ ଧର୍ମ ବିବେଚନା କରି ଯଦି ମୋତେ ମୋର ପ୍ରିୟତମ ବାଳୀଙ୍କଠାରେ ଅର୍ପଣ କରିବ, ତାହାହେଲେ ଏଦାନଦ୍ୱାରା ମୋତେ ବଧକରିବାର ପାପ ତୁମକୁ ଲାଗିବ ନାହିଁ । ୩୯ । ଦୁଃଖିନୀ, ଅନାଥା ଏବଂ ପତିଙ୍କ ଆଲିଙ୍ଗନରହିତା ମୋର ବଧ ତୁମ୍ଭର ଅବଶ୍ୟ କରିବା ଉଚିତ । ହେ ରାମଚନ୍ଦ୍ର ! ମତ୍ତହସ୍ତୀସଦୃଶ ଗମନଶୀଳ, ବାନରମାନଙ୍କ ରାଜା, ଧୀମାନ୍, ଶ୍ରେଷ୍ଠ ସୁବର୍ଣ୍ଣମାଳାଧାରୀ ବାଳୀଙ୍କ ବ୍ୟତୀତ ମୁଁ ବେଶିଦିନ ବଞ୍ଚିପାରିବି ନାହିଁ ।” ତାରା ଏପରି କହିବାପରେ ମହାତ୍ମା ରାମଚନ୍ଦ୍ର ତାରାଙ୍କୁ ଆଶ୍ୱାସନା ଦେଇ ଏହି ହିତ-

ମା ବୀରଭାର୍ଯ୍ୟେ ବିମତିଂ କୁରୁଷ୍ୱ
ଲୋକୋ ହି ସର୍ବୋ ବିହିତୋ ବିଧାତ୍ରା ।
ତଂ ଚୈବ ସର୍ବଂ ସୁଖଦୁଃଖଯୋଗମ୍
ଲୋକୋଽବ୍ରବୀତ୍ତେନ କୃତଂ ବିଧାତ୍ରା । ୪୨ ।
ତ୍ରୟୋଽପି ଲୋକା ବିହିତଂ ବିଧାନମ୍
ନାତିକ୍ରମନ୍ତେ ବଶଗା ହି ତସ୍ୟ ।
ପ୍ରୀତିଂ ପରାଂ ପ୍ରାପ୍ସ୍ୟସି ତାଂ ତଥୈବ
ପୁତ୍ରଶ୍ଚ ତେ ପ୍ରାପ୍ସ୍ୟତି ଯୌବରାଜ୍ୟମ୍ । ୪୩ ।
ଧାତ୍ରା ବିଧାନଂ ବିହିତଂ ତଥୈବ
ନ ଶୂରପତ୍ନ୍ୟଃ ପରିଦେବୟନ୍ତି ।
ଆଶ୍ୱାସିତା ତେନ ମହାତ୍ମନା ତୁ
ପ୍ରଭାବଯୁକ୍ତେନ ପରଂତପେନ ।
ସା ବୀରପତ୍ନୀ ଧ୍ୱନତା ମୁଖେନ
ସୁବେଷରୂପା ବିରରାମ ତାରା । ୪୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସୁଗ୍ରୀବତାରାଶ୍ୱାସନମ୍
ନାମ ଚତୁର୍ବିଂଶଃ ସର୍ଗଃ

---

ଉପଦେଶ ଦେଲେ । ୪୦-୪୧ । "ହେ ବୀରପତ୍ନି ! ତୁମେ ମୃତ୍ୟୁକାମନା କର ନାହିଁ । ବିଧାତା ସମସ୍ତଙ୍କୁ ସୃଷ୍ଟି କରିଅଛନ୍ତି ଏବଂ ଲୋକେ କହନ୍ତି ଯେ ସେହି ବିଧାତାହିଁ ସମସ୍ତଙ୍କ ସହିତ ସୁଖ ଏବଂ ଦୁଃଖର ସଂଯୋଗ କରିଅଛନ୍ତି । ୪୨ । ତିନି ଲୋକର ଅଧିବାସୀମାନେ କେହି ନିର୍ଦ୍ଦିଷ୍ଟ ବିଧାନକୁ ଅତିକ୍ରମ କରି ପାରନ୍ତି ନାହିଁ, କାରଣ ସମସ୍ତେ ସେହି ବିଧିର ଅଧୀନ ଅଟନ୍ତି । ତୁମ୍ଭର ପୁତ୍ର ଯୁବରାଜ ହେବ ଏବଂ ତୁମେ ମଧ୍ୟ ପୂର୍ବପରି ପ୍ରୀତିଲାଭ କରିବ । ୪୩ । ବିଧାତାଙ୍କର ଏହାହିଁ ବିଧାନ ଅଟେ । ବୀରର ପତ୍ନୀମାନେ ରୋଦନ କରନ୍ତି ନାହିଁ ।" ପ୍ରଭାବଶାଳୀ ଶତ୍ରୁହନ୍ତା ରାମଚନ୍ଦ୍ର ଏପରି ଆଶ୍ୱାସନା ଦେବାପରେ ବୀରପତ୍ନୀ ତାରା ବିଳାପ ବନ୍ଦକଲେ ଏବଂ ମୁଖର ସୌନ୍ଦର୍ଯ୍ୟରେ ତାହାଙ୍କର ରୂପ ଉଦ୍ଭାସିତ ହେଲା । ୪୪ ।

# ପଞ୍ଚବିଂଶଃ ସର୍ଗଃ

## ବାଲିସଂସ୍କାରଃ

ସ ସୁଗ୍ରୀବଂ ଚ ତାରାଂ ଚ ସାଙ୍ଗଦାଂ ସହଲକ୍ଷ୍ମଣଃ ।
ସମାନଶୋକଃ କାକୁତ୍‌ସ୍ଥଃ ସାନ୍ତ୍ୱୟନ୍ନିଦମବ୍ରବୀତ୍ । ୧ ।
ନ ଶୋକପରିତାପେନ ଶ୍ରେୟସା ଯୁଜ୍ୟତେ ମୃତଃ ।
ଯଦତ୍ରାନନ୍ତରଂ କାର୍ଯ୍ୟଂ ତତ୍ସମାଧାତୁମର୍ହଥ । ୨ ।
ଲୋକବୃତ୍ତମନୁଷ୍ଠେୟଂ କୃତଂ ବୋ ବାଷ୍ପମୋକ୍ଷଣମ୍ ।
ନ କାଲାଦୁତ୍ତରଂ କିଞ୍ଚିତ୍ କର୍ମ ଶକ୍ୟମୁପାସିତୁମ୍ । ୩ ।
ନିୟତିଃ କାରଣଂ ଲୋକେ ନିୟତିଃ କର୍ମସାଧନମ୍ ।
ନିୟତିଃ ସର୍ବଭୂତାନାଂ ନିୟୋଗେଷ୍ୱିହ କାରଣମ୍ । ୪ ।
ନ କର୍ତ୍ତା କସ୍ୟଚିତ୍ କଶ୍ଚିନ୍ନିୟୋଗେ ନାପି ଚେଶ୍ୱରଃ ।
ସ୍ୱଭାବେ ବର୍ତ୍ତତେ ଲୋକସ୍ତସ୍ୟ କାଲଃ ପରାୟଣମ୍ । ୫ ।

---

## ୨୫ଶ ସର୍ଗ

### (ବାଲୀଙ୍କର ଶବସଂସ୍କାର)

ସୁଗ୍ରୀବ, ତାରା ଏବଂ ଅଙ୍ଗଦଙ୍କୁ ସାନ୍ତ୍ୱନା ଦେଇ ସମଦୁଃଖୀ ରାମଚନ୍ଦ୍ର ଏହି କଥା କହିଲେ ଏବଂ ଲକ୍ଷ୍ମଣ ମଧ୍ୟ ତାଙ୍କ ସହିତ ସମପରିମାଣରେ ଦୁଃଖିତ ହୋଇଥିଲେ ।୧। "ଶୋକ ପରିତାପ ଦ୍ୱାରା ମୃତବ୍ୟକ୍ତିର କୌଣସି ମଙ୍ଗଳ ହେବ ନାହିଁ । ଏହା ପରେ ଯାହା କରିବାର କଥା ତାହା ତୁମ୍ଭମାନଙ୍କର କରିବା ଉଚିତ । ୨ । ଯାହା ଲୌକିକ ବ୍ୟବହାର ତାହା ତୁମ୍ଭମାନଙ୍କର କରଣୀୟ ; ତୁମ୍ଭେମାନେ ତ ଅଶ୍ରୁପାତ କରି ସାରିଲଣି ? ମୃତ୍ୟୁ ହୋଇଯିବା ପରେ ଅନ୍ୟ କୌଣସି ଉପାୟ କରିବାରେ (ମୃତକୁ ଫେରାଇ ଆଣିବା ପାଇଁ) କିଛି ଲାଭ ନାହିଁ ।୩। ନିୟତି ଏ ସଂସାରରେ ସବୁ ବିଷୟରେ କାରଣ ଅଟେ ଏବଂ ସମସ୍ତ କର୍ମର କର୍ତ୍ତା ଅଟେ । ସମସ୍ତ ପ୍ରାଣୀଙ୍କର କାର୍ଯ୍ୟରେ ବ୍ୟାପୃତ ହେବାରେ ନିୟତିହିଁ କାରଣ । ୪ । କୌଣସି ମନୁଷ୍ୟ କୌଣସି କାର୍ଯ୍ୟର ବାସ୍ତବରେ କର୍ତ୍ତା ନୁହେ, କେହି କାହାକୁ କୌଣସି କାର୍ଯ୍ୟରେ ନିଯୁକ୍ତ କରିବାକୁ ମଧ୍ୟ ସମର୍ଥ ନୁହେ । ମନୁଷ୍ୟ ନିଜ ସ୍ୱଭାବ ଅନୁସାରେ କାର୍ଯ୍ୟ କରେ ଏବଂ ସେହି ସ୍ୱଭାବ କାଳର ଅଧୀନ ଅଟେ । ୫ । କାଳ ନିଜେ ମଧ୍ୟ କାଳର ବିଧାନ ଲଙ୍ଘନ କରିପାରେ

ନ କାଲଃ କାଲମତ୍ୟେତି ନ କାଲଃ ପରିହୀୟତେ ।
ସ୍ୱଭାବଂ ଚ ସମାସାଦ୍ୟ ନ କଶ୍ଚିଦତିବର୍ତ୍ତତେ । ୬ ।
ନ କାଲସ୍ୟାସ୍ତି ବନ୍ଧୁତ୍ୱଂ ନ ହେତୁର୍ନ ପରାକ୍ରମଃ ।
ନ ମିତ୍ରଜ୍ଞାତିସଂବନ୍ଧଃ କାରଣଂ ନାତ୍ମନୋଽବଶଃ । ୭ ।
କିନ୍ତୁ କାଲପରିଣାମୋ ଦ୍ରଷ୍ଟବ୍ୟଃ ସାଧୁ ପଶ୍ୟତା ।
ଧର୍ମଶ୍ଚାର୍ଥଶ୍ଚ କାମଶ୍ଚ କାଲକ୍ରମସମାହିତାଃ । ୮ ।
ଇତଃ ସ୍ୱାଂ ପ୍ରକୃତିଂ ବାଲୀ ଗତଃ ପ୍ରାପ୍ତଃ କ୍ରିୟାଫଲମ୍ ।
ସାମଦାନାର୍ଥସଂଯୋଗୈଃ ପବିତ୍ରଂ ପ୍ଲବଗେଶ୍ୱରଃ । ୯ ।
ସ୍ୱଧର୍ମସ୍ୟ ଚ ସଂଯୋଗାଜ୍ଜିତସ୍ତେନ ମହାତ୍ମନା ।
ସ୍ୱର୍ଗଃ ପରିଗୃହୀତଶ୍ଚ ପ୍ରାଣାନପରିରକ୍ଷତା । ୧୦ ।
ଏଷା ବୈ ନିୟତିଃ ଶ୍ରେଷ୍ଠା ଯାଂ ଗତୋ ହରିୟୂଥପଃ ।
ତଦଲଂ ପରିତାପେନ ପ୍ରାପ୍ତକାଲମୁପାସ୍ୟତାମ୍ । ୧୧ ।
ବଚନାନ୍ତେ ତୁ ରାମସ୍ୟ ଲକ୍ଷ୍ମଣଃ ପରବୀରହା ।
ଅବଦତ୍ ପ୍ରଶ୍ରିତଂ ବାକ୍ୟଂ ସୁଗ୍ରୀବଂ ଗତଚେତସମ୍ । ୧୨ ।

---

ନାହିଁ ଏବଂ କାଳର ବିଧାନ କୌଣସିପ୍ରକାରେ ଅନ୍ୟଥା ହୁଏ ନାହିଁ । ସ୍ୱଭାବ ଅନୁସାରେ ସମସ୍ତ କାର୍ଯ୍ୟ ସାଧିତ ହୁଏ, ତାହାର କିଛିମାତ୍ର ଅନ୍ୟଥା ହୁଏ ନାହିଁ ।୬। କାଳର କାହାରି ସହିତ ବନ୍ଧୁତା ନାହିଁ । ତାହାର କୌଣସି କାରଣ ନାହିଁ ବା ଶକ୍ତି ନାହିଁ । କାଳର ଦୃଷ୍ଟିରେ ମିତ୍ର ବା ଜ୍ଞାତିସମ୍ବନ୍ଧ ନାହିଁ । କାଳର ହେତୁ ମଧ୍ୟ ତାହାର ନିଜର ବଶ ନୁହେ । ୭ । ତତ୍ତ୍ୱଜ୍ଞାନୀ ବ୍ୟକ୍ତିର ଅତି ସାବଧାନତାର ସହିତ କାଳର ପରିଣାମକୁ ଦେଖିବା ଉଚିତ । ଧର୍ମ, ଅର୍ଥ ଏବଂ କାମ କାଳର ନିୟମ ଅନୁସାରେ ନିୟନ୍ତ୍ରିତ ହୁଏ । ୮ । ନିଜକୃତ ସାମ ଦାନ ଆଦିର ଯଥାକାଳୋଚିତ ପ୍ରୟୋଗ କରିଥିବା ହେତୁରୁ ବାନରରାଜ ବାଲୀ ନିଜର ପବିତ୍ର କ୍ରିୟାଫଳ (ସ୍ୱର୍ଗ) ପ୍ରାପ୍ତ ହେଲେ । ଏହାହିଁ ତାହାଙ୍କର ପ୍ରକୃତି ଥିଲା । ୯ । ନିଜର ଧର୍ମର ପ୍ରୟୋଗ-ହେତୁରୁ ସେ ମହାତ୍ମା ସ୍ୱର୍ଗକୁ ଜୟ କରି ଅଛନ୍ତି ଏବଂ ପ୍ରାଣତ୍ୟାଗ କରି ସେହି ସ୍ୱର୍ଗଲାଭ କରିଅଛନ୍ତି । ୧୦ । ବାନରଦଳପତି ଯେଉଁ ଗତି ଲାଭ କରିଅଛନ୍ତି ତାହାହିଁ ତାହାଙ୍କର ଶ୍ରେଷ୍ଠ ନିୟତି ଥିଲା । ଅତଏବ ସେଥିଲାଗି ପରିତାପ କରିବା ବୃଥା । ବର୍ତ୍ତମାନ କାଳୋଚିତ କର୍ତ୍ତବ୍ୟସାଧନ କର ।" ୧୧ । ରାମଚନ୍ଦ୍ର କହିସାରିବା ପରେ ଶତ୍ରୁହନ୍ତା ଲକ୍ଷ୍ମଣ ଅଚେତନ ସୁଗ୍ରୀବଙ୍କୁ ବିନୀତବାକ୍ୟରେ କହିଲେ । ୧୨ ।

କୁରୁ ତ୍ୱମସ୍ୟ ସୁଗ୍ରୀବ ପ୍ରେତକାର୍ଯମନନ୍ତରମ୍ ।
ତାରାଙ୍ଗଦାଭ୍ୟାଂ ସହିତୋ ବାଲିନୋ ଦହନଂ ପ୍ରତି । ୧୩ ।
ସମାଜ୍ଞାପୟ କାଷ୍ଠାନି ଶୁଷ୍କାଣି ଚ ବହୂନି ଚ ।
ଚନ୍ଦନାନି ଚ ଦିବ୍ୟାନି ବାଲିସଂସ୍କାରକାରଣାତ୍ । ୧୪ ।
ସମାଶ୍ୱାସୟ ଚୈନଂ ତ୍ୱମଙ୍ଗଦଂ ଦୀନଚେତସମ୍ ।
ମା ଭୂର୍ବାଲିଶବୁଦ୍ଧିସ୍ତ୍ୱଂ ତ୍ୱଦଧୀନମିଦଂ ପୁରମ୍ । ୧୫ ।
ଅଙ୍ଗଦସ୍ତ୍ୱାନୟେନ୍ମାଲ୍ୟଂ ବସ୍ତ୍ରାଣି ବିବିଧାନି ଚ ।
ଘୃତଂ ତୈଳମଥୋ ଗନ୍ଧାନ୍ ଯଚ୍ଚାତ୍ର ସମନନ୍ତରମ୍ । ୧୬ ।
ତ୍ୱଂ ତାର ଶିବିକାଂ ଶୀଘ୍ରମାଦାୟାଗଚ୍ଛ ସଂଭ୍ରମାତ୍ ।
ତ୍ୱରା ଗୁଣବତୀ ଯୁକ୍ତା ହ୍ୟସ୍ମିନ୍ କାଲେ ବିଶେଷତଃ । ୧୭ ।
ସଜ୍ଜୀଭବନ୍ତୁ ପ୍ଲବଗାଃ ଶିବିକାବାହନୋଚିତାଃ ।
ସମର୍ଥା ବଲିନଶ୍ଚୈବ ନିର୍ହରିଷ୍ୟନ୍ତି ବାଲିନମ୍ । ୧୮ ।
ଏବମୁକ୍ତ୍ୱା ତୁ ସୁଗ୍ରୀବଂ ସୁମିତ୍ରାନନ୍ଦବର୍ଧନଃ ।
ତସ୍ଥୌ ଭ୍ରାତୃସମୀପସ୍ଥୋ ଲକ୍ଷ୍ମଣଃ ପରବୀରହା । ୧୯ ।
ଲକ୍ଷ୍ମଣସ୍ୟ ବଚଃ ଶ୍ରୁତ୍ୱା ତାରଃ ସଂଭ୍ରାନ୍ତମାନସଃ ।
ପ୍ରବିବେଶ ଗୁହାଂ ଶୀଘ୍ରଂ ଶିବିକାସକ୍ତମାନସଃ । ୨୦ ।

---

"ହେ ସୁଗ୍ରୀବ ! ତୁମେ ତାରା ଏବଂ ଅଙ୍ଗଦଙ୍କ ସହିତ ମିଶି ବାଲୀଙ୍କର ଅନ୍ତିମସତ୍କାର କର; ଏହାଙ୍କ ଦାହର ବ୍ୟବସ୍ଥା କର । ୧୩ । ବାଲୀଙ୍କ ସଂସ୍କାରନିମନ୍ତେ ଚନ୍ଦନ ଏବଂ ଅନ୍ୟାନ୍ୟ ଦିବ୍ୟ ବୃକ୍ଷମାନଙ୍କର ଶୁଷ୍କ କାଷ୍ଠ ପ୍ରଭୃତି ପରିମାଣରେ ସଂଗ୍ରହ କରିବାକୁ ଆଜ୍ଞାଦିଅ । ୧୪ । ଦୁଃଖୀ ଅଙ୍ଗଦକୁ ତୁମେ ଆଶ୍ୱାସନା ଦିଅ । ତୁମେ ମୂର୍ଖପରି ହୁଅ ନାହିଁ । କାରଣ ଏ ପୁରର ବର୍ତ୍ତମାନ ତୁମେହିଁ ମାଲିକ ଅଛ । ୧୫ । ମାଲ୍ୟ, ବହୁବିଧ ବସ୍ତ୍ର, ଘୃତ, ତୈଳ, ସୁଗନ୍ଧ ଦ୍ରବ୍ୟ ଏବଂ ଅନ୍ୟାନ୍ୟ ଯେଉଁସବୁ ଦ୍ରବ୍ୟ ଆବଶ୍ୟକ, ତାହା ସବୁ ଅଙ୍ଗଦ ଶୀଘ୍ର ନେଇଆସୁ । ୧୬ । ହେ ତାର ! (ସୁଗ୍ରୀବଙ୍କର ଜନୈକ ମନ୍ତ୍ରୀ) ତୁମେ ଶୀଘ୍ର ଗୋଟିଏ ପାଲିଙ୍କି ନେଇଆସ । ଏପରି ସମୟରେ ଶୀଘ୍ରତା ବିଶେଷ ଆବଶ୍ୟକ ଅଟେ ।୧୭। ସବାରି ବୋହି ନେବାପାଇଁ ବାନରମାନେ ପ୍ରସ୍ତୁତ ହୋଇ ରହନ୍ତୁ । ବାଲୀଙ୍କୁ ବୋହି ନେବାପାଇଁ ସମର୍ଥ ଏବଂ ବଳବାନ୍ ବାନର ଆବଶ୍ୟକ ।" ୧୮ । ସୁଗ୍ରୀବଙ୍କୁ ଏହିପ୍ରକାରେ କହି ଶତ୍ରୁହନ୍ତା ସୁମିତ୍ରାପୁତ୍ର ଲକ୍ଷ୍ମଣ ନିଜ ଭାଇଙ୍କ ନିକଟରେ ଯାଇ ବସିଲେ । ୧୯ । ଲକ୍ଷ୍ମଣଙ୍କ କଥା ଶୁଣି ତାର ପାଲିଙ୍କି ଆଣିବା ନିମନ୍ତେ ଶୀଘ୍ର ଗୁହାଭିତରକୁ ପ୍ରବେଶକଲେ ।୨୦। ସବାରି ବୋହିବା

ଅଦାସ୍ତୁ ଶିବିକାଂ ତାରଃ ସ ତୁ ପର୍ଯ୍ୟାପ୍ତପୂରୁଷଃ ।
ବାନରୈରୁହ୍ୟମାନାଂ ତାଂ ଶୂରୈରୁଦ୍‌ବହନୋଚିତୈଃ । ୨୧ ।
ଦିବ୍ୟାଂ ଭଦ୍ରାସନଯୁକ୍ତାଂ ଶିବିକାଂ ସ୍ୟନ୍ଦନୋପମାମ୍ ।
ପକ୍ଷିକର୍ମଭିରାଚିତ୍ରାଂ ଦ୍ରୁମକର୍ମବିଭୂଷିତାମ୍ । ୨୨ ।
ଆଚିତାଂ ଚିତ୍ରପତ୍ତୀଭିଃ ସୁନିବିଷ୍ଟାଂ ସମନ୍ତତଃ ।
ବିମାନମିବ ସିଦ୍ଧାନାଂ ଜାଲବାତାୟନାୟୁତାମ୍ । ୨୩ ।
ସୁନିୟୁକ୍ତାଂ ବିଶାଲାଂ ଚ ସୁକୃତାଂ ଶିଳ୍ପିଭିଃ କୃତାମ୍ ।
ଦାରୁପର୍ବତକୋପେତାଂ ଚାରୁକର୍ମପରିଷ୍କୃତାମ୍ । ୨୪ ।
ବରାଭରଣହାରୈଶ୍ଚ ଚିତ୍ରମାଲ୍ୟୋପଶୋଭିତାମ୍ ।
ଗୁହାଗହନସଂଛନ୍ନାଂ ରକ୍ତଚନ୍ଦନଭୂଷିତାମ୍ । ୨୫ ।
ପୁଷ୍ପୌଘୈଃ ସମଭିଚ୍ଛନ୍ନାଂ ପଦ୍ମମାଲାଭିରେବ ଚ ।
ତରୁଣାଦିତ୍ୟବର୍ଣ୍ଣାଭିର୍ଭ୍ରାଜମାନାଭିରାବୃତାମ୍ । ୨୬ ।
ଈଦୃଶୀଂ ଶିବିକାଂ ଦୃଷ୍ଟ୍ୱା ରାମୋ ଲକ୍ଷ୍ମଣମବ୍ରବୀତ୍ ।
କ୍ଷିପ୍ରଂ ବିନୀୟତାଂ ବାଲୀ ପ୍ରେତକାର୍ଯ୍ୟଂ ବିଧୀୟତାମ୍ । ୨୭ ।

---

ପାଇଁ ସମର୍ଥ ବଳବାନ୍ ବାନରମାନଙ୍କଦ୍ୱାରା ପାଲଙ୍କୀ ବୁହାଇ ସେ ଶୀଘ୍ର ଫେରି ଆସିଲେ । ୨୧ । ସେ ପାଲଙ୍କୀରେ ରାଜାଙ୍କ ବସିବାଯୋଗ୍ୟ ଆସନ ତିଆରି କରାହୋଇଥିଲା । ସେଥିରେ ପକ୍ଷୀ ଏବଂ ବୃକ୍ଷମାନଙ୍କର ଚିତ୍ର ମଧ୍ୟ ଶୋଭା ପାଉଥିଲା ।୨୨। ତାଁ ଉପରେ ପଦାତିକ ସିପାହୀଙ୍କ ଛବି ଅଙ୍କା ହୋଇଥିଲା । ସବୁପ୍ରକାରେ ତାହା ଅତିଶୟ ସୁନ୍ଦରଭାବରେ ତିଆରି ହୋଇଥିଲା । ସିଦ୍ଧମାନଙ୍କ ବିମାନପରି ସେଥିରେ ଝରକା ଲାଗିଥିଲା ଏବଂ ସେ ଝରକାମାନ ଝାଲରରେ ଯୋଡ଼ିଆ ହୋଇଥିଲା । ୨୩ । ତାହା ବଡ଼ ମଜବୁତ ଥିଲା । କାରିଗରମାନେ ଖୁବ୍ ଭଲକରି ତାହାକୁ ତିଆରି କରିଥିଲେ । କାଠର ଶ୍ରେଷ୍ଠ ଶ୍ରେଷ୍ଠ ପର୍ବତମାନ ସେଥିରେ ଖଞ୍ଜାହୋଇଥିଲା ଏବଂ ଅନ୍ୟାନ୍ୟ କାରିଗରିର ଚିତ୍ର ମଧ୍ୟ ଅଙ୍କାହୋଇଥିଲା । ୨୪ । ଉତ୍ତମ ଅଳଙ୍କାର ଏବଂ ହାରଦ୍ୱାରା ତାହା ଶୋଭା ପାଉଥିଲା । ଅନେକପ୍ରକାର ବିଚିତ୍ର ମାଳା ମଧ୍ୟ ସେଥିରେ ଲଗିତ ହୋଇଥିଲା । ଗୁମ୍ଫା ଏବଂ ବନର ଚିତ୍ର ମଧ୍ୟ ସେଥିରେ ଥିଲା ଏବଂ ତାହା ରକ୍ତଚନ୍ଦନ ଦ୍ୱାରା ପରିଶୋଭିତ ହୋଇଥିଲା । ୨୫ । ସେ ଶିବିକା ଉପରେ ଅନେକ ସୁନ୍ଦର ଫୁଲ ରଖାଯାଇଥିଲା । ତରୁଣ ସୂର୍ଯ୍ୟର ବର୍ଣ୍ଣପରି ରକ୍ତବର୍ଣ୍ଣ ପଦ୍ମ-ମାଳାମାନ ଶିବିକାର ଚାରିପାଖରେ ଝୁଲୁଥିଲା । ୨୬ । ଏହିପ୍ରକାର ଶିବିକାକୁ ଦେଖି ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ କହିଲେ, "ଶୀଘ୍ର ବାଲୀଙ୍କୁ ନେଇଯାଅ ଏବଂ ପ୍ରେତକାର୍ଯ୍ୟ ସମାଧାନ

ତତୋ ବାଲିନମୁଦ୍ୟମ୍ୟ ସୁଗ୍ରୀବଃ ଶିବିକାଂ ତଦା
ଆରୋପୟତ ବିକ୍ରୋଶନ୍ନଙ୍ଗଦେନ ସହୈବ ତୁ । ୨୮ ।
ଆରୋପ୍ୟ ଶିବିକାଂ ଚୈବ ବାଲିନଂ ଗତଜୀବିତମ୍ ।
ଅଲଂକାରୈଶ୍ଚ ବିବିଧୈର୍ମାଲ୍ୟୈର୍ବସ୍ତ୍ରୈଶ୍ଚ ଭୂଷିତମ୍ । ୨୯ ।
ଆଜ୍ଞାପୟତ୍ତଦା ରାଜା ସୁଗ୍ରୀବଃ ପ୍ଳବଗେଶ୍ୱରଃ ।
ଔର୍ଦ୍ଧ୍ୱଦେହିକମାର୍ଯସ୍ୟ କ୍ରିୟତାମନୁକୂଳତଃ । ୩୦ ।
ବିଶ୍ରାଣୟନ୍ତୋ ରତ୍ନାନି ବିବିଧାନି ବହୂନି ଚ ।
ଅଗ୍ରତଃ ପ୍ଳବଗା ଯାନ୍ତୁ ଶିବିକା ତଦନନ୍ତରମ୍ । ୩୧ ।
ରାଜ୍ଞାମୃଦ୍ଧିବିଶେଷା ହି ଦୃଶ୍ୟନ୍ତେ ଭୁବି ଯାଦୃଶାଃ ।
ତାଦୃଶୈରିହ କୁର୍ବନ୍ତୁ ବାନରା ଭର୍ତୃସତ୍କ୍ରିୟାମ୍ । ୩୨ ।
ତାଦୃଶଂ ବାଲିନଂ କ୍ଷିପ୍ରଂ ପ୍ରାକୁର୍ବନ୍ନୌର୍ଦ୍ଧ୍ୱଦେହିକମ୍ ।
ଅଙ୍ଗଦଂ ପରିରଭ୍ୟାଶୁ ତାରପ୍ରଭୃତୟସ୍ତଥା । ୩୩ ।
କ୍ରୋଶନ୍ତଃ ପ୍ରୟଯୁଃ ସର୍ବେ ବାନରା ହତବାନ୍ଧବାଃ ।
ତତଃ ପ୍ରଣିହିତାଃ ସର୍ବା ବାନର୍ଯୋଽସ୍ୟ ବଶାନୁଗାଃ । ୩୪ ।
ଚୁକ୍ରୁଶୁର୍ବୀରବୀରେତି ଭୂୟଃ କ୍ରୋଶନ୍ତି ତାଃ ପ୍ରିୟମ୍ ।
ତାରାପ୍ରଭୃତୟଃ ସର୍ବା ବାନର୍ଯୋ ହତବାନ୍ଧବାଃ । ୩୫ ।

---

କର ।" ୨୭। ଅନନ୍ତର ସୁଗ୍ରୀବ ଅଙ୍ଗଦ ସହିତ ବାଳୀଙ୍କୁ ଉଠାଇ ଉଚ୍ଚୈସ୍ୱରରେ କାନ୍ଦି କାନ୍ଦି ପାଲିଙ୍କି ଉପରେ ନେଇ ଥୋଇଲେ । ୨୮ । ଗତପ୍ରାଣ ବାଳୀଙ୍କୁ ଶିବିକାରେ ରଖି ତାହାଙ୍କର ଦେହକୁ ଅଳଙ୍କାର ଏବଂ ନାନାପ୍ରକାର ବସ୍ତ୍ର ଓ ମାଳା ଦ୍ୱାରା ବିଭୂଷିତ କରିଦିଆଗଲା । ୨୯ । ତା ପରେ ବାନରରାଜ ସୁଗ୍ରୀବ ଆଜ୍ଞା ଦେଲେ, "ଆର୍ଯ୍ୟ ବାଳୀଙ୍କର ଅନ୍ତ୍ୟେଷ୍ଟିକ୍ରିୟା ନିୟମାନୁକୂଳରେ ସମାପନ କର ।୩୦ । ନାନାବିଧ ଏବଂ ବହୁସଂଖ୍ୟକ ରତ୍ନ ଆଗେ ଆଗେ ଫିଙ୍ଗି ଫିଙ୍ଗି ବାନରମାନେ ଯାଆନ୍ତୁ ଏବଂ ତାଙ୍କ ପଛରେ ଶିବିକା ଯାଉ ।୩୧। ରାଜାମାନଙ୍କର ଶବସତ୍କାର ଯେପରି ଆଡ଼ମ୍ବର-ସହିତ କରାହୁଏ, ସେହିପ୍ରକାର ଆଡ଼ମ୍ବରରେ ବାନରମାନେ ସେମାନଙ୍କ ପ୍ରଭୁଙ୍କର ସତ୍କାର କରନ୍ତୁ ।" ୩୨। ତଦନୁସାରେ ଶୀଘ୍ର ବାଳୀଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାଧାନ କରିବା ନିମନ୍ତେ ତାର ପ୍ରଭୃତି ବାନରମାନେ ଅଙ୍ଗଦଙ୍କୁ ପରିବେଷ୍ଟନକରି ବନ୍ଧୁହୀନ ହୋଇ ଉଚ୍ଚସ୍ୱରରେ ରୋଦନ କରି କରି ଚାଲିଲେ । ସେମାନଙ୍କ ପଛରେ ବାଳୀଙ୍କ ବଶବର୍ତ୍ତିନୀ ସ୍ତ୍ରୀମାନେ ଚାଲିଲେ । ତାରାପ୍ରଭୃତି ବାନରୀମାନେ ପ୍ରିୟତମ ବାଳୀଙ୍କ ପାଖେ ପାଖେ 'ବୀର' 'ବୀର' କହି କରୁଣଭାବରେ ରୋଦନ କରି କରି ଚାଲିଲେ । ସେହି

ଅନୁଜଗ୍ମୁଶ୍ଚ ଭର୍ତାରଂ କ୍ରୋଶନ୍ତ୍ୟଃ କରୁଣସ୍ୱନାଃ ।
ତାସାଂ ରୁଦିତଶବ୍ଦେନ ବାନରୀଣାଂ ବନାନ୍ତରେ । ୩୬ ।
ବନାନି ଗିରୟଃ ସର୍ବେ ବିକ୍ରୋଶନ୍ତୀବ ସର୍ବତଃ ।
ପୁଲିନେ ଗିରିନଦ୍ୟାସ୍ତୁ ବିବିକ୍ତେ ଜଲସଂବୃତେ । ୩୭ ।
ଚିତାଂ ଚକ୍ରୁଃ ସୁବହବୋ ବାନରା ବନଗୋଚରାଃ ।
ଅବରୋପ୍ୟ ତତଃ ସ୍କନ୍ଧାଚ୍ଛିବିକାଂ ବାନରୋତ୍ତମାଃ । ୩୮
ତସ୍ଥୁରେକାନ୍ତମାଶ୍ରିତ୍ୟ ସର୍ବେ ଶୋକପରାୟଣାଃ ।
ତତସ୍ତାରା ପତିଂ ଦୃଷ୍ଟ୍ୱା ଶିବିକାତଲଶାୟିନମ୍ । ୩୯ ।
ଆରୋପ୍ୟାଙ୍କେ ଶିରସ୍ତସ୍ୟ ବିଲଲାପ ସୁଦୁଃଖିତା ।
ହା ବାନର ମହାରାଜ ହା ନାଥ ମମ ବତ୍ସଲ । ୪୦ ।
ହା ମହାର୍ହ ମହାବାହୋ ହା ମମ ପ୍ରିୟ ପଶ୍ୟ ମାମ୍ ।
ଜନଂ ନ ପଶ୍ୟସୀମଂ ତ୍ୱଂ କସ୍ମାଚ୍ଛୋକାଭିପୀଡ଼ିତମ୍ । ୪୧ ।
ପ୍ରହୃଷ୍ଟମିହ ତେ ବକ୍ତ୍ରଂ ଗତାସୋରପି ମାନଦ ।
ଅସ୍ତାର୍କସମବର୍ଣ୍ଣଂ ଚ ଦୃଶ୍ୟତେ ଜୀବତୋ ଯଥା । ୪୨ ।
ଏଷ ତ୍ୱାଂ ରାମରୂପେଣ କାଲଃ କର୍ଷତି ବାନର ।
ଯେନ ସ୍ମ ବିଧବାଃ ସର୍ବାଃ କୃତା ଏକେଷୁଣା ରଣେ । ୪୩ ।

---

ବାନରୀମାନଙ୍କ ରୋଦନ ଶବ୍ଦରେ ବନଭୂମି, ବନ ଏବଂ ପର୍ବତ ସତେ ଯେପରି ରୋଦନ କରିବାକୁ ଲାଗିଲେ । ଜଳପୂର୍ଣ୍ଣ ଗିରିନଦୀର ତୀରରେ ଏକାନ୍ତ ସ୍ଥାନରେ ଅନେକ ବନଚାରୀ ବାନର ମିଳି ଚିତା ପ୍ରସ୍ତୁତକଲେ । ତା ପରେ କାନ୍ଧରୁ ଓହ୍ଲାଇ ଶିବିକାକୁ ବାନରମାନେ ତଳେ ଥୋଇଲେ । ୩୩-୩୮ । ବାନରମାନେ ସମସ୍ତେ ଶୋକାଭିଭୂତ ହୋଇ ଏକାନ୍ତ ସ୍ଥାନରେ ଯାଇ ବସିଲେ । ପାଲଙ୍କି ଉପରେ ଶୋଇଥିବା ପତିଙ୍କୁ ଦେଖି ତାରା ତାହାଙ୍କର ମସ୍ତକକୁ ନିଜ କୋଳରେ ଧାରଣ କଲେ ଏବଂ ଅତି-ଦୁଃଖରେ ବିଳାପ କରିବାକୁ ଲାଗିଲେ । "ହା ବାନର ! ହା ମହାରାଜ, ହା ମୋର ପ୍ରିୟ ! ହେ ମହାବାହୋ, ମୋ ଆଡ଼କୁ ଚାହଁ । ଶୋକପୀଡ଼ିତ ଏ ବ୍ୟକ୍ତିଙ୍କୁ ତୁମେ ଚାହୁଁନାହଁ କାହିଁକି ? । ୩୯-୪୧ । ହେ ମାନଦ ! ତୁମ୍ଭର ପ୍ରାଣ ଛାଡ଼ିଗଲେ ମଧ୍ୟ ତୁମ୍ଭର ମୁଖ ଅତିଶୟ ପ୍ରସନ୍ନ ଦେଖାଯାଉଅଛି । ଜୀବିତାବସ୍ଥାରେ ତୁମ୍ଭର ମୁଖର ଶୋଭା ଯେପରି ଥିଲା, ବର୍ତ୍ତମାନ ମଧ୍ୟ ସେହିପରି ଅସ୍ତଗାମୀ ସୂର୍ଯ୍ୟର ବର୍ଣ୍ଣପରି ଦେଖାଯାଉଅଛି । ୪୨ । ହେ ବାନର ! କାଳ ରାମରୂପରେ ଆସି ତୁମକୁ ଟାଣି ନେଇଯାଉଅଛି । ତାଙ୍କର ଗୋଟିଏମାତ୍ର ବାଣରେ ଆମେ ସମସ୍ତେ ବିଧବା

ଇମାସ୍ତାସ୍ତବ ରାଜେନ୍ଦ୍ର ବାନର୍ଯ୍ୟୋଽପ୍ଲବଗାସ୍ତବ ।
ପାଦୈର୍ବିକୃଷ୍ଟମଧ୍ୱାନମାଗତାଃ କିଂ ନ ବୁଧ୍ୟସେ । ୪୪ ।
ତବେଷ୍ଟା ନନୁ ନୈବେମା ଭାର୍ଯ୍ୟାଶ୍ଚନ୍ଦ୍ରନିଭାନନାଃ ।
ଇଦାନୀଂ ନେକ୍ଷସେ କସ୍ମାତ୍ସୁଗ୍ରୀବଂ ପ୍ଲବଗେଶ୍ୱର । ୪୫ ।
ଏତେ ହି ସଚିବା ରାଜଂସ୍ତାରପ୍ରଭୃତୟସ୍ତବ ।
ପୁରବାସିଜନଶ୍ଚାୟଂ ପରିବାର୍ଯ୍ୟ ବିଷୀଦତି । ୪୬ ।
ବିସର୍ଜୟୈନାନ୍ ସଚିବାନ୍ ଯଥା ପୁରମରିଂଦମ ।
ତତଃ କ୍ରୀଡ଼ାମହେ ସର୍ବା ବନେଷୁ ମଦନୋତ୍କଟାଃ । ୪୭ ।
ଏବଂ ବିଲପତୀଂ ତାରାଂ ପତିଶୋକପରିବୃତାମ୍ ।
ଉତ୍ଥାପୟନ୍ତି ସ୍ମ ତଦା ବାନର୍ଯ୍ୟଃ ଶୋକକର୍ଶିତାଃ । ୪୮ ।
ସୁଗ୍ରୀବେଣ ତତଃ ସାର୍ଦ୍ଧଂ ସୋଽଙ୍ଗଦଃ ପିତରଂ ରୁଦନ୍ ।
ଚିତାମାରୋପୟାମାସ ଶୋକେନାଭିପ୍ଲୁତେନ୍ଦ୍ରିୟଃ । ୪୯ ।
ତତୋଽଗ୍ନିଂ ବିଧିବଦ୍ଦତ୍ତ୍ୱା ସୋଽପସବ୍ୟଂ ଚକାର ହ ।
ପିତରଂ ଦୀର୍ଘମଧ୍ୱାନଂ ପ୍ରସ୍ଥିତଂ ବ୍ୟାକୁଲେନ୍ଦ୍ରିୟଃ । ୫୦ ।

---

ହୋଇଗଲେ । ୪୩ । ହେ ରାଜେନ୍ଦ୍ର ! ହେଇଟି, ତୁମର ବାନ ମାନେ, ଯାହାଙ୍କର ଚାଲିବାର ଆଦୌ ଅଭ୍ୟାସ ନାହିଁ, ସେମାନେ ଏତେ ବାଟ ଚାଲି ଚାଲି ଏଠାକୁ ଆସିଛନ୍ତି, ତୁମେ କ'ଣ ଏକଥା ଜାଣିପାରୁ ନାହିଁ । ୪୪ । ଏହିସବୁ ଚନ୍ଦ୍ରମୁଖୀ ସ୍ତ୍ରୀମାନେ ତୁମର ଅତିଶୟ ପ୍ରିୟା ଅଟନ୍ତି । ହେ ବାନରରାଜ ! ତୁମେ ବର୍ତ୍ତମାନ ସୁଗ୍ରୀବ ଆଡ଼କୁ ଚାହୁଁ ନାହିଁ କାହିଁକି ?।୪୫। ହେ ରାଜନ୍ ! ତାର ପ୍ରଭୃତି ଏସବୁ ମନ୍ତ୍ରିଗଣ ତଥା ଏସବୁ ପୁରବାସିଗଣ ତୁମକୁ ଘେରି ଛିଡ଼ାହୋଇ ଶୋକ କରୁଅଛନ୍ତି । ୪୬ । ହେ ଅରିନ୍ଦମ ! ଏସବୁ ମନ୍ତ୍ରୀଙ୍କୁ ନିଜ ନିଜ ପୁରକୁ ଯିବାକୁ ଅନୁମତି ଦିଅ ; ତାହାହେଲେ ଆମ୍ଭେମାନେ ସମସ୍ତେ କାମୋନ୍ମତ୍ତ ହୋଇ ଏହି ବନରେ କ୍ରୀଡ଼ା କରିବା" । ୪୭ । ଶୋକପୀଡ଼ିତା ବାନରୀମାନେ ଏହିପ୍ରକାରେ ପତିଶୋକାଭିଭୂତା ହୋଇ ରୋଦନ କରୁଥିବା ତାରାଙ୍କୁ ଉଠାଇଲେ । ୪୮ । ତଦନନ୍ତର ଅଙ୍ଗଦ ପିତାଙ୍କ ନିମନ୍ତେ ରୋଦନକରି ସୁଗ୍ରୀବଙ୍କ ସହିତ ମିଶି ପିତାଙ୍କୁ ଚିତା ଉପରେ ସ୍ଥାପନ କଲେ । ଶୋକରେ ସେତେବେଳେ ତାହାଙ୍କର ସବୁ ଅଙ୍ଗ ଅବଶ ହୋଇଯାଇଥିଲା ।୪୯। ଅନନ୍ତର ଦୀର୍ଘପଥଯାତ୍ରୀ ପିତାଙ୍କୁ ବିଧିପୂର୍ବକ ଅଗ୍ନିସଂଯୋଗ କଲେ ଏବଂ ଅପସବ୍ୟ (ପିତୃଶ୍ରାଦ୍ଧକାର୍ଯ୍ୟ) ସମାଧାନକଲେ । ୫୦ । ସମସ୍ତ ଶ୍ରେଷ୍ଠ ବାନରମାନେ ବିଧିପୂର୍ବକ

ସଂସ୍କୃତ୍ୟ ବାଲିନଂ ତଂ ତୁ କ୍ଷିପ୍ରମୀୟୁଃ ପ୍ଲବଗର୍ଷଭାଃ ।
ଆଜଗ୍ମୁରୁଦକଂ କର୍ତୁଂ ନଦୀଂ ଶୁଭଜଲାଂ ଶିବାମ୍ । ୫୧ ।
ତତସ୍ତେ ସହିତାସ୍ତତ୍ର ଅଙ୍ଗଦଂ ସ୍ଥାପ୍ୟ ଚାଗ୍ରତଃ ।
ସୁଗ୍ରୀବତାରାସହିତାଃ ସିଷିଚୁର୍ବାନରା ଜଲମ୍ । ୫୨ ।
ସୁଗ୍ରୀବେଣେବ ଦୀନେନ ଦୀନୋ ଭୂତ୍ୱା ମହାବଲଃ ।
ସମାନଶୋକଃ କାକୁତ୍ସ୍ଥଃ ପ୍ରେତକାର୍ଯାଣ୍ୟକାରୟତ୍ । ୫୩ ।
ତତୋଽଥ ତଂ ବାଲିନମଗ୍ର୍ୟପୌରୁଷମ୍
ପ୍ରକାଶମିକ୍ଷ୍ୱାକୁବରେଷୁଣା ହତମ୍ ।
ପ୍ରଦୀପ୍ୟ ଦୀପ୍ତାଗ୍ନିସମୌଜସଂ ତଦା
ସଲକ୍ଷ୍ମଣଂ ରାମମୁପେୟିବାନ୍ ହରିଃ । ୫୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ବାଲିସଂସ୍କାରେ
ନାମ ପଞ୍ଚବିଂଶଃ ସର୍ଗଃ

---

ବାଲୀଙ୍କର ସତ୍କାର କରି ନିର୍ମଳସଲିଳା ନଦୀତଟକୁ ପ୍ରେତଙ୍କୁ ଜଳଦାନ କରିବା ପାଇଁ ଆସିଲେ । ୫୧ । ସେସବୁ ବାନର ମିଳି ସୁଗ୍ରୀବ ଏବଂ ତାରାଙ୍କ ସହିତ ଅଙ୍ଗଦଙ୍କୁ ଆଗୁଆ କରି ତର୍ପଣ କଲେ । ୫୨ । ସୁଗ୍ରୀବଙ୍କ ଦୁଃଖରେ ଦୁଃଖୀ ରାମଚନ୍ଦ୍ର ସମସ୍ତ ପ୍ରେତକାର୍ଯ୍ୟ କରାଇଲେ । ତାହାଙ୍କର ଦୁଃଖ ସୁଗ୍ରୀବଙ୍କ ଦୁଃଖ ସହିତ ସମାନ ଥିଲା ।୫୩। ଅନନ୍ତର ରାମଚନ୍ଦ୍ରଙ୍କ ବାଣରେ ହତ, ପ୍ରସିଦ୍ଧ, ପରାକ୍ରମୀ, ବାଲୀଙ୍କୁ ଦାହ କରି ସୁଗ୍ରୀବ ଲକ୍ଷ୍ମଣଙ୍କ ସହିତ ବସିଥିବା, ଦୀପ୍ତାଗ୍ନିସଦୃଶ ତେଜସ୍ୱୀ ରାମଚନ୍ଦ୍ରଙ୍କ ନିକଟକୁ ଆସିଲେ । ୫୪ ।

# ଷଡ଼୍ବିଂଶଃ ସର୍ଗଃ

## ସୁଗ୍ରୀବାଭିଷେକଃ

ତତଃ ଶୋକାଭିସଂତପ୍ତଂ ସୁଗ୍ରୀବଂ କ୍ଲିନ୍ନବାସସମ୍ ।
ଶାଖାମୃଗମହାମାତ୍ରାଃ ପରିବାର୍ଯ୍ୟୋପତସ୍ଥିରେ । ୧ ।
ଅଭିଗମ୍ୟ ମହାବାହୁଂ ରାମମକ୍ଲିଷ୍ଟକାରଣମ୍ ।
ସ୍ଥିତାଃ ପ୍ରାଞ୍ଜଲୟଃ ସର୍ବେ ପିତାମହମିବର୍ଷୟଃ । ୨ ।
ତତଃ କାଞ୍ଚନଶୈଳାଭସ୍ତରୁଣାର୍କନିଭାନନଃ ।
ଅବବ୍ରୀତ୍ ପ୍ରାଞ୍ଜଳିର୍ବାକ୍ୟଂ ହନୂମାନ୍ମାରୁତାତ୍ମଜଃ । ୩ ।
ଭବତ୍ପ୍ରସାଦାତ୍ କାକୁତ୍ସ୍ଥ ପିତୃପୈତାମହଂ ମହତ୍ ।
ବାନରାଣାଂ ସୁଦଂଷ୍ଟ୍ରାଣାଂ ସଂପନ୍ନବଲଶାଳିନାମ୍ । ୪ ।
ମହାତ୍ମନାଂ ସୁଦୁଷ୍ପ୍ରାପଂ ପ୍ରାପ୍ତଂ ରାଜ୍ୟମିଦଂ ପ୍ରଭୋ ।
ଭବତା ସମନୁଜ୍ଞାତଃ ପ୍ରବିଶ୍ୟ ନଗରଂ ଶୁଭମ୍ । ୫ ।
ସଂବିଧାସ୍ୟତି କାର୍ଯାଣି ସର୍ବାଣି ସସୁହୃଦ୍ଗଣଃ ।
ସ୍ନାତୋଽୟଂ ବିବିଧୈର୍ଗନ୍ଧୈରୌଷଧୈଶ୍ଚ ଯଥାବିଧି । ୬ ।

---

## ୨୬ଶ ସର୍ଗ

( ସୁଗ୍ରୀବଙ୍କର ରାଜ୍ୟାଭିଷେକ )

ଅନନ୍ତର ଓଦାଲୁଗା ପିନ୍ଧିଥିବା ଶୋକସନ୍ତପ୍ତ ସୁଗ୍ରୀବଙ୍କୁ ଘେରିଆଣ୍ଡୁ ଯେଉଁ ପ୍ରଧାନ ପ୍ରଧାନ ବାନରମନ୍ତ୍ରୀମାନେ ଆସି ଉଭାହେଲେ । ୧ । ବ୍ରହ୍ମାଙ୍କ ପାଖରେ ଋଷିମାନେ ଯେପରି ଉଭାହୁଅନ୍ତି ସେହିପରି ପୁଣ୍ୟକର୍ମା ମହାବାହୁ ରାମଚନ୍ଦ୍ରଙ୍କ ପାଖରେ ହାତଯୋଡ଼ି ଯାଇ ସମସ୍ତେ ଉଭାହେଲେ । ୨ । ଅନନ୍ତର ସୁବର୍ଣ୍ଣପର୍ବତସଦୃଶ ବିଶାଳକାୟ ତରୁଣସୂର୍ଯ୍ୟସଦୃଶ ମୁଖଯୁକ୍ତ ବାୟୁପୁତ୍ର ହନୁମାନ୍ ହାତଯୋଡ଼ି କହିଲେ । ୩ । "ହେ ରାମଚନ୍ଦ୍ର ! ତୀକ୍ଷ୍ଣଦନ୍ତଯୁକ୍ତ ମହାତ୍ମା ବାନରମାନଙ୍କର ପିତୃ-ପିତାମହ ଅମଳରୁ ପ୍ରଚଳିତ ଏ ବିଶାଳ ରାଜ୍ୟ ଆପଣଙ୍କ କୃପାରୁ ମିଳିଲା । ଆପଣଙ୍କ ଆଦେଶ ପାଇ ନଗରକୁ ଯାଇ ନିଜର ବନ୍ଧୁମାନଙ୍କ ସହିତ ସମସ୍ତ କାର୍ଯ୍ୟ ସେ (ସୁଗ୍ରୀବ) ସମ୍ପାଦନ କରିବେ । ଅନେକ ପ୍ରକାର ସୁଗନ୍ଧ ଔଷଧିରେ ସେ ବିଧିପୂର୍ବକ

ଅର୍ଚ୍ଚୟିଷ୍ୟନ୍ତି ମାଲ୍ୟୈଶ୍ଚ ରତ୍ନୈଶ୍ଚ ତ୍ୱାଂ ବିଶେଷତଃ ।
ଇମାଂ ଗିରିଗୁହାଂ ରମ୍ୟାମଭିଗନ୍ତୁଂ ତ୍ୱମର୍ହସି । ୭ ।
କୁରୁଷ୍ୱ ସ୍ୱାମିସଂବନ୍ଧଂ ବାନରାନ୍ ସଂପ୍ରହର୍ଷୟ ।
ଏବମୁକ୍ତୋ ହନୂମତା ରାଘବଃ ପରବୀରହା । ୮ ।
ପ୍ରତ୍ୟୁବାଚ ହନୂମନ୍ତଂ ବୁଦ୍ଧିମାନ୍ ବାକ୍ୟକୋବିଦଃ ।
ଚତୁର୍ଦ୍ଦଶ ସମାଃ ସୌମ୍ୟ ଗ୍ରାମଂ ବା ଯଦି ବା ପୁରମ୍ । ୯ ।
ନ ପ୍ରବେକ୍ଷ୍ୟାମି ହନୂମନ୍ ପିତୁର୍ନିର୍ଦ୍ଦେଶପାରଗଃ ।
ସୁସମୃଦ୍ଧାଂ ଗୁହାଂ ଦିବ୍ୟାଂ ସୁଗ୍ରୀବୋ ବାନରର୍ଷଭଃ । ୧୦ ।
ପ୍ରବିଷ୍ଟୋ ବିଧିବଦ୍‌ବୀରଃ କ୍ଷିପ୍ରଂ ରାଜ୍ୟେଽଭିଷିଚ୍ୟତାମ୍ ।
ଏବମୁକ୍ତ୍ୱା ହନୂମନ୍ତଂ ରାମଃ ସୁଗ୍ରୀବମବ୍ରବୀତ୍ । ୧୧ ।
ବୃତ୍ତଜ୍ଞୋ ବୃତ୍ତସଂପନ୍ନମୁଦାରବଲବିକ୍ରମମ୍ ।
ଇମମପ୍ୟଙ୍ଗଦଂ ବୀରଂ ଯୌବରାଜ୍ୟେଽଭିଷେଚୟ । ୧୨ ।
ଜ୍ୟେଷ୍ଠସ୍ୟ ହି ସୁତୋ ଜ୍ୟେଷ୍ଠଃ ସଦୃଶୋ ବିକ୍ରମେଣ ଚ ।
ଅଙ୍ଗଦୋଽୟମଦୀନାତ୍ମା ଯୌବରାଜ୍ୟସ୍ୟ ଭାଜନମ୍ । ୧୩ ।
ପୂର୍ବୋଽୟଂ ବାର୍ଷିକୋ ମାସଃ ଶ୍ରାବଣଃ ସଲିଲାଗମଃ ।
ପ୍ରବୃତ୍ତାଃ ସୌମ୍ୟ ଚତ୍ୱାରୋ ମାସା ବାର୍ଷିକସଂଜ୍ଞିତାଃ । ୧୪ ।

---

ସ୍ନାନ କରିବେ । ମାଳା ଏବଂ ରତ୍ନାଦିଦ୍ୱାରା ଆପଣଙ୍କର ପୂଜାକରିବେ । ଆପଣ କୃପାକରି ଏହି ରମଣୀୟ ପର୍ବତଗୁହାଭିତରକୁ ଯିବା ଉଚିତ । ୪-୭ । ସୁଗ୍ରୀବଙ୍କୁ ବାନରମାନଙ୍କ ସ୍ୱାମୀ କରିଦେଇ ଆପଣ ସେମାନଙ୍କୁ ଆନନ୍ଦିତ କରନ୍ତୁ ।" ହନୂମାନଙ୍କ ଦ୍ୱାରା ଏହିପ୍ରକାରେ କଥିତ ହୋଇ ଶତ୍ରୁହନ୍ତା ରାମଚନ୍ଦ୍ର କହିଲେ । ୮ । କଥା କହିବାରେ ନିପୁଣ ବୁଦ୍ଧିମାନ୍ ରାମଚନ୍ଦ୍ର ହନୁମାନଙ୍କୁ କହିଲେ । "ହେ ବୀର ! ପିତାଙ୍କ ଆଦେଶ ମାନି ମୁଁ ଚୌଦବର୍ଷ ପର୍ଯ୍ୟନ୍ତ ଗ୍ରାମ ବା ନଗରରେ ପ୍ରବେଶ କରି ପାରିବି ନାହିଁ । ବାନରଶ୍ରେଷ୍ଠ ସୁଗ୍ରୀବ ଏହି ସୁସଜ୍ଜିତ ଗୁହାମଧ୍ୟରେ ପ୍ରବେଶ କରନ୍ତୁ । ତୁମ୍ଭେମାନେ ବିଧିପୂର୍ବକ ତାହାଙ୍କର ଅଭିଷେକ କର ।" ହନୂମାନଙ୍କୁ ଏହି କଥା କହି ରାମ ସୁଗ୍ରୀବଙ୍କୁ କହିଲେ ।୯-୧୧ । "ହେ ଲୋକବ୍ୟବହାରଜ୍ଞ ସୁଗ୍ରୀବ, ଏହି ଅଙ୍ଗଦ ଚରିତ୍ରବାନ୍ ଏବଂ ପରାକ୍ରମୀ ଅଟେ । ଏହାକୁ ତୁମେ ଯୁବରାଜପଦରେ ଅଭିଷିକ୍ତ କର । ୧୨ । ଏ ତୁମର ବଡ଼ଭାଇଙ୍କର ବଡ଼ପୁଅ ଏବଂ ପରାକ୍ରମରେ ନିଜର ପିତାଙ୍କ ସମାନ ଅଟେ । ଅଙ୍ଗଦର ମନ ଉଦାର ଅଟେ । ଅତଏବ ସେ ଯୁବରାଜ ହେବାର ଯୋଗ୍ୟ ଅଟେ । ୧୩ । ହେ ସୌମ୍ୟ ! ଚତୁର୍ମାସ୍ୟା ଉପସ୍ଥିତ ହେଲାଣି । ଏହି ଚତୁର୍ମାସ୍ୟାର ପ୍ରଥମ ମାସ ଶ୍ରାବଣ । ଏତେବେଳେ ବର୍ଷାର ଆଗମ ସମୟ । ୧୪ ।

ନାଗ୍ନିମୁଦ୍ୟୋଗସମୟଃ ପ୍ରବିଶ ତ୍ୱଂ ପୁରୀଂ ଶୁଭାମ୍ ।
ଅସ୍ମିନ୍ ବତ୍ସ୍ୟାମ୍ୟହଂ ସୌମ୍ୟ ପର୍ବତେ ସହଲକ୍ଷ୍ମଣଃ । ୧୫ ।
ଇୟଂ ଗିରିଗୁହା ରମ୍ୟା ବିଶାଲା ଯୁକ୍ତମାରୁତା ।
ପ୍ରଭୂତସଲିଲା ସୌମ୍ୟ ପ୍ରଭୂତକମଳୋତ୍ପଳା । ୧୬ ।
କାର୍ତ୍ତିକେ ସମନୁପ୍ରାପ୍ତେ ତ୍ୱଂ ରାବଣବଧେ ଯତ ।
ଏଷ ନଃ ସମୟଃ ସୌମ୍ୟ ପ୍ରବିଶ ତ୍ୱଂ ସ୍ୱମାଳୟମ୍ । ୧୭ ।
ଅଭିଷିଞ୍ଚସ୍ୱ ରାଜ୍ୟେ ଚ ସୁହୃଦଃ ସଂପ୍ରହର୍ଷୟ ।
ଇତି ରାମାଭ୍ୟନୁଜ୍ଞାତଃ ସୁଗ୍ରୀବୋ ବାନରର୍ଷଭଃ । ୧୮ ।
ପ୍ରବିବେଶ ପୁରୀଂ ରମ୍ୟାଂ କିଷ୍କିନ୍ଧାଂ ବାଳିପାଳିତାମ୍ ।
ତଂ ବାନରସହସ୍ରାଣି ପ୍ରବିଷ୍ଟଂ ବାନରେଶ୍ୱରମ୍ । ୧୯ ।
ଅଭିବାର୍ଯ ପ୍ରବିଷ୍ଟାନି ସର୍ବତଃ ପ୍ଲବଗେଶ୍ୱରମ୍ ।
ତତଃ ପ୍ରକୃତୟଃ ସର୍ବା ଦୃଷ୍ଟ୍ୱା ହରିଗଣେଶ୍ୱରମ୍ । ୨୦ ।
ପ୍ରଣମ୍ୟ ମୂର୍ଦ୍ଧ୍ନା ପତିତା ବସୁଧାୟାଂ ସମାହିତାଃ ।
ସୁଗ୍ରୀବଃ ପ୍ରକୃତୀଃ ସର୍ବାଃ ସମ୍ଭାଷ୍ୟୋତ୍‌ଥାପ୍ୟ ବୀର୍ଯବାନ୍ ।୨୧

---

ଏହା କୌଣସିପ୍ରକାର ଉଦ୍‌ଯୋଗ କରିବାର ସମୟ ନୁହେ । ଅତଏବ ତୁମେ ତୁମ୍ଭର ନଗରରେ ପ୍ରବେଶ କର । ମୁଁ ଏହି ପର୍ବତରେ ଲକ୍ଷ୍ମଣସହିତ ବାସ କରିବି । ୧୫ । ଏହି ପର୍ବତଗୁହା ରମଣୀୟ ଏବଂ ପ୍ରଶସ୍ତ ଅଟେ । ଏଥିରେ ପବନ ଗମନାଗମନ କରୁଛି । ଏଠାରେ ପ୍ରଚୁର ଜଳ ଅଛି ଏବଂ ପ୍ରଭୂତ ପଦ୍ମ ଓ ନୀଳକଇଁ ମଧ୍ୟ ଅଛି । ୧୬ । କାର୍ତ୍ତିକମାସ ଉପସ୍ଥିତ ହେଲେ ତୁମକୁ ରାବଣବଧନିମନ୍ତେ ଯତ୍ନ କରିବାକୁ ହେବ, ଏହାହିଁ ଆମ୍ଭମାନଙ୍କର ସ୍ଥିର ସମୟ ରହିଲା । ବର୍ତ୍ତମାନ ତୁମେ ନିଜ ଘରକୁ ଯାଅ । ୧୭ । ତୁମେ ରାଜ୍ୟରେ ଅଭିଷିକ୍ତ ହୁଅ ଏବଂ ମିତ୍ର ବାନର-ମାନଙ୍କୁ ପ୍ରସନ୍ନ କରାଅ ।” ରାମଙ୍କ ଆଜ୍ଞା ପାଇ ବାନରଶ୍ରେଷ୍ଠ ସୁଗ୍ରୀବ ବାଳିପାଳିତ ରମଣୀୟ କିଷ୍କିନ୍ଧା ନଗରୀକୁ ଗଲେ । ବାନରରାଜ ସୁଗ୍ରୀବଙ୍କ ସଙ୍ଗେ ସଙ୍ଗେ ସହସ୍ର ସହସ୍ର ବାନର ତାଙ୍କୁ ଘେରିଆଡ଼ୁ ଘେରି ନଗରୀମଧ୍ୟରେ ପ୍ରବେଶ କଲେ । ବାନରରାଜ ସୁଗ୍ରୀବଙ୍କୁ ଦେଖି ପ୍ରଜାମାନେ ଭୂମିରେ ମୁଣ୍ଡ ଲଗାଇ ତାଙ୍କୁ ପ୍ରଣାମ କଲେ । ବୀର୍ଯ୍ୟବାନ୍ ସୁଗ୍ରୀବ ସମସ୍ତ ପ୍ରଜାଙ୍କ ସହିତ ସଂଭାଷଣ କଲେ ଏବଂ ସେଠାରୁ ଉଠି ଭାଇଙ୍କର ରମଣୀୟ ଅନ୍ତଃପୁରମଧ୍ୟରେ ପ୍ରବେଶ କଲେ । ପରମପରାକ୍ରମୀ ବାନରଶ୍ରେଷ୍ଠ ସୁଗ୍ରୀବ ଅନ୍ତଃପୁରରେ ପ୍ରବେଶକଲାରୁ, ଦେବତାମାନେ ଇନ୍ଦ୍ରଙ୍କର

ଭ୍ରାତୁରନ୍ତଃପୁରଂ ସୌମ୍ୟଂ ପ୍ରବିବେଶ ମହାବଲଃ ।
ପ୍ରବିଷ୍ଟଂ ଭୀମବିକ୍ରାନ୍ତଂ ସୁଗ୍ରୀବଂ ବାନରର୍ଷଭମ୍ । ୨୨ ।
ଅଭ୍ୟଷିଞ୍ଚନ୍ତ ସୁହୃଦଃ ସହସ୍ରାକ୍ଷମିବାମରାଃ ।
ତସ୍ୟ ପାଣ୍ଡୁରମାଜହ୍ରୁ ଶ୍ଛତ୍ରଂ ହେମପରିଷ୍କୃତମ୍ । ୨୩ ।
ଶୁକ୍ଳେ ଚ ବାଳବ୍ୟଜନେ ହେମଦଣ୍ଡେ ଯଶସ୍କରେ ।
ତଥା ରତ୍ନାନି ସର୍ବାଣି ସର୍ବବୀଜୌଷଧାନି ଚ । ୨୪ ।
ସକ୍ଷୀରାଣାଂ ଚ ବୃକ୍ଷାଣାଂ ପ୍ରରୋହାନ୍ କୁସୁମାନି ଚ ।
ଶୁକ୍ଳାନି ଚୈବ ବସ୍ତ୍ରାଣି ଶ୍ୱେତଂ ଚୈବାନୁଲେପନମ୍ । ୨୫ ।
ସୁଗନ୍ଧୀନି ଚ ମାଲ୍ୟାନି ସ୍ଥଳଜାନ୍ୟମ୍ବୁଜାନି ଚ ।
ଚନ୍ଦନାନି ଚ ଦିବ୍ୟାନି ଗନ୍ଧାଂଶ୍ଚ ବିବିଧାନ୍ ବହୂନ୍ । ୨୬ ।
ଅକ୍ଷତଂ ଜାତରୂପଂ ଚ ପ୍ରିୟଙ୍ଗୁ ମଧୁସର୍ପିଷୀ ।
ଦଧି ଚର୍ମ ଚ ବୈୟାଘ୍ରଂ ପରାର୍ଧ୍ୟୌ ଚାପ୍ୟୁପାନହୌ । ୨୭ ।
ସମାଲମ୍ଭନମାଦାୟ ଗୋରୋଚନଂ ମନଃଶିଳାମ୍ ।
ଆଜଗ୍ମୁସ୍ତତ୍ର ମୁଦିତା ବରାଃ କନ୍ୟାଶ୍ଚ ଷୋଡ଼ଶ । ୨୮ ।
ତତସ୍ତେ ବାନରଶ୍ରେଷ୍ଠମଭିଷେକ୍ତୁଂ ଯଥାବିଧି ।
ରତ୍ନୈର୍ବସ୍ତ୍ରୈଶ୍ଚ ଭକ୍ଷୈଶ୍ଚ ତୋଷୟିତ୍ୱା ଦ୍ୱିଜର୍ଷଭାନ୍ । ୨୯ ।

---

ଯେପରି ଅଭିଷେକ କରନ୍ତି ସେହିପରି ମିତ୍ର ବାନରମାନେ ତାଙ୍କର ଅଭିଷେକ କଲେ । ସୁନାଛୁଆଣି ହୋଇଥିବା ଶୀତବର୍ଣ୍ଣ ଛତ୍ର ତାଙ୍କ ମୁଣ୍ଡ ଉପରେ ଧରାହେଲା । ୧୮-୨୩ । ସ୍ୱର୍ଣ୍ଣଦଣ୍ଡବିଶିଷ୍ଟ ଦୁଇଟି ଶ୍ୱେତଚାମର, ସକଳପ୍ରକାର ରତ୍ନ, ବୀଜ ଏବଂ ଔଷଧି, କ୍ଷୀର ଥିବା ବୃକ୍ଷର ଅଙ୍କୁର, ଫୁଲ, ଶ୍ୱେତବସ୍ତ୍ର ଏବଂ ଶ୍ୱେତ ଅନୁଲେପନ, ସୁଗନ୍ଧଯୁକ୍ତ ସ୍ଥଳ ଏବଂ ଜଳପୁଷ୍ପମାଳା, ଦିବ୍ୟଚନ୍ଦନ ତଥା ଅନ୍ୟାନ୍ୟ ଅନେକ ପ୍ରକାର ସୁଗନ୍ଧଦ୍ରବ୍ୟ, ଅକ୍ଷତ, ସୁନା, ପ୍ରିୟଙ୍ଗୁ, ମଧୁ, ଘୃତ, ଦଧି, ବ୍ୟାଘ୍ରଚର୍ମ, ଉତ୍କୃଷ୍ଟ ଦୁଇଟି ଯୋତା, ଗୋରୋଚନା, ମଣିଶିଳା ପ୍ରଭୃତି ଦ୍ରବ୍ୟମାନ ସୁଗ୍ରୀବଙ୍କ ନିକଟକୁ ଅଣାଗଲା । ଷୋଳଟି ସୁନ୍ଦରୀ ପ୍ରସନ୍ନା ଶ୍ରେଷ୍ଠକନ୍ୟା ମଧ୍ୟ ସେଠାକୁ ଆସିଲେ । ୨୪-୨୮ । ଅନନ୍ତର ବିଧିପୂର୍ବକ ବାନରଶ୍ରେଷ୍ଠ ସୁଗ୍ରୀବଙ୍କର ଅଭିଷେକ କରିବା ନିମନ୍ତେ ରତ୍ନ, ବସ୍ତ୍ର ଏବଂ ଭୋଜନାଦିଦ୍ୱାରା ଶ୍ରେଷ୍ଠ ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ

ତତଃ କୁଶପରିସ୍ତୀର୍ଣଂ ସମିଦ୍ଧଂ ଜାତବେଦସମ୍ ।
ମନ୍ତ୍ରପୂତେନ ହବିଷା ହୁତ୍ୱା ମନ୍ତ୍ରବିଦୋ ଜନାଃ । ୩୦ ।
ତତୋ ହେମପ୍ରତିଷ୍ଠାନେ ବରାସ୍ତରଣସଂବୃତେ ।
ପ୍ରାସାଦଶିଖରେ ରମ୍ୟେ ଚିତ୍ରମାଲ୍ୟୋପଶୋଭିତେ । ୩୧ ।
ପ୍ରାଙ୍ମୁଖଂ ବିଧିବନ୍ମନ୍ତ୍ରୈଃ ସ୍ଥାପୟିତ୍ୱା ବରାସନେ ।
ନଦୀନଦେଭ୍ୟଃ ସଂହୃତ୍ୟ ତୀର୍ଥେଭ୍ୟଶ୍ଚ ସମନ୍ତତଃ । ୩୨ ।
ଆହୃତ୍ୟ ଚ ସମୁଦ୍ରେଭ୍ୟଃ ସର୍ବେଭ୍ୟୋ ବାନରର୍ଷଭାଃ ।
ଅପଃ କନକକୁମ୍ଭେଷୁ ନିଧାୟ ବିମଲଂ ଜଲମ୍ । ୩୩ ।
ଶୁଭୈର୍ବୃଷଭଶୃଙ୍ଗୈଶ୍ଚ କଲଶୈଶ୍ଚୈବ କାଞ୍ଚନୈଃ ।
ଶାସ୍ତ୍ରଦୃଷ୍ଟେନ ବିଧିନା ମହର୍ଷିବିହିତେନ ଚ । ୩୪ ।
ଗଜୋ ଗବାକ୍ଷୋ ଗବୟଃ ଶରଭୋ ଗନ୍ଧମାଦନଃ ।
ମୈନ୍ଦଶ୍ଚ ଦ୍ୱିବିଦଶ୍ଚୈବ ହନୁମାଞ୍ଜାମ୍ବବାଂସ୍ତଥା । ୩୫ ।
ଅଭ୍ୟଷିଞ୍ଚନ୍ତ ସୁଗ୍ରୀବଂ ପ୍ରସନ୍ନେନ ସୁଗନ୍ଧିନା ।
ସଲିଲେନ ସହସ୍ରାକ୍ଷଂ ବସବୋ ବାସବଂ ଯଥା । ୩୬ ।
ଅଭିଷିକ୍ତେ ତୁ ସୁଗ୍ରୀବେ ସର୍ବେ ବାନରପୁଙ୍ଗବାଃ ।
ପ୍ରଚୁକ୍ରୁଶୁର୍ମହାତ୍ମାନୋ ହୃଷ୍ଟାଃ ଶତସହସ୍ରଶଃ । ୩୭ ।

---

କରାହେଲା । ୨୯ । କୁଶ ବିଛାଇ ଦିଆଗଲା ଏବଂ ତାହା ଉପରେ ସମିଧଯୁକ୍ତ ଅଗ୍ନିରେ ମନ୍ତ୍ରଜ୍ଞ ପଣ୍ଡିତମାନେ ମନ୍ତ୍ରପୂତ ଘୃତଦ୍ୱାରା ହୋମ କଲେ । ୩୦ । ଅନନ୍ତର ବିଚିତ୍ର ମାଲ୍ୟଦ୍ୱାରା ମଣ୍ଡିତ କୋଠା ଉପରେ ଉତ୍କୃଷ୍ଟ ଆଚ୍ଛାଦନଯୁକ୍ତ ସୁବର୍ଣ୍ଣ ଆସନ ଉପରେ ବିଧିପୂର୍ବକ ମନ୍ତ୍ରପାଠ କରାହୋଇ, ସୁଗ୍ରୀବଙ୍କୁ ପୂର୍ବମୁଖ କରି ବସାଇ ଦିଆଗଲା । ଶ୍ରେଷ୍ଠ ବାନରମାନେ ନଦୀ, ନଦ ତଥା ସମସ୍ତ ତୀର୍ଥରୁ ଏବଂ ସମସ୍ତ ସମୁଦ୍ରରୁ ନିର୍ମଳ ଜଳ ଆଣି ସୁବର୍ଣ୍ଣକୁମ୍ଭରେ ରଖିଲେ । ୩୧-୩୩ । ଶୁଭସୂଚକ ବୃଷଭଶୃଙ୍ଗ ଏବଂ ସୁବର୍ଣ୍ଣକଳସରେ ଶାସ୍ତ୍ରବିଧାନ ଅନୁସାରେ ଏବଂ ମହର୍ଷିମାନଙ୍କ ଆଜ୍ଞାନୁଯାୟୀ ଗଜ, ଗବାକ୍ଷ, ଗବୟ, ଶରଭ, ଗନ୍ଧମାଦନ, ମୈନ୍ଦ, ଦ୍ୱିବିଦ, ହନୁମାନ୍ ଏବଂ ଜାମ୍ବବାନ୍ ସ୍ୱଚ୍ଛ ଏବଂ ସୁଗନ୍ଧି ଜଳଦ୍ୱାରା ସୁଗ୍ରୀବଙ୍କର ଅଭିଷେକ କଲେ । ଠିକ୍ ଯେପରି ଅଷ୍ଟବସୁମାନେ ସହସ୍ରାକ୍ଷ ଇନ୍ଦ୍ରଙ୍କର ଅଭିଷେକ କରିଥିଲେ, ସେହିପରି ଏ ଅଭିଷେକ କରାଗଲା । ୩୪-୩୬ । ସୁଗ୍ରୀବଙ୍କର ଅଭିଷେକ ହେବା ପରେ ଶତ ସହସ୍ର ପ୍ରଧାନ ପ୍ରଧାନ ବାନର ଆନନ୍ଦରେ କୋଳାହଳ କରିଥିଲେ ।୩୭।

ରାମସ୍ୟ ତୁ ବଚଃ କୁର୍ବନ୍ ସୁଗ୍ରୀବୋ ବାନରେଶ୍ୱରଃ ।
ଅଙ୍ଗଦଂ ସଂପରିଷ୍ୱଜ୍ୟ ଯୌବରାଜ୍ୟେଽଭ୍ୟଷେଚୟତ୍ ।୩୮।
ଅଙ୍ଗଦେ ଚାଭିଷିକ୍ତେ ତୁ ସାନୁକ୍ରୋଶାଃ ପ୍ଲବଙ୍ଗମାଃ ।
ସାଧୁ ସାଧ୍ୱିତି ସୁଗ୍ରୀବଂ ମହାତ୍ମାନୋ ହ୍ୟପୂଜୟନ୍ । ୩୯ ।
ରାମଂ ଚୈବ ମହାତ୍ମାନଂ ଲକ୍ଷ୍ମଣଂ ଚ ପୁନଃ ପୁନଃ ।
ପ୍ରୀତାଶ୍ଚ ତୁଷ୍ଟୁବୁଃ ସର୍ବେ ତାଦୃଶେ ତତ୍ର ବର୍ତ୍ତିନି । ୪୦ ।
ହୃଷ୍ଟପୁଷ୍ଟଜନାକୀର୍ଣ୍ଣା ପତାକାଧ୍ୱଜଶୋଭିତା ।
ବଭୂବ ନଗରୀ ରମ୍ୟା କିଷ୍କିନ୍ଧା ଗିରିଗହ୍ୱରେ ।୪୧ ।
ନିବେଦ୍ୟ ରାମାୟ ତଦା ମହାତ୍ମନେ
ମହାଭିଷେକଂ କପିବାହିନୀପତିଃ ।
ରୁମାଂ ଚ ଭାର୍ଯ୍ୟାମୁପଲଭ୍ୟ ବୀର୍ଯ୍ୟବା-
ନବାପ ରାଜ୍ୟଂ ତ୍ରିଦଶାଧିପୋ ଯଥା । ୪୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସୁଗ୍ରୀବାଭିଷେକୋ
ନାମ ଷଡ଼୍‌ବିଂଶଃ ସର୍ଗଃ

---

ରାମଚନ୍ଦ୍ରଙ୍କ କଥା ମାନି କପିରାଜ ସୁଗ୍ରୀବ ଅଙ୍ଗଦକୁ ଆଲିଙ୍ଗନ କରି ଯୁବରାଜପଦରେ ଅଭିଷିକ୍ତ କଲେ ।୩୮। ଅଙ୍ଗଦଙ୍କର ଅଭିଷେକ ହେବାରୁ ତାଙ୍କ ଦୁଃଖରେ ସହାନୁଭୂତି କରୁଥିବା ବାନରମାନେ 'ସାଧୁ' 'ସାଧୁ' କହି ସୁଗ୍ରୀବଙ୍କର ପ୍ରଶଂସା କଲେ । ୩୯ । ସେହି ଅଭିଷେକ ସମୟରେ ବାନରମାନେ ପ୍ରସନ୍ନ ହୋଇ ରାମ ଏବଂ ଲକ୍ଷ୍ମଣଙ୍କୁ ବାରମ୍ବାର ପ୍ରଶଂସା କଲେ । ୪୦ । ଗିରିଗହ୍ୱରମଧ୍ୟରେ ବିରାଜିତ କିଷ୍କିନ୍ଧାନଗରୀ ହୃଷ୍ଟପୁଷ୍ଟ ବାନରମାନଙ୍କରେ ପୂର୍ଣ୍ଣହୋଇ ଏବଂ ଧ୍ୱଜା, ପତାକା ଆଦି ଦ୍ୱାରା ସୁସଜ୍ଜିତ ହୋଇ ଅତିଶୟ ରମଣୀୟ ହୋଇଥିଲା । ୪୧ । ବାନରରାଜ ସୁଗ୍ରୀବ ମହାତ୍ମା ରାମଚନ୍ଦ୍ରଙ୍କୁ ଅଭିଷେକ ହୋଇ ଯିବାର ସମ୍ବାଦ ପଠାଇଲେ । ଇନ୍ଦ୍ର ରାଜ୍ୟ-ଲାଭ କଲାପରି ସେ ତାଙ୍କର ଭାର୍ଯ୍ୟା ରୁମାଙ୍କୁ ପାଇଲେ ଏବଂ ରାଜ୍ୟ ମଧ୍ୟ ପାଇଲେ ।୪୨।

# ସପ୍ତବିଂଶଃ ସର୍ଗଃ

## ମାଲ୍ୟବନ୍ନିବାସଃ

ଅଭିଷିକ୍ତେ ତୁ ସୁଗ୍ରୀବେ ପ୍ରବିଷ୍ଟେ ବାନରେ ଗୁହାମ୍ ।
ଆଜଗାମ ସହ ଭ୍ରାତ୍ରା ରାମଃ ପ୍ରସ୍ରବଣଂ ଗିରିମ୍ । ୧ ।
ଶାର୍ଦ୍ଦୂଳମୃଗସଂଘୁଷ୍ଟଂ ସିଂହୈର୍ଭୀମରବୈର୍ବୃତମ୍ ।
ନାନାଗୁଲ୍ମଲତାଗୂଢ଼ଂ ବହୁପାଦପସଂକୁଳମ୍ । ୨ ।
ଋକ୍ଷବାନରଗୋପୁଚ୍ଛୈର୍ମାର୍ଜାରୈଶ୍ଚ ନିଷେବିତମ୍ ।
ମେଘରାଶିନିଭଂ ଶୈଳଂ ନିତ୍ୟଂ ଶୁଚିକରଂ ଶିବମ୍ । ୩ ।
ତସ୍ୟ ଶୈଳସ୍ୟ ଶିଖରେ ମହତୀମାୟତାଂ ଗୁହାମ୍ ।
ପ୍ରତ୍ୟଗୃହ୍ଣତ ବାସାର୍ଥଂ ରାମଃ ସୌମିତ୍ରିଣା ସହ । ୪ ।
କୃତ୍ୱା ଚ ସମୟଂ ରାମଃ ସୁଗ୍ରୀବେଣ ସହାନଘଃ ।
କାଲଯୁକ୍ତଂ ମହଦ୍‌ବାକ୍ୟମୁବାଚ ରଘୁନନ୍ଦନଃ । ୫ ।
ବିନୀତଂ ଭ୍ରାତରଂ ଭ୍ରାତା ଲକ୍ଷ୍ମଣଂ ଲକ୍ଷ୍ମିବର୍ଧନମ୍ ।
ଇୟଂ ଗିରିଗୁହା ରମ୍ୟା ବିଶାଳା ଯୁକ୍ତମାରୁତା । ୬ ।

---

## ୨୭ଶ ସର୍ଗ

### (ରାମଙ୍କର ମାଲ୍ୟବନ୍ତରେ ନିବାସ)

ସୁଗ୍ରୀବଙ୍କର ଅଭିଷେକ ହେବା ପରେ ଏବଂ ସେ ଗୁହାମଧ୍ୟରେ ପ୍ରବେଶ କରିବା ପରେ ରାମଚନ୍ଦ୍ର ଭାଇ ସହିତ ପ୍ରସ୍ରବଣ ପର୍ବତକୁ ଆସିଲେ । ୧ । ବ୍ୟାଘ୍ର ଏବଂ ମୃଗଙ୍କ ଶବ୍ଦରେ ସେ ସ୍ଥାନ ପରିପୂର୍ଣ୍ଣ ଥିଲା । ଭୟଙ୍କର ରବକାରୀ ସିଂହମାନେ ସେଠାରେ ବିଚରଣ କରୁଥିଲେ । ସେ ପର୍ବତ ନାନାପ୍ରକାର ଲତା, ଗୁଳ୍ମ ଏବଂ ବଡ଼ ବଡ଼ ବୃକ୍ଷରେ ପୂର୍ଣ୍ଣ ଥିଲା । ୨ । ଭାଲୁ, ବାନର, ଗୋପୁଚ୍ଛ ଏବଂ ବିରାଡ଼ି ପ୍ରଭୃତି ମଧ୍ୟ ସେଠାରେ ରହୁଥିଲେ । ମେଘରାଶିସଦୃଶ ଶ୍ୟାମଳବର୍ଣ୍ଣ ପର୍ବତ ସର୍ବଦା ଅତିଶୟ ପବିତ୍ର ଏବଂ ମଙ୍ଗଳସୂଚକ ଥିଲା । ୩ । ସେହି ପର୍ବତର ଶିଖର ଉପରେ ଏକ ବୃହତ୍ ଗୁମ୍ଫା ରାମଚନ୍ଦ୍ର ଲକ୍ଷ୍ମଣଙ୍କ ସହିତ ବାସ କରିବା ନିମନ୍ତେ ବାଛିନେଲେ । ୪ । ନିଷ୍ପାପ ରାମଚନ୍ଦ୍ର ସୁଗ୍ରୀବଙ୍କ ସହିତ (ସୀତା ଅନ୍ୱେଷଣ ଉଦ୍‌ଯୋଗରେ) ସମୟ ସ୍ଥିର କରିସାରିଥିଲେ । ରାମଚନ୍ଦ୍ର ସମୟୋପଯୋଗୀ ବଚନ ବିନୀତ ଭାଇ ଲକ୍ଷ୍ମଣଙ୍କୁ କହିଲେ, "ଏହି ପର୍ବତଗୁହା ଅତିଶୟ ରମଣୀୟ ଏବଂ ପ୍ରଶସ୍ତ ଅଟେ । ଏଠାରେ ବାୟୁ

ଅସ୍ୟାଂ ବସ୍ତ୍ୟାବ ସୌମିତ୍ରେ ବର୍ଷରାତ୍ରମରିଂଦମ ।
ଗିରିଶୃଙ୍ଗମିଦଂ ରମ୍ୟମୁତ୍ତମଂ ପାର୍ଥିବାତ୍ମଜ । ୭ ।
ଶ୍ୱେତାଭିଃ କୃଷ୍ଣତାମ୍ରାଭିଃ ଶିଲାଭିରୁପଶୋଭିତମ୍ ।
ନନାଧାତୁସମାକୀର୍ଣଂ ନଦୀଦର୍ଦୁରସଂଯୁତମ୍ । ୮ ।
ବିବିଧୈର୍ବୃକ୍ଷଖଣ୍ଡୈଶ୍ଚ ଚାରୁ ଚିତ୍ରଲତାଯୁତମ୍ ।
ନାନାବିହଗସଂଘୁଷ୍ଟଂ ମୟୂରବରନାଦିତମ୍ । ୯ ।
ମାଲତୀକୁନ୍ଦଗୁଲ୍ମୈଶ୍ଚ ସିନ୍ଦୁବାରୈଃ ଶିରୀଷକୈଃ ।
କଦମ୍ବାର୍ଜୁନସର୍ଜୈଶ୍ଚ ପୁଷ୍ପିତୈରୁପଶୋଭିତମ୍ । ୧୦ ।
ଇୟଂ ଚ ନଳିନୀ ରମ୍ୟା ଫୁଲ୍ଲପଙ୍କଜମଣ୍ଡିତା ।
ନାତିଦୂରେ ଗୁହାୟା ନୌ ଭବିଷ୍ୟତି ନୃପାତ୍ମଜ । ୧୧ ।
ପ୍ରାଗୁଦକ୍ପ୍ରବଣେ ଦେଶେ ଗୁହା ସାଧୁ ଭବିଷ୍ୟତି ।
ପଶ୍ଚାଚ୍ଚୈବୋନ୍ନତା ସୌମ୍ୟ ନିବାତେୟଂ ଭବିଷ୍ୟତି ।୧୨।
ଗୁହାଦ୍ୱାରେ ଚ ସୌମିତ୍ରେ ଶିଳା ସମତଳା ଶିବା ।
କୃଷ୍ଣା ଚୈବାୟତା ଚୈବ ଭିନ୍ନାଞ୍ଜନଚୟୋପମା । ୧୩।

---

ଗମନାଗମନ କରୁଛି । ୫-୬ । ହେ ଶତ୍ରୁଘାତି ! ବର୍ଷାରାତ୍ରିରେ ଆମେମାନେ ଏହିଠାରେ ବାସକରିବା । ହେ ରାଜପୁତ୍ର ! ଏହି ଗିରିଶୃଙ୍ଗ ଅତି ଉତ୍ତମ ଏବଂ ରମଣୀୟ ଅଟେ । ୭ । ଏ ସ୍ଥାନ ଶ୍ୱେତ, କୃଷ୍ଣ ଏବଂ ତାମ୍ରବର୍ଣ୍ଣର ପ୍ରସ୍ତରରେ ଶୋଭା ପାଉଅଛି । ଏ ପର୍ବତରେ ଅନେକପ୍ରକାର ଧାତୁ ଅଛି । ଏଠାରେ ନଦୀ ଏବଂ ଭେକମାନେ ମଧ୍ୟ ଅଛନ୍ତି । ୮ । ଅନେକପ୍ରକାର ବୃକ୍ଷ ଏଠାରେ ଅଛି ଏବଂ ବିଚିତ୍ର ରମଣୀୟ ଲତାମାନ ମଧ୍ୟ ଅଛି । ଅନେକ ପ୍ରକାର ପକ୍ଷୀ ଏଠାରେ ରବ କରୁଛନ୍ତି ଏବଂ ମୟୂରମାନଙ୍କର ଶବ୍ଦ ମଧ୍ୟ ଶୁଣାଯାଉଅଛି । ୯ । ମାଳତୀ ଏବଂ କୁନ୍ଦ, ଗୁଳ୍ମ ଏବଂ ଶୃଙ୍ଗବାର, ଶିରୀଷ, କଦମ୍ବ ଏବଂ ଅର୍ଜୁନ ବୃକ୍ଷମାନ ପୁଷ୍ପରେ ଶୋଭା ପାଉ-ଅଛନ୍ତି । ୧୦ । ଏହି ରମଣୀୟ କ୍ଷୁଦ୍ର ସରୋବର ମଧ୍ୟ ପଦ୍ମପୁଷ୍ପରେ ମଣ୍ଡିତ ହୋଇ-ଅଛି । ଏହା ଆମ ଗୁହାଠାରୁ ବେଶି ଦୂର ନୁହେ । ୧୧ । ଈଶାନକୋଣରେ ଅବସ୍ଥିତ ଥିବାରୁ ଏ ଗୁହା ଆମପାଇଁ ବିଶେଷ ସୁବିଧାଜନକ ହେବ । ଏହାର ପଶ୍ଚାଦ୍ଭାଗ ଉଚ୍ଚ ଥିବାରୁ ବେଶି ପବନ ବାଜିବ ନାହିଁ । ୧୨ । ଲକ୍ଷ୍ମଣ ! ଗୁହାର ଦ୍ୱାରଦେଶରେ ସମତଳ କୃଷ୍ଣବର୍ଣ୍ଣ ଏକ ପ୍ରଶସ୍ତ ଶିଳା ରହିଛି । ଏହା ଦଳିତାଞ୍ଜନ-ସମଷ୍ଟି ପରି ରମଣୀୟ ଦେଖାଯାଉଅଛି । ୧୩ । ବାବୁ ! ଏ ଗିରିଶିଖର ଉତ୍ତର

ଗିରିଶୃଙ୍ଗମିଦଂ ତାତ ପଶ୍ୟ ଚୋତ୍ତରତଃ ଶୁଭମ୍ ।
ଭିନ୍ନାଞ୍ଜନଚୟାକାରମମ୍ଭୋଧରମିବୋଦ୍ଧତମ୍ । ୧୪ ।
ଦକ୍ଷିଣସ୍ୟାମପି ଦିଶି ସ୍ଥିତଂ ଶ୍ୱେତମିବାମ୍ବରମ୍ ।
କୈଳାସଶିଖରପ୍ରଖ୍ୟଂ ନାନାଧାତୁବିରାଜିତମ୍ । ୧୫ ।
ପ୍ରାଚୀନବାହିନୀଂ ଚୈବ ନଦୀଂ ଭୃଶମକର୍ଦ୍ଦମାମ୍ ।
ଗୁହାୟାଃ ପରତଃ ପଶ୍ୟ ତ୍ରିକୂଟେ ଜାହ୍ନବୀମିବ । ୧୬ ।
ଚନ୍ଦନୈସ୍ତିଲକୈଃ ସାଲୈସ୍ତମାଲୈରତିମୁକ୍ତକୈଃ ।
ପଦ୍ମକୈଃ ସରଳୈଶ୍ଚୈବ ଅଶୋକୈଶ୍ଚୈବ ଶୋଭିତାମ୍ ।୧୭
ବାନୀରୈସ୍ତିମିଦୈଶ୍ଚୈବ ବକୁଲୈଃ କେତକୈରପି ।
ହିନ୍ତାଳୈସ୍ତିନିଶୈର୍ନୀପୈର୍ବେତସୈଃ କୃତମାଲକୈଃ । ୧୮ ।
ତୀରଜୈଃ ଶୋଭିତା ଭାତି ନାନାରୂପୈସ୍ତତସ୍ତତଃ ।
ବସନାଭରଣୋପେତା ପ୍ରମଦେବାଭ୍ୟଲଂକୃତା ।୧୯ ।
ଶତଶଃ ପକ୍ଷିସଙ୍ଘୈଶ୍ଚ ନାନାନାଦବିନାଦିତା ।
ଏକୈକମନୁରକ୍ତୈଶ୍ଚ ଚକ୍ରବାକୈରଲଂକୃତା । ୨୦ ।

---

ଦିଗରେ କିପରି ରମଣୀୟ ଦେଖାଯାଉଛି ଗୃହଁ । ଦଳିତ କଜ୍ଜଳତୁଲ୍ୟ କୃଷ୍ଣବର୍ଣ୍ଣ ମେଘ ଉଠିଲାପରି ଏହା ଦେଖାଯାଉଛି । ୧୪ । ଦକ୍ଷିଣ ଦିଗରେ ମଧ୍ୟ ଶ୍ୱେତବର୍ଣ୍ଣ ଆକାଶ ପରି ଏବଂ କୈଳାସଶିଖରସଦୃଶ ନାନା ଧାତୁଶୋଭିତ ଶୃଙ୍ଗ ରହିଛି । ୧୫ । ତ୍ରିକୂଟ ଉପରେ ବହୁଥିବା ଗଙ୍ଗାପରି ଏ ଗୁହାର ଅପର ପାର୍ଶ୍ୱରେ ପ୍ରବାହିତ ହେଉଥିବା ନଦୀକୁ ଦେଖ । ଏଥିରେ ଆଦୌ କର୍ଦ୍ଦମ ନାହିଁ । ୧୬। ଚନ୍ଦନ, ତିଲକ, ଶାଳ, ତମାଳ, ଅତିମୁକ୍ତକ, ପଦ୍ମକ, ସରଳ ଏବଂ ଅଶୋକ ବୃକ୍ଷ ଦ୍ୱାରା ଏହି ନଦୀ ଶୋଭିତ ହୋଇଅଛି । ବାନୀର, ତିମିଦ, ବକୁଳ, କେତକୀ, ହିନ୍ତାଳ, ତିନିଶ, କଦମ୍ବ ଏବଂ ବେତସ ପ୍ରଭୃତି ବୃକ୍ଷର ମାଳା ଏହି ନଦୀ ଧାରଣ କରିଅଛି । ନଦୀର କୂଳରେ ଜାତହୋଇଥିବା ନାନାପ୍ରକାର ବୃକ୍ଷରେ ଏହା ସ୍ଥାନେ ସ୍ଥାନେ ଶୋଭମାନ ହୋଇଅଛି । ବସ୍ତ୍ର ଏବଂ ଅଳଙ୍କାରଦ୍ୱାରା ମଣ୍ଡିତା ରମଣୀ ସଦୃଶ ଏହା ଅତିଶୟ ରମଣୀୟ ଦେଖାଯାଉଅଛି । ୧୭-୧୯ । ଶତ ଶତ ପକ୍ଷି-ସମୂହର ଶବ୍ଦରେ ଏ ନଦୀ ନିନାଦିତ ହେଉଅଛି ଏବଂ ପରସ୍ପର ଅନୁର ଚକ୍ରବାକଦମ୍ପତିଦ୍ୱାରା ଏହା ଶୋଭମାନ ହୋଇଅଛି । ୨୦ । ଏହାର ତଟଦେଶ

ପୁଲିନୈରନ୍ତରମୈଶ୍ଚ ହଂସସାରସସେବିତା ।
ପ୍ରହସନ୍ତ୍ୟେବ ଭାନ୍ତ୍ୟେଷା ନାନାରତ୍ନସମନ୍ୱିତା ।୨୧।
କ୍ୱଚିନ୍ନୀଳୋତ୍ପଳୈଶ୍ଛନ୍ନା ଭାତିରକ୍ତୋତ୍ପଳୈଃ କ୍ୱଚିତ୍ ।
କ୍ୱଚିଦାଭାତି ଶୁକ୍ଲୈଶ୍ଚ ଦିବ୍ୟୈଃ କୁମୁଦକୁଡ୍ମଳୈଃ । ୨୨ ।
ପାରିପ୍ଲବଶତୈର୍ଜୁଷ୍ଟା ବର୍ହିକ୍ରୌଞ୍ଚବିନାଦିତା ।
ରମଣୀୟା ନଦୀ ସୌମ୍ୟା ମୁନିସଙ୍ଘନିଷେବିତା । ୨୩ ।
ପଶ୍ୟ ଚନ୍ଦନବୃକ୍ଷାଣାଂ ପଂକ୍ତୀଃ ସୁରୁଚିରା ଇବ ।
କକୁଭାନାଂ ଚ ଦୃଶ୍ୟନ୍ତେ ମନସୈବୋଦିତାଃ ସମମ୍ । ୨୪ ।
ଅହୋ ସୁରମଣୀୟୋଽୟଂ ଦେଶଃ ଶତ୍ରୁନିଷୂଦନ ।
ଦୃଢ଼ଂ ରଂସ୍ୟାବ ସୌମିତ୍ରେ ସାଧ୍ୱତ୍ର ନିବସାବହେ ।୨୫।
ଇତଶ୍ଚ ନାତିଦୂରେ ସା କିଷ୍କିନ୍ଧା ଚିତ୍ରକାନନା ।
ସୁଗ୍ରୀବସ୍ୟ ପୁରୀ ରମ୍ୟା ଭବିଷ୍ୟତି ନୃପାତ୍ମଜ । ୨୬ ।
ଗୀତବାଦିତ୍ରନିର୍ଘୋଷଃ ଶ୍ରୂୟତେ ଜୟତାଂବର ।
ନଦତାଂ ବାନରାଣାଂ ଚ ମୃଦଙ୍ଗାଡ଼ମ୍ବରୈଃ ସହ । ୨୭ ।

---

ମଧ୍ୟ ହଂସ ଏବଂ ସାରସମାନଙ୍କଦ୍ୱାରା ମଣ୍ଡିତ ହୋଇ ଶୋଭାପାଉଅଛି । ଅନେକ ପ୍ରକାର ରତ୍ନଯୁକ୍ତ ହୋଇଥିବାରୁ ଏ ନଦୀ ହାସ୍ୟ କଲପରି ରମଣୀୟ ଦେଖା ଯାଉଅଛି । ୨୧ । କେଉଁଠି ଏହି ନଦୀ ନୀଳ ପଦ୍ମଦ୍ୱାରା ଆଚ୍ଛାଦିତ ହୋଇଅଛି, କେଉଁଠି ରକ୍ତପଦ୍ମ, କେଉଁଠି ଶ୍ୱେତପଦ୍ମ ଏବଂ ସ୍ଥାନେ ସ୍ଥାନେ କୁମୁଦର କଢ଼ିଦ୍ୱାରା ଏହା ସୁଶୋଭିତ ହୋଇଅଛି । ୨୨ । ଶତ ଶତ ଜଳଚର ପକ୍ଷୀଦ୍ୱାରା ଏ ନଦୀ ପୂର୍ଣ୍ଣ ହୋଇଅଛି ଏବଂ ମୟୂର ଓ କ୍ରୌଞ୍ଚ ପକ୍ଷୀମାନଙ୍କ ଶବ୍ଦରେ ଏହା ମୁଖରିତ ହେଉଅଛି । ଅନେକ ମୁନି ଏଠାରେ ବାସକରୁଛନ୍ତି । ଏ ନଦୀ ଅତ୍ୟନ୍ତ ସୌମ୍ୟ ଏବଂ ରମଣୀୟ ହୋଇଅଛି । ୨୩ । ଚନ୍ଦନ ବୃକ୍ଷର ପଂକ୍ତି ଦେଖ ଏବଂ ମାନସଜାତ ସଦୃଶ ଶୋଭମାନ ଏହି କକୁଭ ବୃକ୍ଷର ପଂକ୍ତି ମଧ୍ୟ ଦେଖ । ୨୪ । ହେ ଶତ୍ରୁସୂଦନ ! ଏ ଦେଶ ଅତିଶୟ ରମଣୀୟ ଅଟେ । ଲକ୍ଷ୍ମଣ ! ଏଠାରେ ଆମେ ଖୁବ୍ ଆନନ୍ଦଲାଭ କରିବା ଏବଂ ସୁଖରେ ରହିବା । ୨୫ । ସୁନ୍ଦର ବନଯୁକ୍ତ ସୁଗ୍ରୀବଙ୍କର ରମଣୀୟ ନଗରୀ କିଷ୍କିନ୍ଧା ମଧ୍ୟ ଏଠାରୁ ବେଶୀ ଦୂର ନୁହେ । ୨୬ । ମୃଦଙ୍ଗଧ୍ୱନି ସହିତ ନାଦ କରୁଥିବା ବାନରମାନଙ୍କର ଗୀତ ବାଦ୍ୟର ଶବ୍ଦ ଏଠାରୁ ଶୁଣାଯାଉଛି । ୨୭ ।

ଲବ୍ଧ୍ୱା ଭାର୍ଯ୍ୟାଂ କପିବରଃ ପ୍ରାପ୍ୟ ରାଜ୍ୟଂ ସୁହୃଦ୍‌ବୃତଃ ।
ଧ୍ରୁବଂ ନନ୍ଦତି ସୁଗ୍ରୀବଃ ସଂପ୍ରାପ୍ୟ ମହତୀଂ ଶ୍ରିୟମ୍ । ୨୮ ।
ଇତ୍ୟୁକ୍ତ୍ୱା ନ୍ୟବସତ୍ତତ୍ର ରାଘବଃ ସହଲକ୍ଷ୍ମଣଃ ।
ବହୁଦୃଶ୍ୟଦରୀକୁଞ୍ଜେ ତସ୍ମିନ୍ ପ୍ରସ୍ରବଣେ ଗିରୌ । ୨୯ ।
ସୁସୁଖେ ହି ବହୁଦ୍ରବ୍ୟେ ତସ୍ମିନ୍ ହି ଧରଣୀଧରେ ।
ବସତସ୍ତସ୍ୟ ରାମସ୍ୟ ରତିରଳ୍ପାପି ନାଭବତ୍ । ୩୦ ।
ହୃତାଂ ହି ଭାର୍ଯ୍ୟାଂ ସ୍ମରତଃ ପ୍ରାଣେଭ୍ୟୋଽପି ଗରୀୟସୀମ୍ ।
ଉଦୟାଭ୍ୟୁଦିତଂ ଦୃଷ୍ଟ୍ୱା ଶଶାଙ୍କଂ ସବିଶେଷତଃ । ୩୧ ।
ଆବିବେଶ ନ ତଂ ନିଦ୍ରା ନିଶାସୁ ଶୟନଂ ଗତମ୍ ।
ତତ୍ସମୁତ୍ଥେନ ଶୋକେନ ବାଷ୍ପୋପହତଚେତନମ୍ । ୩୨ ।
ତଂ ଶୋଚମାନଂ କାକୁତ୍ସ୍ଥଂ ନିତ୍ୟଂ ଶୋକପରାୟଣମ୍ ।
ତୁଲ୍ୟଦୁଃଖୋଽବ୍ରବୀଦ୍‌ଭ୍ରାତା ଲକ୍ଷ୍ମଣୋଽନୁନୟନ୍ ବଚଃ । ୩୩ ।
ଅଲଂ ବୀର ବ୍ୟଥାଂ ଗତ୍ୱା ନ ତ୍ୱଂ ଶୋଚିତୁମର୍ହସି ।
ଶୋଚତୋ ହ୍ୟବସୀଦନ୍ତି ସର୍ବାର୍ଥା ବିଦିତଂ ହି ତେ । ୩୪ ।
ଭବାନ୍ କ୍ରିୟାପରୋ ଲୋକେ ଭବାନ୍ଦେବପରାୟଣଃ ।
ଆସ୍ତିକୋ ଧର୍ମଶୀଳଶ୍ଚ ବ୍ୟବସାୟୀ ଚ ରାଘବ । ୩୫ ।

---

ସ୍ତ୍ରୀ ଏବଂ ରାଜ୍ୟ ପାଇ ଏବଂ ବହୁତ ସମ୍ପତ୍ତି ଲାଭକରି ସୁଗ୍ରୀବ ନିଶ୍ଚୟ ନିଜର ମିତ୍ର-ମାନଙ୍କ ସହିତ ଆନନ୍ଦ କରୁଅଛି” । ୨୮ । ଏହା କହି ରାଘବ ଲକ୍ଷ୍ମଣଙ୍କ ସହିତ ସେହି ପ୍ରସ୍ରବଣ ପର୍ବତରେ ବାସ କରିବାକୁ ଲାଗିଲେ । ସେଠାରେ ଅନେକ ଗୁମ୍ଫା ଏବଂ ଲତାକୁଞ୍ଜ ଥିଲା । ୨୯ । ସେ ପର୍ବତରେ ସୁଖର ଅନେକ ସାମଗ୍ରୀ ଥିଲା । ତଥାପି ରାମଚନ୍ଦ୍ର ସେଠାରେ ରହି ଟିକିଏ ହେଲେ ଆନନ୍ଦ ପାଇଲେ ନାହିଁ । ୩୦ । ପ୍ରାଣରୁ ବଳି ପ୍ରିୟତମା ନିଜର ହୃତା ପତ୍ନୀଙ୍କୁ ସ୍ମରଣ କରି, ବିଶେଷତଃ ଚନ୍ଦ୍ର ଉଦୟ ହେବାର ଦେଖି, ବିଛଣାରେ ଶୋଇବାକୁ ଗଲେ ମଧ୍ୟ ତାଙ୍କୁ ଆଦୌ ନିଦ୍ରା ହେଲା ନାହିଁ, କାରଣ ସୀତାଙ୍କ ବିୟୋଗଜନିତ ଦୁଃଖହେତୁରୁ କାନ୍ଦି କାନ୍ଦି ସେ ଅଚେତନ ହୋଇପଡ଼ୁଥିଲେ । ୩୨ । ଏହିପରି ଶୋକ କରୁଥିବା ରାମଚନ୍ଦ୍ରଙ୍କୁ ତାଙ୍କର ସମଦୁଃଖଭାଗୀ ଭାଇ ଲକ୍ଷ୍ମଣ ଅନୁନୟ କରି କହିଲେ । ୩୩ । ହେ ବୀର ! ବ୍ୟଥିତ ହେବାରେ କିଛି ଫଳ ନାହିଁ । ଆପଣଙ୍କର ଚିନ୍ତା କରିବା ଉଚିତ ନୁହେ । ଶୋକ କରିବା ବ୍ୟକ୍ତିର ସବୁଥିରେ ଅବସାଦ ଜାତହୁଏ, ଏ କଥା ଆପଣ ଜାଣନ୍ତି । ୩୪ । ହେ ରାଘବ ! ଆପଣ କାର୍ଯ୍ୟତତ୍ପର ଏବଂ ଦେବତାମାନଙ୍କ ପ୍ରତି ପ୍ରେମ କରନ୍ତି । ଆପଣ ଈଶ୍ୱରବିଶ୍ୱାସୀ, ଧର୍ମାତ୍ମା ଏବଂ ଉଦ୍‌ଯୋଗଶୀଳ ମଧ୍ୟ

ନ ହ୍ୟବ୍ୟବସିତଂ ଶକ୍ୟଂ ରାକ୍ଷସଂ ତଂ ବିଶେଷତଃ ।
ସମର୍ଥସ୍ତ୍ୱଂ ରଣେ ହନ୍ତୁଂ ବିକ୍ରମୈର୍ଜିହ୍ମକାରିଣମ୍ । ୩୬ ।
ସମୁନ୍ମୂଲ୍ୟ ଶୋକଂ ତ୍ୱଂ ବ୍ୟବସାୟଂ ସ୍ଥିରୀକୁରୁ ।
ତତଃ ସପରିବାରଂ ତଂ ରାକ୍ଷସଂ ହନ୍ତୁମର୍ହସି । ୩୭ ।
ପୃଥିବୀମପି କାକୁତ୍ସ୍ଥ ସସାଗରବନାଚଲାମ୍ ।
ପରିବର୍ତ୍ତୟିତୁଂ ଶକ୍ତଃ କିଂ ପୁନସ୍ତଂ ହି ରାବଣମ୍ । ୩୮ ।
ଶରତ୍କାଲଂ ପ୍ରତୀକ୍ଷସ୍ୱ ପ୍ରାବୃଟ୍କାଲୋଽୟମାଗତଃ ।
ତତଃ ସରାଷ୍ଟ୍ରଂ ସଗଣଂ ରାବଣଂ ତଂ ବଧିଷ୍ୟସି । ୩୯ ।
ଅହଂ ତୁ ଖଲୁ ତେ ବୀର୍ଯ୍ୟଂ ପ୍ରସୁପ୍ତଂ ପ୍ରତିବୋଧୟେ ।
ଦୀପ୍ତୈରାହୁତିଭିଃ କାଲେ ଭସ୍ମଚ୍ଛନ୍ନମିବାନଲମ୍ । ୪୦ ।
ଲକ୍ଷ୍ମଣସ୍ୟ ହି ତଦ୍ବାକ୍ୟଂ ପ୍ରତିପୂଜ୍ୟ ହିତଂ ଶୁଭମ୍ ।
ରାଘବଃ ସୁହୃଦଂ ସ୍ନିଗ୍ଧମିଦଂ ବଚନମବ୍ରବୀତ୍ । ୪୧ ।
ବାଚ୍ୟଂ ଯଦନୁରକ୍ତେନ ସ୍ନିଗ୍ଧେନ ଚ ହିତେନ ଚ ।
ସତ୍ୟବିକ୍ରମଯୁକ୍ତେନ ତଦୁକ୍ତଂ ଲକ୍ଷ୍ମଣ ତ୍ୱୟା । ୪୨ ।

---

ଅଟନ୍ତି । ୩୫ । ଉଦ୍‌ଯୋଗ ବ୍ୟତୀତ ଶତ୍ରୁକୁ, ବିଶେଷତଃ ସେ ରାକ୍ଷସକୁ ଆପଣ କଦାପି ମାରି ପାରିବେ ନାହିଁ; କାରଣ ପରାକ୍ରମ ବିଷୟରେ ସେ ସର୍ବଦା କପଟ ଆଚରଣ କରିଥାଏ । ୩୬ । ଆପଣ ଶୋକକୁ ସମୂଳେ ଦୂର କରନ୍ତୁ ଏବଂ ଉଦ୍ୟମ କରିବାର ସ୍ଥିର କରନ୍ତୁ । ତେବେ ଯାଇଁ ଆପଣ ସେ ରାକ୍ଷସକୁ ସପରିବାରରେ ମାରିବାକୁ ସମର୍ଥ ହେବେ । ୩୭। ଆପଣ ବନ, ପର୍ବତ ଏବଂ ସମୁଦ୍ର ସହିତ ଏ ସମଗ୍ର ପୃଥିବୀକୁ ଓଲଟାଇ ଦେଇ ପାରିବେ, ରାବଣ କି ଛାର ! ।୩୮। ବର୍ତ୍ତମାନ ବର୍ଷାଋତୁ ଉପସ୍ଥିତ ହେଲାଣି । ଆପଣ ଶରତ୍‌କାଳ ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ । ତାପରେ ପରିବାର, ସବାନ୍ଧବ ଏବଂ ସରାଜ୍ୟ ରାବଣକୁ ଆପଣ ବଧ କରିବେ ।୩୯। ଭସ୍ମାଚ୍ଛାଦିତ ଅଗ୍ନିକୁ ଆହୁତିଦ୍ୱାରା ପ୍ରଦୀପ୍ତ କଲାପରି ମୁଁ ଯଥାସମୟରେ ଆପଣଙ୍କର ସୁପ୍ତ ବୀର୍ଯ୍ୟକୁ ଜାଗରିତ କରୁଅଛି" । ୪୦ । ଲକ୍ଷ୍ମଣଙ୍କର ଏହି ହିତକର ଶୁଭକଥା ମାନି ରାମଚନ୍ଦ୍ର ନିଜର ପ୍ରିୟସୁହୃଦ୍ (ଲକ୍ଷ୍ମଣଙ୍କୁ) ଏହି କଥା କହିଲେ ।୪୧। "ହେ ଲକ୍ଷ୍ମଣ ! ଅନୁରକ୍ତ, ପ୍ରିୟ ଏବଂ ହିତାକାଙ୍କ୍ଷୀ ବ୍ୟକ୍ତିର ଯାହା କହିବା ଉଚିତ, ସତ୍ୟ-ପରାକ୍ରମୀ ତୁମେ ସେହି କଥା କହିଲ ।୪୨। ସକଳକାର୍ଯ୍ୟପଣ୍ଡକାରୀ ଶୋକକୁ ମୁଁ ବର୍ତ୍ତମାନ

ଏଷ ଶୋକଃ ପରିତ୍ୟକ୍ତଃ ସର୍ବକାର୍ଯ୍ୟାବସାଦକଃ ।
ବିକ୍ରମେଷ୍ୱପ୍ରତିହତଂ ତେଜଃ ପ୍ରୋତ୍ସାହୟାମ୍ୟହମ୍ । ୪୩ ।
ଶରତ୍କାଲଂ ପ୍ରତୀକ୍ଷିଷ୍ୟେ ସ୍ଥିତୋଽସ୍ମି ବଚନେ ତବ ।
ସୁଗ୍ରୀବସ୍ୟ ନଦୀନାଂ ଚ ପ୍ରସାଦମନୁପାଲୟନ୍ ।୪୪।
ଉପକାରେଣ ବୀରସ୍ତୁ ପ୍ରତିକାରେଣ ଯୁଜ୍ୟତେ ।
ଅକୃତଜ୍ଞୋଽପ୍ରତିକୃତୋ ହନ୍ତି ସତ୍ତ୍ୱବତାଂ ମନଃ । ୪୫ ।
ତଦେବ ଯୁକ୍ତଂ ପ୍ରଣିଧାୟ ଲକ୍ଷ୍ମଣଃ
କୃତାଞ୍ଜଲିସ୍ତତ୍ ପ୍ରତିପୂଜ୍ୟ ଭାଷିତମ୍ ।
ଉବାଚ ରାମଂ ସ୍ୱଭିରାମଦର୍ଶନମ୍
ପ୍ରଦର୍ଶୟନ୍ଦର୍ଶନମାତ୍ମନଃ ଶୁଭମ୍ । ୪୬ ।
ଯଥୋକ୍ତମେତତ୍ତବ ସର୍ବମୀପ୍ସିତମ୍
ନରେନ୍ଦ୍ର କର୍ତ୍ତା ନ ଚିରାତ୍ତୁ ବାନରଃ ।
ଶରତ୍ ପ୍ରତୀକ୍ଷଃ କ୍ଷମତାମିମଂ ଭବାନ୍
ଜଲପ୍ରପାତଂ ରିପୁନିଗ୍ରହେ ଧୃତଃ । ୪୭ ।

---

ତ୍ୟାଗକଲି । ବର୍ତ୍ତମାନ ମୁଁ ପରାକ୍ରମ ବିଷୟରେ ମୋର ଅପ୍ରତିହତ ତେଜକୁ ଉତ୍ସାହିତ କରୁଅଛି । ୪୩ । ମୁଁ ତୁମ୍ଭ କଥାନୁସାରେ ଶରତ୍କାଳକୁ ଅପେକ୍ଷା କରିବି ; ନଦୀମାନଙ୍କର ଏବଂ ସୁଗ୍ରୀବର ଅନୁଗ୍ରହକୁ ଅପେକ୍ଷା କରିବି । ୪୪ । ଯେଉଁ ବୀର (ଅନ୍ୟର) ଉପକାର କରେ ସେ ନିଶ୍ଚୟ ପ୍ରତ୍ୟୁପକାର ପାଏ । ପ୍ରତ୍ୟୁପକାର ନ କରିବା ଅକୃତଜ୍ଞ ବ୍ୟକ୍ତି ସତ୍ତ୍ୱଗୁଣସମ୍ପନ୍ନ ଲୋକମାନଙ୍କର ମନକୁ ନଷ୍ଟ (ଅର୍ଥାତ୍ ଉତ୍ତ୍ୟକ୍ତ) କରନ୍ତି" । ୪୫ । ରାମଚନ୍ଦ୍ରଙ୍କ କହିବା କଥା ଠିକ୍ ଅଟେ ଏହା ବୁଝି ଲକ୍ଷ୍ମଣ ହାତଯୋଡ଼ି ତାଙ୍କ କଥାର ପ୍ରଶଂସା କଲେ ଏବଂ ଦେଖିବାକୁ ମନୋମୁଗ୍ଧକର ରାମଚନ୍ଦ୍ରଙ୍କୁ ନିଜର ସୁଜ୍ଞାନର ପରିଚୟ ଦେଇ କହିଲେ । ୪୬ । "ହେ ନରେନ୍ଦ୍ର ! ଆପଣ ଯେପରି କହିଲେ, ସୁଗ୍ରୀବ ତଦନୁରୂପ ଆପଣଙ୍କର ସକଳ ମନୋରଥ ଶୀଘ୍ର ପୂରଣ କରିବେ । ଶତ୍ରୁବଧନିମନ୍ତେ ଦୃଢ଼ପ୍ରତିଜ୍ଞ ମନରେ ପୋଷଣକରି ଶରତ୍କାଳକୁ ଅପେକ୍ଷା କରନ୍ତୁ । ଏ ଜଳପ୍ରପାତକାଳ କୌଣସିମତେ କଟିଯାଉ । ୪୭ । କ୍ରୋଧ-

ନିୟମ୍ୟ କୋପଂ ପରିପାଲ୍ୟତାଂ ଶରତ୍
କ୍ଷମସ୍ୱ ମାସାଂଶ୍ଚତୁରୋ ମୟା ସହ ।
ବସାଚଲେଽସ୍ମିନ୍ ମୃଗରାଜସେବିତେ
ସମ୍ବର୍ଧୟନ୍ ଶତ୍ରୁବଧେ ସମୁଦ୍ୟମମ୍ । ୪୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ମାଲ୍ୟବନ୍ନିବାସୋ
ନାମ ସପ୍ତବିଂଶଃ ସର୍ଗଃ

---

ଦୂରକର ଶରତ୍‌କାଳକୁ ପ୍ରତୀକ୍ଷା କରନ୍ତୁ । ମୋ ସହିତ ଚାରିମାସଟା କଟାଇ ଦିଅନ୍ତୁ । ସିଂହସେବିତ ଏହି ପର୍ବତ ଉପରେ ବାସକରନ୍ତୁ । ଶତ୍ରୁକୁ ବଧ କରିବାକୁ ଆପଣ ନିଜର ଉଦ୍ୟମକୁ ବଢ଼ାନ୍ତୁ । ୪୮ ।

# ଅଷ୍ଟାବିଂଶ ସର୍ଗଃ

## ପ୍ରାବୃଡୁଜ୍ଜୃମ୍ଭଣମ୍

ସ ତଦା ବାଲିନଂ ହତ୍ୱା ସୁଗ୍ରୀବମଭିଷିଚ୍ୟ ଚ ।
ବସନ୍ମାଲ୍ୟବତଃ ପୃଷ୍ଠେ ରାମୋ ଲକ୍ଷ୍ମଣମବ୍ରବୀତ୍ । ୧ ।
ଅୟଂ ସ କାଲଃ ସଂପ୍ରାପ୍ତଃ ସମୟୋଽଦ୍ୟ ଜଲାଗମଃ ।
ସଂପଶ୍ୟ ତ୍ୱଂ ନଭୋ ମେଘୈଃ ସଂବୃତଂ ଗିରିସଂନିଭୈଃ ।୨।
ନବମାସଧୃତଂ ଗର୍ଭଂ ଭାସ୍କରସ୍ୟ ଗଭସ୍ତିଭିଃ ।
ପୀତ୍ୱା ରସଂ ସମୁଦ୍ରାଣାଂ ଦ୍ୟୌଃ ପ୍ରସୂତେ ରସାୟନମ୍ ।୩।
ଶକ୍ୟମମ୍ବରମାରୁହ୍ୟ ମେଘସୋପାନପଂକ୍ତିଭିଃ ।
କୁଟଜାର୍ଜୁନମାଲାଭିରଲଂକର୍ତୁଂ ଦିବାକରଃ । ୪ ।
ସନ୍ଧ୍ୟାରାଗୋତ୍ଥିତୈସ୍ତାମ୍ରୈରନ୍ତେଷ୍ୱପି ଚ ପାଣ୍ଡୁଭିଃ ।
ସ୍ନିଗ୍ଧୈରଭ୍ରପଟଚ୍ଛେଦୈର୍ବଦ୍ଧବ୍ରଣମିବାମ୍ବରମ୍ । ୫ ।
ମନ୍ଦମାରୁତନିଃଶ୍ୱାସଂ ସନ୍ଧ୍ୟାଚନ୍ଦନରଞ୍ଜିତମ୍ ।
ଆପାଣ୍ଡୁଜଲଦଂ ଭାତି କାମାତୁରମିବାମ୍ବରମ୍ । ୬ ।

---

## ୨୮ଶ ସର୍ଗ

### ( ବର୍ଷାଗମ )

ବାଳୀକୁ ମାରି ଏବଂ ସୁଗ୍ରୀବକୁ ରାଜ୍ୟରେ ଅଭିଷିକ୍ତ କରି ମାଲ୍ୟବାନ୍ ପର୍ବତଉପରେ ବାସକରୁଥିବାବେଳେ ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ କହିଲେ । ୧ । "ଏହି ଜଳବର୍ଷାର ସମୟ ଆସିଗଲା । ପର୍ବତସଦୃଶ ମେଘମାନ ଆକାଶକୁ ବ୍ୟାପି ରହିଛନ୍ତି ଦେଖ । ୨ । ସୂର୍ଯ୍ୟର କିରଣଦ୍ୱାରା ସମୁଦ୍ରମାନଙ୍କର ଜଳପାନ କରି ଆକାଶ ନଅମାସ-ପର୍ଯ୍ୟନ୍ତ ତାହାକୁ ଗର୍ଭରେ ଧାରଣ କରେ ଏବଂ ପୁଣି ରସାୟନସ୍ୱରୂପ ଜଳବୃଷ୍ଟି କରେ । ୩। ମେଘର ସୋପାନାବଳୀଦ୍ୱାରା ଆକାଶରେ ଆରୋହଣ କରି କୁଟଜ ଏବଂ ଅର୍ଜୁନ ପ୍ରଭୃତି ପୁଷ୍ପର ମାଳା ସୂର୍ଯ୍ୟଙ୍କୁ ପିନ୍ଧାଇ ଦିଆଯାଇପାରେ । ୪ । ଆକାଶ ସନ୍ଧ୍ୟାରାଗରେ ଯୁକ୍ତହୋଇ ରକ୍ତବର୍ଣ୍ଣ ହୋଇଛି । ମଝିରେ ମଝିରେ ପାଣ୍ଡୁରବର୍ଣ୍ଣ ମେଘଖଣ୍ଡମାନ ରହିଛି । ବୋଧହେଉଛି,ଯେପରିକି ଘା' ଉପରେ ଲୁଗାର ପଟି ବନ୍ଧା ହୋଇଛି । ୫ । ଧୀର ବହୁଥିବା ମନ୍ଦବାହୀ ବାୟୁ ଯାହାର ନିଃଶ୍ୱାସ ସ୍ୱରୂପ, ସେହି ଆକାଶ ସନ୍ଧ୍ୟାରୂପୀ ଚନ୍ଦନରଞ୍ଜିତ ହୋଇଅଛି ଏବଂ ସେଥିରେ ଈଷତ୍ ପାଣ୍ଡୁର-ବର୍ଣ୍ଣର ମେଘ ରହିଛି; ସୁତରାଂ ସେ ଆକାଶ କାମାତୁର ଲୋକପରି ଜଣାପଡୁଛି ।୬।

ଏଷା ଘର୍ମପରିକ୍ଳିଷ୍ଟା ନବବାରିପରିପ୍ଲୁତା
ସୀତେବ ଶୋକସନ୍ତପ୍ତା ମହୀ ବାଷ୍ପଂ ବିମୁଞ୍ଚତି । ୭ ।
ମେଘୋଦରବିନିର୍ମୁକ୍ତାଃ କର୍ପୂରଦଳଶୀତଳାଃ ।
ଶକ୍ୟମଞ୍ଜଳିଭିଃ ପାତୁଂ ବାତାଃ କେତକଗନ୍ଧିନଃ । ୮ ।
ଏଷ ଫୁଲ୍ଲାର୍ଜୁନଃ ଶୈଳଃ କେତକୈରଭିବାସିତଃ ।
ସୁଗ୍ରୀବ ଇବ ଶାନ୍ତାରିର୍ଧାରାଭିରଭିଷିଚ୍ୟତେ । ୯।
ମେଘକୃଷ୍ଣାଜିନଧରା ଧାରାଯଜ୍ଞୋପବୀତିନଃ ।
ମାରୁତାପୂରିତଗୁହାଃ ପ୍ରାଧୀତା ଇବ ପର୍ବତାଃ । ୧୦।
କଶାଭିରିବ ହୈମୀଭିର୍ବିଦ୍ୟୁଦ୍‌ଭିରଭିତାଡ଼ିତମ୍ ।
ଅନ୍ତଃସ୍ତନିତନିର୍ଘୋଷଂ ସବେଦନମିବାମ୍ବରମ୍ । ୧୧ ।
ନୀଲମେଘାଶ୍ରିତା ବିଦ୍ୟୁତ୍ ସ୍ଫୁରନ୍ତୀ ପ୍ରତିଭାତି ମେ ।
ସ୍ଫୁରନ୍ତୀ ରାବଣସ୍ୟାଙ୍କେ ବୈଦେହୀବ ତପସ୍ୱିନୀ । ୧୨ ।
ଇମାସ୍ତା ମନ୍ମଥବତାଂ ହିତାଃ ପ୍ରତିହତା ଦିଶଃ ।
ଅନୁଲିପ୍ତା ଇବ ଘନୈର୍ନଷ୍ଟଗ୍ରହନିଶାକରାଃ । ୧୩ ।

---

ସୂର୍ଯ୍ୟତେଜରେ ତପ୍ତ ଏବଂ ନୂତନ ଜଳଦ୍ୱାରା ସିକ୍ତ ଏହି ପୃଥିବୀ ଶୋକସନ୍ତପ୍ତା ସୀତାଙ୍କପରି ଅଶ୍ରୁପାତ କରୁଅଛି । ୭ । ମେଘର ଗର୍ଭରୁ ନିର୍ଗତ ଏବଂ କର୍ପୂର-ପତ୍ରପରି ଶୀତଳ କେତକୀଗନ୍ଧଯୁକ୍ତ ବାୟୁ ଅଞ୍ଜଳିଦ୍ୱାରା ପାନ କରିବାର ଯୋଗ୍ୟ ହୋଇଅଛି । ୮ । ଏହି ପର୍ବତ ଉପରେ ଅର୍ଜୁନବୃକ୍ଷରେ ଫୁଲ ଫୁଟିଅଛି ଏବଂ ଏହା କେତକୀର ସୁବାସରେ ସୁବାସିତ ହୋଇଅଛି । ନଷ୍ଟଶତ୍ରୁ ସୁଗ୍ରୀବସଦୃଶ ଏହି ପର୍ବତ ଜଳଧାରାଦ୍ୱାରା ଅଭିଷିକ୍ତ ହେଉଅଛି । ୯ । ଏହି ପର୍ବତ ମେଘରୂପୀ କୃଷ୍ଣମୃଗ-ଚର୍ମ ଧାରଣ କରିଅଛି ଏବଂ ଜଳଧାରାରୂପ ଯଜ୍ଞୋପବୀତ ଧାରଣ କରିଅଛି । ବାୟୁପୂର୍ଣ୍ଣ ଗୁହାଯୁକ୍ତ ଏହି ପର୍ବତମାନ ଅଧ୍ୟୟନ ଆରମ୍ଭ କରିଥିବା ବ୍ରହ୍ମଚାରୀ ସଦୃଶ ଦେଖାଯାଉଅଛି । ୧୦ । ଆକାଶ ବିଦ୍ୟୁତ୍‌ରୂପୀ ସୁନାର କୋରଡ଼ାଦ୍ୱାରା ଆହତ ହୋଇ ମେଘଶବ୍ଦଦ୍ୱାରା ଆର୍ତ୍ତନାଦ କରୁଅଛି । ମନେହେଉଛି, ଯେପରିକି ଆକାଶର କୌଣସି ପୀଡ଼ା ଜାତ ହୋଇଅଛି । ୧୧ । ନୀଳମେଘମଧ୍ୟରେ ଚମକୁଥିବା ବିଜୁଳି ରାବଣର କୋଡ଼ରେ ଶୋଭାପାଉଥିବା ତପସ୍ୱିନୀ ବୈଦେହୀ ସୀତାପରି ଜଣାଯାଉଅଛି ।୧୨ ଦିଗସବୁ ମେଘଦ୍ୱାରା ଘୋଡ଼ାଇ ହୋଇରହିଛି । ମେଘହେତୁରୁ ଗ୍ରହ ଏବଂ ଚନ୍ଦ୍ର ଦେଖାଯାଉ ନାହାନ୍ତି ; କଏ କେଉଁ ଦିଗ ତାହା ମଧ୍ୟ ଜଣାପଡ଼ୁ ନାହିଁ । ଅତଏବ ଏ ଦିଗସବୁ କାମୀ ଲୋକମାନଙ୍କ ନିମନ୍ତେ ହିତକାରୀ ଅଟନ୍ତି । ୧୩ । ହେ ଲକ୍ଷ୍ମଣ !

କ୍ୱଚିଦ୍ ବାଷ୍ପାଭିସଂରୁଦ୍ଧାନ୍ ବର୍ଷାଗମସମୁତ୍ସୁକାନ୍ ।
କୁଟଜାନ୍ ପଶ୍ୟ ସୌମିତ୍ରେ ପୁଷ୍ପିତାନ୍ ଗିରିସାନୁଷୁ ।
ମମ ଶୋକାଭିଭୂତସ୍ୟ କାମସନ୍ଦୀପନାନ୍ ସ୍ଥିତାନ୍ । ୧୪ ।

ରଜଃ ପ୍ରଶାନ୍ତଂ ସ ହିମୋଽଦ୍ୟ ବାୟୁ-
ର୍ନିଦାଘଦୋଷପ୍ରସରାଃ ପ୍ରଶାନ୍ତାଃ ।
ସ୍ଥିତା ହି ଯାତ୍ରା ବସୁଧାଧିପାନାମ୍
ପ୍ରବାସିନୋ ଯାନ୍ତି ନରାଃ ସ୍ୱଦେଶାନ୍ । ୧୫ ।
ସଂପ୍ରସ୍ଥିତା ମାନସବାସଲୁବ୍ଧାଃ
ପ୍ରିୟାନ୍ୱିତାଃ ସମ୍ପ୍ରତି ଚକ୍ରବାକାଃ ।
ଅଭୀକ୍ଷ୍ଣବର୍ଷୋଦକବିକ୍ଷତେଷୁ
ଯାନାନି ମାର୍ଗେଷୁ ନ ସମ୍ପତନ୍ତି । ୧୬ ।
କ୍ୱଚିତ୍ପ୍ରକାଶଂ କ୍ୱଚିଦପ୍ରକାଶମ୍
ନଭଃ ପ୍ରକୀର୍ଣାମ୍ବୁଧରଂ ବିଭାତି ।
କ୍ୱଚିତ୍କ୍ୱଚିତ୍ପର୍ବତସଂନିରୁଦ୍ଧମ୍
ରୂପଂ ଯଥା ଶାନ୍ତମହାର୍ଣବସ୍ୟ । ୧୭ ।
ବ୍ୟାମିଶ୍ରିତଂ ସର୍ଜକଦମ୍ବପୁଷ୍ପୈ-
ର୍ନବଂ ଜଳଂ ପର୍ବତଧାତୁତାମ୍ରମ୍ ।

---

ପର୍ବତଶିଖର ଉପରେ ଫୁଟିଥିବା କୁଟଜପୁଷ୍ପମାନଙ୍କୁ ଦେଖ । ବର୍ଷାର ଆଗମନ ନିମନ୍ତେ ଏମାନେ ଉତ୍ସୁକ ହୋଇ ରହିଛନ୍ତି ଏବଂ ବାଷ୍ପଦ୍ୱାରା ରୁଦ୍ଧହୋଇ ରହିଛନ୍ତି । ଏସବୁ ଶୋକପୀଡ଼ିତ ମୋର କାମକୁ ବଢ଼ାଉ ଅଛନ୍ତି । ୧୪ । ବର୍ତ୍ତମାନ ଧୂଳି ଶାନ୍ତ ହୋଇଅଛି (ଆଉ ଉଡ଼ୁନାହିଁ) । ପବନ ନିଦାଘକାଳର ଉଷ୍ଣତା ଗୁଣ ଶାନ୍ତଭାବରେ ବହୁଅଛି । ରାଜାମାନଙ୍କର ଯାତ୍ରା ବନ୍ଦ ହୋଇ ଯାଇଅଛି । ପ୍ରବାସୀ ଲୋକମାନେ ନିଜ ନିଜ ଘରକୁ ଫେରି ଆସୁଛନ୍ତି । ୧୫ । ମାନସସରୋବରରେ ବାସକରିବା ନିମନ୍ତେ ଲୁବ୍ଧ ହୋଇ ଚକ୍ରବାକମାନେ ବର୍ତ୍ତମାନ ନିଜର ପ୍ରିୟାମାନଙ୍କ ସହିତ ସେଠାକୁ ଚାଲିଗଲେଣି । ଅଧିକ ବୃଷ୍ଟିହେବାରୁ ରାସ୍ତାମାନ ଭାଙ୍ଗିଯାଇଥିବାରୁ ଯାନ ପ୍ରଭୃତି ଆଉ ରାସ୍ତାରେ ଚଳୁ ନାହିଁ । ୧୬ । ଆକାଶରେ ମେଘଖଣ୍ଡମାନେ ଚାରିଆଡ଼େ ବିକ୍ଷିପ୍ତ ହୋଇଛନ୍ତି, ସୁତରାଂ ଆକାଶ କେଉଁଠାରେ ବା ଦେଖାଯାଉଅଛି ଏବଂ କେଉଁଠାରେ ବା ଲୁଚି ଯାଇଅଛି । ସ୍ଥାନେ ସ୍ଥାନେ ପର୍ବତମାନଙ୍କଦ୍ୱାରା ରୁଦ୍ଧ ହୋଇଥିଲେ ଶାନ୍ତ ସମୁଦ୍ର ଯେପରି ଦେଖାଯାଏ, ଆକାଶ ସେହିପରି ଦେଖାଯାଉଅଛି । ୧୭ । ସର୍ଜ ଏବଂ କଦମ୍ବପୁଷ୍ପ ମିଶ୍ରିତ ଏବଂ ପର୍ବତର ଧାତୁଦ୍ୱାରା ତାମ୍ରବର୍ଣ୍ଣ ନୂତନ ଜଳକୁ ଗିରିନଦୀମାନେ

ମୟୂରକେକାଭିରନୁପ୍ରଯୁକ୍ତାମ୍
ଶୈଲାପଗାଃ ଶୀଘ୍ରତରଂ ବହନ୍ତି । ୧୮ ।
ରସାକୁଳଂ ଷଟ୍‌ପଦସନ୍ନିକାଶମ୍
ପ୍ରଭୁଜ୍ୟତେ ଜମ୍ବୁଫଳଂ ପ୍ରକାମମ୍ ।
ଅନେକବର୍ଣ୍ଣଂ ପବନାବଧୂତମ୍
ଭୂମୌ ପତତ୍ୟାମ୍ରଫଳଂ ବିପକ୍ୱମ୍ । ୧୯ ।
ବିଦ୍ୟୁତ୍ପତାକାଃ ସବଲାକମାଲାଃ
ଶୈଳେନ୍ଦ୍ରକୂଟାକୃତିସନ୍ନିକାଶାଃ ।
ଗର୍ଜନ୍ତି ମେଘାଃ ସମୁଦୀର୍ଣ୍ଣନାଦା
ମତ୍ତା ଗଜେନ୍ଦ୍ରା ଇବ ସଂଯୁଗସ୍ଥାଃ । ୨୦ ।
ବର୍ଷୋଦକାପ୍ୟାୟିତଶାଦ୍ୱଲାନି
ପ୍ରବୃତ୍ତନୃତ୍ତୋତ୍ସବବର୍ହିଣାନି ।
ବନାନି ନିର୍ବୃଷ୍ଟବଲାହକାନି
ପଶ୍ୟାପରାହ୍ନେଷ୍ୱଧିକଂ ବିଭାନ୍ତି । ୨୧ ।
ସମୁଦ୍‌ବହନ୍ତଃ ସଲିଳାତିଭାରମ୍
ବଲାକିନୋ ବାରିଧରା ନଦନ୍ତଃ

---

ଶୀଘ୍ରଗତିରେ ବୋହିନେଇ ଯାଉଛନ୍ତି । ସେହି ଜଳପ୍ରବାହ ମୟୂରମାନଙ୍କର ଶବ୍ଦଦ୍ୱାରା ପ୍ରତିଧ୍ୱନିତ ହେଉଅଛି । ୧୮ । ରସପୂର୍ଣ୍ଣ ଭ୍ରମରସଦୃଶ କୃଷ୍ଣବର୍ଣ୍ଣ ଜାମୁଫଳ ପ୍ରଚୁର ପରିମାଣରେ ଖିଆଯାଉଅଛି । ପବନଦ୍ୱାରା ଦୋଳାୟିତ ହୋଇ ନାନାବର୍ଣ୍ଣର ପକ୍ୱ ଆମ୍ରଫଳ ଭୂମି ଉପରେ ଝଡ଼ିପଡ଼ୁଅଛି । ୧୯ । ପର୍ବତଶିଖରସଦୃଶ ବିଶାଳ ମେଘମାନେ ରଣକ୍ଷେତ୍ରରେ ଥିବା ମତ୍ତହସ୍ତୀମାନଙ୍କପରି ଘୋର ଗର୍ଜନ କରୁଅଛନ୍ତି । ବିଦ୍ୟୁତ୍ ଏ ମେଘସବୁର ପତାକାସ୍ୱରୂପିଣୀ ହୋଇଅଛି ଏବଂ ବକପଂକ୍ତିମାନେ ସେମାନଙ୍କର ମାଳାପରି ହୋଇଅଛନ୍ତି । ୨୦ । ବର୍ଷାରେ ଜଳଦ୍ୱାରା ବନର ଘାସସବୁ ଧୋଇ ହୋଇଯାଇଅଛି । ଏଠାରେ ମୟୂରମାନେ ନୃତ୍ୟ ଆରମ୍ଭ କରିଦେଲେଣି । ମେଘ ବିଶେଷଭାବରେ ବୃଷ୍ଟିକରିବାରୁ ବନଗୁଡ଼ିକ ଅପରାହ୍ନ ସମୟରେ କିପରି ଅଧିକ ସୁନ୍ଦର ଦେଖାଯାଉଅଛି ଦେଖ । ୨୧ । ଜଳର ଗୁରୁଭାର ବହନକାରୀ, ବକପଂକ୍ତିଯୁକ୍ତ ମେଘମାନେ ଗର୍ଜନ କରି କରି ଏବଂ ପର୍ବତମାନଙ୍କର ଶିଖର ଉପରେ ବିଶ୍ରାମ କରି କରି ପୁଣି ଅଗ୍ରସର ହେଉଛନ୍ତି । ୨୨ ।

ମହତ୍ସୁ ଶୃଙ୍ଗେଷୁ ମହୀଧରାଣାମ୍
ବିଶ୍ରମ୍ୟ ବିଶ୍ରମ୍ୟ ପୁନଃ ପ୍ରୟାନ୍ତି । ୨୨ ।
ମେଘାଭିକାମା ପରିସଂପତନ୍ତୀ
ସଂମୋଦିତା ଭାତି ବଲାକପଂକ୍ତିଃ ।
ବାତାବଧୂତା ବରପୌଣ୍ଡରୀକୀ ।
ଲମ୍ବେବ ମାଲା ରୁଚିରାମ୍ବରସ୍ୟ । ୨୩ ।
ବାଲେନ୍ଦ୍ରଗୋପାନ୍ତରଚିତ୍ରିତେନ
ବିଭାତି ଭୂମିର୍ନବଶାଦ୍‌ବଲେନ ।
ଗାତ୍ରାନୁପୃକ୍ତେନ ଶୁକପ୍ରଭେଣ ।
ନାରୀବ ଲକ୍ଷୋକ୍ଷିତକମ୍ବଲେନ । ୨୪ ।
ନିଦ୍ରାଶନୈଃ କେଶବମଭ୍ୟୁପୈତି
ଦ୍ରୁତଂ ନଦୀ ସାଗରମଭ୍ୟୁପୈତି ।
ହୃଷ୍ଟା ବଲାକା ଘନମଭ୍ୟୁପୈତି
କାନ୍ତା ସକାମା ପ୍ରିୟମଭ୍ୟୁପୈତି । ୨୫ ।
ଜାତା ବନାନ୍ତାଃ ଶିଖିସୁପ୍ରନୃତ୍ତା
ଜାତାଃ କଦମ୍ବାଃ ସକଦମ୍ବଶାଖାଃ ।

---

ମେଘପ୍ରତି ଅନୁରକ୍ତ ଶ୍ରେଣୀବଦ୍ଧଭାବରେ ଆକାଶରେ ଉଡ଼ୁଥିବା ପ୍ରସନ୍ନ ବକପଂକ୍ତି ବାୟୁବିଧୂନିତ ଲମ୍ବିଶ୍ୱେତପଦ୍ମମାଳାସଦୃଶ ଶୋଭାପାଉଅଛି । ଏହା ରମଣୀୟ ଆକାଶର ମାଳାପରି ଦେଖାଯାଉଅଛି । ୨୩ । ନୂତନ ଇନ୍ଦ୍ରଗୋପ (ସାଧବବୋହୂ) ମାନଙ୍କ ଦ୍ୱାରା ମଝିରେ ମଝିରେ ଚିହ୍ନିତ ନୂତନ ଘାସଦ୍ୱାରା ପୃଥିବୀ ଶୋଭିତ ହୋଇଅଛି । ଶୁକ ରଙ୍ଗର କମ୍ବଳରେ ମଝିରେ ମଝିରେ ଅଳତା ଦ୍ୱାରା ରଙ୍ଗ ହୋଇଥିବା କମ୍ବଳ ପିନ୍ଧିଥିଲେ ଗୋଟିଏ ସ୍ତ୍ରୀ ଯେପରି ସୁନ୍ଦର ଦେଖାଯାଏ, ପୃଥିବୀ ସେହିପରି ରମଣୀୟ ଦେଖାଯାଉଅଛି । ୨୪ । ନିଦ୍ରା ଆସ୍ତେ ଆସ୍ତେ ବିଷ୍ଣୁଙ୍କ ନିକଟକୁ ଯାଉଅଛି (ବର୍ଷାକାଳ ବିଷ୍ଣୁଙ୍କର ଶୟନସମୟ ) । ନଦୀ ଶୀଘ୍ର ସମୁଦ୍ର ନିକଟକୁ ଯାଉଅଛି । ଆନନ୍ଦିତ ହୋଇ ବକପଙ୍କ୍ତି ମେଘନିକଟକୁ ଯାଉଅଛନ୍ତି ଏବଂ କାମବିହ୍ୱଳା ରମଣୀ ବଲ୍ଲଭର ନିକଟକୁ ଯାଉଅଛି । ୨୫ । ବନଭୂମିରେ ମୟୂରମାନଙ୍କର ନୃତ୍ୟ ଆରମ୍ଭ ହୋଇଅଛି । କଦମ୍ବବୃକ୍ଷର ଶାଖାମାନଙ୍କରେ

ଜାତା ବୃଷା ଗୋଷୁ ସମାନକାମା
ଜାତା ମହୀ ଶସ୍ୟବନାଭିରାମା । ୨୬ ।
ବହନ୍ତି ବର୍ଷନ୍ତି ନଦନ୍ତି ଭାନ୍ତି
ଧ୍ୟାୟନ୍ତି ନୃତ୍ୟନ୍ତି ସମାଶ୍ୱସନ୍ତି ।
ନଦ୍ୟୋ ଘନା ମତ୍ତଗଜା ବନାନ୍ତାଃ
ପ୍ରିୟାବିହୀନାଃ ଶିଖିନଃ ପ୍ଲବଙ୍ଗାଃ । ୨୭ ।
ପ୍ରହର୍ଷିତାଃ କେତକପୁଷ୍ପଗନ୍ଧ-
ମାଘ୍ରାୟ ମତ୍ତା ବନନିର୍ଝରେଷୁ ।
ପ୍ରପାତଶବ୍ଦାକୁଳିତା ଗଜେନ୍ଦ୍ରାଃ
ସାର୍ଦ୍ଧଂ ମୟୂରୈଃ ସମଦା ନଦନ୍ତି । ୨୮ ।
ଧାରାନିପାତୈରଭିହନ୍ୟମାନାଃ
କଦମ୍ବଶାଖାସୁ ବିଲମ୍ବମାନାଃ ।
କ୍ଷଣାର୍ଜିତଂ ପୁଷ୍ପରସାବଗାଢ଼ମ୍
ଶନୈର୍ମଦଂ ଷଟ୍‌ଚରଣାସ୍ତ୍ୟଜନ୍ତି । ୨୯ ।
ଅଙ୍ଗାରଚୂର୍ଣୋତ୍କରସନ୍ନିକାଶୈଃ
ଫଲୈଃ ସୁପର୍ଯ୍ୟାପ୍ତରସୈଃ ସମୃଦ୍ଧୈଃ ।
ଜମ୍ବୁଦ୍ରୁମାଣାଂ ପ୍ରବିଭାନ୍ତି ଶାଖା
ନିପୀୟମାନା ଇବ ଷଟ୍‌ପଦୌଘୈଃ । ୩୦ ।

---

କଦମ୍ବଫୁଲ ଫୁଟିଅଛି । ବୃଷଭମାନେ ଗାଭୀମାନଙ୍କପରି କାମବିହ୍ୱଳ ହୋଇଛନ୍ତି ଏବଂ ପୃଥିବୀ ଶସ୍ୟ ଏବଂ ବନଦ୍ୱାରା ରମଣୀୟ ହୋଇଅଛି । ୨୬ । ନଦୀମାନେ ବହୁଅଛନ୍ତି, ମେଘ ବର୍ଷୁଅଛି, ମତ୍ତହସ୍ତୀ ଗର୍ଜନ କରୁଅଛି ଏବଂ ବନଭୂମି ଶୋଭା ପାଉଅଛି । ପ୍ରିୟାବିରହୀମାନେ ଚିନ୍ତା କରୁଅଛନ୍ତି, ମୟୂରମାନେ ନୃତ୍ୟ କରୁଅଛନ୍ତି ଏବଂ ଭେକମାନେ ଆନନ୍ଦିତ ହେଉଅଛନ୍ତି । ୨୭ । କେତକୀ ପୁଷ୍ପର ଗନ୍ଧ ଆଘ୍ରାଣ କରି ଆନନ୍ଦିତ ହୋଇ ଏବଂ ଝରଣାର ପ୍ରପାତଶବ୍ଦ ଶୁଣି ବିଚଳିତ ହୋଇ ମତ୍ତହସ୍ତୀମାନେ ଅରଣ୍ୟର ଝରଣା ନିକଟରେ ମୟୂରମାନଙ୍କ ସହିତ ଗର୍ଜନ କରୁଛନ୍ତି । ୨୮ । ବୃଷ୍ଟିଧାରାପାତଦ୍ୱାରା ଆହତ, କଦମ୍ବ ଶାଖାରେ ଝୁଲୁଥିବା ଭ୍ରମରମାନେ ପୁଷ୍ପରସ ପାନ କରିବାହେତୁରୁ ସଙ୍ଗେ ସଙ୍ଗେ ଉତ୍ପନ୍ନ ହୋଇଥିବା ମଦ ଆସ୍ତେ ଆସ୍ତେ ତ୍ୟାଗ କରୁ ଅଛନ୍ତି । ୨୯। କୋଇଲା ଚୂନାପରି କଳା ରସାଳ ପ୍ରଚୁର ଫଳହେତୁରୁ ଜାମୁଗଛର ଶାଖା ସବୁ ଏପରି ଦେଖାଯାଉଛି, ଯେତେ ଯେପରି ସେଥିରେ ବହୁସଂଖ୍ୟକ ଭ୍ରମର ଲାଗି ରହି ତାହାକୁ ପାନ କରୁଅଛନ୍ତି । ୩୦ ।

ତଡ଼ିତ୍ପତାକାଭିରଲଂକୃତାନା-
ମୁଦୀର୍ଣଗମ୍ଭୀରମହାରବାଣାମ୍ ।
ବିଭାନ୍ତି ରୂପାଣି ବଳାହକାନାମ୍
ରଣୋତ୍ସୁକାନାମିବ ବାନରାଣାମ୍ । ୩୧ ।
ମାର୍ଗାନୁଗଃ ଶୈଳବନାନୁସାରୀ
ସଂପ୍ରସ୍ଥିତୋ ମେଘରବଂ ନିଶମ୍ୟ
ଯୁଦ୍ଧାଭିକାମଃ ପ୍ରତିନାଦଶଙ୍କୀ
ମତ୍ତୋ ଗଜେନ୍ଦ୍ରଃ ପ୍ରତିସଂନିବୃତ୍ତଃ । ୩୨ ।
କ୍ୱଚିତ୍ପ୍ରଗୀତା ଇବ ଷଟ୍‌ପଦୌଘୈଃ
କ୍ୱଚିତ୍ପ୍ରନୃତ୍ତାଇବ ନୀଲକଣ୍ଠୈଃ ।
କ୍ୱଚିତ୍ପ୍ରମତ୍ତା ଇବ ବାରଣେନ୍ଦ୍ରୈ-
ର୍ବିଭାନ୍ତ୍ୟନେକାଶ୍ରୟିଣୋ ବନାନ୍ତାଃ । ୩୩ ।
କଦମ୍ବସର୍ଜାର୍ଜୁନକନ୍ଦଳାଢ୍ୟା
ବନାନ୍ତଭୂମିର୍ମଧୁବାରିପୂର୍ଣା ।
ମୟୂରମତ୍ତାଭିରୁତପ୍ରନୃତ୍ତୈ-
ରାପାନଭୂମିପ୍ରତିମା ବିଭାତି । ୩୪ ।
ମୁକ୍ତା ସମାଭଂ ସଲିଲଂ ପତଦ୍ବୈ
ସୁନିର୍ମଳଂ ପତ୍ରପୁଟେଷୁ ଲଗ୍ନମ୍ ।

ବିଦ୍ୟୁତ୍‌ରୂପକ ପତାକାରେ ଶୋଭିତ, ଦୂରପ୍ରସାରୀ, ଗମ୍ଭୀର ଶବ୍ଦକାରୀ ମେଘମାନଙ୍କର ରୂପ ଯୁଦ୍ଧୋତ୍ସୁକ ବାନରମାନଙ୍କପରି ଦେଖାଯାଉଅଛି । ୩୧ । ପର୍ବତର ବନ ମଧ୍ୟରେ ଭ୍ରମଣ କରୁଥିବା ଏବଂ ଯୁଦ୍ଧ ଇଚ୍ଛାରେ ମାର୍ଗରେ ଯାଉଥିବା ମତ୍ତହସ୍ତୀ ମେଘଗର୍ଜନଶବ୍ଦ ଶୁଣି ପଛକୁ ଫେରିପଡ଼ିଲା । ମେଘଶବ୍ଦ ଶୁଣି ତାହାର ପ୍ରତିଦ୍ୱନ୍ଦୀ ଅନ୍ୟ ହସ୍ତୀର ଶବ୍ଦ ବୋଲି ଶଙ୍କା ହେଲା । ୩୨ । ବନଭୂମି ଅନେକ ପ୍ରକାର ଶୋଭା ଧାରଣ କରିଅଛି । କେଉଁଠାରେ ଭ୍ରମରଶ୍ରେଣୀ ଗାନ କରୁଛନ୍ତି; କେଉଁଠି ମୟୂରମାନେ ନୃତ୍ୟ କରୁଛନ୍ତି ଏବଂ କେଉଁଠାରେ ମତ୍ତହସ୍ତୀମାନେ ପ୍ରମତ୍ତ ହୋଇ ବୁଲୁଛନ୍ତି । ୩୩ । କଦମ୍ବ, ସର୍ଜ, ଅର୍ଜୁନ ଏବଂ ସ୍ଥଳକମଳଯୁକ୍ତ ସୁସ୍ୱାଦୁ ଜଳପୂର୍ଣ୍ଣ ଏହି ବନଭୂମି ମୟୂରମାନଙ୍କର ମତ୍ତଶବ୍ଦ ଏବଂ ନୃତ୍ୟଦ୍ୱାରା ମଦ୍ୟପାନଭୂମିସଦୃଶ ଦେଖାଯାଉଅଛି । ୩୪ । ମୁକ୍ତାସଦୃଶ ସ୍ୱଚ୍ଛଜଳବିନ୍ଦୁ ପଡ଼ି, ପତ୍ରମାନଙ୍କରେ

ହୃଷ୍ଟା ବିବର୍ଣ୍ଣଚ୍ଛଦନା ବିହଙ୍ଗାଃ
ସୁରେନ୍ଦ୍ରଦତ୍ତଂ ତୃଷିତାଃ ପିବନ୍ତି । ୩୫ ।
ଷଟ୍ପାଦତନ୍ତ୍ରୀମଧୁରାଭିଧାନମ୍
ପ୍ଲବଙ୍ଗମୋଦୀରିତକଣ୍ଠତାଳମ୍ ।
ଆବିଷ୍କୃତଂ ମେଘମୃଦଙ୍ଗନାଦୈ-
ର୍ବନେଷୁ ସଙ୍ଗୀତମିବ ପ୍ରବୃତ୍ତମ୍ । ୩୬ ।
କ୍ୱଚିତ୍ପ୍ରନୃତ୍ତୈଃ କ୍ୱଚିଦୁନ୍ନଦଦ୍ଭିଃ
କ୍ୱଚିଚ୍ଚ ବୃକ୍ଷାଗ୍ରନିଷଣ୍ଣକାୟୈଃ ।
ବ୍ୟାଲମ୍ବବର୍ହାଭରଣୈର୍ମୟୂରୈ-
ର୍ବନେଷୁ ସଙ୍ଗୀତମିବ ପ୍ରବୃତ୍ତମ୍ । ୩୭ ।
ସ୍ୱନୈର୍ଘନାନାଂ ପ୍ଲବଗାଃ ପ୍ରବୁଦ୍ଧା
ବିହାୟ ନିଦ୍ରାଂ ଚିରସଂନିରୁଦ୍ଧାମ୍ ।
ଅନେକରୂପାକୃତିବର୍ଣ୍ଣନାଦା
ନବାମ୍ବୁଧାରାଭିହତା ନଦନ୍ତି । ୩୮ ।
ନଦ୍ୟଃ ସମୁଦ୍ବାହିତଚକ୍ରବାକା-
ସ୍ତଟାନି ଶୀର୍ଣ୍ଣାନ୍ୟପବାହୟିତ୍ୱା ।

---

ଲାଗି ରହିଛି । ପକ୍ଷୀମାନଙ୍କର ପକ୍ଷସବୁ ବିକ୍ଷିପ୍ତ ହୋଇ ଯାଇଅଛି । ସେମାନେ ତୃଷାତୁର ହୋଇ ଆନନ୍ଦମନରେ ଏହି ଇନ୍ଦ୍ରଦତ୍ତ ଜଳ ପାନ କରୁଅଛନ୍ତି । ୩୫ । ଭ୍ରମରମାନଙ୍କ ଶବ୍ଦ ବୀଣାରବର ଧ୍ୱନିପରି, ଭେକମାନଙ୍କର ଶବ୍ଦ କଣ୍ଠତାଳପରି ଏବଂ ମେଘର ଗର୍ଜନ ମୃଦଙ୍ଗଶବ୍ଦପରି ହୋଇଅଛି । ସତେ ଜଣାଯାଉଛି, ଯେପରିକି ବନ ମଧ୍ୟରେ ସଙ୍ଗୀତ ହେଉଅଛି । ୩୬ । ମୟୂର କେଉଁଠାରେ ନାଚୁଅଛି, କେଉଁଠି ଶବ୍ଦ କରୁଅଛି, କେଉଁଠି ବା ବୃକ୍ଷ ଶାଖାରେ ବସି ରହିଅଛି । ଅତଏବ ଲମ୍ବପୁଚ୍ଛବିଶିଷ୍ଟ ମୟୂରମାନେ ବନରେ ସଙ୍ଗୀତ ଆରମ୍ଭ କଲାପରି ବୋଧ ହେଉଅଛି । ୩୭ । ଭେକମାନେ ଅନେକଦିନରୁ ଶୋଇ ରହିଥିଲେ; ମେଘ ଗର୍ଜନ ଶୁଣି ନିଦ୍ରା ତ୍ୟାଗକରି ଉଠିଲେ । ଅନେକ ରୂପ, ଅନେକ ଆକାର, ଅନେକ ବର୍ଣ୍ଣ ଏବଂ ନାନାପ୍ରକାର ଶବ୍ଦକାରୀ ଭେକମାନେ ନୂତନ ବୃଷ୍ଟିଧାରା ଦ୍ୱାରା ଆହତ ହୋଇ ଶବ୍ଦ କରୁଅଛନ୍ତି । ୩୮ । ନଦୀମାନଙ୍କରେ ଚକ୍ରବାକମାନେ ସନ୍ତରଣ କରୁଅଛନ୍ତି । ସେହି ନଦୀ ସବୁ ଭାଙ୍ଗିଯାଇଥିବା କୂଳମାନଙ୍କୁ ଭସାଇ

ଦୃଷ୍ଟ୍ବା ନବପ୍ରାବୃତପୂର୍ଣ୍ଣବେଗା
ଦ୍ରୁତଂ ସ୍ୱଭର୍ତ୍ତାରମୁପୋପୟାନ୍ତି । ୩୯ ।
ନୀଲେଷୁ ନୀଳା ନବବାରିପୂର୍ଣ୍ଣା
ମେଘେଷୁ ମେଘାଃ ପ୍ରତିଭାନ୍ତି ସକ୍ତାଃ
ଦବାଗ୍ନିଦଗ୍‌ଧେଷୁ ଦବାଗ୍ନିଦଗ୍‌ଧାଃ
ଶୈଳେଷୁ ଶୈଳା ଇବ ବଦ୍ଧମୂଳାଃ । ୪୦ ।
ପ୍ରମତ୍ତସଂନାଦିତବର୍ହିଣାନି
ସଶକ୍ରଗୋପାକୁଲଶାଦ୍ୱଲାନି ।
ଚରନ୍ତି ନୀପାର୍ଜୁନବାସିତାନି
ଗଜାଃ ସୁରମ୍ୟାଣି ବନାନ୍ତରାଣି । ୪୧ ।
ନବାମ୍ବୁଧାରାହତକେସରାଣି
ଦ୍ରୁତଂ ପରିତ୍ୟଜ୍ୟ ସରୋରୁହାଣି ।
କଦମ୍ବପୁଷ୍ପାଣି ସକେସରାଣି
ନବାନି ହୃଷ୍ଟା ଭ୍ରମରାଃ ପିବନ୍ତି । ୪୨ ।
ମତ୍ତା ଗଜେନ୍ଦ୍ରା ମୁଦିତା ଗବେନ୍ଦ୍ରା
ବନେଷୁ ବିକ୍ରାନ୍ତତରା ମୃଗେନ୍ଦ୍ରାଃ ।

---

ନେଉଅଛନ୍ତି । ନୂତନ ଲବ୍‌ଧ ପୁଷ୍ପୋପହାରଦ୍ୱାରା ସେହି ନଦୀମାନଙ୍କର ବେଗ ପୂର୍ଣ୍ଣ ହୋଇଅଛି ଏବଂ ସେମାନେ ଗର୍ବିତ ହୋଇ ନିଜର ସ୍ୱାମୀ (ସମୁଦ୍ର) ନିକଟକୁ ଅତି ବେଗରେ ଗମନ କରୁଅଛନ୍ତି । ୩୯ । ନୂତନ ବାରିପୂର୍ଣ୍ଣ ନୀଳମେଘ ସହିତ ନୀଳ ମେଘମାନେ ମିଶି ଶୋଭା ପାଉଅଛନ୍ତି । ଦାବାଗ୍ନିଦଗ୍‌ଧ ପର୍ବତ ସହିତ ମିଳିତ ହୋଇ ସେହି ମେଘସବୁ ଦାବାଗ୍ନିଦଗ୍‌ଧ ପର୍ବତସଦୃଶ ଦେଖାଯାଉଅଛି । ୪୦ । ରମଣୀୟ ବନମାନଙ୍କରେ ମଦମତ୍ତ ମୟୂରମାନେ ଶବ୍ଦ କରୁଅଛନ୍ତି । ସେହିସବୁ ବନରେ ଇନ୍ଦ୍ରଗୋପ (ସାଧବବୋହୂ) ଯୁକ୍ତ ଘାସ ସବୁ ରହିଛି ଏବଂ ତାହା କଦମ୍ବ ଓ ଅର୍ଜୁନ ବୃକ୍ଷଦ୍ୱାରା ସୁବାସିତ ହୋଇଅଛି । ମତ୍ତହସ୍ତୀମାନେ ଏହି ସବୁ ରମଣୀୟ ଅରଣ୍ୟରେ ବିଚରଣ କରୁଅଛନ୍ତି । ୪୧ । ନୂତନ ଜଳଧାରାଦ୍ୱାରା ଯେଉଁସବୁ ପଦ୍ମପୁଷ୍ପର କେଶରମାନ ବିକ୍ଷିପ୍ତ ହୋଇଯାଇଅଛି, ଭ୍ରମରମାନେ ତାହାକୁ ଛାଡ଼ି କେଶରଯୁକ୍ତ ନୂତନ କଦମ୍ବପୁଷ୍ପରୁ ମଧୁପାନ କରୁଅଛନ୍ତି । । ୪୨ । ହସ୍ତୀମାନେ ମସ୍ତ ହୋଇଛନ୍ତି; ବୃଷଭମାନେ ଆନନ୍ଦିତ ହୋଇଛନ୍ତି, ସିଂହମାନେ ବନରେ ଅଧିକ ବଳବାନ୍ ହୋଇଛନ୍ତି, ପର୍ବତମାନ ଶୋଭିତ

ରମ୍ୟା ନଗେନ୍ଦ୍ରା ନିଭୃତା ନରେନ୍ଦ୍ରାଃ
ପ୍ରକ୍ରୀଡ଼ିତୋ ବାରିଧରୈଃ ସୁରେନ୍ଦ୍ରଃ । ୪୩ ।
ମେଘାଃ ସମୁଦ୍ଭୂତସମୁଦ୍ରନାଦା
ମହାଜଲୌଘୈର୍ଗଗନାବଲମ୍ବାଃ ।
ନଦୀସ୍ତଟାକାନି ସରାଂସି ବାପୀ-
ର୍ମହୀଂ ଚ କୃତ୍ସ୍ନାମପବାହୟନ୍ତି । ୪୪ ।
ବର୍ଷପ୍ରବେଗା ବିପୁଲାଃ ପତନ୍ତି
ପ୍ରବାନ୍ତି ବାତାଃ ସମୁଦୀର୍ଣବେଗାଃ ।
ପ୍ରନଷ୍ଟକୂଲାଃ ପ୍ରବହନ୍ତି ଶୀଘ୍ରମ୍
ନଦ୍ୟୋ ଜଲଂ ବିପ୍ରତିପନ୍ନମାର୍ଗାଃ । ୪୫ ।
ନରୈର୍ନରେନ୍ଦ୍ରା ଇବ ପର୍ବତେନ୍ଦ୍ରାଃ
ସୁରେନ୍ଦ୍ରନୀତୈଃ ପବନୋପନୀତୈଃ ।
ଘନାମ୍ବୁକୁମ୍ଭୈରଭିଷିଚ୍ୟମାନା
ରୂପଂ ଶ୍ରିୟଂ ସ୍ୱାମିବ ଦର୍ଶୟନ୍ତି । ୪୬ ।
ଘନୋପଗୂଢ଼ଂ ଗଗନଂ ନ ତାରା
ନ ଭାସ୍କରୋ ଦର୍ଶନମଭ୍ୟୁପୈତି ।

---

ହୋଇଅଛି । ରାଜାମାନେ ନୀରବ ହୋଇଛନ୍ତି ଏବଂ ଇନ୍ଦ୍ର ମେଘମାନଙ୍କ ସହିତ କ୍ରୀଡ଼ା କରୁଅଛନ୍ତି । ୪୩ । ମେଘମାନଙ୍କର ଗର୍ଜନ ସମୁଦ୍ରର ଶବ୍ଦକୁ ପରାଭୂତ କରିଅଛି । ଆକାଶରେ ଲମ୍ବକ ରହିଥିବା ମେଘମାନେ ପ୍ରବଳ ବାରିପାତଦ୍ୱାରା ନଦୀ, ପୁଷ୍କରିଣୀ, ହ୍ରଦ, ବାପୀ ଏବଂ ସମସ୍ତ ପୃଥିବୀକୁ ପୂର୍ଣ୍ଣ କରି ଭସାଇ ଦେଇଅଛନ୍ତି । ୪୪ । ଅତି ବେଗରେ ବିପୁଳ ଜଳବୃଷ୍ଟି ହେଉଅଛି । ଅତିବେଗରେ ପବନ ବୋହୁଅଛି । ତଟକୁ ଭାଙ୍ଗିଦେଇ ଏବଂ ନିଜର ନିୟୂତମାର୍ଗ ଛାଡ଼ି ନଦୀମାନେ ଅତିବେଗରେ ଜଳରାଶି ପ୍ରବାହିତ କରୁଅଛନ୍ତି । ୪୫ । ମନୁଷ୍ୟମାନଙ୍କଦ୍ୱାରା ଆନୀତ ଜଳରେ ରାଜାମାନେ ଯେପରି ଅଭିଷିକ୍ତ ହୁଅନ୍ତି ସେହିପରି ଇନ୍ଦ୍ରଙ୍କଦ୍ୱାରା ପ୍ରେରିତ ଏବଂ ପବନଦ୍ୱାରା ଆନୀତ ମେଘରୂପୀ ଜଳକୁମ୍ଭଦ୍ୱାରା ପର୍ବତମାନେ ଯେପରି ଅଭିଷିକ୍ତ ହୋଇ ନିଜର ରୂପ ଏବଂ ନିଜର ଶୋଭା ପ୍ରକାଶ କରୁଅଛନ୍ତି । ୪୬ । ଆକାଶ ମେଘଦ୍ୱାରା ଘୋଡ଼ାଇ ହୋଇପଡ଼ିଛି । ତାରା ବା ସୂର୍ଯ୍ୟ ଦେଖାଯାଉ ନାହାନ୍ତି । ନୂତନ

ନବୈର୍ଜଲୌଘୈର୍ଧରଣୀ ବିତୃପ୍ତା
ତମୋବିଲିପ୍ତା ନ ଦିଶଃ ପ୍ରକାଶାଃ ।୪୭ ।
ମହାନ୍ତି କୂଟାନି ମହୀଧରାଣାମ୍
ଧାରାବିଧୌତାନ୍ୟଧିକଂ ବିଭାନ୍ତି ।
ମହାପ୍ରମାଣୈର୍ବିପୁଲୈଃ ପ୍ରପାତୈ-
ର୍ମୁକ୍ତାକଲାପୈରିବ ଲମ୍ବମାନୈଃ । ୪୮ ।
ଶୈଲୋପଲପ୍ରସ୍ଖଲମାନବେଗାଃ
ଶୈଲୋତ୍ତମାନାଂ ବିପୁଲାଃ ପ୍ରପାତାଃ ।
ଗୁହାସୁ ସଂନାଦିତବର୍ହିଣାସୁ -
ହାରା ବିକୀର୍ଯନ୍ତି ଇବାବଭାନ୍ତି । ୪୯।
ଶୀଘ୍ରଂ ପ୍ରବେଗା ବିପୁଲାଃ ପ୍ରପାତା
ନିର୍ଧୌତଶୃଙ୍ଗୋପତଲା ଗିରୀଣାମ୍ ।
ମୁକ୍ତାକଲାପପ୍ରତିମାଃ ପତନ୍ତୋ
ମହାଗୁହୋତ୍ସଙ୍ଗତଲୈର୍ଧ୍ରିୟନ୍ତେ । ୫୦ ।
ସୁରତାମର୍ଦବିଚ୍ଛିନ୍ନାଃ ସ୍ୱର୍ଗସ୍ତ୍ରୀହାରମୌକ୍ତିକାଃ ।
ପତନ୍ତି ଚାତୁଲା ଦିକ୍ଷୁ ତୋୟଧାରାଃ ସମନ୍ତତଃ । ୫୧ ।

---

ଜଳଧାରାଦ୍ୱାରା ପୃଥିବୀ ଅତିଶୟ ତୃପ୍ତ ହୋଇଯାଇଅଛି । ଦିଗମାନେ ଅନ୍ଧକାରଦ୍ୱାରା ଲିପ୍ତହୋଇ ପରିଷ୍କାରରୂପରେ ଦେଖାଯାଉ ନାହାନ୍ତି । ୪୭ । ଖୁବ୍ ବଡ଼ ବଡ଼ ଲମ୍ବମାନ ମୁକ୍ତା ପଙ୍‌କ୍ତିପରି ଜଳପ୍ରପାତ ଧାରାଦ୍ୱାରା ଧୋଇ ହୋଇ ପର୍ବତମାନଙ୍କର ବଡ଼ ବଡ଼ ଶିଖରମାନ ଅତିଶୟ ରମଣୀୟ ଦେଖାଯାଉଅଛି । ୪୮ । ପର୍ବତର ଶିଳାଖଣ୍ଡମାନଙ୍କରେ ବାଜି ଝରଣାମାନଙ୍କର ବେଗ କମିଯାଇଛି । ଗୁହାସବୁ ମୟୂରଶବ୍ଦରେ ଝଙ୍କାରିତ ହେଉଅଛି । ସେହି ଝରଣାସବୁ ପର୍ବତଦେହରେ ଗୁହାମାନଙ୍କରେ ଛିଣ୍ଡିଯାଇଥିବା ହାରପରି ଶୋଭା ପାଉଅଛି ।୪୯। ଶିଖରପାର୍ଶ୍ୱଦେଶକୁ ଧୋଇ ନେଉଥିବା ମୁକ୍ତାପଂକ୍ତିସଦୃଶ ଅନେକ ବେଗବାନ୍ ଜଳପ୍ରପାତକୁ ବଡ଼ ବଡ଼ ଗୁହାସବୁ ନିଜର କୋଡ଼ରେ ଧାରଣ କରିଅଛନ୍ତି । ୫୦ । ସ୍ୱର୍ଗର ରମଣୀମାନଙ୍କର ବିହାରକାଳର ଭିଡ଼ାଭିଡ଼ରେ ଛିଣ୍ଡିଯାଇଥିବା ମୁକ୍ତାହାରସଦୃଶ ବାରିଧାରା ଚାରିଆଡ଼େ ପଡ଼ୁଅଛି । ୫୧ ।

ବଲୀୟମାନୈର୍ବିହଗୈ ର୍ନିମୀଲଦ୍‌ଭିଶ୍ଚ ପଙ୍କଜେଃ ।
ବଙ୍କସନ୍ଧ୍ୟା ଚ ମାଲତ୍ୟା ଗତୋଽସ୍ତଂ ଜ୍ଞାୟତେ ରବିଃ । ୫୨ ।
ବୃତ୍ତା ଯାତ୍ରା ନରେନ୍ଦ୍ରାଣାଂ ସେନା ପଥୈବ ବର୍ତ୍ତତେ ।
ବୈରାଣି ଚୈବ ମାର୍ଗାଶ୍ଚ ସଲିଲେନ ସମୀକୃତାଃ । ୫୩ ।
ମାସି ପ୍ରୌଷ୍ଠପଦେ ବ୍ରହ୍ମ ବ୍ରାହ୍ମଣାନାଂ ବିବକ୍ଷତାମ୍ ।
ଅୟମଧ୍ୟାୟସମୟଃ ସାମଗାନାମୁପସ୍ଥିତଃ । ୫୪ ।
ନିବୃତ୍ତକର୍ମାୟତନୋ ନୂନଂ ସଂଚିତସଞ୍ଚୟଃ ।
ଆଷାଢ଼ୀମଭ୍ୟୁପଗତୋ ଭରତଃ କୋଶଳାଧିପଃ । ୫୫ ।
ନୂନମାପୂର୍ଯମାଣାୟାଃ ସରଯ୍ୱା ବର୍ଧତେ ରୟଃ ।
ମାଂ ସମୀକ୍ଷ୍ୟ ସମାୟାନ୍ତମଯୋଧ୍ୟାୟା ଇବ ସ୍ୱନଃ । ୫୬ ।
ଇମା ସ୍ଫୀତଗୁଣା ବର୍ଷାଃ ସୁଗ୍ରୀବଃ ସୁଖମଶ୍ନୁତେ ।
ବିଜିତାରିଃ ସଦାରଶ୍ଚ ରାଜ୍ୟେ ମହତି ଚ ସ୍ଥିତଃ । ୫୭ ।
ଅହଂ ତୁ ହୃତଦାରଶ୍ଚ ରାଜ୍ୟାଚ୍ଚ ମହତଶ୍ଚ୍ୟୁତଃ ।
ନଦୀକୂଲମିବ କ୍ଲିନ୍ନମବସୀଦାମି ଲକ୍ଷ୍ମଣ । ୫୮ ।

---

ପକ୍ଷୀମାନେ ଅଦୃଶ୍ୟ ହେଉଥିବାରୁ, ପଦ୍ମସବୁ ମୁଦିହୋଇ ଯାଉଥିବାରୁ ଏବଂ ମାଲତୀଫୁଲ ଫୁଟୁଥିବାରୁ ଜଣାଯାଉଅଛି ଯେ ସୂର୍ଯ୍ୟ ଅସ୍ତ ଯାଉଛନ୍ତି । ୫୨ । ରାଜାମାନଙ୍କର ଯାତ୍ରା ଶେଷ ହୋଇଯାଇଅଛି । ସୈନ୍ୟମାନେ ବାଟରେ ପଡ଼ି ରହିଛନ୍ତି । ବୈରଭାବ ଏବଂ ରାସ୍ତା ଉଭୟକୁ ବୃଷ୍ଟି ଜଳ ସମାନ କରି ଦେଇଅଛି ।୫୩। ଭାଦ୍ରମାସରେ ବେଦପାଠୀ ବ୍ରାହ୍ମଣମାନଙ୍କର ସାମଗାନ କରିବାର ସମୟ; ତାହା ବର୍ତ୍ତମାନ ଉପସ୍ଥିତ ହୋଇଅଛି । ୫୪ । ଗୃହନିର୍ମାଣ ଆଦି କର୍ମ ସମାପ୍ତ କରାଇ ଆବଶ୍ୟକୀୟ ଦ୍ରବ୍ୟମାନ ସଞ୍ଚୟ କରି ରଖି କୋଶଳର ରାଜା ଭରତ ନିଶ୍ଚୟ ବର୍ତ୍ତମାନ ଆଷାଢ଼ୀ ପୂର୍ଣ୍ଣିମା ପର୍ବନିମନ୍ତେ ପ୍ରସ୍ତୁତ ହୋଇଥିବ । ୫୫ । ମୋତେ ଫେରି ଆସୁଥିବାର ଦେଖିଲେ ଅଯୋଧ୍ୟାବାସୀମାନଙ୍କର କୋଳାହଳ ଶବ୍ଦ ଯେପରି ବଢ଼ିଯିବ ସେହିପରି ପୂର୍ଣ୍ଣତୋୟା ସରଯୂର ବେଗ ବର୍ତ୍ତମାନ ବଢ଼ି ଯାଇଥିବ । । ୫୬ । ଏହି ବର୍ଷାଋତୁ ବହୁଗୁଣଯୁକ୍ତ ଅଟେ । ଶତ୍ରୁକୁ ଜୟକରି ଓ ସ୍ତ୍ରୀ ଏବଂ ରାଜ୍ୟଲାଭ କରି ସୁଗ୍ରୀବ ସୁଖଭୋଗ କରୁଅଛି । ୫୭ । ମାତ୍ର ହେ ଲକ୍ଷ୍ମଣ ! ମୋର ସ୍ତ୍ରୀ ଅପହୃତ ହୋଇଅଛି । ମୁଁ ବିଶାଳ ରାଜ୍ୟରୁ ନିର୍ବାସିତ ହୋଇଅଛି । କର୍ଦ୍ଦମଯୁକ୍ତ ନଦୀତଟପରି ମୁଁ ଦୁଃଖଭୋଗ କରୁଅଛି । ୫୮ । ମୋର ଶୋକ

ଶୋକଶ୍ଚ ମମ ବିସ୍ତୀର୍ଣୋ ବର୍ଷାଶ୍ଚ ଭୃଶଦୁର୍ଗମାଃ ।
ରାବଣଶ୍ଚ ମହାଞ୍ଛତ୍ରୁରପାରଃ ପ୍ରତିଭାତି ମେ । ୫୯ ।
ଅଯାତ୍ରାଂ ଚୈବ ଦୃଷ୍ଟ୍ୱେମାଂ ମାର୍ଗାଂଶ୍ଚ ଭୃଶଦୁର୍ଗମାନ୍ ।
ପ୍ରଣତେ ଚୈବ ସୁଗ୍ରୀବେ ନ ମୟା କିଂଚଦୀରିତମ୍ । ୬୦ ।
ଅପି ଚାତିପରିକ୍ଲିଷ୍ଟଂ ଚିରାଦ୍ଦାରୈଃ ସମାଗତମ୍ ।
ଆତ୍ମକାର୍ଯଗରୀୟସ୍ତ୍ୱାଦ୍‌ବକ୍ତୁଂ ନେଚ୍ଛାମି ବାନରମ୍ । ୬୧ ।
ସ୍ୱୟମେବ ହି ବିଶ୍ରମ୍ୟ ଜ୍ଞାତ୍ୱା କାଲମୁପାଗତମ୍ ।
ଉପକାରଂ ଚ ସୁଗ୍ରୀବୋ ବେତ୍ସ୍ୟତେ ନାତ୍ର ସଂଶୟଃ । ୬୨ ।
ତସ୍ମାତ୍କାଲପ୍ରତୀକ୍ଷୋଽହଂ ସ୍ଥିତୋଽସ୍ମି ଶୁଭଲକ୍ଷଣ ।
ସୁଗ୍ରୀବସ୍ୟ ନଦୀନାଂ ଚ ପ୍ରସାଦମଭିକାଙ୍‌କ୍ଷୟନ୍ । ୬୩ ।
ଉପକାରେଣ ବୀରୋ ହି ପ୍ରତୀକାରେଣ ଯୁଜ୍ୟତେ ।
ଅକୃତଜ୍ଞୋଽପ୍ରତିକୃତୋ ହନ୍ତି ସତ୍ତ୍ୱବତାଂ ମନଃ । ୬୪ ।
ଅଥୈବମୁକ୍ତଃ ପ୍ରଣିଧାୟ ଲକ୍ଷ୍ମଣଃ
କୃତାଞ୍ଜଳିସ୍ତତ୍ ପ୍ରତିପୂଜ୍ୟ ଭାଷିତମ୍ ।

---

ବଢ଼ିଯାଇଅଛି । ବର୍ଷା ସମୟରେ ଯାତ୍ରା କରିବା ଅସମ୍ଭବ । ରାବଣ ଅତି ପ୍ରବଳ ଶତ୍ରୁ; ତାକୁ ଜିଣିବା ମୋତେ ଅସମ୍ଭବ ବୋଧ ହେଉଅଛି । ୫୯ । ମାର୍ଗ ଦୁର୍ଗମ ଅଟେ । ଯାତ୍ରା କରିବାର ଏହା ଉପଯୁକ୍ତ ସମୟ ନୁହେ; ସୁତରାଂ ସୁଗ୍ରୀବ ବର୍ତ୍ତମାନ ମୋର ଆଜ୍ଞାଧୀନ ହେଲେ ମଧ୍ୟ ମୁଁ ତାକୁ କିଛି କହିଲି ନାହିଁ । ୬୦ । ବହୁତ କଷ୍ଟ ସହିବା ପରେ ବହୁଦିନ ଉତ୍ତାରୁ ସୁଗ୍ରୀବ ନିଜର ସ୍ତ୍ରୀମାନଙ୍କସହିତ ମିଳିତ ହୋଇଅଛି; ମୋର କାର୍ଯ୍ୟ (ସୀତାଙ୍କ ଅନ୍ୱେଷଣ ଏବଂ ଉଦ୍ଧାର) ମଧ୍ୟ ବଡ଼ ଗୁରୁତର; ସୁତରାଂ ଏ ସମୟରେ ମୁଁ ସୁଗ୍ରୀବକୁ ସେ ବିଷୟରେ କହିବାକୁ ଇଚ୍ଛା କରୁନାହିଁ ।୬୧। କିଛି କାଳ ବିଶ୍ରାମ କରିବା ପରେ ଉପଯୁକ୍ତ ସମୟ ଆଗତ ହେଲେ ସୁଗ୍ରୀବ ନିଜେ ମୋର ଉପକାରକୁ ସ୍ମରଣ କରିବ (ଅର୍ଥାତ୍ ମୋତେ ପ୍ରତ୍ୟୁପକାର କରିବାକୁ ଉଦ୍ୟମ କରିବ) ଏଥିରେ ସନ୍ଦେହ ନାହିଁ । ୬୨ । ହେ ଶୁଭଲକ୍ଷଣବାନ୍ ଲକ୍ଷ୍ମଣ ! ସେହି ହେତୁରୁ ମୁଁ କାଳକୁ ପ୍ରତୀକ୍ଷା କରି ରହିଅଛି । ନଦୀମାନଙ୍କର ତଥା ସୁଗ୍ରୀବଙ୍କର ଅନୁଗ୍ରହ ପାଇବାକୁ ଆଶା କରି ମୁଁ ଅବସ୍ଥାନ କରୁଅଛି । ୬୩ । ବୀର ଉପକାରର ପ୍ରତ୍ୟୁପକାର ଅବଶ୍ୟ ପ୍ରଦାନକରେ । ଅକୃତଜ୍ଞ ବ୍ୟକ୍ତି ପ୍ରତ୍ୟୁପକାର ନ କରି ସାତ୍ତ୍ୱିକସ୍ୱଭାବାପନ୍ନ ଲୋକର ମନକୁ ମଧ୍ୟ ନଷ୍ଟ କରିଦିଏ" । ୬୪ । ରାମ ଏହିପରି କହିବା ପରେ ଲକ୍ଷ୍ମଣ ହାତଯୋଡ଼ି ତାଙ୍କ କଥାକୁ ସ୍ୱୀକାର କଲେ ଏବଂ ନିଜର ମତ

ଉବାଚ ରାମଂ ସ୍ୱଭିରାମଦର୍ଶନମ୍
ପ୍ରଦର୍ଶୟନ୍ଦର୍ଶନମାତ୍ମନଃ ଶୁଭମ୍ । ୬୫ ।
ଯଦୁକ୍ତମେତତ୍ତବ ସର୍ବମୀପ୍ସିତମ୍
ନରେନ୍ଦ୍ର କର୍ତ୍ତା ନ ଚରାଦ୍ଧରୀଶ୍ୱରଃ ।
ଶରତ୍ପ୍ରତୀକ୍ଷଃ କ୍ଷମତାମିଦଂ ଭବାନ୍
ଜଲପ୍ରପାତଂ ରିପୁନିଗ୍ରହେ ଧୃତଃ । ୬୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ପ୍ରାବୃଡ୍ଜୃମ୍ଭଣମ୍
ନାମ ଅଷ୍ଟାବିଂଶଃ ସର୍ଗଃ ।

---

ବ୍ୟକ୍ତ କରିବା ନିମନ୍ତେ କମନୀୟ କାନ୍ତିଯୁକ୍ତ ଶ୍ରୀରାମଚନ୍ଦ୍ରଙ୍କୁ କହିଲେ । ୬୫ । "ହେ ନରେନ୍ଦ୍ର ! ଆପଣ ଯାହା କହିଲେ ଆପଣଙ୍କର ସେ ସମସ୍ତ ଅଭୀଷ୍ଟ କାର୍ଯ୍ୟ ବାନରରାଜ ଶୀଘ୍ର ସମ୍ପାଦନ କରିବେ । ଶରତ୍ କାଳକୁ ଅପେକ୍ଷା କରି ଶତ୍ରୁବଧର ପ୍ରତିଜ୍ଞା ଦୃଢ଼କରି ଆପଣଙ୍କୁ ଏ ବୃଷ୍ଟିପାତ ସମୟକୁ କୌଣସିମତେ କଟାଇବାକୁ ହେବ" । ୬୬ ।

# ଏକୋନତ୍ରିଂଶଃ ସର୍ଗଃ

## ହନୁମତ୍ପ୍ରତିବୋଧନମ୍

ସମୀକ୍ଷ୍ୟ ବିମଲଂ ବ୍ୟୋମ ଗତବିଦ୍ୟୁଦ୍‌ବଲାହକମ୍ ।
ସାରସାକୁଲସଂଘୁଷ୍ଟଂ ରମ୍ୟଜ୍ୟୋସ୍ନାନୁଲେପନମ୍ । ୧ ।
ସମୃଦ୍ଧାର୍ଥଂ ଚ ସୁଗ୍ରୀବଂ ମନ୍ଦଧର୍ମାର୍ଥସଂଗ୍ରହମ୍ ।
ଅତ୍ୟର୍ଥଂ ଚାସତାଂ ମାର୍ଗମେକାନ୍ତଗତମାନସମ୍ । ୨ ।
ନିବୃତ୍ତକାର୍ଯ୍ୟଂ ସିଦ୍ଧାର୍ଥଂ ପ୍ରମଦାଭିରତଂ ସଦା ।
ପ୍ରାପ୍ତବନ୍ତମଭିପ୍ରେତାନ୍ ସର୍ବାନେବ ମନୋରଥାନ୍ । ୩ ।
ସ୍ୱାଂ ଚ ପତ୍ନୀମଭିପ୍ରେତାଂ ତାରାଂ ଚାପି ସମୀପ୍‌ସିତାମ୍ ।
ବିହରନ୍ତମହୋରାତ୍ରଂ କୃତାର୍ଥଂ ବିଗତଜ୍ୱରମ୍ । ୪ ।
କ୍ରୀଡ଼ନ୍ତମିବ ଦେବେଶଂ ଗନ୍ଧର୍ବାପ୍‌ସରସାଂ ଗଣୈଃ ।
ମନ୍ତ୍ରିଷୁ ନ୍ୟସ୍ତକାର୍ଯ୍ୟଂ ଚ ମନ୍ତ୍ରିଣାମନବେକ୍ଷକମ୍ । ୫ ।
ଉଚ୍ଛିନ୍ନରାଜ୍ୟସନ୍ଦେହଂ କାମବୃତ୍ତମିବ ସ୍ଥିତମ୍ ।
ନିଶ୍ଚିତାର୍ଥୋଽର୍ଥତତ୍ତ୍ୱଜ୍ଞଃ କାଳଧର୍ମବିଶେଷବିତ୍ । ୬ ।

---

## ୨୯ଶ ସର୍ଗ

(ହନୁମାନଙ୍କର ସୁଗ୍ରୀବଙ୍କୁ ବୁଝାଇ କହିବା)

ଆକାଶ ନିର୍ମଳ ହୋଇ ଯାଇଅଛି, ବିଦ୍ୟୁତ୍ ଏବଂ ବକପଂକ୍ତି ଚାଲିଗଲେଣି । ସାରସମାନଙ୍କ ସ୍ୱରରେ ଆକାଶ ନିନାଦିତ ହେଉଅଛି । ରମଣୀୟ ଚନ୍ଦ୍ରଜ୍ୟୋତ୍ସ୍ନା ଚାରିଆଡ଼େ ବ୍ୟାପିଯାଇଛି । ଏହା ଦେଖି ଯେଉଁ ସୁଗ୍ରୀବର ମନୋରଥ ପୂର୍ଣ୍ଣ ହୋଇ ଯାଇଅଛି, ଧର୍ମ ଏବଂ ଅର୍ଥସଂଗ୍ରହରେ ଯେ ଶିଥିଳ ହୋଇ ଯାଇଅଛି, ଅସଜ୍ଜନଙ୍କର ପଥକୁ ଯେ ବିଶେଷଭାବରେ ଗ୍ରହଣ କରିଅଛି, ଯେ ସିଦ୍ଧକାର୍ଯ୍ୟ ହୋଇ ଏବଂ କାର୍ଯ୍ୟରୁ ନିବୃତ୍ତ ହୋଇ ସର୍ବଦା ସ୍ତ୍ରୀମାନଙ୍କ ସହିତ ବିହାରରତ ହୋଇଅଛି, ଯେ ସମସ୍ତ ଅଭିପ୍ରେତ ମନୋରଥ ଲାଭକରି ସାରିଅଛି । ଯେ ନିଜର ପତ୍ନୀ ଏବଂ ଈପ୍ସିତା ତାରାକୁ ଲାଭକରି ଦିବାରାତ୍ରି ବିହାର କରୁଅଛି, ଯାହାର ମନରୁ ସକଳପ୍ରକାର ଶଙ୍କା ଦୂର ହୋଇଯାଇଅଛି, ଗନ୍ଧର୍ବ ଏବଂ ଅପ୍‌ସରାମାନଙ୍କ ସହିତ ଇନ୍ଦ୍ର କ୍ରୀଡ଼ା କଲାପରି ଯେ ସର୍ବଦା କ୍ରୀଡ଼ା କରୁଅଛି, ଯେ ମନ୍ତ୍ରୀଙ୍କ ଉପରେ ସମସ୍ତ ରାଜକାର୍ଯ୍ୟର ଭାର ଛାଡ଼ିଦେଇଛି ଏବଂ ମନ୍ତ୍ରୀମାନଙ୍କ କାର୍ଯ୍ୟର କୌଣସି ତତ୍ତ୍ୱାବଧାନ କରୁନାହିଁ, ଯାହାର ରାଜ୍ୟର ବିଧାନ ନଷ୍ଟହୋଇ ଯାଇଅଛି,

ପ୍ରସାଦ୍ୟ ବାକ୍ୟୈର୍ବିବିଧୈର୍ହେତୁମଦ୍ଭିର୍ମନୋରମୈଃ ।
ବାକ୍ୟବଦ୍ ବାକ୍ୟତତ୍ତ୍ୱଜ୍ଞଂ ହରୀଶଂ ମାରୁତାତ୍ମଜଃ । ୭ ।
ହିତଂ ତଥ୍ୟଂ ଚ ପଥ୍ୟଂ ଚ ସାମଧର୍ମାର୍ଥନୀତିମତ୍ ।
ପ୍ରଣୟପ୍ରୀତି ସଂଯୁକ୍ତଂ ବିଶ୍ୱାସକୃତନିଶ୍ଚୟମ୍ । ୮ ।
ହରୀଶ୍ୱରମୁପାଗମ୍ୟ ହନୁମାନ୍ ବାକ୍ୟମବ୍ରବୀତ୍ ।
ରାଜ୍ୟଂ ପ୍ରାପ୍ତଂ ଯଶଶ୍ଚୈବ କୌଳୀ ଶ୍ରୀରଭିବର୍ଧିତା । ୯ ।
ମିତ୍ରାଣାଂ ସଂଗ୍ରହଃ ଶେଷସ୍ତଦ୍ଭବାନ୍ କର୍ତ୍ତୁମର୍ହତି ।
ଯୋ ହି ମିତ୍ରେଷୁ କାଲଜ୍ଞଃ ସତତଂ ସାଧୁ ବର୍ତ୍ତତେ । ୧୦ ।
ତସ୍ୟ ରାଜ୍ୟଂ ଚ କୀର୍ତ୍ତିଶ୍ଚ ପ୍ରତାପଶ୍ଚାପି ବର୍ଧତେ ।
ଯସ୍ୟ କୋଶଶ୍ଚ ଦଣ୍ଡଶ୍ଚ ମିତ୍ରାଣ୍ୟାତ୍ମା ଚ ଭୂମିପ ।
ସମାନ୍ୟେତାନି ସର୍ବାଣି ସ ରାଜ୍ୟଂ ମହଦଶ୍ନୁତେ । ୧୧ ।
ତଦ୍ଭବାନ୍ ବୃତ୍ତସଂପନ୍ନଃ ସ୍ଥିତଃ ପଥି ନିରତ୍ୟୟେ ।
ମିତ୍ରାର୍ଥମଭିନୀତାର୍ଥଂ ଯଥାବତ୍କର୍ତ୍ତୁମର୍ହତି । ୧୨ ।
ସଂତ୍ୟଜ୍ୟ ସର୍ବକର୍ମାଣି ମିତ୍ରାର୍ଥେ ଯୋ ନ ବର୍ତ୍ତତେ ।
ସଂଭ୍ରମାଦ୍ଧି କୃତୋତ୍ସାହଃ ସୋଽନର୍ଥେନାବରୁଧ୍ୟତେ ।୧୩।

---

ଏବଂ ଯେ ଯଥେଚ୍ଛାଗ୍ରୁଣରୂପେ ଚଳୁଅଛୁ ସେ ବାକ୍ୟତତ୍ତ୍ୱଜ୍ଞ ବାନରରାଜ ସୁଗ୍ରୀବଙ୍କ ନିକଟକୁ ଯାଇ, ଅନେକ ଯୁକ୍ତିଯୁକ୍ତ ସୁନ୍ଦର ବାକ୍ୟରେ ପ୍ରସନ୍ନକରି ବାକ୍ୟବିତ୍, କର୍ତ୍ତବ୍ୟ ବିଷୟରେ ସନ୍ଦେହରହିତ, କାଳ-ଧର୍ମ-ବିଶେଷଜ୍ଞ ବାୟୁପୁତ୍ର ହନୁମାନ୍ ହିତକାରୀ, ସତ୍ୟ, ଉପକାରୀ, ସାମ, ଧର୍ମ ଏବଂ ନୀତିପୂର୍ଣ୍ଣ, ପ୍ରୀତିପୂର୍ଣ୍ଣ ତଥା ବିଶ୍ୱସ୍ତ ବଚନ କହିଲେ । ଆପଣ ରାଜ୍ୟ ଏବଂ ଯଶ ପାଇଲେ । କୌଳିକ ଲକ୍ଷ୍ମୀକୁ ବଢ଼ାଇଲେ । ୭-୯ । ବର୍ତ୍ତମାନ ମିତ୍ରଙ୍କର ବାକୀ ରହିଥିବା କାର୍ଯ୍ୟ ତୁମ୍ଭର ସାଧନ କରିବା ଉଚିତ । ଯେଉଁ ବ୍ୟକ୍ତି ମିତ୍ରମାନଙ୍କ ପ୍ରତି ଯଥାକାଳବିହିତ କର୍ତ୍ତବ୍ୟ ସମ୍ପାଦନ କରେ ତାହାର ମଙ୍ଗଳ ହୁଏ । ୧୦ । ତାହାର ରାଜ୍ୟ, କୀର୍ତ୍ତି ଏବଂ ପ୍ରତାପ ବୃଦ୍ଧିପ୍ରାପ୍ତ ହୁଏ । ହେ ରାଜନ୍ ! ଯେ ନିଜର ରାଜକୋଷ, ସୈନ୍ୟ, ମିତ୍ର ଏବଂ ଆପଣାକୁ ଏକ ବୋଲି ଜ୍ଞାନକରେ ସେ ବିଶାଳ ରାଜ୍ୟ ଭୋଗକରେ । ୧୧ । ଅତଏବ, ସନ୍ମାର୍ଗସ୍ଥିତ, ଚରିତ୍ରବାନ୍ ଆପଣଙ୍କର ମିତ୍ରନିମନ୍ତେ ପ୍ରତିଶ୍ରୁତ ହୋଇଥିବା କାର୍ଯ୍ୟକୁ ଯଥାବିଧି ସମ୍ପନ୍ନ କରିବା ଉଚିତ । ୧୨ । ଯେଉଁ ବ୍ୟକ୍ତି ସମସ୍ତ କାର୍ଯ୍ୟ ଛାଡ଼ି ମିତ୍ରଙ୍କର କାର୍ଯ୍ୟ ନିମନ୍ତେ ଆଦରପୂର୍ବକ ଉଦ୍‌ଯୋଗ ନ କରେ, ତାହାର ଉତ୍ସାହ ନଷ୍ଟ ହୋଇଯାଏ

ଯୋ ହି କାଲବ୍ୟତୀତେଷୁ ମିତ୍ରକାର୍ଯ୍ୟେଷୁ ବର୍ତ୍ତତେ ।
ସ କୃତ୍ୱା ମହତୋଽପ୍ୟର୍ଥାନ୍ନ ମିତ୍ରାର୍ଥେନ ଯୁଜ୍ୟତେ । ୧୪ ।
ତଦିଦଂ ମିତ୍ରକାର୍ଯ୍ୟଂ ନଃ କାଲାତୀତମରିଂଦମମ୍ ।
କ୍ରିୟତାଂ ରାଘବସ୍ୟୈତଦ୍ ବୈଦେହ୍ୟାଃ ପରିମାର୍ଗଣମ୍ । ୧୫ ।
ନ ଚ କାଲମତୀତଂ ତେ ନିବେଦୟତି କାଲବିତ୍ ।
ତ୍ୱରମାଣୋଽପି ସ ପ୍ରାଜ୍ଞସ୍ତବ ରାଜନ୍ ବଶାନୁଗଃ । ୧୬ ।
କୁଲସ୍ୟ ହେତୁଃ ସ୍ଫୀତସ୍ୟ ଦୀର୍ଘବନ୍ଧୁଶ୍ଚ ରାଘବଃ ।
ଅପ୍ରମେୟପ୍ରଭାବଶ୍ଚ ସ୍ୱୟଂ ଚାପ୍ରତିମୋ ଗୁଣୈଃ । ୧୭ ।
ତସ୍ୟ ତ୍ୱଂ କୁରୁ ବୈ କାର୍ଯ୍ୟଂ ପୂର୍ବଂ ତେନ କୃତଂ ତବ ।
ହରୀଶ୍ୱର କପିଶ୍ରେଷ୍ଠାନାଜ୍ଞାପୟିତୁମର୍ହସି । ୧୮ ।
ନ ହି ତାବଦ୍ଭବେତ୍କାଲୋ ବ୍ୟତୀତଶ୍ଚୋଦନାଦୃତେ ।
ଚୋଦିତସ୍ୟ ହି କାର୍ଯ୍ୟସ୍ୟ ଭବେତ୍କାଲବ୍ୟତିକ୍ରମଃ । ୧୯ ।

---

ଏବଂ ସେ ଅନର୍ଥରେ ପଡ଼େ । ୧୩ । ସମୟ ଅତିକ୍ରାନ୍ତ ହେବା ପରେ ସେ ମିତ୍ରର କାର୍ଯ୍ୟନିମନ୍ତେ ଉଦ୍‌ଯୋଗ କରେ ସେ ବ୍ୟକ୍ତି ମିତ୍ରର ଖୁବ୍ ମହତ୍ତ୍ୱ କାର୍ଯ୍ୟ କଲେ ମଧ୍ୟ ମିତ୍ରନିମନ୍ତେ ସେ କିଛି କାର୍ଯ୍ୟକଲା ବୋଲି ଧରାଯାଏ ନାହିଁ । ୧୪ । ଅତଏବ ହେ ଶତ୍ରୁଘାତି ! ଆମମାନଙ୍କ ମିତ୍ରଙ୍କର କାର୍ଯ୍ୟର ସମୟ ଅତୀତ ହେଉଅଛି । ରାମଚନ୍ଦ୍ରଙ୍କ ନିମନ୍ତେ ସୀତାଙ୍କ ଅନ୍ୱେଷଣ କାର୍ଯ୍ୟ ତୁମ୍ଭର ଶୀଘ୍ର କରିବା ଉଚିତ । ୧୫ । ରାମଚନ୍ଦ୍ର କାଳ ଜାଣୁଛନ୍ତି । ଶୀଘ୍ର ଏ କାର୍ଯ୍ୟ କରିବାକୁ ବ୍ୟଗ୍ର ଥିଲେ ମଧ୍ୟ ସେ ବୁଦ୍ଧିମାନ୍ ତୁମ୍ଭ ବଶରେ ଥିବାରୁ ସମୟ ଅତୀତ ହେବା କଥା ତୁମକୁ ଏପର୍ଯ୍ୟନ୍ତ ଜଣାଇ ନାହାନ୍ତି । ୧୬ । ରାଘବ ତୁମ୍ଭର କୁଳର ଉନ୍ନତିର କାରଣ ଅଟନ୍ତି ଏବଂ ତୁମ୍ଭର ଦୀର୍ଘକାଳନିମନ୍ତେ ମିତ୍ର ଅଟନ୍ତି; ତାଙ୍କର ପ୍ରଭାବ ଅନୁପମ ଅଟେ ଏବଂ ସେ ନିଜେ ମଧ୍ୟ ଗୁଣରେ ଅତୁଳନୀୟ ଅଟନ୍ତି । ୧୭ । ତୁମେ ବର୍ତ୍ତମାନ ତାଙ୍କର କାର୍ଯ୍ୟ ସାଧନ କର । ସେ ପ୍ରଥମେ ତୁମ୍ଭର କାର୍ଯ୍ୟ କରିଛନ୍ତି । ହେ ବାନରରାଜ ! ନିଜର ପ୍ରଧାନପ୍ରଧାନ ବାନରମାନଙ୍କୁ ଆଜ୍ଞା ଦିଅ ।୧୮ । ଯେପର୍ଯ୍ୟନ୍ତ ରାମଚନ୍ଦ୍ର ଆମମାନଙ୍କୁ କିଛି ନ କହିଛନ୍ତି ତା' ପୂର୍ବରୁ ଆମେ ଯଦି କାର୍ଯ୍ୟ ଆରମ୍ଭ କରିଦେବା ତାହା-ହେଲେ କାଳ ବ୍ୟତିକ୍ରାନ୍ତ ହୋଇଥିବା କଥା ଜଣାଯିବ ନାହିଁ । ରାମଚନ୍ଦ୍ର ଆମକୁ କହି ପଠାଇବା ପରେ ସମୟ ଅତୀତ ହୋଇଗଲାଣି ବୋଲି ଜଣାଯିବ । ୧୯ ।

ଅକର୍ତ୍ତୁରପି କାର୍ଯ୍ୟସ୍ୟ ଭବାନ୍ କର୍ତ୍ତା ହରୀଶ୍ୱର ।
କିଂ ପୁନଃ ପ୍ରତିକର୍ତ୍ତୁସ୍ତେ ରାଜ୍ୟେନ ଚ ବଧେନ ଚ । ୨୦ ।
ଶକ୍ତିମାନତିବିକ୍ରାନ୍ତୋ ବାନରର୍କ୍ଷଗଣେଶ୍ୱର ।
କର୍ତ୍ତୁଂ ଦାଶରଥେଃ ପ୍ରୀତିମାଜ୍ଞାୟାଂ କିଂ ନୁ ସଜ୍ଜସେ ।୨୧।
କାମଂ ଖଲୁ ଶରୈଃ ଶକ୍ତଃ ସୁରାସୁରମହୋରଗାନ୍ ।
ବଶେ ଦାଶରଥିଃ କର୍ତ୍ତୁଂ ତ୍ୱତ୍ପ୍ରତିଜ୍ଞାମବେକ୍ଷତେ । ୨୨ ।
ପ୍ରାଣତ୍ୟାଗାବିଶଙ୍କେନ କୃତଂ ତେନ ମହତ୍ ପ୍ରିୟମ୍ ।
ତସ୍ୟ ମାର୍ଗାମ ବୈଦେହୀଂ ପୃଥିବ୍ୟା ପି ଚାମ୍ବରେ ।୨୩।
ଦେବଦାନବଗନ୍ଧର୍ବା ଅସୁରାଃ ସମରୁଦ୍ଗଣାଃ ।
ନ ଚ ଯକ୍ଷା ଭୟଂ ତସ୍ୟ କୁର୍ଯ୍ୟୁଃ କିମିବ ରାକ୍ଷସାଃ । ୨୪ ।
ତଦେବଂ ଶକ୍ତିଯୁକ୍ତସ୍ୟ ପୂର୍ବଂ ପ୍ରତିକୃତସ୍ତଥା ।
ରାମସ୍ୟାର୍ହସି ପିଙ୍ଗେଶ କର୍ତ୍ତୁଂ ସର୍ବାତ୍ମନା ପ୍ରିୟମ୍ । ୨୫ ।
ନାଧସ୍ତାଦବନୌ ନାପ୍ସୁ ଗତିର୍ନୋପରି ଚାମ୍ବରେ ।
କସ୍ୟ ଚିତ୍ସଜ୍ଜତେଽସ୍ମାକଂ କପୀଶ୍ୱର ତବାଜ୍ଞୟା । ୨୬ ।

---

ହେ ବାନରରାଜ ! ଯେ ଆପଣଙ୍କର କୌଣସି ଉପକାର କରି ନାହିଁ, ତାହାର କାର୍ଯ୍ୟ ମଧ୍ୟ ଆପଣ ସାଧନ କରିପାରନ୍ତି, ପୁଣି ଯେ ଆପଣଙ୍କର ଶତ୍ରୁବଧ କରି ଏବଂ ରାଜ୍ୟ ପ୍ରଦାନ କରି ଉପକାର କରି ଅଛନ୍ତି ତାଙ୍କ କଥା ଅଧିକ କଅଣ କହିବି । ୨୦ । ହେ ବାନର ଏବଂ ଋକ୍ଷଦଳର ଅଧିପତି ! ଆପଣ ଶକ୍ତିମାନ୍ ଓ ଅତିଶୟ ପରାକ୍ରମୀ ଅଟନ୍ତି । ରାମଚନ୍ଦ୍ରଙ୍କୁ ପ୍ରସନ୍ନ କରିବାନିମନ୍ତେ ବାନରମାନଙ୍କୁ ଆଜ୍ଞା ଦେବାରେ କାହିଁକି ପ୍ରସ୍ତୁତ ହେଉ ନାହାନ୍ତି ? ।୨୧। ରାମଚନ୍ଦ୍ର ଶରସାହାଯ୍ୟରେ ଦେବତା, ଅସୁର ଏବଂ ମହାସର୍ପମାନଙ୍କୁ ମଧ୍ୟ ବଧ କରିବାକୁ ଯଥେଷ୍ଟ ସକ୍ଷମ । ମାତ୍ର ସେ ତୁମ୍ଭର ପ୍ରତିଜ୍ଞାକୁ ଅପେକ୍ଷା କରି ରହିଛନ୍ତି । ୨୨ । ନିଜର ପ୍ରାଣକୁ ମଧ୍ୟ ଶଙ୍କା ନ କରି ସେ ଆମମାନଙ୍କର ମହାନ୍ ପ୍ରିୟକାର୍ଯ୍ୟ ସାଧନ କରିଅଛନ୍ତି; ସୁତରାଂ ତାଙ୍କଲାଗି ଆମେ ପୃଥିବୀ ଏବଂ ଆକାଶରେ ମଧ୍ୟ ସୀତାଙ୍କୁ ଅନ୍ୱେଷଣ କରିବା ।୨୩। ଦେବତା, ଦାନବ, ଗନ୍ଧର୍ବ, ଅସୁର, ବାୟୁଗଣ ଏବଂ ଯକ୍ଷମାନେ ମଧ୍ୟ ତାଙ୍କୁ ଡରାଇ ପାରିବେ ନାହିଁ; ତେବେ ଆଉ ରାକ୍ଷସଙ୍କ କଥା କାହିଁକି କହିବା ।୨୪। ଏତାଦୃଶ ଶକ୍ତିଶାଳୀ ରାମଚନ୍ଦ୍ର ପ୍ରଥମେ ତୁମ୍ଭର ଉପକାର କରିଛନ୍ତି । ହେ କପିରାଜ ! ସେ ରାମଚନ୍ଦ୍ରଙ୍କର ପ୍ରିୟକାର୍ଯ୍ୟ ଆପଣଙ୍କର ସର୍ବଥା କରଣୀୟ । ୨୫ । ହେ କପୀଶ୍ୱର ! ଆପଣଙ୍କ ଆଜ୍ଞା ପାଇଲେ କି ପାତାଳ, କି ପୃଥିବୀ, କି ଜଳ, କି ଆକାଶ କୌଣସିଠାରେ ଆମ ବାନରମାନଙ୍କର ଗତି କେହି ରୁଦ୍ଧ କରି ପାରିବ ନାହିଁ । ୨୬ ।

ତଦାଜ୍ଞାପୟ କଃ କିଂ ତେ କୃତୋ ବାପି ବ୍ୟବସ୍ୟତୁ ।
ହରୟୋ ହ୍ୟପ୍ରଧୃଷ୍ୟାସ୍ତେ ସନ୍ତି କୋଟ୍ୟଗ୍ରତୋଽନଘ । ୨୭ ।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା କାଲେ ସାଧୁ ନିରୂପିତମ୍ ।
ସୁଗ୍ରୀବଃ ସତ୍ତ୍ୱସଂପନ୍ନଶ୍ଚକାର ମତିମୁତ୍ତମାମ୍ । ୨୮ ।
ସଂଦିଦେଶାତିମତିମାନ୍ନୀଲଂ ନିତ୍ୟକୃତୋଦ୍ୟମମ୍ ।
ଦିକ୍ଷୁ ସର୍ବାସୁ ସର୍ବେଷାଂ ସୈନ୍ୟାନାମୁପସଂଗ୍ରହେ । ୨୯ ।
ଯଥା ସେନା ସମଗ୍ରା ମେ ଯୂଥପାଲାଶ୍ଚ ସର୍ବଶଃ ।
ସମାଗଚ୍ଛନ୍ତ୍ୟସଂଗେନ ସେନାଗ୍ରେଣ ତଥା କୁରୁ । ୩୦ ।
ଯେତ୍ୱନ୍ତପାଲାଃ ପ୍ଲବଗାଃ ଶୀଘ୍ରଗା ବ୍ୟବସାୟିନଃ ।
ସମାନୟନ୍ତୁ ତେ ଶୀଘ୍ରଂ ତ୍ୱରିତାଃ ଶାସନାନ୍ମମ ।
ସ୍ୱୟଂ ଚାନନ୍ତରଂ କାର୍ଯ୍ୟଂ ଭବାନେବାନୁପଶ୍ୟତୁ । ୩୧ ।
ତ୍ରିପଞ୍ଚରାତ୍ରାଦୂର୍ଦ୍ଧ୍ୱଂ ଯଃ ପ୍ରାପ୍ନୁୟାଦିହ ବାନରଃ ।
ତସ୍ୟ ପ୍ରାଣାନ୍ତିକୋ ଦଣ୍ଡୋ ନାତ୍ର କାର୍ଯ୍ୟା ବିଚାରଣା । ୩୨ ।

---

ଅତଏବ କିଏ କେଉଁଠାରେ ତୁମ୍ଭର କି ଆଜ୍ଞା ପାଳନ କରିବ ତାହା ଆଦେଶ ଦିଅନ୍ତୁ । ହେ ନିଷ୍ପାପ ! କୋଟିଏ ବାନର ତୁମ ସମ୍ମୁଖରେ ଉପସ୍ଥିତ ରହିଛନ୍ତି, ସେମାନଙ୍କୁ କେହି ପରାଜୟ କରିପାରିବ ନାହିଁ" । ୨୭ । ଯଥାକାଳରେ ସମ୍ୟକ୍ ଭାବରେ ଉକ୍ତ ହନୁମାନଙ୍କର ଏହି କଥା ଶୁଣି ବଳବାନ୍ ସୁଗ୍ରୀବ ତାହା ସମ୍ପାଦନ କରିବାକୁ ନିଷ୍ପତ୍ତି କଲେ । ୨୮ । ଅତଃପର ବୁଦ୍ଧିମାନ୍ ସୁଗ୍ରୀବ ସବୁ ଦିଗରେ ବର୍ତ୍ତମାନ ଥିବା ସମସ୍ତ ସୈନ୍ୟଙ୍କୁ ସଂଗ୍ରହ କରିବା ପାଇଁ ସର୍ବଦା ଉଦ୍‌ଯୋଗରତ ନୀଳଙ୍କୁ ଆଦେଶ ଦେଲେ । ୨୯ । "ସେନାନାୟକମାନଙ୍କ ସହିତ ମୋର ସମସ୍ତ ସେନା ଯେପରି ଶୀଘ୍ର ଏଠାରେ ଏକତ୍ର ହୁଅନ୍ତି ତାହାର ଉପଯୁକ୍ତ ବ୍ୟବସ୍ଥା କର । । ୩୦ । ସୀମାନ୍ତଦେଶରକ୍ଷାକାରୀ ଶୀଘ୍ରଗାମୀ ଉଦ୍‌ଯୋଗୀ ବାନରମାନେ ମୋ ଆଦେଶ ମାନି ଶୀଘ୍ର ଏଠାକୁ ଆସନ୍ତୁ । ତାହାପରେ କଣ କରିବାକୁ ହେବ ତାହା ତୁମେ ନିଜେ ଚିନ୍ତାକରି ସ୍ଥିରକର । ୩୧ । ଯେଉଁ ବାନର ପନ୍ଦରଦିନ ଅତୀତ ହେବାପରେ ଏଠାରେ ଆସି ଉପସ୍ଥିତ ହେବ ତାହାକୁ ପ୍ରାଣଦଣ୍ଡ ଦିଆଯିବ

**ହରୀଂଶ୍ଚ ବୃଦ୍ଧାନୁପଯାତୁ ସାଙ୍ଗଦୋ**
**ଭବାନ୍ମମାଜ୍ଞାମଧିକୃତ୍ୟ ନିଶ୍ଚିତମ୍ ।**
**ଇତି ବ୍ୟବସ୍ଥାଂ ହରିପୁଂଗବେଶ୍ୱରୋ**
**ବିଧାୟ ବେଶ୍ମ ପ୍ରବିବେଶ ବୀର୍ଯ୍ୟବାନ୍ । ୩୩ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ହନୁମତ୍ପ୍ରତିବୋଧନମ୍
ନାମ ଏକୋନତ୍ରିଂଶଃ ସର୍ଗଃ

---

ଏଥିରେ କୌଣସି ଦ୍ୱିଧା କରିଯିବ ନାହିଁ । ୩୨ । ମୋ ଆଜ୍ଞାରେ ଅଙ୍ଗଦଙ୍କୁ ସଙ୍ଗରେ ନେଇ ଆପଣ ସ୍ୱୟଂ ବୃଦ୍ଧ ବାନରମାନଙ୍କ ନିକଟକୁ ଯାଆନ୍ତୁ ।" ଏହିପ୍ରକାର ବ୍ୟବସ୍ଥା କରି ବୀର୍ଯ୍ୟବାନ୍ ବାନରରାଜ ନିଜ ଘରଭିତରକୁ ଗଲେ । ୩୩ । .

# ତ୍ରିଂଶଃ ସର୍ଗଃ

## ଶରଦ୍‌ବର୍ଣ୍ଣନମ୍

ଗୃହଂ ପ୍ରବିଷ୍ଟେ ସୁଗ୍ରୀବେ ବିମୁକ୍ତେ ଗଗନେ ଘନୈଃ ।
ବର୍ଷରାତ୍ରେ ସ୍ଥିତୋ ରାମଃ କାମଶୋକାଭିପୀଡ଼ିତଃ । ୧ ।
ପାଣ୍ଡୁରଂ ଗଗନଂ ଦୃଷ୍ଟ୍ୱା ବିମଳଂ ଚନ୍ଦ୍ରମଣ୍ଡଳମ୍ ।
ଶାରଦୀଂ ରଜନୀଂ ଚୈବ ଦୃଷ୍ଟ୍ୱା ଜ୍ୟୋତ୍ସ୍ନାନୁଲେପନମ୍ । ୨ ।
କାମବୃତ୍ତଂ ଚ ସୁଗ୍ରୀବଂ ନଷ୍ଟାଂ ଚ ଜନକାତ୍ମଜାମ୍ ।
ଦୃଷ୍ଟ୍ୱା କାଲମତୀତଂ ଚ ମୁମୋହ ପରମାତୁରଃ । ୩ ।
ସ ତୁ ସଂଜ୍ଞାମୁପାଗମ୍ୟ ମୁହୂର୍ତ୍ତାନ୍ମତିମାନ୍ନୃପଃ ।
ମନଃସ୍ଥାମପି ବୈଦେହୀଂ ଚିନ୍ତୟାମାସ ରାଘବଃ । ୪ ।
ଦୃଷ୍ଟ୍ୱା ଚ ବିମଳଂ ବ୍ୟୋମ ଗତବିଦ୍ୟୁଦ୍‌ବଲାହକମ୍ ।
ସାରସାରବସଂଘୁଷ୍ଟଂ ବିଲଲାପାର୍ତ୍ତୟା ଗିରା । ୫ ।
ଆସୀନଃ ପର୍ବତସ୍ୟାଗ୍ରେ ହେମଧାତୁବିଭୂଷିତେ ।
ଶାରଦଂ ଗଗନଂ ଦୃଷ୍ଟ୍ୱା ଜଗାମ ମନସା ପ୍ରିୟାମ୍ । ୬ ।

---

## ୩୦ଶ ସର୍ଗ

( ଶରତ୍‌କାଳର ବର୍ଣ୍ଣନା )

ସୁଗ୍ରୀବ ଘରକୁ ଯିବାପରେ ଏବଂ ଆକାଶ ମେଘମୁକ୍ତ ହେବାପରେ ( ପର୍ବତ ଉପରେ) ଅପେକ୍ଷା କରୁଥିବା ରାମଚନ୍ଦ୍ର ବର୍ଷାରାତ୍ରିରେ କାମ ଏବଂ ଶୋକରେ ବ୍ୟାକୁଳ ହୋଇଉଠିଲେ । ୧ । ସ୍ୱଚ୍ଛ ଆକାଶ, ନିର୍ମଳ ଚନ୍ଦ୍ରମଣ୍ଡଳ ଏବଂ ଜ୍ୟୋତ୍ସ୍ନାବିଚ୍ଛୁରିତ ଶରତ୍‌କାଳୀନ ରାତ୍ରିକୁ ଦେଖି ତାହାଙ୍କର ଦୁଃଖ ଏବଂ କାମ-ପୀଡ଼ା ବଢ଼ିଲା । ୨ । ସୁଗ୍ରୀବ କାମଭୋଗରେ ଆସକ୍ତ ରହିଛନ୍ତି ଏବଂ ଆୟୋଜନର ସମସ୍ତ ଅତୀତ ହୋଇ ଯାଉଅଛି ଦେଖି ଅପହୃତା ଜନକଦୁହିତାଙ୍କର କଥା ସ୍ମରଣ କରି ରାମଚନ୍ଦ୍ର ଅତିଶୟ ଆତୁର ହୋଇ ଅଚେତନ ହୋଇପଡ଼ିଲେ । ୩ । କିଛିକାଳ ପରେ ବୁଦ୍ଧିମାନ୍ ରାଜା ରାମଚନ୍ଦ୍ର ଚୈତନ୍ୟ ଲଭକରି ମନମଧ୍ୟରେ ସବୁବେଳେ ଲାଗି ରହିଥିବା ସୀତାଙ୍କୁ ଚିନ୍ତା କରିବାକୁ ଲାଗିଲେ । ୪ । ବିଦ୍ୟୁତ୍ ଏବଂ ବକପଂକ୍ତିବିମୁକ୍ତ, ନିର୍ମଳ ଏବଂ ସାରସରବନିନାଦିତ ଆକାଶକୁ ଦେଖି ରାମଚନ୍ଦ୍ର ଆର୍ତ୍ତସ୍ୱରରେ ବିଳାପ କରିବାକୁ ଲାଗିଲେ । ୫ । ସୁବର୍ଣ୍ଣଧାତୁବିଭୂଷିତ ପର୍ବତଶିଖର ଉପରେ ବସି ରାମଚନ୍ଦ୍ର ଶାରଦୀୟ ଆକାଶକୁ ଦେଖି ମନେ ମନେ

ସାରସାରାବସଂନାଦୈଃ ସାରସାରାବନାଦନୀ ।
ଯାଶ୍ରମେ ରମତେ ବାଲା ସାଦ୍ୟ ମେ ରମତେ କଥମ୍ । ୭ ।
ପୁଷ୍ପିତାଂଶ୍ଚାସନାନ୍ ଦୃଷ୍ଟ୍ୱା କାଞ୍ଚନାନିବ ନିର୍ମଲାନ୍ ।
କଥଂ ସା ରମତେ ବାଲା ପଶ୍ୟନ୍ତୀ ମାମପଶ୍ୟତୀ । ୮ ।
ଯା ପୁରା କଳହଂସାନାଂ କଲେନ କଲଭାଷିଣୀ ।
ବୁଧ୍ୟତେ ଚାରୁସର୍ବାଙ୍ଗୀ ସାଦ୍ୟ ମେ ରମତେ କଥମ୍ । ୯ ।
ନିଃସ୍ୱନଂ ଚକ୍ରବାକାନାଂ ନିଶମ୍ୟ ସହଚାରିଣାମ୍ ।
ପୁଣ୍ଡରୀକବିଶାଳାକ୍ଷୀ କଥମେଷା ଭବିଷ୍ୟତି । ୧୦ ।
ସରାଂସି ସରିତୋ ବାପୀଃ କାନନାନି ବନାନି ଚ ।
ତାଂ ବିନା ମୃଗଶାବାକ୍ଷୀଂ ଚରନ୍ନାଦ୍ୟ ସୁଖଂ ଲଭେ । ୧୧ ।
ଅପି ତାଂ ମଦ୍‌ବିୟୋଗାଚ୍ଚ ସୌକୁମାର୍ଯ୍ୟାଚ୍ଚ ଭାମିନୀମ୍ ।
ସୁଦୂରଂ ପୀଡ଼ୟେତ୍‌କାମଃ ଶରଦ୍‌ଗୁଣନିରନ୍ତରଃ । ୧୨ ।
ଏବମାଦି ନରଶ୍ରେଷ୍ଠୋ ବିଲଲାପ ନୃପାତ୍ମଜଃ ।
ବିହଙ୍ଗ ଇବ ସାରଙ୍ଗଃ ସଲିଲଂ ତ୍ରିଦଶେଶ୍ୱରାତ୍ । ୧୩ ।

---

ପ୍ରିୟାଙ୍କ ନିକଟକୁ ଚାଲିଗଲେ । ୬ । "ସାରସସଦୃଶ ନାଦକାରିଣୀ ଯେଉଁ ସୀତା ସାରସଙ୍କ ରବ ଶୁଣି ମୋ ସହିତ ଆଶ୍ରମରେ ବିହାର କରୁଥିଲେ ଆଜ ସେ କପରି କ୍ରୀଡ଼ା କରୁଅଛନ୍ତି ? । ୭ । ସୁନିର୍ମଳ ସୁବର୍ଣ୍ଣସଦୃଶ ରକ୍ତଚକ୍ୟଶାଳୀ ଅସନ ବୃକ୍ଷର ଫୁଲମାନଙ୍କୁ ଦେଖି ଏବଂ ମୋତେ ନ ଦେଖିପାରି ସେ ସୀତାଙ୍କ ମନରେ ଆନନ୍ଦ କେଉଁଠୁ ହେଉଥିବ ? । ୮ । ଯେଉଁ ମଧୁରଭାଷିଣୀ ସର୍ବାଙ୍ଗସୁନ୍ଦରୀ ସୀତା କଳହଂସମାନଙ୍କ କଳନାଦଦ୍ୱାରା ଶଯ୍ୟାତ୍ୟାଗ କରି ଜାଗ୍ରତ ହେଉଥିଲେ, ସେ ଆଜ କପରି କ୍ରୀଡ଼ା କରୁଥିବେ ? । ୯ । ନିଜର ପତ୍ନୀସହିତ ବିଚରଣ କରୁଥିବା ଚକ୍ରବାକର ସ୍ୱର ଶୁଣି କମଳବିଶାଳାକ୍ଷୀ ସୀତା ଆଜ କପରି ପ୍ରାଣଧରି ରହିଥିବେ ? । ୧୦ । ସରୋବର, ନଦୀ, ବାପୀ, କାନନ ଏବଂ ବନରେ ମୁଁ ଆଜ ସେ ମୃଗଲୋଚନାଙ୍କ ବ୍ୟତୀତ, ବୁଲି ବୁଲି କୌଣସି ସୁଖ ଲାଭକରି ପାରୁନାହିଁ । ୧୧ । ମୋ ବିୟୋଗରେ ଶରତ୍‌କାଳରେ ବର୍ଦ୍ଧମାନ କାମ ସେ ସୁକୁମାରୀଙ୍କୁ ଅତିଶୟ ପୀଡ଼ିତ କରୁଥିବ" । ୧୨ । ଇନ୍ଦ୍ରଙ୍କଠାରୁ ଜଳ ପ୍ରାର୍ଥନାକରି ଚାତକ ଯେପରି ବିଳାପକରେ, ସେହିପରି ନରଶ୍ରେଷ୍ଠ ରାମଚନ୍ଦ୍ର ବହୁତ ବିଳାପକଲେ । ୧୩ । ଅନନ୍ତର ରମଣୀୟ ପର୍ବତ-

ତତସ୍ତୁ ସୂର୍ଯ୍ୟ ରମ୍ୟେଷୁ ଫଳାର୍ଥୀ ଗିରିସାନୁଷୁ ।
ଦଦର୍ଶ ପର୍ଯ୍ୟୁପାବୃତ୍ତୋ ଲକ୍ଷ୍ମୀବାଁଲ୍ଲକ୍ଷ୍ମଣୋଽଗ୍ରଜମ୍ । ୧୪ ।
ସ ଚିନ୍ତୟା ଦୁଃସହୟା ପରୀତମ୍
ବିସଂଜ୍ଞମେକଂ ବିଜନେ ମନସ୍ୱୀ ।
ଭ୍ରାତୁର୍ବିଷାଦାତ୍ତ୍ୱରିତୋଽତିଦୀନଃ
ସମୀକ୍ଷ୍ୟ ସୌମିତ୍ରିରୁବାଚ ଦୀନମ୍ । ୧୫ ।
କିମାର୍ଯ୍ୟ କାମସ୍ୟ ବଶଂ ଗତେନ
କିମାତ୍ମପୌରୁଷ୍ୟପରାଭବେନ ।
ଅୟଂ ହ୍ରିୟା ସଂହ୍ରିୟତେ ସମାଧିଃ
କିମତ୍ର ଯୋଗେନ ନିବର୍ତ୍ତିତେ ନ । ୧୬ ।
କ୍ରିୟାଭିଯୋଗଂ ମନସଃ ପ୍ରସାଦମ୍
ସମାଧିଯୋଗାନୁଗତଂ ଚ କାଳମ୍ ।
ସହାୟସାମର୍ଥ୍ୟମଦୀନସତ୍ତ୍ୱଃ
ସ୍ୱକର୍ମହେତୁଂ ଚ କୁରୁଷ୍ୱ ତାତ । ୧୭ ।
ନ ଜାନକୀ ମାନବବଂଶନାଥ
ତ୍ୱୟା ସନାଥା ସୁଲଭା ପରେଣ ।
ନ ଚାଗ୍ନିଚୂଡ଼ାଂ ଜ୍ୱଳିତାମୁପେତ୍ୟ
ନ ଦହ୍ୟତେ ବୀର ବରାର୍ହ କଶ୍ଚିତ୍ । ୧୮ ।

---

ଶିଖର ଉପରେ ଫଳନିମନ୍ତେ ଅନ୍ୱେଷଣ କରି ବୁଲୁଥିବା ଶ୍ରୀମାନ୍ ଲକ୍ଷ୍ମଣ ଫେରିଆସି ଜ୍ୟେଷ୍ଠଭ୍ରାତାଙ୍କୁ ଏହିପରି ଅବସ୍ଥାରେ ଦେଖିଲେ । ୧୪ । ମନସ୍ୱୀ ଲକ୍ଷ୍ମଣ ଦୁଃସହ ଚିନ୍ତାମଗ୍ନ ଓ ଏକାକୀ ସଂଜ୍ଞାହୀନ ହୋଇପଡ଼ିଥିବା ଭାଇ ରାମଚନ୍ଦ୍ରଙ୍କୁ ଦୁଃଖିତ ଦେଖି ତାଙ୍କୁ ଦୁଃଖିତସ୍ୱରରେ କହିଲେ । ୧୫ । "ହେ ଆର୍ଯ୍ୟ ! କାମର ବଶୀଭୂତ ହେଲେ କି ଲାଭ ମିଳିବ ? ନିଜର ପରାକ୍ରମକୁ ଭୁଲିଗଲେ କି ଫଳ ମିଳିବ ? ଶୋକରେ ଚିତ୍ତର ଏକାଗ୍ରତା ନଷ୍ଟ ହୋଇଯାଏ । ଯୋଗଦ୍ୱାରା ଅର୍ଥାତ୍ ଚିତ୍ତର ଏକାଗ୍ରତାଦ୍ୱାରା କଣ ଦୁଃଖର ନିବୃତ୍ତି କରାଯାଇ ପାରେ ନାହିଁ ?। ୧୬। ଶାରୀରିକ ଉଦ୍ୟମର ପ୍ରୟୋଗ କର । ପ୍ରସନ୍ନମନା ହୋଇ ଧୀରତା ଏବଂ କୁଶଳତାସହିତ ଉଦ୍‌ଯୋଗ କର । ପରାକ୍ରମ ପ୍ରକାଶକରି ପୁରୁଷାର୍ଥଜ୍ଞାନର କାରଣସ୍ୱରୂପ ସହାୟ ଏବଂ ସାମର୍ଥ୍ୟକୁ ବଢ଼ାଇବାକୁ ଯତ୍ନକର । ୧୭ । ହେ ମନୁବଂଶନାଥ ! ଆପଣ ଯେଉଁ ଜାନକୀଙ୍କର ସ୍ୱାମୀ, ସେ କଦାପି ଅପରର ସୁଲଭ ହେବେ ନାହିଁ । ଜ୍ୱଳନ୍ତ ଅଗ୍ନି

ସଲକ୍ଷଣଂ ଲକ୍ଷ୍ମଣମପ୍ରଧୃଷ୍ୟମ୍
ସ୍ୱଭାବଜଂ ବାକ୍ୟମୁବାଚ ରାମଃ ।
ହିତଂ ଚ ପଥ୍ୟଂ ଚ ନୟପ୍ରସକ୍ତମ୍
ସସାମ ଧର୍ମାର୍ଥସମାହିତଂ ଚ । ୧୯ ।
ନିଃସଂଶୟଂ କାର୍ଯ୍ୟମବେକ୍ଷିତବ୍ୟମ୍
କ୍ରିୟାବିଶେଷୋଽପ୍ୟନୁବର୍ତ୍ତିତବ୍ୟଃ ।
ନ ତୁ ପ୍ରବୃଦ୍ଧସ୍ୟ ଦୁରାସଦସ୍ୟ
କୁମାରବୀର୍ଯ୍ୟସ୍ୟ ଫଳଂ ନ ଚିନ୍ତ୍ୟମ୍ । ୨୦ ।
ଅଥ ପଦ୍ମପଲାଶାକ୍ଷୀଂ ମୈଥିଲୀମନୁଚିନ୍ତୟନ୍ ।
ଉବାଚ ଲକ୍ଷ୍ମଣଂ ରାମୋ ମୁଖେନ ପରିଶୁଷ୍ୟତା । ୨୧ ।
ତର୍ପୟିତ୍ୱା ସହସ୍ରାକ୍ଷଃ ସଲିଲେନ ବସୁନ୍ଧରାମ୍ ।
ନିବର୍ତ୍ତୟିତ୍ୱା ସସ୍ୟାନି କୃତକର୍ମା ବ୍ୟବସ୍ଥିତଃ । ୨୨ ।
ଦୀର୍ଘଗମ୍ଭୀରନିର୍ଘୋଷାଃ ଶୈଳଦ୍ରୁମପୁରୋଗମାଃ ।
ବିସୃଜ୍ୟ ସଲିଲଂ ମେଘାଃ ପରିଶ୍ରାନ୍ତା ନୃପାତ୍ମଜ । ୨୩ ।
ନୀଲୋତ୍ପଲଦଲଶ୍ୟାମାଃ ଶ୍ୟାମୀକୃତ୍ୱା ଦିଶୋ ଦଶ ।
ବିମଦା ଇବ ମାତଙ୍ଗାଃ ଶାନ୍ତବେଗାଃ ପୟୋଧରାଃ ।୨୪।

---

ନିକଟକୁ କେହି ଗଲେ ସେ କଣ ଜଳିଯିବ ନାହିଁ?" । ୧୮ । ସୁଲକ୍ଷଣସମ୍ପନ୍ନ ଅଜେୟ ଲକ୍ଷ୍ମଣଙ୍କୁ ରାମଚନ୍ଦ୍ର କହିଲେ, "ତୁମେ ଯାହା କହିଲ ତାହା ହିତକାରୀ, ଉଚିତ ଏବଂ ରାଜନୀତିଯୁକ୍ତ ଅଟେ ଏବଂ ସାମ, ଧର୍ମ ଓ ଅର୍ଥଯୁକ୍ତ ମଧ୍ୟ ଅଟେ । ୧୯ । ନିଃସନ୍ଦେହ କାର୍ଯ୍ୟ କରିବା ଆବଶ୍ୟକ; ବିଶେଷ କାର୍ଯ୍ୟମାନ ମଧ୍ୟ ଅନୁଷ୍ଠାନ କରିବା ଉଚିତ । ହେ କୁମାର ! ବଳବାନ୍ ଦୁର୍ଜେୟ ବୀର୍ଯ୍ୟର ଫଳକୁ ଯେ ବିଚାର ନ କରିବ ତାହା କଦାପି ନୁହେ" । ୨୦ । ଅନନ୍ତର ପଦ୍ମପଲାଶାକ୍ଷୀ ସୀତାଙ୍କ ବିଷୟ ଚିନ୍ତା କରି ରାମଚନ୍ଦ୍ରଙ୍କ ମୁହଁ ଶୁଖିଗଲା ଏବଂ ସେ ଲକ୍ଷ୍ମଣଙ୍କୁ କହିଲେ ।୨୧ । "ଇନ୍ଦ୍ର ଜଳଦ୍ୱାରା ପୃଥିବୀକୁ ତୃପ୍ତ କରିଅଛନ୍ତି ଏବଂ ଶସ୍ୟସବୁକୁ ପରିପକ୍ୱ କରିଅଛନ୍ତି । ଏହିପରି ସେ ନିଜର ସମସ୍ତ କାର୍ଯ୍ୟ ସମ୍ପନ୍ନ କରି ବସିଅଛନ୍ତି । ୨୨ । ହେ ରାଜକୁମାର ! ଦୀର୍ଘ ଗମ୍ଭୀର ଗର୍ଜନକାରୀ ଏବଂ ଦ୍ରୁମ ତଥା ପର୍ବତମାନଙ୍କ ଉପରେ ବିଚରଣ କରୁଥିବା ମେଘମାନେ ଜଳବୃଷ୍ଟି କରିସାରି ଶ୍ରାନ୍ତ ହୋଇଗଲେଣି । ୨୩ । ନୀଳକଇଁସଦୃଶ ଶ୍ୟାମଳବର୍ଣ୍ଣ ମେଘମାନେ ଦଶଦିଗକୁ ଶ୍ୟାମଳବର୍ଣ୍ଣ କରିଦେଇ ମଦହୀନ ହସ୍ତୀ ସମାନ

ଜଲଗର୍ଭା ମହାମେଘାଃ କୁଟଜାର୍ଜୁନଗନ୍ଧିନଃ ।
ଚରିତ୍ବା ବିରତାଃ ସୌମ୍ୟ ବୃଷ୍ଟିବାତାଃ ସମୁଦ୍ୟତାଃ । ୨୫
ଘନାନାଂ ବାରଣାନାଂ ଚ ମୟୂରାଣାଂ ଚ ଲକ୍ଷ୍ମଣ ।
ନାଦଃ ପ୍ରସ୍ରବଣାନାଂ ଚ ପ୍ରଶାନ୍ତଃ ସହସାନଘ । ୨୬ ।
ଅଭିବୃଷ୍ଟା ମହାମେଘୈର୍ନିର୍ମଲାଶ୍ଚିତ୍ରସାନବଃ ।
ଅନୁଲିପ୍ତା ଇବାଭାନ୍ତି ଗିରୟଶ୍ଚନ୍ଦ୍ରରଶ୍ମିଭିଃ । ୨୭ ।

ଶାଖାସୁ ସପ୍ତଚ୍ଛଦପାଦପାନାମ୍
ପ୍ରଭାସୁ ତାରାର୍କନିଶାକରାଣାମ୍ ।
ଲୀଲାସୁ ଚୈବୋତ୍ତମ ବାରଣାନାମ୍
ଶ୍ରିୟଂ ବିଭଜ୍ୟାଦ୍ୟ ଶରତ୍‌ପ୍ରବୃତ୍ତା । ୨୮ ।
ସଂପ୍ରତ୍ୟନେକାଶ୍ରୟଚିତ୍ରଶୋଭା
ଲକ୍ଷ୍ମୀଃ ଶରତ୍କାଲଗୁଣୋପପନ୍ନା ।
ସୂର୍ଯ୍ୟାଗ୍ରହସ୍ତ ପ୍ରତିବୋଧିତେଷୁ
ପଦ୍ମାକରେଷ୍ୱଭ୍ୟଧିକଂ ବିଭାତି । ୨୯ ।
ସପ୍ତଚ୍ଛଦାନାଂ କୁସୁମୋପଗନ୍ଧୀ
ଷଟ୍‌ପାଦବୃନ୍ଦୈରନୁଗୀୟମାନଃ ।
ମତ୍ତଦ୍ୱିପାନାଂ ପବନାନୁସାରୀ
ଦର୍ପଂ ବନେଷ୍ୱଭ୍ୟଧିକଂ ବିଭାତି । ୩୦ ।

---

ଶିଥିଳ ହୋଇଗଲେଣି । ୨୪ । ଜଳରୂପ ଗର୍ଭଧାରଣକାରୀ କୁଟଜ ଏବଂ ଅର୍ଜୁନ ଗନ୍ଧଯୁକ୍ତ ବର୍ଷାକାଳୀନ ବାୟୁମାନେ ଗୃହଆଡ଼େ ବିଚରଣ କରିସାରି ବିରତ ହେଲେଣି । ୨୫ । ହେ ନିଷ୍ପାପ ଲକ୍ଷ୍ମଣ ! ମେଘ, ହାତୀ, ମୟୂର ଏବଂ ଝରଣାମାନଙ୍କର ଶବ୍ଦ ସହସା ଶାନ୍ତ ହୋଇଗଲାଣି । ୨୬ । ମହାମେଘଦ୍ୱାରା ବିଧୌତ ହୋଇ ବିଚିତ୍ର ଶିଖରଯୁକ୍ତ ପର୍ବତମାନେ ଚନ୍ଦ୍ରକିରଣଦ୍ୱାରା ଅନୁଲିପ୍ତ ହେଲା ପରି ଦେଖାଯାଉଅଛନ୍ତି । ୨୭ । ସପ୍ତଚ୍ଛଦ ବୃକ୍ଷର ଶାଖାମାନଙ୍କରେ ତାରା, ସୂର୍ଯ୍ୟ ଏବଂ ଚନ୍ଦ୍ରର କିରଣରେ ତଥା ଉତ୍କୃଷ୍ଟ ହସ୍ତୀମାନଙ୍କ କ୍ରୀଡ଼ାରେ ଶୋଭାକୁ ବାଣ୍ଟିଦେଇ ଏବେ ଶରତ୍ ଋତୁ ବର୍ତ୍ତମାନ ଉପସ୍ଥିତ ହେଲାଣି ।୨୮। ଶରତ୍କାଳରେ ଉତ୍ପନ୍ନ ଶୋଭା ଅନେକ ପଦାର୍ଥକୁ ଶୋଭିତ କରୁଅଛି ସତ, ମାତ୍ର ସୂର୍ଯ୍ୟକିରଣଦ୍ୱାରା ବିକଶିତ କମଳବନରେ ସେ ଶୋଭା ବିଶେଷଭାବରେ ଦେଖା ପଡ଼ୁଅଛି । ୨୯ । ସପ୍ତଚ୍ଛଦପୁଷ୍ପର ଗନ୍ଧଯୁକ୍ତ, ଭ୍ରମର ଗୁଞ୍ଜନଦ୍ୱାରା ମୁଖରିତ ପବନର ଅନୁସରଣକାରୀ ଶରତ୍ ଋତୁ ଉନ୍ମତ୍ତ ହସ୍ତୀମାନଙ୍କର ଦର୍ପ ଦୂରକରି ଅଧିକ ଶୋଭା ପାଉଅଛି । ୩୦ ।

ଅଭ୍ୟାଗତୈଶ୍ଚାରୁବିଶାଲପକ୍ଷୈଃ
ସ୍ମରପ୍ରିୟୈଃ ପଦ୍ମରଜୋବକୀର୍ଣ୍ଣୈଃ ।
ମହାନଦୀନାଂ ପୁଲିନୋପଯାତୈଃ
କ୍ରୀଡ଼ନ୍ତି ହଂସାଃ ସହଚକ୍ରବାକୈଃ । ୩୧ ।

ମଦପ୍ରଗଲ୍‌ଭେଷୁ ଚ ବାରଣେଷୁ
ଗବାଂ ସମୂହେଷୁ ଚ ଦର୍ପିତେଷୁ ।
ପ୍ରସନ୍ନତୋୟାସୁ ଚ ନିମ୍ନଗାସୁ
ବିଭାତି ଲକ୍ଷ୍ମୀର୍ବହୁଧା ବିଭକ୍ତା । ୩୨ ।

ନଭଃ ସମୀକ୍ଷ୍ୟାମ୍ବୁଧରୈର୍ବିମୁକ୍ତମ୍
ବିମୁକ୍ତବର୍ହାଭରଣା ବନେଷୁ ।
ପ୍ରିୟାସ୍ୱରକ୍ତା ବିନିବୃତ୍ତଶୋଭା
ଗତୋତ୍ସବା ଧ୍ୟାନପରା ମୟୂରାଃ । ୩୩ ।

ମନୋଜ୍ଞଗନ୍ଧୈଃ ପ୍ରିୟକୈରନଳ୍ପୈଃ
ପୁଷ୍ପାଗ୍ରଭାରାବନତାଗ୍ରଶାଖୈଃ ।
ସୁବର୍ଣ୍ଣଗୌରୈର୍ନୟନାଭିରାମୈ-
ରୁଦ୍ୟୋତିତାନୀବ ବନାନ୍ତରାଣି । ୩୪ ।

---

ହଂସମାନେ ଘରକୁ ଫେରି ଆସିଥିବା ଦୀର୍ଘ ରମଣୀୟ ପକ୍ଷଯୁକ୍ତ, କନ୍ଦର୍ପର ପ୍ରିୟପାତ୍ର, ପଦ୍ମରେଣୁଧୂସରିତ ମହାନଦୀମାନଙ୍କର ପୁଲିନରେ ବସିଥିବା ଚକ୍ରବାକମାନଙ୍କ ସହିତ କ୍ରୀଡ଼ା କରୁଅଛନ୍ତି । ୩୧ । ଶରତର ସୌନ୍ଦର୍ଯ୍ୟ ମଦମତ୍ତ ହସ୍ତୀମାନଙ୍କ ମଧ୍ୟରେ, ଦର୍ପିତ ଗୋଗୋଷ୍ଠରେ ଓ ସ୍ୱଚ୍ଛସଲିଳା ନଦୀମାନଙ୍କରେ ବାଣ୍ଟି ହୋଇ ବିଶେଷ ଶୋଭା ପାଉଅଛି । ୩୨ । ମେଘବିମୁକ୍ତ ଆକାଶକୁ ଦେଖିକରି ପୁଚ୍ଛ ଖସି ପଡ଼ିଥିବା ମୟୂରମାନେ ବନରେ ପ୍ରିୟାମାନଙ୍କ ପ୍ରତି ଆସକ୍ତି ତ୍ୟାଗ କରିଦେଲେଣି । ସେମାନେ ନୃତ୍ୟ ତ୍ୟାଗ କରି ଚିନ୍ତାମଗ୍ନ ଜଣାପଡ଼ୁଅଛନ୍ତି । ୩୩ । ପୁଷ୍ପଭାରବନତ ଶାଖାବିଶିଷ୍ଟ, ସୁନ୍ଦର ଗନ୍ଧଯୁକ୍ତ, ସୁବର୍ଣ୍ଣସଦୃଶ ଗୌରବର୍ଣ୍ଣ, ନୟନର ପ୍ରୀତି ଉତ୍ପାଦନକାରୀ ବହୁଳ ଅସନ ବୃକ୍ଷଦ୍ୱାରା ବନଭୂମି ପ୍ରକାଶମାନ ହୋଇଥିବାପରି ଜଣାପଡ଼ୁଅଛି । ୩୪ ।

ପ୍ରିୟାନ୍ୱିତାନାଂ ନଳିନୀପ୍ରିୟାଣାମ୍
ବନପ୍ରିୟାଣାଂ କୁସୁମୋଦ୍‌ଗତାନାମ୍ ।
ମଦୋତ୍କଟାନାଂ ମଦଲାଲସାନାମ୍
ଗଜୋତ୍ତମାନାଂ ଗତୟୋଽଦ୍ୟ ମନ୍ଦାଃ । ୩୫ ।
ବ୍ୟକ୍ତଂ ନଭଃ ଶସ୍ତ୍ରବିଧୌତବର୍ଣମ୍
କୃଶପ୍ରବାହାଣି ନଦୀଜଲାନି ।
କହ୍ଲାରଶୀତାଃ ପବନାଃ ପ୍ରବାନ୍ତି
ତମୋବିମୁକ୍ତାଶ୍ଚ ଦିଶଃ ପ୍ରକାଶାଃ । ୩୬ ।
ସୂର୍ଯାତପକ୍ରାମଣନଷ୍ଟପଙ୍କା
ଭୂମିଶ୍ଚିରୋଦ୍‌ଘାଟିତସାନ୍ଦ୍ରରେଣୁଃ
ଅନ୍ୟୋନ୍ୟବୈରେଣ ସମାୟୁତାନା-
ମୁଦ୍ୟୋଗକାଲୋଽଦ୍ୟ ନରାଧିପାନାମ୍ । ୩୭ ।
ଶରଦ୍‌ଗୁଣାପ୍ୟାୟିତରୂପଶୋଭାଃ
ପ୍ରହର୍ଷିତାଃ ପାଂସୁସମୁକ୍ଷିତାଙ୍ଗାଃ ।
ମଦୋତ୍କଟା ସଂପ୍ରତି ଯୁଦ୍ଧଲୁବ୍ଧା
ବୃଷା ଗବାଂ ମଧ୍ୟଗତା ନଦନ୍ତି । ୩୮ ।

---

ପ୍ରିୟାମାନଙ୍କ ସହିତ ବର୍ତ୍ତମାନ କମଳ ଏବଂ ବନପ୍ରିୟ ପୁଷ୍ପ ଗନ୍ଧ ଘ୍ରାଣକାରୀ ମଦମତ୍ତ ଏବଂ ମଦପ୍ରିୟ ଉତ୍କୃଷ୍ଟ ଗଜମାନଙ୍କର ଗତି ଆଜ ମନ୍ଦ ହୋଇ ଯାଇଅଛି । । ୩୫ । ଶାଣଦ୍ୱାରା ପରିଷ୍କୃତ ହୋଇଥିବା ଶସ୍ତ୍ରପରି ଆକାଶର ବର୍ଣ୍ଣ ନିର୍ମଳ ହୋଇ-ଅଛି । ନଦୀର ଜଳଧାରା କ୍ଷୀଣଭାବରେ ପ୍ରବାହିତ ହେଉଅଛି । ପଦ୍ମଦ୍ୱାରା ଶୀତଳ ହୋଇ ବାୟୁ ବହୁଅଛି । ଅନ୍ଧକାର ଅପସାରିତ ହୋଇ ଯାଇଥିବାରୁ ଦିଗମାନ ପ୍ରକାଶିତ ହୋଇଅଛି । ୩୬ । ସୂର୍ଯ୍ୟର ତାପ ପ୍ରସାରିତ ହୋଇଥିବାରୁ ପଙ୍କ ଶୁଖିଗଲାଣି । ବହୁଦିନ ପରେ ଭୂମିରେ ପ୍ରଚୁର ଧୂଳି ଉତ୍ପନ୍ନ ହୋଇଅଛି । ପରସ୍ପର ମଧ୍ୟରେ ବୈରିଭାବ ପୋଷଣକାରୀ ରାଜାମାନଙ୍କର ଉଦ୍ୟୋଗ କରିବାର ଏହାହିଁ ସମୟ । ୩୭ । ଶରତ୍‌କାଳହେତୁରୁ ଯେଉଁମାନଙ୍କର ରୂପ ଏବଂ ସୌନ୍ଦର୍ଯ୍ୟ ବୃଦ୍ଧି ପାଇଅଛି, ଯାହାଙ୍କ ଶରୀରରେ ଧୂଳି ଲାଗିରହିଅଛି, ସେହି ଉନ୍ମତ୍ତ ଆନନ୍ଦିତ ଏବଂ ଯୁଦ୍ଧଲିପ୍ସୁ ବୃଷଭମାନେ ଗାଭୀମାନଙ୍କ ମଧ୍ୟରେ ପଶି ନାଦ କରୁଅଛନ୍ତି । ୩୮ ।

ସମନ୍ମଥା ସ୍ତ୍ରୀବ୍ରତବ୍ରନୁରାଗାଃ
କୁଳାନ୍ୱିତା ମନ୍ଦଗତିଃ କରେଣୁଃ ।
ମଦାନ୍ୱିତଂ ସଂପରିବାର୍ଯ୍ୟ ଯାନ୍ତମ୍
ବନେଷୁ ଭର୍ତ୍ତାରମନୁପ୍ରୟାତି ।୩୯।

ତ୍ୟକ୍ତ୍ୱା ବରାଣ୍ୟାତ୍ମବିଭୂଷିତାନି
ବର୍ହାଣି ତୀରେପଗତା ନଦୀନାମ୍ ।
ନିର୍ଭର୍ତ୍ସ୍ୟମାନା ଇବ ସାରସୌଘୈଃ
ପ୍ରୟାନ୍ତି ଦୀନା ବିମଦା ମୟୂରାଃ ।୪୦।

ବିତ୍ରାସ୍ୟ କାରଣ୍ଡବଚକ୍ରବାକାନ୍
ମହାରବୈର୍ଭିନ୍ନକଟା ଗଜେନ୍ଦ୍ରାଃ ।
ସରଃସୁ ବଦ୍ଧାମ୍ବୁଜଭୂଷଣେଷୁ
ବିକ୍ଷୋଭ୍ୟ ବିକ୍ଷୋଭ୍ୟ ଜଳଂ ପିବନ୍ତି ।୪୧।

ବ୍ୟପେତପଂକାସୁ ସବାଲୁକାସୁ
ପ୍ରସନ୍ନତୋୟାସୁ ସଗୋକୁଳାସୁ ।
ସସାରସାରାବବିନାଦିତାସୁ
ନଦୀଷୁ ହଂସା ନିପତନ୍ତି ହୃଷ୍ଟାଃ ।୪୨।

---

କାମମତ୍ତା, ଅତିଶୟ ଅନୁରାଗିଣୀ, କୁଳବଣ୍ଣ, ମନ୍ଦଗାମିନୀ ହସ୍ତିନୀ ବନରେ ବିଚରଣ କରୁଥିବା ମଦମତ୍ତ ପତିର ପଛେ ପଛେ ଅନୁସରଣ କରୁଅଛନ୍ତି । ୩୯ । ମୟୂରମାନେ ନିଜର ଉତ୍ତମ ଭୂଷଣ ପୁଚ୍ଛକୁ ତ୍ୟାଗ କରି ନଦୀତୀରକୁ ଆସି ସାରସପଂକ୍ତିଙ୍କର ତିରସ୍କାରଦ୍ୱାରା ବ୍ୟଥିତ ହୋଇ ଉଦାସୀନଭାବରେ ଫେରି ଯାଉଅଛନ୍ତି । ୪୦ । ମଦସ୍ରାବୀ ହସ୍ତୀମାନେ ନିଜର ଗର୍ଜନଦ୍ୱାରା କାରଣ୍ଡବ ଏବଂ ଚକ୍ରବାକ ପ୍ରଭୃତିଙ୍କୁ ଡରାଇ ବିକଶିତ କମଳଭୂଷିତ ସରୋବରକୁ ବିକ୍ଷୋଭିତ କରି ଜଳପାନ କରୁଅଛନ୍ତି । । ୪୧ । ପଙ୍କରହିତ ବାଲୁକାଯୁକ୍ତ ସ୍ୱଚ୍ଛସଳିଳା ନଦୀମାନଙ୍କର ତଟକୁ ହଂସମାନେ ଆନନ୍ଦିତ ହୋଇ ଆସୁଅଛନ୍ତି । ସେଠାରେ ଗୋରୁଗୋଠ ରହିଅଛି ଏବଂ ସାରସମାନଙ୍କ ଶବ୍ଦରେ ସେ ସ୍ଥାନ ମୁଖରିତ ହେଉଅଛି । ୪୨ । ଦର୍ପ, ମେଦ, ଝରଣା, ଅତିଶୟ

ନଦୀଘନପ୍ରସ୍ରବଣୋଦକାନା-
ମତିପ୍ରବୃଦ୍ଧାନିଲବର୍ହିଣାନାମ୍ ।
ପ୍ଳବଙ୍ଗମାନାଂ ଚ ଗତୋତ୍ସବାନାମ୍
ଧ୍ରୁବଂ ରବାଃ ସଂପ୍ରତି ସଂପ୍ରନଷ୍ଟାଃ । ୪୩ ।
ଅନେକବର୍ଣ୍ଣାଃ ସୁବିନଷ୍ଟକାୟା
ନବୋଦିତେଷ୍ୱମ୍ବୁଧରେଷୁ ନଷ୍ଟାଃ ।
କ୍ଷୁଧାର୍ଦ୍ଦିତା ଘୋରବିଷା ବିଲେଭ୍ୟ-
ଶ୍ଚିରୋଷିତା ବିପ୍ରସରନ୍ତି ସର୍ପାଃ । ୪୪ ।

ଚଞ୍ଚଚ୍ଚନ୍ଦ୍ରକରସ୍ପର୍ଶହର୍ଷୋନ୍ମୀଳିତତାରକା ।
ଅହୋ ରାଗବତୀ ସଂଧ୍ୟା ଜହାତି ସ୍ୱୟମମ୍ବରମ୍ । ୪୫ ।

ରାତ୍ରିଃ ଶଶାଙ୍କୋଦିତସୌମ୍ୟବକ୍ତ୍ରା ।
ତାରାଗଣୋନ୍ମୀଳିତ ଚାରୁନେତ୍ରା ।
ଜ୍ୟୋତ୍ସ୍ନାଂଶୁକପ୍ରାବରଣା ବିଭାତି
ନାରୀବ ଶୁକ୍ଳାଂଶୁକସଂବୃତାଙ୍ଗୀ । ୪୬ ।
ବିପକ୍ୱଶାଳିପ୍ରସବାନି ଭୁକ୍ତ୍ୱା
ପ୍ରହର୍ଷିତା ସାରସଚାରୁପଂକ୍ତିଃ ।
ନଭଃ ସମାକ୍ରାମତି ଶୀଘ୍ରବେଗା
ବାତାବଧୂତା ଗ୍ରଥିତେବ ମାଳା । ୪୭ ।

---

ବର୍ଦ୍ଧିତ ବାୟୁ, ମୟୂର ଏବଂ ଆନନ୍ଦରହିତ ଲୋକମାନଙ୍କର ଶବ୍ଦ ବର୍ତ୍ତମାନ ବନ୍ଦ ହୋଇଯାଇଅଛି । ୪୩ । ମେଘର ଉଦୟହେତୁରୁ ମୃତପ୍ରାୟ ଏବଂ କ୍ଷୁଧାପୀଡ଼ିତ ବହୁବର୍ଣ୍ଣବିଶିଷ୍ଟ ଉତ୍କଟ ବିଷଧର ସର୍ପମାନେ ବହୁଦିନପର୍ଯ୍ୟନ୍ତ ଗର୍ତ୍ତମଧ୍ୟରେ ରହି ବର୍ତ୍ତମାନ ବାହାରକୁ ବାହାରୁ ଅଛନ୍ତି । ୪୪ । ଶୋଭମାନ ଚନ୍ଦ୍ରଜ୍ୟୋତ୍ସ୍ନାସ୍ପର୍ଶରେ ହର୍ଷିତ ଅତଏବ ଅଳ୍ପପ୍ରକାଶ ବିଶିଷ୍ଟ ନକ୍ଷତ୍ରଯୁକ୍ତ ଏହି ସନ୍ଧ୍ୟା ସୁନ୍ଦରଭାବରେ ରକ୍ତରଞ୍ଜିତ ହୋଇଅଛି । ଏହା ନିଜେ ଆକାଶକୁ ଛାଡ଼ିଯାଉଅଛି । ୪୫ । ଉଦିତ ଚନ୍ଦ୍ରମା ରାତ୍ରିର ସୁନ୍ଦର ମୁଖସ୍ୱରୂପ ହୋଇଅଛି । ତାରାଗଣ ତାହାର ଉନ୍ମୀଳିତ ଚକ୍ଷୁପରି ହୋଇଅଛନ୍ତି । ଏହା ଜ୍ୟୋତ୍ସ୍ନାରୂପ ପଟ୍ଟବସ୍ତ୍ର ପିନ୍ଧିଅଛି । ସୁତରାଂ ରାତ୍ରି ଶ୍ୱେତଶାଢ଼ୀଦ୍ୱାରା ଆବୃତଶରୀରା ନାରୀପରି ଶୋଭାପାଉଅଛି।୪୬। ରମଣୀୟ ସାରସପଂକ୍ତି ପକ୍ୱଶସ୍ୟମାନ ଭକ୍ଷଣ କରି ଆନନ୍ଦିତଭାବରେ ଆକାଶରେ ଶୀଘ୍ରଗତିରେ ବିଚରଣ କରୁଅଛନ୍ତି । ତାହା ଗୋଟିଏ ଗୁନ୍ଥାହୋଇଥିବା ଫୁଲମାଳା ପବନରେ ଦୋହଲୁଥିବା

ସୁପ୍ତୈକହଂସଂ କୁମୁଦୈରୁପେତମ୍
ମହାହ୍ରଦସ୍ଥଂ ସଲିଳଂ ବଭାତି ।
ଘନୈର୍ବିମୁକ୍ତଂ କ୍ଷଣେ ପୂର୍ଣ୍ଣଚନ୍ଦ୍ରମ୍
ତାରାଗଣାକୀର୍ଣ୍ଣମିବାନ୍ତରୀକ୍ଷମ୍ । ୪୮ ।
ପ୍ରକୀର୍ଣ୍ଣହଂସାକୁଳମେଖଳାନାମ୍
ପ୍ରବୁଦ୍ଧପଦ୍ମୋତ୍ପଳମାଳିନୀନାମ୍ ।
ବାପ୍ୟୁତ୍ତମାନାମଧିକାଦ୍ୟ ଲକ୍ଷ୍ମୀ-
ର୍ବରାଙ୍ଗନାନାମିବ ଭୂଷିତାନାମ୍ । ୪୯ ।
ବେଣୁସ୍ୱରବ୍ୟଞ୍ଜିତତୂର୍ଯ୍ୟ ମିଶ୍ରଃ
ପ୍ରତ୍ୟୂଷକାଲେଽନିଳସଂପ୍ରବୃତ୍ତଃ ।
ସଂମୂର୍ଚ୍ଛିତୋ ଗହ୍ୱରଗୋବୃଷାଣା-
ମନ୍ୟୋନ୍ୟମାପୂରୟତୀବ ଶବ୍ଦଃ । ୫୦ ।
ନବୈର୍ନଦୀନାଂ କୁସୁମପ୍ରହାସୈ-
ର୍ବ୍ୟାଧୂୟମାନୈର୍ମୃଦୁମାରୁତେନ ।
ଧୌତାମଲକ୍ଷୌମପଟ୍ଟପ୍ରକାଶୈଃ
କୂଳାନି କାଶୈରୁପଶୋଭିତାନି । ୫୧ ।

---

ପରି ଦେଖାଯାଉଅଛି । ୪୭ । ବୃହତ୍ ହ୍ରଦମଧ୍ୟରେ ଗୋଟିଏ ହଂସ ଶୋଇ ରହିଅଛି । ସେଥିରେ ଅନେକ କଇଁଫୁଲ ଫୁଟି ରହିଅଛି; ସୁତରାଂ ସେହି ହ୍ରଦର ଜଳ ବିଶେଷ ଶୋଭପାଉଅଛି । ତାହା ଯହିଁରେ ମେଘଶୂନ୍ୟ ପୂର୍ଣ୍ଣଚନ୍ଦ୍ର ଏବଂ ତାରାଗଣଯୁକ୍ତ ଆକାଶପରି ଦେଖାଯାଉଅଛି । ୪୮ । ଚାରିଆଡ଼େ ବିକ୍ଷିପ୍ତ ହୋଇଥିବା ହଂସମାନେ ଅଣ୍ଟାସୂତାପରି ଦେଖାଯାଉଛନ୍ତି । ପ୍ରସ୍ଫୁଟିତ ପଦ୍ମ ଏବଂ କୁମୁଦପୁଷ୍ପସବୁ କଣ୍ଠର ହାରସ୍ୱରୂପ ଦେଖାଯାଉଛନ୍ତି । ଉତ୍କୃଷ୍ଟ ବାପୀମାନ ଆଜ ଏହିପରି ସୁଶୋଭିତ ହୋଇ ଭୂଷିତା ସୁନ୍ଦରୀ ରମଣୀର ଶୋଭା ଧାରଣ କରିଅଛନ୍ତି । ୪୯ । ପ୍ରତ୍ୟୁଷକାଳରେ ବାୟୁ ବେଣୁସ୍ୱରରୂପ ତୂର୍ଯ୍ୟନାଦ ସହିତ ସମ୍ମିଶ୍ରିତ ହୋଇଅଛି । ଗିରିଗହ୍ୱର ଏବଂ ବୃଷଭମାନଙ୍କର ଶବ୍ଦ ପରସ୍ପରକୁ ବଢ଼ାଉଅଛି । ୫୦ । କାଶଗୁଳ୍ମମାନଙ୍କରେ ଫୁଲ ଫୁଟି ସତେ ଯେପରି ସେମାନେ ହାସ୍ୟ କରୁଅଛନ୍ତି । ମନ୍ଦ ମାରୁତଦ୍ୱାରା ସଂଚାଳିତ ଧୌତ ଶ୍ୱେତ ପଟ୍ଟବସ୍ତ୍ରସଦୃଶ ଏହି କାଶଗୁଳ୍ମମାନ ନଦୀମାନଙ୍କର

ବନପ୍ରଚଣ୍ଡା ମଧୁପାନଶୌଣ୍ଡାଃ
ପ୍ରିୟାନ୍ୱିତାଃ ଷଟ୍‌ଚରଣାଃ ପ୍ରହୃଷ୍ଟାଃ ।
ବନେଷୁ ମତ୍ତାଃ ପବନାନୁଯାତ୍ରାମ୍
କୁର୍ବନ୍ତି ପଦ୍ମାସନରେଣୁଗୌରାଃ । ୫୨ ।
ଜଲଂ ପ୍ରସନ୍ନଂ କୁସୁମପ୍ରହାସମ୍
କ୍ରୌଞ୍ଚସ୍ୱନଂ ଶାଲିବନଂ ବିପକ୍ୱମ୍ ।
ମୃଦୁଶ୍ଚ ବାୟୁର୍ବିମଲଶ୍ଚ ଚନ୍ଦ୍ରଃ
ଶଂସନ୍ତି ବର୍ଷବ୍ୟପନୀତକାଲମ୍ । ୫୩ ।
ମୀନୋପସଂଦର୍ଶିତମେଖଲାନାମ
ନଦୀବଧୂନାଂ ଗତୟୋଽଦ୍ୟ ମନ୍ଦାଃ ।
କାନ୍ତୋପଭୁକ୍ତାଲସଗାମିନୀନାମ୍
ପ୍ରଭାତକାଲେଷ୍ୱିବ କାମିନୀନାମ୍ । ୫୪ ।
ସଚକ୍ରବାକାନି ସଶୈବଲାନି
କାଶୈର୍ଦୁକୂଲୈରିବ ସଂବୃତାନି ।
ସପତ୍ରରେଖାଣି ସରୋଚନାନି
ବଧୂମୁଖାନୀବ ନଦୀମୁଖାନି । ୫୫ ।

---

ଶରତରେ ଶୋଭା ପାଉଅଛନ୍ତି । ୫୧ । ବନରେ ପ୍ରିୟାସହିତ ଷଟ୍‌ଚରଣମାନେ ପୁଷ୍ପରସ-ପାନମତ୍ତ ଭ୍ରମରମାନେ ପଦ୍ମ ଏବଂ ଅସନପୁଷ୍ପର ରେଣୁଦ୍ୱାରା ଧୂସରିତ ହୋଇ ଆନନ୍ଦରେ ବାୟୁର ଅନୁବର୍ତ୍ତନ କରୁଅଛନ୍ତି । ୫୨ । ଜଳ ନିର୍ମଳ ହୋଇଅଛି, ଫୁଲମାନେ ହସୁଅଛନ୍ତି, କ୍ରୌଞ୍ଚପକ୍ଷୀମାନେ ମଧୁରସ୍ୱନ କରୁଅଛନ୍ତି, ଧାନସବୁ ପାଚିଗଲାଣି, ବାୟୁ ମନ୍ଦ ମନ୍ଦ ବହୁଅଛି, ଚନ୍ଦ୍ର ନିର୍ମଳ ହୋଇଅଛନ୍ତି । ଏସବୁଦ୍ୱାରା ବର୍ଷାକାଳ ଅତୀତ ହୋଇଯାଇଥିବାର ସୂଚନା ମିଳୁଅଛି । ୫୩ । ମତ୍ସ୍ୟରୂପ ମେଖଳା ପ୍ରକାଶ କରିଥିବା ନଦୀରୂପୀ ବଧୂମାନଙ୍କର ଗତି ଆଜି ମନ୍ଥର ହୋଇଯାଇଅଛି । ଯେପରି, ପତିଦ୍ୱାରା ଉପଭୁକ୍ତା ରମଣୀମାନେ ପ୍ରାତଃକାଳରେ ଧୀରମନ୍ଥରଗତିରେ ଚାଲନ୍ତି, ନଦୀମାନେ ଆଜି ସେହିପରି ମନ୍ଥରଗତିରେ ପ୍ରବାହିତ ହେଉଅଛନ୍ତି । ୫୪ । ଚକ୍ରବାକ ଶୈବାଳ ତଥା ବସ୍ତ୍ରରୂପ କାଶଯୁକ୍ତ ନଦୀର ମୁଖ ପତ୍ରଯୁକ୍ତ ଏବଂ ଗୋରଚନାଯୁକ୍ତ ସ୍ତ୍ରୀର ମୁଖପରି ସୁନ୍ଦର ଦେଖାଯାଉଅଛି । ୫୫ । ବନରେ ବାଣ

ପ୍ରଫୁଲ୍ଲବାଣାସନଚିତ୍ରିତେଷୁ
ପ୍ରହୃଷ୍ଟଷଟ୍‌ପାଦନିକୂଜିତେଷୁ ।
ଗୃହୀତଚାପୋଦ୍ୟତଦଣ୍ଡଚଣ୍ଡଃ
ପ୍ରଚଣ୍ଡଚାପୋଽଦ୍ୟ ବନେଷୁ କାମଃ । ୫୬ ।
ଲୋକଂ ସୁବୃଷ୍ଟ୍ୟା ପରିତୋଷୟିତ୍ୱା
ନଦୀସ୍ତଟାକାନି ଚ ପୂରୟିତ୍ୱା ।
ନିଷ୍ପନ୍ନସସ୍ୟାଂ ବସୁଧାଂ ଚ କୃତ୍ୱା
ତ୍ୟକ୍ତ୍ୱା ନଭସ୍ତୋୟଧରାଃ ପ୍ରନଷ୍ଟାଃ । ୫୭ ।
ଦର୍ଶୟନ୍ତି ଶରନ୍ନଦ୍ୟଃ ପୁଲିନାନି ଶନୈଃ ଶନୈଃ ।
ନବସଙ୍ଗମସବ୍ରୀଡ଼ା ଜଘନାନୀବ ଯୋଷିତଃ । ୫୮ ।
ପ୍ରସନ୍ନସଲିଲାଃ ସୌମ୍ୟ କୁରରୀଭିର୍ବିନାଦିତାଃ ।
ଚକ୍ରବାକଗଣାକୀର୍ଣ୍ଣା ବିଭାନ୍ତି ସଲିଲାଶୟାଃ । ୫୯ ।
ଅନ୍ୟୋନ୍ୟବଦ୍ଧବୈରାଣାଂ ଜିଗୀଷୂଣାଂ ନୃପାତ୍ମଜ ।
ଉଦ୍ୟୋଗସମୟଃ ସୌମ୍ୟ ପାର୍ଥିବାନାମୁପସ୍ଥିତଃ । ୬୦ ।
ଇୟଂ ସା ପ୍ରଥମା ଯାତ୍ରା ପାର୍ଥିବାନାଂ ନୃପାତ୍ମଜ ।
ନ ଚ ପଶ୍ୟାମି ସୁଗ୍ରୀବମୁଦ୍ୟୋଗଂ ଚ ତଥାବିଧମ୍ ।୬୧।

---

ଏବଂ ଅସନ ବୃକ୍ଷ ପ୍ରସ୍ଫୁଟିତ ହୋଇଥିବାରୁ ତାହା ବିଚିତ୍ରଶୋଭା ଧାରଣ କରିଅଛି । ଭ୍ରମରମାନେ ପ୍ରହୃଷ୍ଟ ହୋଇ ସେହି ବନରେ ଗୁଞ୍ଜନ କରୁଅଛନ୍ତି । ଏହି ବନ-ମଧ୍ୟରେ ବିଶାଳ ଧନୁର୍ଧାରୀ କାମଦେବ କାମୀ ବ୍ୟକ୍ତିମାନଙ୍କୁ ଦଣ୍ଡଦେବା ନିମନ୍ତେ କ୍ରୋଧ ପ୍ରକାଶ କରୁଅଛନ୍ତି । ୫୬ । ସୁବୃଷ୍ଟିଦ୍ୱାରା ସଂସାରକୁ ସନ୍ତୁଷ୍ଟ କରି ନଦୀ ଏବଂ ପୁଷ୍କରିଣୀକୁ ପୂର୍ଣ୍ଣ କରି, ପୃଥିବୀର ଶସ୍ୟ ଉତ୍ପାଦନ କରି ମେଘମାନେ ଆକାଶ ତ୍ୟାଗକରି ନଷ୍ଟ ହୋଇଗଲେଣି । ୫-୭ । ନୂଆକରି ସଙ୍ଗମ କଲାବେଳେ ଲଜ୍ଜାବତୀ ସ୍ତ୍ରୀମାନେ ଯେପରି ଆସ୍ତେ ଆସ୍ତେ ନିଜର ଜଘନକୁ ପ୍ରକାଶିତ କରନ୍ତି, ସେହିପରି ଶରତ୍‌ନଦୀମାନେ ଆସ୍ତେ ଆସ୍ତେ ନିଜର ତଟଦେଶକୁ ପ୍ରକାଶିତ କରୁଅଛନ୍ତି । ୫୮ । ହେ ସୌମ୍ୟ ! କୁରରୀମାନଙ୍କ ଶବ୍ଦରେ ପ୍ରତିଧ୍ୱନିତ ଚକ୍ରବାକଯୁକ୍ତ ସ୍ୱଚ୍ଛସଲିଳ ଜଳାଶୟମାନେ ଶୋଭାପାଉଅଛନ୍ତି । ୫୯ । ହେ ରାଜପୁତ୍ର ! ପରସ୍ପର ବିବାଦକାରୀ ବିଜୟେଚ୍ଛୁ ରାଜାମାନଙ୍କର ଯୁଦ୍ଧୋଦ୍ୟମ କରିବାର ଉପଯୁକ୍ତ ସମୟ ବର୍ତ୍ତମାନ ଉପସ୍ଥିତ ହୋଇଅଛି । ୬୦ । ରାଜାମାନଙ୍କର ପ୍ରଥମଯାତ୍ରା ଆରମ୍ଭ କରିବାର ଏହାହିଁ ସମୟ ଅଟେ । ମାତ୍ର ମୁଁ ବର୍ତ୍ତମାନ ସୁଗ୍ରୀବଙ୍କୁ ଦେଖି ନାହିଁ କି କୌଣସି ପ୍ରକାର ସେପରି ଉଦ୍ୟମ କରାହେଉଥିବାର ଦେଖିପାରୁ ନାହିଁ । ୬୧ ।

ଅସନାଃ ସପ୍ତପର୍ଣ୍ଣାଶ୍ଚ କୋବିଦାରାଶ୍ଚ ପୁଷ୍ପିତାଃ ।
ଦୃଶ୍ୟନ୍ତେ ବନ୍ଧୁଜୀବାଶ୍ଚ ଶ୍ୟାମାଶ୍ଚ ଗିରିସାନୁଷୁ । ୭୨ ।
ହଂସସାରସଚକ୍ରାହ୍ୱୈଃ କୁରରୈଶ୍ଚ ସମନ୍ତତଃ ।
ପୁଲିନାନ୍ୟବକୀର୍ଣ୍ଣାନି ନଦୀନାଂ ପଶ୍ୟ ଲକ୍ଷ୍ମଣ । ୭୩।
ଚତ୍ୱାରୋ ବାର୍ଷିକା ମାସା ଗତା ବର୍ଷଶତୋପମାଃ ।
ମମ ଶୋକାଭିତପ୍ତସ୍ୟ ତଥା ସୀତାମପଶ୍ୟତଃ । ୭୪ ।
ଚକ୍ରବାକୀବ ଭର୍ତାରଂ ପୃଷ୍ଠତୋଽନୁଗତା ବନମ୍ ।
ବିଷମଂ ଦଣ୍ଡକାରଣ୍ୟମୁଦ୍ୟାନମିବ ଚାଙ୍ଗନା । ୭୫ ।
ପ୍ରିୟାବିହୀନେ ଦୁଃଖାର୍ତ୍ତେ ହୃତରାଜ୍ୟେ ବିବାସିତେ ।
କୃପାଂ ନ କୁରୁତେ ରାଜା ସୁଗ୍ରୀବୋ ମୟି ଲକ୍ଷ୍ମଣ ।୭୬ ।
ଅନାଥୋ ହୃତରାଜ୍ୟୋଽୟଂ ରାବଣେନ ଚ ଧର୍ଷିତଃ ।
ଦୀନୋ ଦୂରଗୃହଃ କାମୀ ମାଂ ଚୈବ ଶରଣଂ ଗତଃ । ୭୭ ।
ଇତ୍ୟେତୈଃ କାରଣୈଃ ସୌମ୍ୟ ସୁଗ୍ରୀବସ୍ୟ ଦୁରାତ୍ମନଃ ।
ଅହଂ ବାନରରାଜସ୍ୟ ପରିଭୂତଃ ପରଂତପ । ୭୮ ।

---

ଅସନ, କୋବିଦାର ଏବଂ ସପ୍ତପର୍ଣ୍ଣ ବୃକ୍ଷମାନ ପୁଷ୍ପିତ ହୋଇଗଲେଣି । ବନ୍ଧୁଜୀବ ଏବଂ ତମାଳ ମଧ୍ୟ ପୁଷ୍ପିତ ହୋଇ ଗଲେଣି ଦେଖଇଟି ପର୍ବତଶିଖର ଉପରେ ଦେଖ ।୭୨। ଲକ୍ଷ୍ମଣ ଦେଖ ! ହଂସ ସାରସ ଚକ୍ରବାକ ଏବଂ କୁରର ପ୍ରଭୃତି ପକ୍ଷୀମାନଙ୍କଦ୍ୱାରା ନଦୀତୀର ପୂର୍ଣ୍ଣ ହୋଇଗଲାଣି ।୭୩। ସୀତାଙ୍କ ବିରହରେ ଶୋକପୀଡ଼ିତ ମୋ ପକ୍ଷରେ ଏ ଯେଉଁ ବର୍ଷା ଚାରିମାସ ବିତିଗଲା ତାହା ଶହେ ବର୍ଷ ପରି ଜଣାପଡ଼ୁଅଛି । ୭୪ । ସୀତା ବିଷମ ଦଣ୍ଡକାରଣ୍ୟକୁ ଉଦ୍ୟାନ ବୋଲି ବିଚାରି ମୋ ସହିତ ଚକ୍ରବାକୀ ସ୍ୱାମୀ ପଛରେ ଆସିଲାପରି ଆସିଥିଲେ ।୭୫। ହେ ଲକ୍ଷ୍ମଣ ! ପ୍ରିୟା ବିରହିତ, ଦୁଃଖାର୍ତ୍ତ ହୃତରାଜ୍ୟ ନିର୍ବାସିତ ମୋ ପ୍ରତି ରାଜା ସୁଗ୍ରୀବ ଦୟା କରୁନାହାନ୍ତି ।୭୬। ମୁଁ ଅନାଥ ଅଟେ, ମୋର ରାଜ୍ୟ ଛଡ଼ାଇ ନିଆଯାଇଅଛି, ମୁଁ ରାବଣଦ୍ୱାରା ଅପମାନିତ ହୋଇଅଛି । ମୁଁ ବଡ଼ ଦୁଃଖୀ, ମୋ ଘର ଏଠାରୁ ବହୁତ ଦୂରରେ ଏବଂ ମୁଁ କାମପୀଡ଼ିତ ଅଟେ । ମୁଁ ସୁଗ୍ରୀବଙ୍କର ଶରଣ ନେଇଅଛି ।୭୭। ହେ ପରନ୍ତପ ! ଏହିସବୁ କାରଣରୁ ଅର୍ଥାତ୍ ମୋର ଏହି ଦୁରବସ୍ଥା ଜାଣି ଦୁରାତ୍ମା ବାନରରାଜ ସୁଗ୍ରୀବ ମୋତେ

ସ କାଲଂ ପରସଂଖ୍ୟାୟ ସୀତାୟାଃ ପରମାର୍ଗଣେ ।
କୃତାର୍ଥଃ ସମୟଂ କୃତ୍ୱା ଦୁର୍ମତିର୍ନାବବୁଧ୍ୟତେ । ୬୯ ।
ସ କିଷ୍କିନ୍ଧାଂ ପ୍ରବିଶ୍ୟ ତ୍ୱଂ ବ୍ରୂହି ବାନରପୁଙ୍ଗବମ୍ ।
ମୂର୍ଖଂ ଗ୍ରାମ୍ୟସୁଖେ ସକ୍ତଂ ସୁଗ୍ରୀବଂ ବଚନାନ୍ମମ । ୭୦ ।
ଅର୍ଥିନାମୁପପନ୍ନାନାଂ ପୂର୍ବଂ ଚୃପ୍ୟପକାରିଣାମ୍ ।
ଆଶାଂ ସଂଶ୍ରୁତ୍ୟ ଯୋ ହନ୍ତି ସ ଲୋକେ ପୁରୁଷାଧମଃ । ୭୧ ।
ଶୁଭଂ ବା ଯଦି ବା ପାପଂ ଯୋ ହି ବାକ୍ୟମୁଦୀରିତମ୍ ।
ସତ୍ୟେନ ପରିଗୃହ୍ଣାତି ସ ବୀରଃ ପୁରୁଷୋତ୍ତମଃ । ୭୨ ।
କୃତାର୍ଥା ହ୍ୟକୃତାର୍ଥାନାଂ ମିତ୍ରାଣାଂ ନ ଭବନ୍ତି ଯେ ।
ତାନ୍ ମୃତାନପି କ୍ରବ୍ୟାଦାଃ କୃତଘ୍ନାନ୍ନୋପଭୁଞ୍ଜତେ । ୭୩।
ନୂନଂ କାଞ୍ଚନପୃଷ୍ଠସ୍ୟ ବିକୃଷ୍ଟସ୍ୟ ମୟା ରଣେ ।
ଦ୍ରଷ୍ଟୁମିଚ୍ଛସି ଚାପସ୍ୟ ରୂପଂ ବିଦ୍ୟୁଦ୍‌ଗଣୋପମମ୍ । ୭୪ ।
ଘୋରଂ ଜ୍ୟାତଲନିର୍ଘୋଷଂ କ୍ରୁଦ୍ଧସ୍ୟ ମମ ସଂଯୁଗେ ।
ନିର୍ଘୋଷମିବ ବଜ୍ରସ୍ୟ ପୁନଃ ସଂଶ୍ରୋତୁମିଚ୍ଛସି । ୭୫ ।

---

ଅବହେଳା କରଅଛି । ୬୮ । ସେ ସୀତାଙ୍କୁ ଅନ୍ୱେଷଣ କରିବାପାଇଁ ସମୟ ସ୍ଥିର କରିଥିଲା । ତାହାର କାର୍ଯ୍ୟ ସିଦ୍ଧ ହୋଇଯିବାରୁ ସେ ଦୁର୍ବୁଦ୍ଧି କିଛି ବୁଝୁନାହିଁ । । ୬୯ । ତୁମେ କିଷ୍କିନ୍ଧାରେ ପ୍ରବେଶ କରି ନୀଚସୁଖାସକ୍ତ ବାନରରାଜ ମୂର୍ଖ ସୁଗ୍ରୀବକୁ ମୁଁ ଏହା କହୁଛି ବୋଲି ଯାଇ କହ ।୭୦ । ଶରଣାଗତ ପ୍ରାର୍ଥୀକୁ, ବିଶେଷତଃ ପୂର୍ବରୁ ଯେ ଉପକାର କରିଛି ସେ ଲୋକର ଆଶା ପୂର୍ଣ୍ଣ କରିବାକୁ ବିଶ୍ୱାସ ଦେଇ ଯେଉଁ ବ୍ୟକ୍ତି ପରାଙ୍ମୁଖ ହୁଏ ସେ ଏ ସଂସାରରେ ଅତିଶୟ ଅଧମ ପୁରୁଷ ଅଟେ । । ୭୧ । ଭଲ ହେଉ ବା ମନ୍ଦ ହେଉ ଯେ ଯେଉଁ ଜବାବ ଦେଇଦିଏ ତାହାକୁ ଯଦି ସେ ସତ୍ୟରେ ପାଳନ କରେ ତେବେ ସେ ବୀରପୁରୁଷ, ଶ୍ରେଷ୍ଠ ବ୍ୟକ୍ତି ବୋଲି ପରିଗଣିତ ହୁଏ ।୭୨। ନିଜର କାର୍ଯ୍ୟ ସାଧିତ ହୋଇଯିବାପରେ ଯେଉଁମାନେ ମିତ୍ରର ବାକି ରହିଥିବା କାମ ନ କରନ୍ତି ସେହି କୃତଘ୍ନମାନେ ମଲେ ରାକ୍ଷସମାନେ ମଧ୍ୟ ସେମାନଙ୍କର ମାଂସ ଭକ୍ଷଣ କରନ୍ତି ନାହିଁ ।୭୩। ସୁବର୍ଣ୍ଣପୃଷ୍ଠଯୁକ୍ତ ମୋଦ୍ୱାରା ଆକର୍ଷିତ ବାଣର ବିଦ୍ୟୁତ୍‌ସଦୃଶ ଜାଜ୍ୱଲ୍ୟମାନ ରୂପ କଣ ତୁମେ ଦେଖିବାକୁ ଇଚ୍ଛା କରୁଛ ? । ୭୪ । ଯୁଦ୍ଧରେ କ୍ରୂରଭାବରେ ଆକର୍ଷିତ ହୋଇଥିବା ଧନୁର ବଜ୍ରତୁଲ୍ୟ ଭୀଷଣ ଟଙ୍କାର ଶବ୍ଦ ତୁମେ କଣ ପୁଣି ଥରେ ଶୁଣିବାକୁ ଚାହୁଁଛ ?।୭୫। ହେ ରାଜପୁତ୍ର !

କାମମେବଂଗତେଽପ୍ୟସ୍ୟ ପରିଜ୍ଞାତେ ପରାକ୍ରମେ ।
ତ୍ୱତ୍ସହାୟସ୍ୟ ମେ ବୀର ନ ଚିନ୍ତା ସ୍ୟାନ୍ନୃପାତ୍ମଜ ।୭୬।
ଯଦର୍ଥମୟମାରମ୍ଭଃ କୃତଃ ପରପୁରଂଜୟ ।
ସମୟଂ ନାଭିଜାନାତି କୃତାର୍ଥଃ ପ୍ଲବଗେଶ୍ୱରଃ । ୭୭ ।
ବର୍ଷାଃ ସମୟକାଳଂ ତୁ ପ୍ରତିଜ୍ଞାୟ ହରୀଶ୍ୱରଃ ।
ବ୍ୟତୀତାଂଶ୍ଚତୁରୋ ମାସାନ୍ ବିହରନ୍ନାବବୁଧ୍ୟତେ । ୭୮ ।
ସାମାତ୍ୟପରିଷତ୍କ୍ରୀଡ଼ନ୍ ପାନମେବୋପସେବତେ ।
ଶୋକଦୀନେଷୁ ନାସ୍ମାସୁ ସୁଗ୍ରୀବଃ କୁରୁତେ ଦୟାମ୍ ।୭୯ ।
ଉଚ୍ୟତାଂ ଗଚ୍ଛ ସୁଗ୍ରୀବସ୍ତ୍ୱୟା ବୀର ମହାବଳ ।
ମମ ରୋଷସ୍ୟ ଯଦ୍ରୂପଂ ବ୍ରୂୟାଶ୍ଚୈନମିଦଂ ବଚଃ । ୮୦ ।
ନ ସ ସଂକୁଚିତଃ ପନ୍ଥା ଯେନ ବାଲୀ ହତୋ ଗତଃ ।
ସମୟେ ତିଷ୍ଠ ସୁଗ୍ରୀବ ମା ବାଳିପଥମନ୍ୱଗାଃ । ୮୧ ।
ଏକ ଏବ ରଣେ ବାଲୀ ଶରେଣ ନିହତୋ ମୟା ।
ତ୍ୱାଂ ତୁ ସତ୍ୟାଦତିକ୍ରାନ୍ତଂ ହନିଷ୍ୟାମି ସବାନ୍ଧବମ୍ । ୮୨।

---

ତୁମେ ଯାହାର ସହାୟସ୍ୱରୂପ ଅଛ, ଏତାଦୃଶ ଅବସ୍ଥା ମୋର ହୋଇଥିଲେ ମଧ୍ୟ ମୋର ପରାକ୍ରମ ମୋତେ ଜଣାଥିବାରୁ ମୋର କୌଣସି ଚିନ୍ତା ହେବ ନାହିଁ । ୭୬ । ହେ ଶତ୍ରୁଜୟି ! ଯେଉଁ ଉଦ୍ଦେଶ୍ୟରେ ମୁଁ ଏହା ଆରମ୍ଭ (ସୁଗ୍ରୀବ ସହିତ ମିତ୍ରତା) କରିଥିଲି, ସୁଗ୍ରୀବ ନିଜର କାର୍ଯ୍ୟସିଦ୍ଧି ହୋଇଯିବା ପରେ ସେ ଜବାବକୁ ଭୁଲିଗଲା । । ୭୭ । ବାନରରାଜ ସୁଗ୍ରୀବ ବର୍ଷା ଶେଷହେଲେ ସୀତାଙ୍କୁ ଅନ୍ୱେଷଣ କରିବାର ପ୍ରତିଜ୍ଞା କରିଥିଲା । ମାତ୍ର ସୁଗ୍ରୀବ ବର୍ତ୍ତମାନ ବିହାରରେ ମତ୍ତ ରହି,ସେ ଚାରିମାସ ଯେ ବିତିଗଲାଣି ତାହା ଜାଣୁ ନାହିଁ । ୭୮ । ମନ୍ତ୍ରୀ ପ୍ରଭୃତିଙ୍କ ସହିତ କ୍ରୀଡ଼ା କରି ସେ ମଦ୍ୟପାନରେ ଆସକ୍ତ ହୋଇ ରହିଛି । ଶୋକପୀଡ଼ିତ ଆମ୍ଭମାନଙ୍କପ୍ରତି ସୁଗ୍ରୀବ ଟିକିଏହେଲେ ଦୟା କରୁ ନାହିଁ । ୭୯ । ହେ ମହାବଳ ବୀର ! ଯାଅ, ସୁଗ୍ରୀବକୁ କହ; ମୋର କ୍ରୋଧର ଶେଷଫଳ ମଧ୍ୟ ତାକୁ କହ । ୮୦ । ମୃତ ବାଲୀ ଯେଉଁ ପଥରେ ଯାଇଅଛି ସେ ପଥ ବନ୍ଦ ହୋଇଯାଇ ନାହିଁ । ସୁଗ୍ରୀବ ! ନିଜର ପ୍ରତିଜ୍ଞା ଅନୁଯାୟୀ କାର୍ଯ୍ୟକର । ବାଲୀର ପଥ ଅନୁସରଣ କର ନାହିଁ । ୮୧ । ମୁଁ କେବଳ ଏକାକୀ ବାଲୀକୁ ଯୁଦ୍ଧରେ ବାଣରେ ମାରିଅଛି । ମାତ୍ର ପ୍ରତିଜ୍ଞାଭଙ୍ଗ କରିବାହେତୁରୁ ତୁମକୁ ବନ୍ଧୁବାନ୍ଧବଙ୍କ ସହିତ ମାରିପକାଇବି । ୮୨ । ହେ ପୁରୁଷଶ୍ରେଷ୍ଠ ! ଏ

ଯଦେବଂ ବାହୃତଂ କାର୍ଯେ ଯଦ୍ଦିଷ୍ଟଂ ପୁରୁଷର୍ଷଭ ।
ତତ୍ତଦ୍‌ବ୍ରୂହି ନରଶ୍ରେଷ୍ଠ ତ୍ୱର କାଳବ୍ୟତିକ୍ରମଃ । ୮୩ ।
କୁରୁଷ୍ୱ ସତ୍ୟଂ ମମ ବାନରେଶ୍ୱର
ପ୍ରତିଶ୍ରୁତଂ ଧର୍ମମବେକ୍ଷ୍ୟ ଶାଶ୍ୱତମ୍ ।
ମା ବାଳିନଂ ପ୍ରେତ୍ୟ ଗତୋ ଯମକ୍ଷୟେ
ତ୍ୱମଦ୍ୟ ପଶ୍ୟେର୍ମମ ଚୋଦିତଃ ଶରୈଃ । ୮୪।
ସ ପୂର୍ବଜଂ ତୀବ୍ରବିବୃଦ୍ଧକୋପମ୍
ଲାଲପ୍ୟମାନଂ ପ୍ରସମୀକ୍ଷ୍ୟ ଦୀନମ୍ । .
ଚକାର ତୀବ୍ରାଂ ମତିମୁଗ୍ରତେଜା
ହରୀଶ୍ୱରେ ମାନବବଂଶନାଥଃ । ୮୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ଶରଦ୍‌ବର୍ଣ୍ଣନମ୍
ନାମ ତ୍ରିଂଶଃ ସର୍ଗଃ

———

ସମସ୍ତଙ୍କ ସମ୍ମୁଖରେ ଯାହା ଉପଯୁକ୍ତ ଏବଂ ଯାହା ମଙ୍ଗଳକର ତାହା କର । ଶୀଘ୍ର ଯାଅ, ଯେପରି ଆଉ କାଳ ବ୍ୟତିକ୍ରମ ନ ହୁଏ । ୮୩ । ହେ ବାନରେଶ୍ୱର, ସନାତନଧର୍ମକୁ ଲକ୍ଷ୍ୟ କରି ନିଜର ପ୍ରତିଜ୍ଞାକୁ ପାଳନ କର । ମୋର ବାଣଦ୍ୱାରା ଆହତ ହୋଇ ଯମପୁରରେ ଯାଇ ବାଳୀକୁ ନ ଦେଖ” । ୮୪ । ନିଜର ବଡ଼ଭାଇଙ୍କୁ ଅତିଶୟ କୁପିତ ଓ ଦୁଃଖିତ ହୋଇ ବିଳାପ କରିବାର ଦେଖି ମନୁବଂଶନାଥ ଉଗ୍ରତେଜସ୍ୱୀ ଲକ୍ଷ୍ମଣ ସୁଗ୍ରୀବ ପ୍ରତି ତୀବ୍ର ବୁଦ୍ଧି ଧାରଣ କଲେ ଅର୍ଥାତ୍ ଅତି ରୁକ୍ଷଭାବରେ ସୁଗ୍ରୀବ ସହିତ ବ୍ୟବହାର କରିବାର ସ୍ଥିର କଲେ । ୮୫ ।

———

# ଏକତ୍ରିଂଶଃ ସର୍ଗଃ

## ଲକ୍ଷ୍ମଣକ୍ରୋଧଃ

ସ ରାଘବଂ ଦୀନମଦୀନସତ୍ତ୍ୱମ୍
ଶୋକାଭିପନ୍ନଂ ସମୁଦୀର୍ଣ୍ଣକୋପମ୍ ।
ନରେନ୍ଦ୍ରସୂନୁର୍ନରଦେବପୁତ୍ରମ୍
ରାମାନୁଜଃ ପୂର୍ବଜମିତ୍ୟୁବାଚ ।୧।
ନ ବାନରଃ ସ୍ଥାସ୍ୟତି ସାଧୁବୃତ୍ତେ
ନ ମନ୍ୟତେ କର୍ମଫଲାନୁଷଙ୍ଗାନ୍ ।
ନ ଭୋକ୍ଷ୍ୟତେ ବାନରରାଜ୍ୟଲକ୍ଷ୍ମୀମ୍
ତଥା ହି ନାତିକ୍ରମତେଽସ୍ୟ ବୁଦ୍ଧିଃ ।୨।
ମତିକ୍ଷୟାଦ୍ ଗ୍ରାମ୍ୟସୁଖେଷୁ ସକ୍ତ-
ସ୍ତବ ପ୍ରସାଦାତ୍ ପ୍ରତିକାରବୁଦ୍ଧିଃ ।
ହତୋଽଗ୍ରଜଂ ପଶ୍ୟତୁ ବୀର ତସ୍ୟ
ନ ରାଜ୍ୟମେବଂ ବିଗୁଣସ୍ୟ ଦେୟମ୍ ।୩।

---

## ୩୧ଶ ସର୍ଗ

(ଲକ୍ଷ୍ମଣଙ୍କ କ୍ରୋଧ)

ମହାପରାକ୍ରମୀ, ମାତ୍ର ସେ ସମୟରେ ଦୁଃଖିତ, ଶୋକପୀଡ଼ିତ, ଜାତକ୍ରୋଧ, ରାଜପୁତ୍ର ବଡ଼ ଭାଇ ରାମଚନ୍ଦ୍ରଙ୍କୁ ରାଜକୁମାର ଲକ୍ଷ୍ମଣ ଏହି ପ୍ରକାରେ କହିଲେ ।୧। "ଏ ବାନର ଆମର କାର୍ଯ୍ୟର ଫଳକୁ ବଡ଼ ମନେ କରୁ ନାହିଁ; ସୁତରାଂ ସେ ସାଧୁମାନଙ୍କ ମାର୍ଗରେ ସ୍ଥିର ରହିବ ନାହିଁ । ଏହାର ବୁଦ୍ଧି ଯେପରି (ସାଧାରଣ ବିଳାସବାସନାକୁ ) ଅତିକ୍ରମ କରିପାରୁ ନାହିଁ, ସେଥିରୁ ଜଣାଯାଉଛି ଯେ ଏ ବାନର ରାଜଲକ୍ଷ୍ମୀଙ୍କୁ ଉପଭୋଗ କରି ପାରିବ ନାହିଁ ।୨। ଏହାର ମତି ଛନ୍ନ ହୋଇ ଯାଇଥିବାରୁ ଏ ଗ୍ରାମ୍ୟ ବିଳାସ ସୁଖରେ ଆସକ୍ତ ହୋଇ ପଡ଼ିଅଛି । ଉପକାରର ପ୍ରତିଦାନ କରିବାକୁ ଏହାର ମନ ନାହିଁ । ସେ ବର୍ତ୍ତମାନ ନିଜର ମୃତ ଭାଇ ବାଳୀକୁ ଯାଇ ଦେଖୁ । ଏପରି ଗୁଣହୀନ ଲୋକକୁ ରାଜ୍ୟ ଦେବା ଉଚିତ ନୁହେ ।୩। ମୁଁ ମୋର

ନ ଧାରୟେ କୋପମୁଦୀର୍ଣ୍ଣବେଗମ୍
ନିହନ୍ମି ସୁଗ୍ରୀବମସତ୍ୟମଦ୍ୟ ।
ହରିପ୍ରବୀରୈଃ ସହ ବାଲିପୁତ୍ରୋ
ନରେନ୍ଦ୍ରପୁତ୍ର୍ୟା ବିଚୟଂ କରୋତୁ ।୪।
ତମାତ୍ତବାଣାସନମୁତ୍ପତନ୍ତମ୍
ନିବେଦିତାର୍ଥଂ ରଣଚଣ୍ଡକୋପମ୍ ।
ଉବାଚ ରାମଃ ପରବୀରହନ୍ତା
ସ୍ୱବୀକ୍ଷିତଂ ସାନୁନୟଂ ଚ ବାକ୍ୟମ୍ ।୫।
ନ ହି ବୈ ତ୍ୱଦ୍ୱିଧୋ ଲୋକେ ପାପମେବଂ ସମାଚରେତ୍ ।
କୋପମାର୍ଯେଣ ଯୋ ହନ୍ତି ସ ବୀରଃ ପୁରୁଷୋତ୍ତମଃ ।୬।
ନେଦମତ୍ର ତ୍ୱୟା ଗ୍ରାହ୍ୟଂ ସାଧୁବୃତ୍ତେନ ଲକ୍ଷ୍ମଣ ।
ତାଂ ପ୍ରୀତିମନୁବର୍ତ୍ତସ୍ୱ ପୂର୍ବବୃତ୍ତଂ ଚ ସଂଗତମ୍ ।୭।
ସାମୋପହିତୟା ବାଚା ରୂକ୍ଷାଣି ପରିବର୍ଜୟନ୍ ।
ବକ୍ତୁମର୍ହସି ସୁଗ୍ରୀବଂ ବ୍ୟତୀତଂ କାଳପର୍ଯ୍ୟୟେ ।୮।
ସୋଽଗ୍ରଜେନାନୁଶିଷ୍ଟାର୍ଥୋ ଯଥାବତ୍ପୁରୁଷର୍ଷଭଃ ।
ପ୍ରବିବେଶ ପୁରୀଂ ବୀରୋ ଲକ୍ଷ୍ମଣଃ ପରବୀରହା ।୯।

---

ଉଦ୍ଦୀପିତ କ୍ରୋଧକୁ ସମ୍ଭାଳି ପାରୁନାହିଁ । ମୁଁ ଆଜି ସତ୍ୟଭଙ୍ଗକାରୀ ସୁଗ୍ରୀବକୁ ନିଶ୍ଚୟ ବଧ କରିବି । ବାଳିପୁତ୍ର ଅଙ୍ଗଦ ପ୍ରଧାନ ବାନରମାନଙ୍କ ସହିତ ଯାଇ ରାଜପୁତ୍ରୀ ସୀତାଙ୍କୁ ଅନ୍ୱେଷଣ କରିବ" ।୪। ଧନୁର୍ବାଣ ସଜ୍ଜିତ କରି ଯୁଦ୍ଧ କରିବା ନିମନ୍ତେ ଅତି କ୍ରୁଦ୍ଧଭାବରେ ଯାତ୍ରା କରୁଥିବା ଲକ୍ଷ୍ମଣଙ୍କୁ ଶତ୍ରୁହନ୍ତା ରାମଚନ୍ଦ୍ର ନିଜେ ବିଚାରି ଚିନ୍ତି ନମ୍ରଭାବରେ କହିଲେ ।୫। "ତୁମ୍ଭ ସଦୃଶ ବ୍ୟକ୍ତିର ସଂସାରରେ ଏପରି ପାପ କାର୍ଯ୍ୟ କରିବା ଉଚିତ ନୁହେଁ । ଯେଉଁ ବ୍ୟକ୍ତି ବିବେକଦ୍ୱାରା କୋପକୁ ରୋଧ କରେ ସେହି ବୀରକୁ ଉତ୍ତମପୁରୁଷ କୁହାଯାଏ ।୬। ହେ ଲକ୍ଷ୍ମଣ ! ସାଧୁ ଚରିତ୍ର ତୁମ୍ଭର ଏପରି କଥା ମନରେ ବିଚାରିବା ଠିକ୍ ନୁହେଁ । ପୂର୍ବେ ଯେ ପ୍ରୀତି ଏବଂ ବନ୍ଧୁତା (ସୁଗ୍ରୀବ ସହିତ) ହୋଇଛି ତାହା ପାଳନ କର ।୭। ରୁକ୍ଷତା ପରିହାର କରି କାଳ ଅତିକ୍ରାନ୍ତ ହେବା ବିଷୟ ତୁମ୍ଭର କୋମଳଭାବରେ ସୁଗ୍ରୀବକୁ କହିବା ଉଚିତ" ।୮। ବଡ଼ ଭାଇଙ୍କ ଦ୍ୱାରା ଯଥାବିଧି ଉପଦିଷ୍ଟ ହୋଇ ଶତ୍ରୁହନ୍ତା

ତତଃ ଶୁଭମତିଃ ପ୍ରାଜ୍ଞୋ ଭ୍ରାତୁଃ ପ୍ରିୟହିତେ ରତଃ ।
ଲକ୍ଷ୍ମଣଃ ପ୍ରତିସଂରବ୍ଧୋ ଜଗାମ ଭବନଂ କପେଃ । ୧୦ ।
ଶକ୍ରବାଣାସନପ୍ରଖ୍ୟଂ ଧନୁଃ କାଲାନ୍ତକୋପମମ୍ ।
ପ୍ରଗୃହ୍ୟ ଗିରିଶୃଙ୍ଗାଭଂ ମନ୍ଦରଃ ସାନୁମାନିବ । ୧୧ ।
ଯଥୋକ୍ତକାରୀ ବଚନମୁତ୍ତରଂ ଚୈବ ସୋତ୍ତରମ୍ ।
ବୃହସ୍ପତିସମୋ ବୁଦ୍ଧ୍ୟା ମତ୍ୱା ରାମାନୁଜସ୍ତଦା । ୧୨ ।
କାମକ୍ରୋଧସମୁତ୍‌ଥେନ ଭ୍ରାତୁଃ କ୍ରୋଧାଗ୍ନିନା ବୃତଃ ।
ପ୍ରଭଞ୍ଜନ ଇବାପ୍ରୀତଃ ପ୍ରଯଯୌ ଲକ୍ଷ୍ମଣସ୍ତତଃ ।। ୧୩ ।
ସାଲତାଲାଶ୍ୱକର୍ଣାଂଶ୍ଚ ତରସା ପାତୟନ୍‌ବଲାତ୍ ।
ପର୍ଯସ୍ୟନ୍ ଗିରିକୂଟାନି ଦ୍ରୁମାନନ୍ୟାଂଶ୍ଚ ବେଗିତଃ । ୧୪ ।
ଶିଲାଶ୍ଚ ଶକଲୀକୁର୍ବନ୍ ପଦ୍ଭ୍ୟାଂ ଗଜ ଇବାଶୁଗଃ ।
ଦୂରମେକପଦଂ ତ୍ୟକ୍ତ୍ୱା ଯଯୌ କାର୍ଯ୍ୟବଶାଦ୍ଦ୍ରୁତମ୍ । ୧୫ ।
ତାମପଶ୍ୟଦ୍‌ବଲାକୀର୍ଣାଂ ହରିରାଜମହାପୁରୀମ୍ ।
ଦୁର୍ଗାମିକ୍ଷ୍ୱାକୁଶାର୍ଦ୍ଦୂଲଃ କିଷ୍କିନ୍ଧାଂ ଗିରିସଂକଟେ । ୧୬ ।

---

ବୀର ଲକ୍ଷ୍ମଣ କିଷ୍କିନ୍ଧା ନଗରୀରେ ପ୍ରବେଶ କଲେ । ୯ । ଅନନ୍ତର ଭାଇଙ୍କର ପ୍ରିୟ ଏବଂ ହିତ ଅଭିଳାଷୀ ବୁଦ୍ଧିମାନ୍ ଶୁଭମତି ଲକ୍ଷ୍ମଣ କ୍ରୁଦ୍ଧଭାବରେ ବାନରର ଗୃହକୁ ଗଲେ । ୧୦ । ଇନ୍ଦ୍ରଙ୍କ ଧନୁସଦୃଶ ଯମସମ ଏବଂ ଗିରିଶୃଙ୍ଗତୁଲ୍ୟ ଧନୁଧାରଣ କରି ଲକ୍ଷ୍ମଣ ଶିଖରଯୁକ୍ତ ମନ୍ଦର ପର୍ବତସଦୃଶ ଦେଖାଗଲେ । ୧୧ । ଭାଇଙ୍କ ଆଜ୍ଞାକାରୀ ବୃହସ୍ପତିସଦୃଶ ବୁଦ୍ଧିମାନ୍ ଲକ୍ଷ୍ମଣ କଣ କହିବେ, ସୁଗ୍ରୀବ କ ଉତ୍ତର ଦେବ ଏବଂ ସେ ତାହାର କ ପ୍ରତ୍ୟୁତ୍ତର ଦେବେ ଏ ସବୁ ବିଷୟ ବିଚାର କରି କାମ ଏବଂ କ୍ରୋଧରୁ ଉତ୍ପନ୍ନ ରାମଚନ୍ଦ୍ରଙ୍କ କୋପାଗ୍ନିଦ୍ୱାରା ଅନୁପ୍ରାଣିତ ହୋଇ ବାୟୁସଦୃଶ କ୍ରୁଦ୍ଧ-ଭାବରେ ଗମନ କଲେ । ୧୨-୧୩ । ବେଗବାନ୍ ଲକ୍ଷ୍ମଣ ପର୍ବତର ବଡ଼ ବଡ଼ ପଥର ଏବଂ ସାଳ, ତାଳ, ଅଶ୍ୱକର୍ଣ୍ଣ ଆଦି ବୃକ୍ଷମାନଙ୍କୁ ଉପାଡ଼ି ଏଣେତେଣେ ଫିଙ୍ଗି ଫୋପାଡ଼ି ଚାଲିଲେ । ୧୪ । ଶୀଘ୍ରଗାମୀ ହସ୍ତିସଦୃଶ ପଦଦ୍ୱାରା ପଥରମାନଙ୍କୁ ଖଣ୍ଡ ଖଣ୍ଡ କରି ଭାଙ୍ଗିଦେଇ ଏବଂ ଦୂର ପଡ଼ିବ ବୋଲି ଏକପଦୀ ବାଟ ଛାଡ଼ି ଅବାଟରେ ସେ କାର୍ଯ୍ୟ ଉଦ୍ଦେଶ୍ୟରେ ଶୀଘ୍ରଗତିରେ ଚାଲିଲେ ।୧୫। ସେନାମାନଙ୍କଦ୍ୱାରା ବେଷ୍ଟିତ ବାନରରାଜଙ୍କର ମହାନଗରୀ କିଷ୍କିନ୍ଧାକୁ ଇକ୍ଷ୍ୱାକୁବଂଶର ବୀର ଲକ୍ଷ୍ମଣ ଦେଖିଲେ । ସେ କିଷ୍କିନ୍ଧାନଗରୀ ପର୍ବତମାନଙ୍କ ମଧ୍ୟଦେଶରେ ଅବସ୍ଥିତ ଥିଲା ଏବଂ ଅଗମ୍ୟ

ରୋଷାତ୍ ପ୍ରସ୍ଫୁରମାଣୋଷ୍ଠଃ ସୁଗ୍ରୀବଂ ପ୍ରତି ଲକ୍ଷ୍ମଣଃ ।
ଦଦର୍ଶ ବାନରାନ୍ ଭୀମାନ୍ କିଷ୍କିନ୍ଧାୟାଂ ବହିଶ୍ଚରାନ୍ । ୧୭ ।
ତଂ ଦୃଷ୍ଟ୍ୱା ବାନରାଃ ସର୍ବେ ଲକ୍ଷ୍ମଣଂ ପୁରୁଷର୍ଷଭମ୍ ।
ଶୈଳଶୃଙ୍ଗାଣି ଶତଶଃ ପ୍ରବୃଦ୍ଧାଂଶ୍ଚ ମହୀରୁହାନ୍ ।
ଜଗୃହୁଃ କୁଞ୍ଜରପ୍ରଖ୍ୟା ବାନରାଃ ପର୍ବତାନ୍ତରେ । ୧୮ ।
ତାନ୍ ଗୃହୀତପ୍ରହରଣାନ୍ ସର୍ବାନ୍ ଦୃଷ୍ଟ୍ୱା ତୁ ଲକ୍ଷ୍ମଣଃ ।
ବଭୂବ ଦ୍ୱିଗୁଣଂ କ୍ରୁଦ୍ଧୋ ବହ୍ୱିନ୍ଧନ ଇବାନଲଃ । ୧୯ ।
ତଂ ତେ ଭୟପରୀତାଙ୍ଗାଃ କ୍ଷୁବ୍ଧଂ ଦୃଷ୍ଟ୍ୱା ପ୍ଲବଙ୍ଗମାଃ ।
କାଲମୃତ୍ୟୁଯୁଗାନ୍ତାଭଂ ଶତଶୋ ବିଦ୍ରୁତା ଦିଶଃ । ୨୦ ।
ତତଃ ସୁଗ୍ରୀବଭବନଂ ପ୍ରବିଶ୍ୟ ହରିପୁଙ୍ଗବାଃ ।
କ୍ରୋଧମାଗମନଂ ଚୈବ ଲକ୍ଷ୍ମଣସ୍ୟ ନ୍ୟବେଦୟନ୍ । ୨୧ ।
ତାରୟା ସହିତଃ କାମୀ ଶକ୍ତଃ କପିବୃଷ ସ୍ତଦା ।
ନ ତେଷାଂ କପିସିଂହାନାଂ ଶୁଶ୍ରାବ ବଚନଂ ତଦା । ୨୨ ।
ତତଃ ସଚିବସଂଦିଷ୍ଟା ହରୟୋ ରୋମହର୍ଷଣାଃ ।
ଗିରିକୁଞ୍ଜରମେଘାଭା ନଗରାନ୍ନିର୍ଯୟୁସ୍ତଦା । ୨୩ ।

---

ଥିଲା । ୧୬ । ସୁଗ୍ରୀବ ପ୍ରତି କ୍ରୋଧହେତୁରୁ ଲକ୍ଷ୍ମଣଙ୍କର ଓଠ ଥରୁଥିଲା । ସେ ଭୀଷଣାକୃତି ବାନରମାନଙ୍କୁ କିଷ୍କିନ୍ଧାନଗରର ବାହାରେ ବିଚରଣ କରୁଥିବାର ଦେଖିଲେ । ୧୭ । ପୁରୁଷଶ୍ରେଷ୍ଠ ଲକ୍ଷ୍ମଣଙ୍କୁ ଦେଖି ହାତୀପରି ପ୍ରକାଣ୍ଡକାୟ ସେହି ବାନରମାନେ ପର୍ବତମାନଙ୍କ ଅନ୍ତରାଳରେ ରହି ଶତ ଶତ ପର୍ବତଶୃଙ୍ଗ ଏବଂ ବିଶାଳ ବୃକ୍ଷମାନ ଧରିଲେ । ୧୮ । ସେ ସମସ୍ତଙ୍କୁ ଅସ୍ତ୍ରଧାରଣ କରିବାର ଦେଖି ଲକ୍ଷ୍ମଣଙ୍କର କ୍ରୋଧ, ଅଧିକ କାଠ ପାଇଲେ ଅଗ୍ନିର ତେଜ ଯେପରି ବଢ଼ିଯାଏ ସେହିପରି ବଢ଼ିଗଲା । ୧୯ । ଭୟଭୀତ ବାନରମାନେ ପ୍ରଳୟକାଳୀନ ମୃତ୍ୟୁସଦୃଶ କ୍ରୁଦ୍ଧ ଲକ୍ଷ୍ମଣଙ୍କୁ ଦେଖି ଶହ ଶହ ହୋଇ ଚାରିଦିଗରେ ପଳାଇଗଲେ ।୨୦। ଅନନ୍ତର ପ୍ରଧାନ ବାନରମାନେ ସୁଗ୍ରୀବଙ୍କ ଘରକୁ ଯାଇ ତାଙ୍କୁ ଲକ୍ଷ୍ମଣଙ୍କ ଆଗମନ ଏବଂ ତାଙ୍କର କ୍ରୋଧବିଷୟ ନିବେଦନ କଲେ ।୨୧। କପିଶ୍ରେଷ୍ଠ ସୁଗ୍ରୀବ ସେତେବେଳେ ତାରା ସହିତ କାମାସକ୍ତ ଥିଲା, ସୁତରାଂ ସେ ପ୍ରଧାନ କପିମାନଙ୍କର କଥା ଶୁଣିଲା ନାହିଁ । ୨୨ । ଅନନ୍ତର ମନ୍ତ୍ରୀମାନଙ୍କ ଆଦେଶରେ ପର୍ବତ, ହାତୀ ଏବଂ ମେଘସଦୃଶ ବିଶାଳକାୟ ବାନରମାନେ ଭୟରେ ରୋମାଞ୍ଚିତ ହୋଇ ନଗରରୁ ବାହାରକୁ ଚାଲିଆସିଲେ ।୨୩।

ନଖଦଂଷ୍ଟ୍ରାୟୁଧାଃ ସର୍ବେ ବୀରା ବିକୃତଦର୍ଶନାଃ ।
ସର୍ବେ ଶାର୍ଦ୍ଦୂଳଦଂଷ୍ଟ୍ରାଶ୍ଚ ସର୍ବେ ବିକୃତଦର୍ଶନାଃ । ୨୪ ।
ଦଶନାଗବଳାଃ କେଚିତ୍‌କେଚିଦ୍ଦଶଗୁଣୋତ୍ତରାଃ ।
କେଚିନ୍ନାଗସହସ୍ରସ୍ୟ ବଭୂବୁସ୍ତୁଲ୍ୟବର୍ଚ୍ଚସଃ । ୨୫ ।
ତତସ୍ତୈଃ କପିଭିର୍ବ୍ୟାପ୍ତାଂ ଦ୍ରୁମହସ୍ତୈର୍ମହାବଳୈଃ ।
ଅପଶ୍ୟଲ୍ଲକ୍ଷ୍ମଣଃ କ୍ରୁଦ୍ଧଃ କିଷ୍କିନ୍ଧାଂ ତାଂ ଦୁରାସଦାମ୍ । ୨୬ ।
ତତସ୍ତେ ହରୟଃ ସର୍ବେ ପ୍ରାକାରପରିଖାନ୍ତରାତ୍ ।
ନିଷ୍କ୍ରମ୍ୟୋଦଗ୍ରସତ୍ତ୍ୱାସ୍ତୁ ତସ୍ଥୁରାବିଷ୍କୃତଂ ତଦା । ୨୭ ।
ସୁଗ୍ରୀବସ୍ୟ ପ୍ରମାଦଂ ଚ ପୂର୍ବଜସ୍ୟାର୍ଥମାତ୍ମବାନ୍ ।
ଦୃଷ୍ଟ୍ୱା କ୍ରୋଧବଶଂ ବୀରଃ ପୁନରେବ ଜଗାମ ସଃ । ୨୮
ସ ଦୀର୍ଘୋଷ୍ଣମହୋଚ୍ଛ୍ୱାସଃ କୋପସଂରକ୍ତଲୋଚନଃ ।
ବଭୂବ ନରଶାର୍ଦ୍ଦୂଳଃ ସଧୂମ ଇବ ପାବକଃ । ୨୯ ।
ବାଣଶଲ୍ୟସ୍ଫୁରଜ୍ଜିହ୍ୱଃ ସାୟକାସନଭୋଗବାନ୍ ।
ସ୍ୱତେଜୋବିଷସଂଭୂତଃ ପଞ୍ଚାସ୍ୟ ଇବ ପନ୍ନଗଃ । ୩୦ ।

---

ସେସବୁ ବାନରମାନଙ୍କର ନଖ ଏବଂ ଦନ୍ତହିଁ ଅସ୍ତ୍ର ଥିଲା । ସେମାନେ ଦେଖିବାକୁ ବଡ଼ ଭୟଙ୍କର ଏବଂ ବିରୂପ ଥିଲେ । ସେମାନଙ୍କ ଦାନ୍ତସବୁ ବାଘର ଦାନ୍ତପରି ହୋଇଥିଲା । ୨୪ । କାହାର କାହାର ବଳ ଦଶଟା ହାତୀର ବଳସଦୃଶ ଥିଲା, କାହାର ବା ଶହେ ହାତୀର ବଳ ଥିଲା ଏବଂ କାହାର ହଜାରେ ହାତୀର ବଳ ଥିଲା ।୨୫ । ଅନନ୍ତର ହାତରେ ମହାଦ୍ରୁମମାନ ଧରିଥିବା ବାନରମାନଙ୍କ ଦ୍ୱାରା ପରିବ୍ୟାପ୍ତ ସେହି କିଷ୍କିନ୍ଧା ନଗରୀକୁ କ୍ରୁଦ୍ଧ ଲକ୍ଷ୍ମଣ ଦେଖିଲେ । ସେ ନଗରୀ ମଧ୍ୟରେ ପ୍ରବେଶ କରିବା ଅତିଶୟ ଦୁରୂହ ଥିଲା । ୨୬ । ଅନନ୍ତର ସେହି ସବୁ ବାନର ନଗରର ପ୍ରାଚୀର ଏବଂ ଖାଇମାନଙ୍କରୁ ବାହାରି ଅତି ପରାକ୍ରମର ସହିତ ଉଭା ହୋଇଗଲେ । ୨୭ । ସୁଗ୍ରୀବର ଅନବଧାନତା ଏବଂ ବଡ଼ ଭାଇଙ୍କର କାର୍ଯ୍ୟକୁ ବିଗୁର କରି ବଳବାନ୍ ଲକ୍ଷ୍ମଣ ପୁଣି କ୍ରୋଧର ଅଧୀନ ହୋଇପଡ଼ିଲେ । ୨୮ । ସେ ଅତିଶୟ ଉଷ୍ଣ ଦୀର୍ଘନିଶ୍ୱାସ ପକାଇବାକୁ ଲଗିଲେ । କ୍ରୋଧରେ ତାଙ୍କର ଚକ୍ଷୁରକ୍ତବର୍ଣ୍ଣ ହୋଇଗଲା । ନରଶ୍ରେଷ୍ଠ ଲକ୍ଷ୍ମଣ ଧୂମଯୁକ୍ତ ଅଗ୍ନି ସମାନ ଦେଖାଗଲେ । ୨୯ । ଲକ୍ଷ୍ମଣ ପାଞ୍ଚଟି ମୁଖବିଶିଷ୍ଟ ପ୍ରକାଣ୍ଡ ସର୍ପପରି ଦେଖାଗଲେ । ତାଙ୍କର ବାଣର ଅଗ୍ରଭାଗ ଲହ ଲହ ହେଉଥିବା ସର୍ପର ଜିଭପରି ଦେଖାଯାଉଥିଲା ଏବଂ ତାଙ୍କର ଧନୁ ସର୍ପର ଶରୀରସଦୃଶ ଦେଖାଯାଉଥିଲା । ଲକ୍ଷ୍ମଣଙ୍କର ନିଜର ତେଜହିଁ ସର୍ପର ବିଷସଦୃଶ

ତଂ ଦୀପ୍ତମିବ କାଲାଗ୍ନିଂ ନାଗେନ୍ଦ୍ରମିବ କୋପିତମ୍ ।
ସମାସାଦ୍ୟାଙ୍ଗଦସ୍ତ୍ରାସାଦ୍‌ବିଷାଦମଗମତ୍ପରମ୍ । ୩୧ ।
ସୋଽଙ୍ଗଦଂ ରୋଷତାମ୍ରାକ୍ଷଃ ସଂଦିଦେଶ ମହାଯଶାଃ ।
ସୁଗ୍ରୀବଂ କଥୟତାଂ ବତ୍ସ ମମାଗମନମିତ୍ୟୁତ । ୩୨ ।
ଏଷ ରାମାନୁଜଃ ପ୍ରାପ୍ତସ୍ତ୍ୱତ୍ସକାଶମରିଂଦମ ।
ଭ୍ରାତୁର୍ବ୍ୟସନସଂତପ୍ତୋ ଦ୍ୱାରି ତିଷ୍ଠତି ଲକ୍ଷ୍ମଣଃ । ୩୩ ।
ତସ୍ୟ ବାକ୍ୟଂ ଯଦି ରୁଚିଃ କ୍ରିୟତାଂ ସାଧୁ ବାନର ।
ଇତ୍ୟୁକ୍ତ୍ୱା ଶୀଘ୍ରମାଗଚ୍ଛ ବତ୍ସ ବାକ୍ୟମରିଂଦମ । ୩୪ ।
ଲକ୍ଷ୍ମଣସ୍ୟ ବଚଃ ଶ୍ରୁତ୍ୱା ଶୋକାବିଷ୍ଟୋଽଙ୍ଗଦୋଽବ୍ରବୀତ୍ ।
ପିତୁଃ ସମୀପମାଗମ୍ୟ ସୌମିତ୍ରିରୟମାଗତଃ । ୩୫ ।

ଅଥାଙ୍ଗଦସ୍ତସ୍ୟ ସୁତୀବ୍ରବାଗ୍ଭିଃ
ସଂଭ୍ରାନ୍ତଭାବଃ ପରିଦୀନବକ୍ତ୍ରଃ ।
ନିର୍ଗତ୍ୟ ପୂର୍ବଂ ନୃପତେସ୍ତରସ୍ୱୀ
ତତୋ ରୁମାୟାଶ୍ଚରଣୌ ବବନ୍ଦେ । ୩୬ ।

ସଂଗୃହ୍ୟପାଦୌ ପିତୁରୁଗ୍ରତେଜା
ଜଗ୍ରାହ ମାତୁଃ ପୁନରେବ ପାଦୌ ।

---

ଅର୍ଥ । ୩୦ । କାଳାଗ୍ନି ସଦୃଶ ଦୀପ୍ତ ଏବଂ ହସ୍ତିସଦୃଶ କ୍ରୁଦ୍ଧ ଲକ୍ଷ୍ମଣଙ୍କ ନିକଟକୁ ଆସି ଅଙ୍ଗଦ ଭୟରେ ଅତିଶୟ ବିଷଣ୍ଣ ହୋଇପଡ଼ିଲେ । ୩୧ । ମହାଯଶା ଲକ୍ଷ୍ମଣ କ୍ରୋଧରେ ଚକ୍ଷୁ ରକ୍ତବର୍ଣ୍ଣ କରି ଅଙ୍ଗଦକୁ କହିଲେ, "ବତ୍ସ ମୋର ଆସିଥିବା କଥା ସୁଗ୍ରୀବଙ୍କୁ ଯାଇ ଜଣାଅ । ୩୨ । 'ହେଉଛି, ରାମଚନ୍ଦ୍ରଙ୍କର ସାନ ଭାଇ ତୁମ୍ଭ ପାଖକୁ ଆସିଅଛୁ; ଭାଇଙ୍କ ଦୁଃଖରେ ଦୁଃଖିତ ହୋଇ ଲକ୍ଷ୍ମଣ ତୁମ୍ଭ ଦୁଆରେ ଛିଡ଼ା-ହୋଇଛୁ । ୩୩ । ଯଦି ଇଚ୍ଛା ହୁଏ ତେବେ ତାଙ୍କ କଥାକୁ ସତ୍କାରକର (ଅର୍ଥାତ୍ ତାଙ୍କ କଥା ପ୍ରତି କର୍ଣ୍ଣପାତ କର)'। ବତ୍ସ ! ଏହି କଥା କହିଦେଇ ଶୀଘ୍ର ମୋ ପାଖକୁ ଫେରିଆସ" । ୩୪ । ଲକ୍ଷ୍ମଣଙ୍କ ବଚନ ଶୁଣି ଅଙ୍ଗଦ ଦୁଃଖିତ ହୋଇ ଯାଇ ପିତାଙ୍କ (ପିତୃବ୍ୟ) ନିକଟରେ କହିଲ ଯେ "ହେଉନି, ଲକ୍ଷ୍ମଣ ଆସିଅଛନ୍ତି" । ୩୫। ଲକ୍ଷ୍ମଣଙ୍କର ତୀବ୍ରବଚନରେ ଅଙ୍ଗଦ ଭୟତ୍ରସ୍ତ ହୋଇଗଲ; ତାହାର ମୁହଁ ବିଷଣ୍ଣ ହୋଇଗଲା । ସେ ବେଗରେ ଯାଇ ପ୍ରଥମେ ରାଜାଙ୍କର, ତା ପରେ ରୁମାଙ୍କର ଚରଣରେ ପ୍ରଣାମ କଲ ।୩୬। ପୁଣିଉଗ୍ରତେଜା ଅଙ୍ଗଦ ପ୍ରଥମେ ପିତାଙ୍କର, ତା'ପରେ ମାତାଙ୍କର

ପାଦୌ ରୁମାୟାଶ୍ଚ ନିପୀଡ଼ୟିତ୍ୱା-
ନିବେଦୟାମାସ ତତସ୍ତଦର୍ଥମ୍ । ୩୭ ।
ସ ନିଦ୍ରାକ୍ଳାନ୍ତସଂବୀତୋ ବାନରୋ ନ ବିବୁଦ୍ଧବାନ୍ ।
ବଭୂବ ମଦମତ୍ତଶ୍ଚ ମଦନେନ ଚ ମୋହିତଃ । ୩୮ ।
ତତଃ କିଲକିଲାଂ ଚକ୍ରୁର୍ଲକ୍ଷ୍ମଣଂ ପ୍ରେକ୍ଷ୍ୟ ବାନରାଃ ।
ପ୍ରସାଦୟନ୍ତସ୍ତଂ କ୍ରୁଦ୍ଧଂ ଭୟମୋହିତଚେତସଃ । ୩୯ ।
ତେ ମହୌଘନିଭଂ ଦୃଷ୍ଟ୍ୱା ବଜ୍ରାଶନିସମସ୍ୱନମ୍ ।
ସିଂହନାଦଂ ସମଂ ଚକ୍ରୁର୍ଲକ୍ଷ୍ମଣସ୍ୟ ସମୀପତଃ । ୪୦ ।
ତେନ ଶବ୍ଦେନ ମହତା ପ୍ରତ୍ୟବୁଧ୍ୟତ ବାନରଃ ।
ମଦବିହ୍ୱଳତାମ୍ରାକ୍ଷୋ ବ୍ୟାକୁଳଃ ସ୍ରଗ୍‌ବିଭୂଷଣଃ । ୪୧ ।
ଅଥାଙ୍ଗଦବଚଃ ଶ୍ରୁତ୍ୱା ତେନୈବ ଚ ସମାଗତୌ ।
ମନ୍ତ୍ରିଣୌ ବାନରେନ୍ଦ୍ରସ୍ୟ ସଂମତୋଦାରଦର୍ଶନୌ । ୪୨ ।
ପ୍ଲକ୍ଷଶ୍ଚୈବ ପ୍ରଭାବଶ୍ଚ ମନ୍ତ୍ରିଣାବର୍ଥଧର୍ମୟୋଃ ।
ବକ୍ତୁମୁଚ୍ଚାବଚଂ ପ୍ରାପ୍ତଂ ଲକ୍ଷ୍ମଣଂ ତୌ ଶଶଂସତୁଃ । ୪୩ ।

---

ଗୋଡ଼ ଧଇଲା । ଶେଷରେ ରୁମାଙ୍କର ମଧ୍ୟ ଗୋଡ଼ ଧରି ଲକ୍ଷ୍ମଣଙ୍କର ସନ୍ଦେଶ ନିବେଦନ କଲା ।୩୭। ମାତ୍ର ସୁଗ୍ରୀବ ସେତେବେଳେ ନିଦ୍ରାଭିଭୂତ ଥିଲା ଏବଂ କାମରେ ମୋହିତ ହୋଇ ମଦମତ୍ତ ଥିଲା । ସେହିହେତୁରୁ ସେ ନିଦରୁ ଉଠିଲା ନାହିଁ । ୩୮ । ଏହାଉତ୍ତାରୁ କ୍ରୁଦ୍ଧ ଲକ୍ଷ୍ମଣଙ୍କୁ ପ୍ରସନ୍ନ କରିବା ନିମନ୍ତେ ଭୟଭୀତ ବାନରମାନେ ତାଙ୍କୁ ଦେଖି "କିଳକିଳା" ରବ କଲେ । ୩୯ । ସେମାନେ ଲକ୍ଷ୍ମଣଙ୍କୁ ଦେଖି ତାଙ୍କ ସମୀପରେ ସମସ୍ତେ ଏକାବେଳକେ ମିଳି ପ୍ରବଳ ବନ୍ୟାସ୍ରୋତସଦୃଶ ତଥା ବଜ୍ର-ଗର୍ଜନସଦୃଶ ସିଂହଗର୍ଜନ କଲେ । ୪୦ । ଏହି ମହାଘୋର ଶବ୍ଦରେ ସୁଗ୍ରୀବର ନିଦ ଭାଙ୍ଗିଗଲା । ସେ ସମୟରେ ତାହାର ଆଖି ମଦରେ ଆଳସ୍ୟପୂର୍ଣ୍ଣ ଏବଂ ରକ୍ତବର୍ଣ୍ଣ ହୋଇଥିଲା । ତାହାର ମାଳା ଓ ଭୂଷଣମାନ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା । ୪୧ । ଅଙ୍ଗଦର କଥା ଶୁଣି ବାନରରାଜଙ୍କର ପ୍ରିୟ ଏବଂ ଦେଖିବାକୁ ସୁନ୍ଦର ଦୁଇଜଣ ମନ୍ତ୍ରୀ ତାହା (ଅଙ୍ଗଦ) ସହିତ ଆସିଥିଲେ । ୪୨ । ସେ ଦୁହିଁଙ୍କର ନାମ ପ୍ଲକ୍ଷ ଏବଂ ପ୍ରଭାବ ଥିଲା । ସେ ଦୁହେଁ ଅର୍ଥ ଏବଂ ଧର୍ମବିଷୟରେ ଭଲ ମନ୍ଦ ପରାମର୍ଶ ଦେଉଥିଲେ । ଲକ୍ଷ୍ମଣଙ୍କ ଆସିଥିବା କଥା ସେମାନେ ସୁଗ୍ରୀବଙ୍କୁ କହିଲେ । ୪୩ । ଦେବରାଜ ଇନ୍ଦ୍ରଙ୍କ

ପ୍ରସାଦୟିତ୍ୱା ସୁଗ୍ରୀବଂ ବଚନୈଃ ସାର୍ଥକଶ୍ଚିତୈଃ ।
ଆସୀନଂ ପର୍ଯ୍ୟୁପାସୀନୌ ଯଥା ଶକ୍ରଂ ମରୁତ୍ପତିମ୍ । ୪୪ ।
ସତ୍ୟସଂଧୌ ମହାଭାଗୌ ଭ୍ରାତରୌ ରାମଲକ୍ଷ୍ମଣୌ ।
ମନୁଷ୍ୟଭାବଂ ସଂପ୍ରାପ୍ତୌ ରାଜ୍ୟାର୍ହୌ ରାଜ୍ୟଦାୟିନୌ । ୪୫ ।
ତୟୋରେକୋ ଧନୁଷ୍ପାଣିର୍ଦ୍ୱାରି ତିଷ୍ଠତି ଲକ୍ଷ୍ମଣଃ ।
ଯସ୍ୟ ଭୀତାଃ ପ୍ରବେପନ୍ତୋ ନାଦାନ୍ମୁଞ୍ଚନ୍ତି ବାନରାଃ । ୪୬ ।
ସ ଏବ ରାଘବଭ୍ରାତା ଲକ୍ଷ୍ମଣୋ ବାକ୍ୟସାରଥିଃ ।
ବ୍ୟବସାୟରଥଃ ପ୍ରାପ୍ତସ୍ତସ୍ୟ ରାମସ୍ୟ ଶାସନାତ୍ । ୪୭ ।
ଅୟଂ ଚ ତନୟୋ ରାଜଂସ୍ତାରାୟା ଦୟିତୋଽଙ୍ଗଦଃ ।
ଲକ୍ଷ୍ମଣେନ ସକାଶଂ ତେ ପ୍ରେଷିତସ୍ତ୍ୱରୟାନଘ । ୪୮ ।
ସୋଽୟଂ ରୋଷପରୀତାକ୍ଷୋ ଦ୍ୱାରି ତିଷ୍ଠତି ବୀର୍ଯବାନ୍ ।
ବାନରାନ୍ ବାନରପତେ ଚକ୍ଷୁଷା ନିର୍ଦହନ୍ନିବ । ୪୯ ।
ତସ୍ୟ ମୂର୍ଧ୍ନା ପ୍ରଣାମଂ ତ୍ୱଂ ସପୁତ୍ରଃ ସହବାନ୍ଧବଃ ।
ଗଚ୍ଛ ଶୀଘ୍ରଂ ମହାରାଜ ରୋଷୋ ହ୍ୟଦ୍ୟୋପଶାମ୍ୟତାମ୍ । ୫୦ ।

---

ସତ୍ପରେ ସୁଗ୍ରୀବ ଆସନରେ ଉପବେଶନ କରିବା ପରେ ଏ ଦୁଇ ମନ୍ତ୍ରୀ ତାଙ୍କ ପାଖରେ ବସିଲେ ଏବଂ ନିଷ୍ଠସ୍ୱାର୍ଥକ ବଚନଦ୍ୱାରା ସୁଗ୍ରୀବଙ୍କୁ ପ୍ରସନ୍ନ କରି ଲକ୍ଷ୍ମଣଙ୍କ ଆଗମନ ବିଷୟ କହିଲେ । ୪୪ । "ରାମ ଲକ୍ଷ୍ମଣ ଦୁଇ ଭାଇ ସତ୍ୟପ୍ରତିଜ୍ଞ ଅଟନ୍ତି । ସେମାନେ ମନୁଷ୍ୟରୂପ ଧାରଣ କରିଅଛନ୍ତି । ସେମାନେ ରାଜା ହେବାର ଯୋଗ୍ୟ ଏବଂ ଏମାନେ ତୁମକୁ ରାଜ୍ୟ ପ୍ରଦାନ କରିଅଛନ୍ତି । ୪୫ । ସେ ଦୁହିଁଙ୍କ ମଧ୍ୟରୁ ଜଣେ ଲକ୍ଷ୍ମଣ, ଧନୁ ଧାରଣକରି ତୁମ ଦୁଆରେ ଠିଆହୋଇଛନ୍ତି । ତାଙ୍କୁ ଦେଖି ଭୟରେ ଥରଥର ବାନରମାନେ ଚିତ୍କାର କରୁଅଛନ୍ତି । ୪୬ । ସେ ରାମଙ୍କର ଭାଇ ଲକ୍ଷ୍ମଣ ଅଟନ୍ତି । ରାମଚନ୍ଦ୍ରଙ୍କର ବାକ୍ୟ ତାଙ୍କର ସାରଥିସ୍ୱରୂପ (ଅର୍ଥାତ୍ ରାମଙ୍କ ବାକ୍ୟରେ ସେ ସର୍ବଦା ପରିଚାଳିତ ହୁଅନ୍ତି); ଉଦ୍‌ଯୋଗ ତାହାଙ୍କର ରଥ ଅଟେ । ରାମଚନ୍ଦ୍ରଙ୍କ ଆଦେଶ ଅନୁସାରେ ସେ ଏଠାକୁ ଆସିଛନ୍ତି । ୪୭ । ହେ ନିଷ୍ପାପ ରାଜନ୍, ଏଇ ତାରାଙ୍କ ପୁତ୍ର ବୀର ଅଙ୍ଗଦକୁ ଲକ୍ଷ୍ମଣ ତୁମ ନିକଟକୁ ପଠାଇଅଛନ୍ତି । ୪୮ । ସେହି ବଳବାନ୍ ବୀର ଚକ୍ଷୁକୁ କ୍ରୋଧପୂର୍ଣ୍ଣ କରି ଦ୍ୱାରରେ ଠିଆ ହୋଇଛନ୍ତି । ହେ ବାନରରାଜ ! ସେ ଆଖିଦ୍ୱାରା ସତେ ଯେପରି ବାନରମାନଙ୍କୁ ଜାଳିପୋଡ଼ି ଦେଉଛନ୍ତି । ୪୯ । ମହାରାଜ ! ଆପଣ ପୁତ୍ର ଏବଂ ବନ୍ଧୁମାନଙ୍କ ସହିତ ଯାଇ ଶୀଘ୍ର ତାଙ୍କୁ ମୁଣ୍ଡିଆମାରି ପ୍ରଣାମ କରନ୍ତୁ ଏବଂ ଆଜି ତାଙ୍କର କ୍ରୋଧକୁ ଶାନ୍ତ

**ଯଥା ହି ରାମୋ ଧର୍ମାତ୍ମା ତତ୍‌କୁରୁଷ୍ୱ ସମାହିତଃ ।**
**ରାଜଂସ୍ତିଷ୍ଠ ସ୍ୱସମୟେ ଭବ ସତ୍ୟପ୍ରତିଶ୍ରବଃ ।୫୧।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ଲକ୍ଷ୍ମଣକ୍ରୋଧୋ
ନାମ ଏକତ୍ରିଂଶଃ ସର୍ଗଃ

———

କରନ୍ତୁ ।୫୦। ଯେ ଉପାୟରେ ଧର୍ମାତ୍ମା ରାମଚନ୍ଦ୍ର ପ୍ରସନ୍ନ ହେବେ ତାହାର ବିଧାନ କର । ହେ ରାଜନ୍ ! ନିଜର ଜବାବ ରକ୍ଷାକର ଏବଂ ସତ୍ୟପ୍ରତିଜ୍ଞ ହୁଅ” ।୫୧।

———

# ଦ୍ଵାତ୍ରିଂଶଃ ସର୍ଗଃ

## ହନୂମନ୍ମନ୍ତ୍ରଃ

ଅଙ୍ଗଦସ୍ୟ ବଚଃ ଶ୍ରୁତ୍ୱା ସୁଗ୍ରୀବଃ ସଚବୈଃ ସହ ।
ଲକ୍ଷ୍ମଣଂ କୁପିତଂ ଶ୍ରୁତ୍ୱା ମୁମୋଚାସନମାତ୍ମବାନ୍ । ୧ ।
ସ ଚ ତାନବ୍ରବୀଦ୍ ବାକ୍ୟଂ ନିଶ୍ଚିତ୍ୟ ଗୁରୁଲାଘବମ୍ ।
ମନ୍ତ୍ରଜ୍ଞାନ୍ମନ୍ତ୍ରକୁଶଲୋ ମନ୍ତ୍ରେଷୁ ପରିନିଷ୍ଠିତଃ । ୨ ।
ନ ମେ ଦୁର୍ବ୍ୟାହୃତଂ କିଞ୍ଚିନ୍ନାପି ମେ ଦୁରନୁଷ୍ଠିତମ୍ ।
ଲକ୍ଷ୍ମଣୋ ରାଘବଭ୍ରାତା କ୍ରୁଦ୍ଧଃ କିମିତି ଚିନ୍ତୟେ । ୩ ।
ଅସୁହୃଦ୍ଭିର୍ମମାମିତ୍ରୈର୍ନିତ୍ୟମନ୍ତରଦର୍ଶିଭିଃ ।
ମମ ଦୋଷାନସଂଭୂତାନ୍ ଶ୍ରାବିତୋ ରାଘବାନୁଜଃ । ୪ ।
ଅତ୍ର ତାବଦ୍ ଯଥାବୁଦ୍ଧିଃ ସର୍ବୈରେବ ଯଥାବିଧି ।
ଭାବସ୍ୟ ନିଶ୍ଚୟସ୍ତାବଦ୍ ବିଜ୍ଞେୟୋ ନିପୁଣଂ ଶନୈଃ । ୫ ।
ନ ଖଲ୍ୱସ୍ତି ମମ ତ୍ରାସୋ ଲକ୍ଷ୍ମଣାନ୍ନାପି ରାଘବାତ୍ ।
ମିତ୍ରଂ ତ୍ୱସ୍ଥାନକୁପିତଂ ଜନୟତ୍ୟେବ ସଂଭ୍ରମମ୍ । ୬ ।

---

## ୩୨ଶ ସର୍ଗ

( ହନୁମାନଙ୍କ ମନ୍ତ୍ରଣା )

ମନ୍ତ୍ରୀମାନଙ୍କ ସହିତ ଅଙ୍ଗଦର କଥା ଶୁଣି ଏବଂ ଲକ୍ଷ୍ମଣ କ୍ରୁଦ୍ଧ ହୋଇଥିବାର ଶୁଣି ଆତ୍ମବଶୀ ସୁଗ୍ରୀବ ଆସନ ତ୍ୟାଗକଲେ ।୧। ମନ୍ତ୍ରପ୍ରୟୋଗରେ ନିପୁଣ ସୁଗ୍ରୀବ ଉଚିତ ଅନୁଚିତ ବିଚାର କରି ମନ୍ତ୍ର ଜାଣିଥିବା ମନ୍ତ୍ରୀମାନଙ୍କୁ କହିଲେ ।୨। "ମୁଁ କୌଣସି ଖରାପ କଥା କହିନାହିଁ ବା କୌଣସି ଅସତ୍ କାର୍ଯ୍ୟ କରି ନାହିଁ; ତେବେ ରାଘବଙ୍କର ଭାଇ ଲକ୍ଷ୍ମଣ କାହିଁକି କ୍ରୁଦ୍ଧ ହୋଇଛନ୍ତି, ମୁଁ ସେହି କଥା ଚିନ୍ତା କରୁଛି । ୩ । ସର୍ବଦା ମୋର ଦୋଷ ଖୋଜୁଥିବା ଅପକାରୀ ଶତ୍ରୁମାନେ ହୁଏତ ମିଛରେ ମୋର ଦୋଷ ଲକ୍ଷ୍ମଣଙ୍କୁ ଶୁଣାଇଛନ୍ତି । ୪ । ମୋ ଯିବାପୂର୍ବରୁ ଆଜ ଆପଣମାନେ ସମସ୍ତେ ନିଜ ନିଜ ବୁଦ୍ଧି ଅନୁସାରେ ବିଧିପୂର୍ବକ ଲକ୍ଷ୍ମଣଙ୍କର ମନୋଭାବକୁ ନିଶ୍ଚୟ କରି ବୁଝନ୍ତୁ ।୫। ରାମଚନ୍ଦ୍ର ବା ଲକ୍ଷ୍ମଣଙ୍କଠାରୁ ମୋର କୌଣସି ଭୟ ନାହିଁ; ମାତ୍ର ବିନା କାରଣରେ ମିତ୍ର କୁପିତ ହୋଇଥିବାରୁ ମୋ ମନରେ ଉଦ୍‌ବେଗ ଜାତ

ସର୍ବଥା ସୁକରଂ ମିତ୍ରଂ ଦୁଷ୍କରଂ ପ୍ରତିପାଳନମ୍ ।
ଅନିତ୍ୟତ୍ୱାତ୍ତୁ ଚିତ୍ତାନାଂ ପ୍ରୀତିରଲ୍ପେଽପି ଭିଦ୍ୟତେ । ୭ ।
ଅତୋ ନିମିତ୍ତଂ ତ୍ରସ୍ତୋଽହଂ ରାମେଣ ତୁ ମହାତ୍ମନା ।
ଯନ୍ମମୋପକୃତଂ ଶକ୍ୟଂ ପ୍ରତିକର୍ତୁଂ ନ ତନ୍ମୟା । ୮ ।
ସୁଗ୍ରୀବେଣୈବମୁକ୍ତେ ତୁ ହନୁମାନ୍ ହରିପୁଙ୍ଗବଃ ।
ଉବାଚ ସ୍ୱେନ ତର୍କେଣ ମଧ୍ୟେ ବାନରମନ୍ତ୍ରିଣାମ୍ । ୯ ।
ସର୍ବଥା ନୈତଦାଶ୍ଚର୍ଯଂ ଯତ୍ତ୍ୱଂ ହରିଗଣେଶ୍ୱର ।
ନ ବିସ୍ମରସ୍ୟବସ୍ତ୍ରବ୍ଧମୁପକାରଂ କୃତଂ ଶୁଭମ୍ । ୧୦ ।
ରାଘବେଣ ତୁ ବୀରେଣ ଭୟମୁତ୍ସୃଜ୍ୟ ଦୂରତଃ ।
ତ୍ୱତ୍ପ୍ରିୟାର୍ଥଂ ହତୋ ବାଲୀ ଶକ୍ରତୁଲ୍ୟପରାକ୍ରମଃ । ୧୧ ।
ସର୍ବଥା ପ୍ରଣୟାତ୍ କ୍ରୁଦ୍ଧୋ ରାଘବୋ ନାତ୍ର ସଂଶୟଃ ।
ଭ୍ରାତରଂ ସମ୍ପ୍ରହିତବାଁଲ୍ଲକ୍ଷ୍ମଣଂ ଲକ୍ଷ୍ମିବର୍ଧନମ୍ । ୧୨ ।
ତ୍ୱଂ ପ୍ରମତ୍ତୋ ନ ଜାନୀଷେ କାଲଂ କାଲବିଦାଂବର ।
ଫୁଲ୍ଲସପ୍ତଚ୍ଛଦଶ୍ୟାମା ପ୍ରବୃତ୍ତା ତୁ ଶରଚ୍ଛୁଭା । ୧୩ ।

---

ହୋଇଅଛି । ୭ । ମିତ୍ରତା ସ୍ଥାପନ କରିବା ସହଜ; ମାତ୍ର ତାହାକୁ ନିର୍ବାହ କରିବା କଷ୍ଟକର ଅଟେ । କାରଣ ଚିତ୍ତର ଅସ୍ଥିରତାହେତୁରୁ ସାମାନ୍ୟ କାରଣରୁ ପ୍ରୀତି ଭାଙ୍ଗିଯାଏ । ୭ । ସେଇଥିଲାଗି ମୋର ଭୟ ହେଉଅଛି । ମହାତ୍ମା ରାମଚନ୍ଦ୍ର ମୋର ଯେଉଁ ଉପକାର କରିଛନ୍ତି ତାହାର ପ୍ରତ୍ୟୁପକାର କରିବାକୁ ମୁଁ ସମର୍ଥ ନୁହେଁ" ।୮। ସୁଗ୍ରୀବ ଏହିପ୍ରକାରେ କହିବା ପରେ ବାନରଶ୍ରେଷ୍ଠ ହନୁମାନ୍ ବାନର-ମାନଙ୍କ ମଧ୍ୟରେ ନିଜର ଯୁକ୍ତି ଅନୁସାରେ କହିଲେ ।୯। "ହେ ବାନରେଶ୍ୱର ! ବିଶ୍ୱସ୍ତ-ଭାବରେ ଆପଣଙ୍କ ପ୍ରତି ଯେ ଉପକାର କରାଯାଇଛି ତାହାକୁ ଆପଣ କଦାପି ଭୁଲିବେ ନାହିଁ,ଏଥିରେ କିଛି ଆଶ୍ଚର୍ଯ୍ୟ ନାହିଁ ।୧୦। ରାମଚନ୍ଦ୍ର ଭୟ ତ୍ୟାଗକରି ଦୂରରୁ ଇନ୍ଦ୍ର-ତୁଲ୍ୟ ପରାକ୍ରମୀ ବାଳୀଙ୍କୁ ତୁମ୍ଭର ପ୍ରିୟକାର୍ଯ୍ୟ ସାଧନ ନିମନ୍ତେ ବଧ କରିଅଛନ୍ତି ।୧୧। ସର୍ବଥା ତୁମ ସହିତ ପ୍ରଣୟହେତୁରୁ ରାମଚନ୍ଦ୍ର ତୁମ ପ୍ରତି କ୍ରୋଧ କରିଅଛନ୍ତି ଏବଂ ନିଜର ଭାଇ ଲକ୍ଷ୍ମୀବର୍ଦ୍ଧନ ଲକ୍ଷ୍ମଣଙ୍କୁ ତୁମ ପାଖକୁ ପଠାଇଛନ୍ତି । ଏଥିରେ କିଛିମାତ୍ର ସନ୍ଦେହ ନାହିଁ । ୧୨ । ହେ କାଳଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ ! ତୁମେ ସଂଭୋଗରେ ମତ୍ତ ଥାଇ ( ରାମଙ୍କ ସହିତ ସ୍ଥିର ହୋଇଥିବା) କାଳନିଷ୍ଠୟକୁ ଭୁଲିଯାଇଛ । ସପ୍ତଚ୍ଛଦ ଓ ତମାଳପୁଷ୍ପମାନ ଫୁଟିଲଣି, ଶୁଭକର ଶରତ୍ ଋତୁ ଉପସ୍ଥିତ

ନିର୍ମଲଗ୍ରହନକ୍ଷତ୍ରା ଦ୍ୟୌଃ ପ୍ରନଷ୍ଟବଲାହକା ।
ପ୍ରସନ୍ନାଶ୍ଚ ଦିଶଃ ସର୍ବାଃ ସରିତଶ୍ଚ ସରାଂସି ଚ । ୧୪ ।
ପ୍ରାପ୍ତମୁଦ୍ୟୋଗକାଲଂ ତୁ ନାବୈଷି ହରିପୁଙ୍ଗବ ।
ତ୍ୱଂ ପ୍ରମତ୍ତ ଇତି ବ୍ୟକ୍ତଂ ଲକ୍ଷ୍ମଣୋଽୟମିହାଗତଃ । ୧୫ ।
ଆର୍ତ୍ତସ୍ୟ ହୃତଦାରସ୍ୟ ପରୁଷଂ ପୁରୁଷାନ୍ତରାତ୍ ।
ବଚନଂ ମର୍ଷଣୀୟଂ ତେ ରାଘବସ୍ୟ ମହାତ୍ମନଃ । ୧୬ ।
କୃତାପରାଧସ୍ୟ ହି ତେ ନାନ୍ୟତ୍ପଶ୍ୟାମ୍ୟହଂ କ୍ଷମମ୍ ।
ଅନ୍ତରେଣାଞ୍ଜଳିଂ ବଦ୍ଧ୍ୱା ଲକ୍ଷ୍ମଣସ୍ୟ ପ୍ରସାଦନାତ୍ । ୧୭ ।
ନିଯୁକ୍ତୈର୍ମନ୍ତ୍ରିଭିର୍ବାଚ୍ୟୋ ହ୍ୟବଶ୍ୟଂ ପାର୍ଥିବୋ ହିତମ୍ ।
ଇତ ଏବ ଭୟଂ ତ୍ୟକ୍ତ୍ୱା ବ୍ରବୀମ୍ୟବଧୃତଂ ବଚଃ । ୧୮ ।
ଅଭିକ୍ରୁଦ୍ଧଃ ସମର୍ଥୋ ହି ଚାପମୁଦ୍ୟମ୍ୟ ରାଘବଃ ।
ସଦେବାସୁରଗନ୍ଧର୍ବଂ ବଶେ ସ୍ଥାପୟିତୁଂ ଜଗତ୍ । ୧୯ ।
ନ ସ କ୍ଷମଃ କୋପୟିତୁଂ ଯଃ ପ୍ରସାଦ୍ୟ ପୁନର୍ଭବେତ୍ ।
ପୂର୍ବୋପକାରଂ ସ୍ମରତା କୃତଜ୍ଞେନ ବିଶେଷତଃ । ୨୦ ।

---

ହେଲାଣି । ୧୩ । ଆକାଶରେ ଗ୍ରହ ଏବଂ ନକ୍ଷତ୍ରମାନେ ନିର୍ମଳ ହୋଇଗଲେଣି । ମେଘ ଦୂର ହୋଇଗଲାଣି । ଦିଗମାନେ ଏବଂ ନଦୀ ଓ ପୁଷ୍କରିଣୀମାନେ ନିର୍ମଳ ହୋଇଗଲେଣି । ୧୪ । ହେ ବାନରଶ୍ରେଷ୍ଠ ! ବର୍ତ୍ତମାନ ଉଦ୍‌ଯୋଗ କରିବାର ସମୟ ଉପସ୍ଥିତ ହେଲାଣି ଅଥଚ ତୁମକୁ ଜଣାନାହିଁ । ତୁମେ ବିଳାସରେ ମତ୍ତ ଅଛ, ଏଇଥିଲାଗି ଲକ୍ଷ୍ମଣ ଏଠାକୁ ଆସିଛନ୍ତି, ଏହା ସ୍ପଷ୍ଟ ଜଣାଯାଉଅଛି । ୧୫ । ରାମଚନ୍ଦ୍ର ଦୁଃଖପୀଡ଼ିତ, ତାଙ୍କର ସ୍ତ୍ରୀ ଅପହୃତା ହୋଇଅଛନ୍ତି; ଅତଏବ ମହାତ୍ମା ରାମଚନ୍ଦ୍ର ଯଦି ଅନ୍ୟ ଲୋକଦ୍ୱାରା ତୁମକୁ କୌଣସି କଠୋର କଥା କହନ୍ତି, ତେବେ ତାହାକୁ ତୁମେ ସହିନେବା ଉଚିତ । ୧୬ । ତୁମେ ଅପରାଧ କରିଅଛ, ଅତଏବ ତୁମ ହିତନିମନ୍ତେ ତୁମେ ହାତଯୋଡ଼ି ଲକ୍ଷ୍ମଣଙ୍କୁ ପ୍ରସନ୍ନ କରିବା ଛଡ଼ା ମୁଁ ଅନ୍ୟ କିଛି ଉପାୟ ଦେଖି ପାରୁ ନାହିଁ । ୧୭ । ପଚାରିହେଲେ ମନ୍ତ୍ରୀମାନେ ରାଜାଙ୍କର ହିତ କଥା କହିବା ଉଚିତ; ଅତଏବ ମୁଁ ଭୟ ଛାଡ଼ି ତଥ୍ୟକଥା କହିଲି । ୧୮ । କ୍ରୋଧକରି ଯଦି ରାମଚନ୍ଦ୍ର ଧନୁ ଉଠାନ୍ତି, ତାହାହେଲେ ସେ ଦେବତା, ଅସୁର ଓ ଗନ୍ଧର୍ବମାନଙ୍କ ସହିତ ସମଗ୍ର ଜଗତକୁ ବଶୀଭୂତ କରିପାରିବେ । । ୧୯ । ଯାହାଙ୍କୁ ପୁନର୍ବାର ପ୍ରସନ୍ନ କରାଇବା ଉଚିତ, ତାହାଙ୍କୁ କ୍ରୁଦ୍ଧ କରିବା ଉଚିତ ନୁହେ । ବିଶେଷତଃ ତୁମେ କୃତଜ୍ଞ । ପୂର୍ବ ଉପକାର ସ୍ମରଣ କରି ତୁମ୍ଭର

ତସ୍ୟ ମୂର୍ଧ୍ନା ପ୍ରଣମ୍ୟ ତ୍ୱଂ ସପୁତ୍ରଃ ସସୁହୃଜ୍ଜନଃ ।
ରାଜଂସ୍ତିଷ୍ଠ ସ୍ୱସମୟେ ଭର୍ତୁର୍ଭାର୍ଯେବ ତଦ୍‌ବଶେ । ୨୧ ।
ନ ରାମରାମାନୁଜଶାସନଂ ତ୍ୱୟା
କପୀନ୍ଦ୍ର ଯୁକ୍ତଂ ମନସାପ୍ୟପୋହିତୁମ୍ ।
ମନୋ ହି ତେ ଜ୍ଞାସ୍ୟତି ମାନୁଷଂ ବଲମ୍
ସରାଘବସ୍ୟାସ୍ୟ ସୁରେନ୍ଦ୍ରବର୍ଚସଃ । ୨୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ହନୂମନ୍ମନ୍ତ୍ରୋ
ନାମ ଦ୍ୱାତ୍ରିଂଶଃ ସର୍ଗଃ

---

ତାଙ୍କୁ ରଗାଇବା ଉଚିତ ନୁହେ । ୨୦ । ହେ ରାଜନ୍ ! ପୁତ୍ର ଏବଂ ମିତ୍ରମାନଙ୍କ ସହିତ ମସ୍ତକ ଅବନତ କରି ତାଙ୍କୁ ପ୍ରଣାମ କରି ନିଜର ଜବାବରେ ସ୍ଥିର ରହ । ସ୍ତ୍ରୀ ଯେପରି ସ୍ୱାମୀର ଅଧୀନରେ ରହେ ତୁମେ ସେହିପରି ତାଙ୍କର ବଶୀଭୂତ ହୋଇ ରହ । ୨୧ । ହେ ବାନରରାଜ ! ରାମ ଏବଂ ତାଙ୍କ ସାନ ଭାଇଙ୍କର ଆଜ୍ଞାକୁ ତୁମର ମନେ ମନେ ମଧ୍ୟ ଅବଜ୍ଞା କରିବା ଉଚିତ ନୁହେ । ଇନ୍ଦ୍ର ସଦୃଶ ପରାକ୍ରମୀ ରାମ ଏବଂ ଏହାଙ୍କର (ଲକ୍ଷ୍ମଣଙ୍କର) ମାନବୀୟ ବଳକୁ ତ ତୁମେ ମନମଧ୍ୟରେ ବେଶ୍ ଜାଣିପାରୁଛ" । ୨୨ ।

# ତ୍ରୟସ୍ତ୍ରିଂଶଃ ସର୍ଗଃ

## ତାରାସାନ୍ତ୍ୱବଚନମ୍

ଅଥ ପ୍ରତିସମାଦିଷ୍ଟୋ ଲକ୍ଷ୍ମଣଃ ପରବୀରହା ।
ପ୍ରବିବେଶ ଗୁହାଂ ରମ୍ୟାଂ କିଷ୍କିନ୍ଧାଂ ରାମଶାସନାତ୍ । ୧ ।
ଦ୍ୱାରସ୍ଥା ହରୟସ୍ତତ୍ର ମହାକାୟା ମହାବଳାଃ ।
ବଭୂବୁର୍ଲକ୍ଷ୍ମଣଂ ଦୃଷ୍ଟ୍ୱା ସର୍ବେ ପ୍ରାଞ୍ଜଳୟଃ ସ୍ଥିତାଃ । ୨ ।
ନିଃଶ୍ୱସନ୍ତଂ ତୁ ତଂ ଦୃଷ୍ଟ୍ୱା କ୍ରୁଦ୍ଧଂ ଦଶରଥାତ୍ମଜମ୍ ।
ବଭୂବୁର୍ହରୟସ୍ତ୍ରସ୍ତା ନ ଚୈନଂ ପର୍ଯ୍ୟବାରୟନ୍ । ୩ ।
ସ ତାଂ ରତ୍ନମୟୀଂ ଦିବ୍ୟାଂ ଶ୍ରୀମାନ୍ ପୁଷ୍ପିତକାନନାମ୍ ।
ରମ୍ୟାଂ ରତ୍ନସମାକୀର୍ଣ୍ଣାଂ ଦଦର୍ଶ ମହତୀଂ ଗୁହାମ୍ । ୪ ।
ହର୍ମ୍ୟପ୍ରାସାଦସମ୍ବାଧାଂ ନାନାରତ୍ନୋପଶୋଭିତାମ୍ ।
ସର୍ବକାମଫଳୈର୍ବୃକ୍ଷୈଃ ପୁଷ୍ପିତୈରୁପଶୋଭିତାମ୍ । ୫ ।
ଦେବଗନ୍ଧର୍ବପୁତ୍ରୈଶ୍ଚ ବାନରୈଃ କାମରୂପିଭିଃ ।
ଦିବ୍ୟମାଲ୍ୟାମ୍ବରଧରୈଃ ଶୋଭିତାଂ ପ୍ରିୟଦର୍ଶନୈଃ । ୬ ।

---

## ୩୩ଶ ସର୍ଗ

(ତାରଙ୍କର ସାନ୍ତ୍ୱନାବାଣୀ)

ଅନନ୍ତର ଶତ୍ରୁହନ୍ତା ଲକ୍ଷ୍ମଣ ସୁଗ୍ରୀବଙ୍କର ସନ୍ଦେଶ ପାଇ ରାମଚନ୍ଦ୍ରଙ୍କ ଆଜ୍ଞା ଅନୁସାରେ ରମଣୀୟ କିଷ୍କିନ୍ଧା ଗୁମ୍ଫାମଧ୍ୟରେ ପ୍ରବେଶ କଲେ । ୧ । ଯେଉଁ ମହାବଳବାନ୍ ବିଶାଳକାୟ ବାନରମାନେ ଦ୍ୱାରଦେଶରେ ଥିଲେ, ସେମାନେ ସମସ୍ତେ ଲକ୍ଷ୍ମଣଙ୍କୁ ଦେଖି ହାତଯୋଡ଼ି ଉଭାହେଲେ । ୨ । ଦଶରଥଙ୍କର ପୁତ୍ର ଲକ୍ଷ୍ମଣ କ୍ରୁଦ୍ଧ ହୋଇ ଦୀର୍ଘ ନିଃଶ୍ୱାସ ପକାଉଥିବାର ଦେଖି ବାନରମାନେ ଭୟଭୀତ ହୋଇଗଲେ ଏବଂ ତାଙ୍କର ପଥରୋଧ କଲେ ନାହିଁ । ୩ । ଶ୍ରୀମାନ୍ ଲକ୍ଷ୍ମଣ ସେହି ରମଣୀୟ ରତ୍ନପୂର୍ଣ୍ଣ ପୁଷ୍ପିତବନଯୁକ୍ତ ସ୍ୱର୍ଗୀୟ ମହତୀ ଗୁମ୍ଫାକୁ ଦେଖିଲେ । ୪ । ହର୍ମ୍ୟ, ପ୍ରାସାଦପୂର୍ଣ୍ଣ, ନାନାରତ୍ନଶୋଭିତ ସେହି ନଗରୀ ସକଳପ୍ରକାର ଈପ୍ସିତ ଫଳଫୁଲଯୁକ୍ତ ବୃକ୍ଷମାନଙ୍କ ଦ୍ୱାରା ଶୋଭିତ ହୋଇଥିଲା । ୫ । ଦିବ୍ୟମାଳା ଏବଂ ବସ୍ତ୍ର ପରିଧାନ କରିଥିବା ଦେବତା ଏବଂ ଗନ୍ଧର୍ବମାନଙ୍କର ପୁତ୍ର ଓ ଇଚ୍ଛା ଅନୁସାରେ ନାନାରୂପଧାରୀ ବାନରମାନଙ୍କ ଦ୍ୱାରା ସେ ନଗରୀ ଶୋଭାପାଉଥିଲା । ୬ ।

ଚନ୍ଦନାଗୁରୁପଦ୍ମାନାଂ ଗନ୍ଧୈଃ ସୁରଭିଗନ୍ଧିତାମ୍ ।
ମୈରେୟାଣାଂ ମଧୂନାଂ ଚ ସଂମୋଦିତମହାପଥାମ୍ । ୭ ।
ବିନ୍ଧ୍ୟମେରୁଗିରିପ୍ରଖ୍ୟୈଃ ପ୍ରାସାଦୈର୍ନୈକଭୂମିଭିଃ ।
ଦଦର୍ଶ ଗିରିନଦ୍ୟଶ୍ଚ ବିମଲାସ୍ତତ୍ର ରାଘବଃ । ୮ ।
ଅଙ୍ଗଦସ୍ୟ ଗୃହଂ ରମ୍ୟଂ ମୈନ୍ଦସ୍ୟ ଦ୍ୱିବିଦସ୍ୟ ଚ ।
ଗବୟସ୍ୟ ଗବାକ୍ଷସ୍ୟ ଗଜସ୍ୟ ଶରଭସ୍ୟ ଚ । ୯ ।
ବିଦ୍ୟୁନ୍ମାଲେଶ୍ଚ ସଂପାତେଃ ସୂର୍ଯ୍ୟାକ୍ଷସ୍ୟ ହନୂମତଃ ।
ବୀରବାହୋ ସୁବାହୋଶ୍ଚ ନଳସ୍ୟ ଚ ମହାତ୍ମନଃ । ୧୦ ।
କୁମୁଦସ୍ୟ ସୁଷେଣସ୍ୟ ତାରଜାମ୍ବବତୋସ୍ତଥା ।
ଦଧିବକ୍ତ୍ରସ୍ୟ ନୀଳସ୍ୟ ସୁପାଟଳସୁନେତ୍ରୟୋଃ । ୧୧ ।
ଏତେଷାଂ କପିମୁଖ୍ୟାନାଂ ରାଜମାର୍ଗେ ମହାତ୍ମନାମ୍ ।
ଦଦର୍ଶ ଗୃହମୁଖ୍ୟାନି ମହାସାରାଣି ଲକ୍ଷ୍ମଣଃ । ୧୨ ।
ପାଣ୍ଡୁରାଭ୍ରପ୍ରକାଶାନି ଗନ୍ଧମାଲ୍ୟଯୁତାନି ଚ ।
ପ୍ରଭୂତଧନଧାନ୍ୟାନି ସ୍ତ୍ରୀରତ୍ନୈଃ ଶୋଭିତାନି ଚ । ୧୩ ।

---

ଚନ୍ଦନ, ଅଗୁରୁ ଏବଂ ପଦ୍ମପୁଷ୍ପର ଗନ୍ଧରେ ସେ ନଗରୀ ସୁଗନ୍ଧିତ ହୋଇଥିଲା । ମୈରେୟ (ଏକପ୍ରକାର ସୁରା) ଏବଂ ମଧୁଦ୍ୱାରା ସେ ନଗରୀର ବଡ଼ ବଡ଼ ରାସ୍ତାମାନ ଆମୋଦିତ ହେଉଥିଲା । ୭ । ସେଠାରେ ବିନ୍ଧ୍ୟ ଏବଂ ମେରୁପର୍ବତପରି ବୃହତ୍ ପ୍ରାସାଦମାନ ଅନେକ ସ୍ଥାନରେ ଥିଲା । ଲକ୍ଷ୍ମଣ ନିର୍ମଳ ଜଳପୂର୍ଣ୍ଣ ଅନେକ ଗିରି ନଦୀ ମଧ୍ୟ ସେଠାରେ ଦେଖିଲେ । ୮ । ଅଙ୍ଗଦର ରମଣୀୟ ଗୃହ ତଥା ମୈନ୍ଦ, ଦ୍ୱିବିଦ, ଗବୟ, ଗବାକ୍ଷ, ଗଜ, ଶରଭ, ବିଦ୍ୟୁନ୍ମାଳୀ, ସମ୍ପାତି, ସୂର୍ଯ୍ୟାକ୍ଷ, ହନୂମାନ୍, ବୀରବାହୁ, ସୁବାହୁ, ମହାତ୍ମା ନଳ, କୁମୁଦ, ସୁଷେଣ, ତାର, ଜାମ୍ବବାନ୍, ଦଧିବକ୍ତ୍ର, ନୀଳ, ସୁପାଟଳ ଏବଂ ସୁନେତ୍ର ପ୍ରଭୃତି ପ୍ରଧାନ ପ୍ରଧାନ ବାନରମାନଙ୍କର ବଡ଼ବଡ଼ ଗୃହମାନ ରାଜମାର୍ଗରେ ଲକ୍ଷ୍ମଣ ଦେଖିଲେ । ଏହି ସବୁ ଗୃହ ଖୁବ୍ ସୁଦୃଢ଼ ହୋଇ ନିର୍ମିତ ଥିଲା । ୯-୧୨ । ସେହି ପ୍ରାସାଦମାନ ଶ୍ୱେତବର୍ଣ୍ଣ ମେଘସଦୃଶ ଦେଖାଯାଉଥିଲା । ସୁଗନ୍ଧିତ ମାଳାମାନ ସେଥିରେ ଲଟକା ହୋଇଥିଲା । ସେସବୁ ପ୍ରାସାଦରେ ପ୍ରଚୁର ଧନଧାନ୍ୟ ପୂର୍ଣ୍ଣ ଥିଲା ଏବଂ ତାହା ସ୍ତ୍ରୀ ଏବଂ ରତ୍ନାଦିଦ୍ୱାରା ଶୋଭମାନ ହୋଇଥିଲା । ୧୩ ।

ପାଣ୍ଡୁରେଣ ତୁ ଶୈଳେନ ପରିକ୍ଷିପ୍ତଂ ଦୁରାସଦମ୍ ।
ବାନରେନ୍ଦ୍ରଗୃହଂ ରମ୍ୟଂ ମହେନ୍ଦ୍ରସଦନୋପମମ୍ । ୧୪ ।
ଶୁକ୍ଳୈଃ ପ୍ରାସାଦଶିଖରୈଃ କୈଳାସଶିଖରୋପମୈଃ ।
ସର୍ବକାମଫଳୈର୍ବୃକ୍ଷୈଃ ପୁଷ୍ପିତୈରୁପଶୋଭିତମ୍ । ୧୫ ।
ମହେନ୍ଦ୍ରଦତ୍ତୈଃ ଶ୍ରୀମଦ୍ଭିର୍ନୀଳଜୀମୂତସଂନିଭୈଃ ।
ଦିବ୍ୟପୁଷ୍ପଫଳୈର୍ବୃକ୍ଷୈଃ ଶୀତଚ୍ଛାୟୈର୍ମନୋରମୈଃ । ୧୬ ।
ହରିଭିଃ ସଂବୃତଦ୍ୱାରଂ ବଳିଭିଃ ଶସ୍ତ୍ରପାଣିଭିଃ ।
ଦିବ୍ୟମାଲ୍ୟାବୃତଂ ଶୁଭ୍ରଂ ତପ୍ତକାଞ୍ଚନତୋରଣମ୍ । ୧୭ ।
ସୁଗ୍ରୀବସ୍ୟ ଗୃହଂ ରମ୍ୟଂ ପ୍ରବିବେଶ ମହାବଳଃ ।
ଅବାର୍ଯମାଣଃ ସୌମିତ୍ରିର୍ମହାଭ୍ରମିବ ଭାସ୍କରଃ । ୧୮ ।
ସ ସପ୍ତ କକ୍ଷ୍ୟା ଧର୍ମାତ୍ମା ଯାନାସନସମାବୃତାଃ ।
ପ୍ରବିଶ୍ୟ ସୁମହଦ୍‌ଗୁପ୍ତଂ ଦଦର୍ଶାନ୍ତଃପୁରଂ ମହତ୍ । ୧୯ ।
ହୈମରାଜତପର୍ଯଙ୍କୈର୍ବହୁଭିଶ୍ଚ ବରାସନୈଃ ।
ମହାର୍ହାସ୍ତରଣୋପେତୈସ୍ତତ୍ର ତତ୍ର ସମାବୃତମ୍ । ୨୦ ।

---

ଶ୍ୱେତପର୍ବତବେଷ୍ଟିତ, ପ୍ରବେଶ କରିବାକୁ ଦୁଃସାଧ୍ୟ ବାନରରାଜଙ୍କର ରାଜପ୍ରାସାଦକୁ ଲକ୍ଷ୍ମଣ ଦେଖିଲେ । ତାହା ଇନ୍ଦ୍ରଭବନସଦୃଶ ରମଣୀୟ ଦିଶୁଥିଲା ।୧୪। କୈଳାସ ପର୍ବତର ଶିଖରସଦୃଶ ଶ୍ୱେତବର୍ଣ୍ଣ ଶିଖରମାନଙ୍କଦ୍ୱାରା ସେ ପ୍ରାସାଦ ଶୋଭିତ ଥିଲା । ସବୁ ସମୟରେ ଈପ୍ସିତ ଫଳ ଏବଂ ପୁଷ୍ପଯୁକ୍ତ ବୃକ୍ଷାଦିଦ୍ୱାରା ସେହି ପ୍ରାସାଦ ଶୋଭାପାଉଥିଲା । ୧୫ । ମହେନ୍ଦ୍ରଙ୍କ ପ୍ରଦତ୍ତ ସୁନ୍ଦର ନୀଳମେଘସଦୃଶ ମନୋରମ, ଶୀତଳଛାୟାପ୍ରଦ ଦିବ୍ୟପୁଷ୍ପଯୁକ୍ତ ବୃକ୍ଷଦ୍ୱାରା ସେ ପ୍ରାସାଦ ଶୋଭିତ ଥିଲା । ୧୬ । ଅସ୍ତ୍ରଧାରୀ ବଳବାନ୍ ବାନରମାନେ ତାହାର ଦ୍ୱାରଦେଶରେ ପହରା ଦେଉଥିଲେ । ଦିବ୍ୟ-ପୁଷ୍ପମାଳା ସବୁ ଦ୍ୱାରର ତପ୍ତସୁବର୍ଣ୍ଣନିର୍ମିତ ଶୁଭ୍ରତୋରଣରେ ଲଟକା ହୋଇ-ଥିଲା । ୧୭ । ସୁଗ୍ରୀବଙ୍କର ଏତାଦୃଶ ସୁନ୍ଦର ଗୃହମଧ୍ୟରେ ମହାବଳୀ ଲକ୍ଷ୍ମଣ ପ୍ରବେଶକଲେ । ବୃହତ୍ ମେଘଖଣ୍ଡ ମଧ୍ୟରେ ସୂର୍ଯ୍ୟ ଯେପରି ପ୍ରବେଶ କରନ୍ତି,ସେହିପରି ଲକ୍ଷ୍ମଣ ଅବାରିତଭାବରେ ସେ ଗୃହରେ ପ୍ରବେଶ କଲେ । ୧୮ । ଲକ୍ଷ୍ମଣ ଯାନ ଆସନ ଆଦି ରଖାହୋଇଥିବା, ସପ୍ତପ୍ରସ୍ଥରେ ବିଭକ୍ତ, ଅତି ପ୍ରଶସ୍ତ ଏବଂ ସମୃଦ୍ଧିମନ୍ତ ଅନ୍ତଃପୁରକୁ ଦେଖିଲେ ।୧୯। ସେ ସେଠାରେ ସୁନା ଏବଂ ରୂପାର ପଲଙ୍କ-ମାନ, ଅନେକ ଉତ୍କୃଷ୍ଟ ଆସନ,ଏବଂ ମୂଲ୍ୟବାନ୍ ବିଛଣାମାନ ରହିଥିବାର ଦେଖିଲେ ।

ପ୍ରବିଶନ୍ନେବ ସତତଂ ଶୁଶ୍ରାବ ମଧୁରସ୍ୱନମ୍ ।
ତନ୍ତ୍ରୀଗୀତସମାକୀର୍ଣଂ ସମତାଲପଦାକ୍ଷରମ୍ । ୨୧ ।
ବହ୍ୱୀଶ୍ଚ ବିବିଧାକାରା ରୂପଯୌବନଗର୍ବିତାଃ ।
ସ୍ତ୍ରିୟଃ ସୁଗ୍ରୀବଭବନେ ଦଦର୍ଶ ସ ମହାବଲଃ । ୨୨ ।
ଦୃଷ୍ଟ୍ୱାଭିଜନସଂପନ୍ନାସ୍ତତ୍ର ମାଲ୍ୟକୃତସ୍ରଜଃ ।
ବରମାଲ୍ୟକୃତବ୍ୟଗ୍ରା ଭୂଷଣୋତ୍ତମଭୂଷିତାଃ । ୨୩ ।
ନାତୃପ୍ତାନ୍ନାପି ଚାବ୍ୟଗ୍ରାନ୍ନାନୁଦାତ୍ତପରିଚ୍ଛଦାନ୍ ।
ସୁଗ୍ରୀବାନୁଚରାଂଶ୍ଚାପି ଲକ୍ଷୟାମାସ ଲକ୍ଷ୍ମଣଃ । ୨୪ ।
କୂଜିତଂ ନୂପୁରାଣାଂ ଚ କାଞ୍ଚୀନାଂ ନିଃସ୍ୱନଂ ତଥା ।
ସ ନିଶମ୍ୟ ତତଃ ଶ୍ରୀମାନ୍ ସୌମିତ୍ରିର୍ଲଜ୍ଜିତୋଽଭବତ୍ । ୨୫ ।
ରୋଷବେଗପ୍ରକୁପିତଃ ଶ୍ରୁତ୍ୱା ଚାଭରଣସ୍ୱନମ୍ ।
ଚକାର ଜ୍ୟାସ୍ୱନଂ ବୀରୋ ଦିଶଃ ଶବ୍ଦେନ ପୂରୟନ୍ ।୨୬।
ଚାରିତ୍ରେଣ ମହାବାହୁରପକୃଷ୍ଟଃ ସ ଲକ୍ଷ୍ମଣଃ ।
ତସ୍ଥାବେକାନ୍ତମାଶ୍ରିତ୍ୟ ରାମକୋପସମନ୍ୱିତଃ । ୨୭ ।
ତେନ ଚାପସ୍ୱନେନାଥ ସୁଗ୍ରୀବଃ ପ୍ଲବଗାଧିପଃ ।
ବିଜ୍ଞାୟାଗମନଂ ତ୍ରସ୍ତଃ ସଂଚଚାଲ ବରାସନାତ୍ ୨୮ ।

---

।୨୦। ପ୍ରବେଶ କରୁ କରୁ ଲକ୍ଷ୍ମଣ ତାଳଲୟଯୁକ୍ତ ସୀତାର ଏବଂ ବୀଣାର ମଧୁର ସଙ୍ଗୀତ ସ୍ୱର ଶୁଣିଲେ ।୨୧। ମହାବଳୀ ଲକ୍ଷ୍ମଣ ସୁଗ୍ରୀବଙ୍କ ଗୃହରେ ବହୁସଂଖ୍ୟକ ରୂପ-ଯୌବନଦୃପ୍ତ ନାନା ଆକାରର ରମଣୀମାନଙ୍କୁ ଦେଖିବାକୁ ପାଇଲେ । ୨୨ । ପୁଷ୍ପମାଳା ଧାରଣ କରିଥିବା ଏବଂ ଉତ୍ତମ ଭୂଷଣାଦିରେ ଭୂଷିତ ହୋଇଥିବା ସ୍ତ୍ରୀମାନଙ୍କୁ ଦେଖିସାରି ଲକ୍ଷ୍ମଣ ସୁଗ୍ରୀବଙ୍କର ଅନୁଚରମାନଙ୍କୁ ମଧ୍ୟ ଦେଖିଲେ । ସେମାନେ କେହି ଅତୃପ୍ତ ବା ଅବ୍ୟଗ୍ର ନ ଥିଲେ ବା କେହି ସାଧାରଣ ବସ୍ତ୍ରାଦି ପିନ୍ଧି ନ ଥିଲେ । ୨୩-୨୪ । ନୂପୁର ଏବଂ କଟିମେଖଳାର ଶବ୍ଦ ଶୁଣି ଶ୍ରୀମାନ୍ ଲକ୍ଷ୍ମଣ ଲଜ୍ଜା ଅନୁଭବ କଲେ । ୨୫ । ରୋଷକୁପିତ ଲକ୍ଷ୍ମଣ ଅଳଙ୍କାରର ଶବ୍ଦ ଶୁଣି ଧନୁର ଟଙ୍କାର କଲେ । ସେ ଶବ୍ଦରେ ଦଶ ଦିଗ ପ୍ରତିଧ୍ୱନିତ ହୋଇଉଠିଲା ।୨୬। ଶିଷ୍ଟତା ରକ୍ଷାକରି ଲକ୍ଷ୍ମଣ ଆଉ ଅଗ୍ରସର ନ ହୋଇ ଏକାନ୍ତ ସ୍ଥାନ ଦେଖି ବସିପଡ଼ିଲେ । ସେତେବେଳେ ସେ ରାମଚନ୍ଦ୍ରଙ୍କ କ୍ରୋଧରେ କ୍ରୋଧଯୁକ୍ତ ଥିଲେ । ୨୭ । ଧନୁର ସେ ଟଙ୍କାରଶବ୍ଦଦ୍ୱାରା ବାନରରାଜ ସୁଗ୍ରୀବ ଲକ୍ଷ୍ମଣଙ୍କର ଆଗମନ କଥା ଜାଣିପାରି ଭୟରେ ରାଜ ଆସନରୁ ଉଠିପଡ଼ିଲେ ।୨୮। "ଅଙ୍ଗଦ ପୂର୍ବରୁ ମୋତେ ଯେଉଁ କଥା

ଅଙ୍ଗଦେନ ଯଥା ମହ୍ୟଂ ପୁରସ୍ତାତ୍ ପ୍ରତିବେଦିତମ୍ ।
ସୁବ୍ୟକ୍ତମେଷ ସଂପ୍ରାପ୍ତଃ ସୌମିତ୍ରିର୍ଭ୍ରାତୃବତ୍ସଳଃ । ୨୯ ।
ଅଙ୍ଗଦେନ ସମାଖ୍ୟାତୋ ଜ୍ୟାସ୍ୱନେନ ଚ ବାନରଃ ।
ବୁବୁଧେ ଲକ୍ଷ୍ମଣଂ ପ୍ରାପ୍ତଂ ମୁଖଂ ଚାସ୍ୟ ବ୍ୟଶୁଷ୍ୟତ । ୩୦ ।
ତତସ୍ତାରାଂ ହରିଶ୍ରେଷ୍ଠଃ ସୁଗ୍ରୀବଃ ପ୍ରିୟଦର୍ଶନାମ୍ ।
ଉବାଚ ହିତମବ୍ୟଗ୍ରସ୍ତ୍ରାସସଂଭ୍ରାନ୍ତମାନସଃ । ୩୧ ।
କିଂ ନୁ ତତ୍କାରଣଂ ସୁଭ୍ରୂ ପ୍ରକୃତ୍ୟା ମୃଦୁମାନସଃ ।
ସରୋଷ ଇବ ସଂପ୍ରାପ୍ତୋ ଯେନାୟଂ ରାଘବାନୁଜଃ । ୩୨ ।
କିଂ ପଶ୍ୟସି କୁମାରସ୍ୟ ରୋଷସ୍ଥାନମନିନ୍ଦିତେ ।
ନ ଖଲ୍ୱକାରଣେ କୋପମାହରେନ୍ନରପୁଙ୍ଗବଃ । ୩୩ ।
ଯଦ୍ୟସ୍ୟ କୃତମସ୍ମାଭିର୍ବୁଧ୍ୟସେ କିଂଚିଦପ୍ରିୟମ୍ ।
ତଦ୍‌ବୁଦ୍ଧ୍ୟା ସଂପ୍ରଧାର୍ଯାଶୁ କ୍ଷିପ୍ରମେବାଭିଧୀୟତାମ୍ । ୩୪ ।
ଅଥବା ସ୍ୱୟମେବୈନଂ ଦ୍ରଷ୍ଟୁମର୍ହସି ଭାମିନି ।
ବଚନୈଃ ସାନ୍ତ୍ୱଯୁକ୍ତୈଶ୍ଚ ପ୍ରସାଦୟିତୁମର୍ହସି । ୩୫ ।
ତ୍ୱଦ୍ଦର୍ଶନେ ବିଶୁଦ୍ଧାତ୍ମା ନ ସ କୋପଂ କରିଷ୍ୟତି ।
ନ ହି ସ୍ତ୍ରୀଷୁ ମହାତ୍ମାନଃ କ୍ୱଚିତ୍ କୁର୍ବନ୍ତି ଦାରୁଣମ୍ । ୩୬।

---

ଜଣାଇଥିଲା ନିଶ୍ଚୟ ସେହି ଭ୍ରାତୃବତ୍ସଳ ଲକ୍ଷ୍ମଣ ଆସି ପହଞ୍ଚିଗଲେଣି" । ୨୯ । ଅଙ୍ଗଦ କହିବାଦ୍ୱାରା ଏବଂ ଧନୁର ଟଙ୍କାର ଶବ୍ଦରୁ ସେ ବାନର ଲକ୍ଷ୍ମଣ ଉପସ୍ଥିତ ହୋଇଥିବା କଥା ଜାଣିପାରିଲେ ଏବଂ ତାଙ୍କର ମୁହଁ ଶୁଖିଗଲା । ୩୦ । ସୁଗ୍ରୀବଙ୍କର ମନ ଭୟରେ ବ୍ୟାକୁଳ ହୋଇଗଲା ଏବଂ ସେ ପ୍ରିୟଦର୍ଶନା ତାରାଙ୍କୁ ହିତବଚନ କହିଲେ । ୩୧ । "ହେ ସୁଭ୍ରୂ ! ଏହାଙ୍କର କ୍ରୋଧର କାରଣ କ'ଣ ? ସ୍ୱଭାବତଃ ଏହାଙ୍କର ମନ କୋମଳ ଅଟେ । କି କାରଣରୁ ଏ କ୍ରୋଧକରି ଆସିଛନ୍ତି ? । ୩୨ । ହେ ଅନିନ୍ଦିତେ ! କୁମାର ଲକ୍ଷ୍ମଣଙ୍କର କ୍ରୋଧର କାରଣ କ'ଣ ହୋଇପାରେ ବୋଲି ତୁମେ ବୁଝୁଛ ? ବିନାକାରଣରେ ତ ଏ ନରଶ୍ରେଷ୍ଠ କଦାପି କ୍ରୁଦ୍ଧ ହୁଅନ୍ତେ ନାହିଁ ? । ୩୩ । ଯଦି ତୁମେ ମନେକରୁଛ ଯେ ଆମେ ଏହାଙ୍କର କୌଣସି ଅପ୍ରିୟ କାର୍ଯ୍ୟ କରିଥାଉଁ, ତେବେ ବୁଦ୍ଧି ବିଚାରି ମୋତେ ଶୀଘ୍ର କହ । ୩୪ । ଅଥବା ହେ ଭାମିନି ! ତୁମେ ନିଜେ ଲକ୍ଷ୍ମଣଙ୍କ ପାଖକୁ ଯାଅ ଏବଂ କୋମଳବଚନଦ୍ୱାରା ତାଙ୍କୁ ପ୍ରସନ୍ନ କର । ୩୫ । ତୁମକୁ ଦେଖିଲେ ଶୁଦ୍ଧାତ୍ମା ଲକ୍ଷ୍ମଣ କଦାପି କୋପ କରିବେ ନାହିଁ; କାରଣ ମହାତ୍ମାମାନେ ସ୍ତ୍ରୀମାନଙ୍କପ୍ରତି କଦାପି ରୁକ୍ଷ ବ୍ୟବହାର କରନ୍ତି ନାହିଁ । ୩୬ ।

ତ୍ୱୟା ସାନ୍ତ୍ୱୈରୁପକ୍ରାନ୍ତଂ ପ୍ରସନ୍ନେନ୍ଦ୍ରିୟମାନସମ୍ ।
ତତଃ କମଲପତ୍ରାକ୍ଷଂ ଦ୍ରକ୍ଷ୍ୟାମ୍ୟହମରିଂଦମମ୍ । ୩୭ ।

ସା ପ୍ରସ୍ଖଲନ୍ତୀ ମଦବିହ୍ୱଲାକ୍ଷୀ
ପ୍ରଲମ୍ବକାଞ୍ଚୀଗୁଣହେମସୂତ୍ରା ।
ସୁଲକ୍ଷଣା ଲକ୍ଷ୍ମଣସଂନିଧାନମ୍
ଜଗାମ ତାରା ନମିତାଙ୍ଗୟଷ୍ଟିଃ । ୩୮ ।
ସ ତାଂ ସମୀକ୍ଷ୍ୟୈବ ହରୀଶପତ୍ନୀମ୍
ତସ୍ଥାବୁଦାସୀନତୟା ମହାତ୍ମା ।
ଅବାଙ୍ମୁଖୋଽଭୂନ୍ମନୁଜେନ୍ଦ୍ରପୁତ୍ରଃ
ସ୍ତ୍ରୀସଂନିକର୍ଷାଦ୍‌ବିନିବୃତ୍ତକୋପଃ । ୩୯ ।
ସା ପାନଯୋଗାଚ୍ଚ ନିବୃତ୍ତଲଜ୍ଜା
ଦୃଷ୍ଟିପ୍ରସାଦାଚ୍ଚ ନରେନ୍ଦ୍ରସୂନୋଃ ।
ଉବାଚ ତାରା ପ୍ରଣୟପ୍ରଗଲ୍‌ଭମ୍
ବାକ୍ୟଂ ମହାର୍ଥଂ ପରିସାନ୍ତ୍ୱରୂପମ୍ । ୪୦ ।
କିଂ କୋପମୂଲଂ ମନୁଜେନ୍ଦ୍ରପୁତ୍ର
କସ୍ତେ ନ ସଂତିଷ୍ଠତି ବାଙ୍‌ନିଦେଶେ ।
କଃ ଶୁଷ୍କବୃକ୍ଷଂ ବନମାପତନ୍ତମ୍
ଦବାଗ୍ନିମାସୀଦତି ନିର୍ବିଶଙ୍କଃ । ୪୧ ।

---

ତୁମେ କୋମଳ ବଚନଦ୍ୱାରା ତାଙ୍କୁ ଶାନ୍ତ କରିଦେଲେ ତାଙ୍କର ମନ ଖୁସି ହୋଇଯିବ ଏବଂ ତା'ପରେ ସେ କମଳଲୋଚନ ଶତ୍ରୁହନ୍ତା ଲକ୍ଷ୍ମଣଙ୍କୁ ମୁଁ ଯାଇ ଦେଖାକରିବ ।" । ୩୭ । ତାରାଙ୍କର ଅଣ୍ଟାର ସୁନାସୂତା ଲମ୍ବି ରହିଥିଲା । ନିଶାରେ ତାଙ୍କର ଆଖି ଘୂର୍ଣ୍ଣିହୋଇ ଯାଉଥିଲା । ସୁଲକ୍ଷଣା ତାରା ବିନମ୍ରଭାବରେ ଶରୀର ନତକରି ଲକ୍ଷ୍ମଣଙ୍କ ନିକଟକୁ ଗଲେ । ୩୮ । ବାନରରାଜଙ୍କ ସ୍ତ୍ରୀ ତାରାଙ୍କୁ ଦେଖି ମହାତ୍ମା ରାଜପୁତ୍ର ଲକ୍ଷ୍ମଣ ଉଦାସୀନଭାବରେ ମୁହଁକୁ ତଳକୁ ପୋତିଦେଲେ । ସ୍ତ୍ରୀଲୋକକୁ ନିକଟରେ ଦେଖି ତାଙ୍କର କୋପ ଶାନ୍ତ ହୋଇଗଲା । ୩୯ । ମଦ୍ୟପାନ କରିଥିବାହେତୁରୁ ଏବଂ ରାଜପୁତ୍ର ତାଙ୍କ ପ୍ରତି ପ୍ରସନ୍ନଭାବରେ ଦୃଷ୍ଟିପାତ କରିବାରୁ ତାଙ୍କର ଲଜ୍ଜା ଦୂର ହୋଇଗଲା । ତାରା ସ୍ନେହପୂର୍ଣ୍ଣ କ୍ରୋଧଶାନ୍ତକାରୀ ଅର୍ଥଯୁକ୍ତ ବଚନ କହିଲେ ।୪୦। "ରାଜପୁତ୍ର ! ଆପଣଙ୍କର କ୍ରୋଧର କାରଣ କଅଣ ? ତୁମ୍ଭର ଆଦେଶ କିଏ ପାଳନ ନ କରୁଛି ? ଶୁଷ୍କବୃକ୍ଷଯୁକ୍ତ ବନରେ ଦାବାଗ୍ନି ଲଗାଇ

ସ ତଥା ବଚନଂ ଶ୍ରୁତ୍ୱା ସାନ୍ତ୍ୱପୂର୍ବମଶଙ୍କିତଃ ।
ଭୂୟଃ ପ୍ରଣୟଦୃଷ୍ଟାର୍ଥଂ ଲକ୍ଷ୍ମଣୋ ବାକ୍ୟମବ୍ରବୀତ୍ । ୪୨ ।
କିମୟଂ କାମବୃତ୍ତସ୍ତେ ଲୁପ୍ତଧର୍ମାର୍ଥସଂଗ୍ରହଃ ।
ଭର୍ତା ଭର୍ତୃହିତେ ଯୁକ୍ତେ ନ ଚୈବମବବୁଧ୍ୟସେ । ୪୩ ।
ନ ଚିନ୍ତୟତି ରାଜ୍ୟାର୍ଥଂ ସୋଽସ୍ମାନ୍ ଶୋକପରାୟଣାନ୍ ।
ସାମାତ୍ୟପରିଷତ୍ତାରେ କାମମେବୋପସେବତେ । ୪୪ ।
ସ ମାସାଂଶ୍ଚତୁରଃ କୃତ୍ୱା ପ୍ରମାଣଂ ପ୍ଲବଗେଶ୍ୱରଃ ।
ବ୍ୟତୀତାଂସ୍ତାନ୍ମଦୋଦଗ୍ରୋ ବିହରନ୍ନାବବୁଧ୍ୟତେ । ୪୫ ।
ନ ହି ଧର୍ମାର୍ଥସିଦ୍ଧ୍ୟର୍ଥଂ ପାନମେବ ପ୍ରଶସ୍ୟତେ ।
ପାନାଦର୍ଥଶ୍ଚ କାମଶ୍ଚ ଧର୍ମଶ୍ଚ ପରିହୀୟତେ । ୪୬ ।
ଧର୍ମଲୋପୋ ମହାଂସ୍ତାବତ୍କୃତେ ହ୍ୟପ୍ରତିକୁର୍ବତଃ ।
ଅର୍ଥଲୋପଶ୍ଚ ମିତ୍ରସ୍ୟ ନାଶେ ଗୁଣବତୋ ମହାନ୍ । ୪୭ ।
ମିତ୍ରଂ ହ୍ୟର୍ଥଗୁଣଶ୍ରେଷ୍ଠଂ ସତ୍ୟଧର୍ମପରାୟଣମ୍ ।
ତଦ୍ଦ୍ୱୟଂ ତୁ ପରିତ୍ୟକ୍ତଂ ନ ତୁ ଧର୍ମେ ବ୍ୟବସ୍ଥିତମ୍ । ୪୮ ।

---

ଦେଇ କଏ ବା ନିଃଶଙ୍କ ହୋଇ ରହିଛି" ? । ୪୧ । ତାଙ୍କର ଶାନ୍ତିପୂର୍ଣ୍ଣ ବଚନ ଶୁଣି ଶଙ୍କାହୀନ ଲକ୍ଷ୍ମଣ ପୁଣି ପ୍ରୀତିପୂର୍ଣ୍ଣ ଅର୍ଥଯୁକ୍ତ ବଚନ କହିଲେ । ୪୨ । "ହେ ପତିଙ୍କର ହିତକାରିଣି ! ତୁମ୍ଭର ପତି କାମରେ ଆସକ୍ତ ହୋଇ ଧର୍ମ ଏବଂ ଅର୍ଥ ଲୋପ କରିଦେଇଅଛନ୍ତି, ଏ କଥା କ'ଣ ତୁମେ ବୁଝିପାରୁ ନାହିଁ ?।୪୩ । ହେ ତାରେ ! ସେ ରାଜ୍ୟପାଇଁ ଶୋକପୀଡ଼ିତ ଆମମାନଙ୍କ କଥା ମୋଟେ ଚିନ୍ତା କରୁନାହାନ୍ତି । ପାରିଷଦ-ବର୍ଗଙ୍କ ସହିତ ସମାନଭାବରେ କାମଭୋଗରେ ଲିପ୍ତ ରହିଛନ୍ତି । ୪୪ । ବାନରରାଜ ସୁଗ୍ରୀବ ଚାରିମାସ ସମୟ ନିଷ୍ଟିଯ୍ କରି ଜବାବ ଦେଇଥିଲେ । ସେ ଚାରିମାସ ବିତିଗଲାଣି, ଅଥଚ ମଦମତ୍ତ ବାନରରାଜ ବିହାରରେ ମତ୍ତ ରହି ସେ କଥା କିଛି ବୁଝି ନାହାନ୍ତି । ୪୫ । ଧର୍ମ ଏବଂ ଅର୍ଥର ସିଦ୍ଧି ନିମନ୍ତେ ମଦ୍ୟପାନ ପ୍ରଶଂସିତ ନୁହେ । ମଦ୍ୟପାନଦ୍ୱାରା ଅର୍ଥ, କାମ ଏବଂ ଧର୍ମ ନଷ୍ଟ ହୋଇଯାଏ । ୪୬ । କରାଯାଇଥିବା ଉପକାରର ପ୍ରତ୍ୟୁପକାର ନ କରିବା ବ୍ୟକ୍ତିର ଧର୍ମ ଲୋପ ହୁଏ ଏବଂ ଗୁଣବାନ୍ ମିତ୍ରର ବିନାଶ ହେବାଦ୍ୱାରା ଅତ୍ୟଧିକ ଅର୍ଥହାନି ମଧ୍ୟ ହୁଏ । ୪୭ । ମିତ୍ରର ଅର୍ଥକୁ (କାର୍ଯ୍ୟକୁ) ଶ୍ରେଷ୍ଠ ବିବେଚନା କରିବା ଏବଂ ସତ୍ୟ ଧର୍ମ ପାଳନ କରିବା, ଏ ଦୁଇଟି ମିତ୍ରର ପ୍ରଧାନ ଲକ୍ଷଣ ଅଟେ । ମାତ୍ର ତୁମ୍ଭର ପତି ଏ ଦୁଇଟିଯାକ ତ୍ୟାଗ କରିଅଛନ୍ତି ଏବଂ ଧର୍ମରେ ସ୍ଥିର ହୋଇ ରହି ନାହାନ୍ତି । ୪୮ । ସୁଗ୍ରୀବ ଏହିପରି କାର୍ଯ୍ୟ

ତଦେବଂ ପ୍ରସ୍ତୁତେ କାର୍ଯ୍ୟେ କାର୍ଯ୍ୟମସ୍ମାଭିରୁତ୍ତରମ୍ ।
ତତ୍କାର୍ଯ୍ୟଂ କାର୍ଯ୍ୟତତ୍ତ୍ୱଜ୍ଞେ ତ୍ୱମୁଦାହର୍ତ୍ତୁମର୍ହସି । ୪୯ ।
ସା ତସ୍ୟ ଧର୍ମାର୍ଥସମାଧିଯୁକ୍ତମ୍
ନିଶମ୍ୟ ବାକ୍ୟଂ ମଧୁରସ୍ୱଭାବମ୍ ।
ତାରା ଗତାର୍ଥେ ମନୁଜେନ୍ଦ୍ରକାର୍ଯ୍ୟେ
ବିଶ୍ୱାସଯୁକ୍ତଂ ତମୁବାଚ ଭୂୟଃ । ୫୦ ।
ନ କୋପକାଲଃ କ୍ଷିତିପାଲପୁତ୍ର
ନ ଚାପି କୋପଃ ସ୍ୱଜନେ ବିଧେୟଃ ।
ତଦର୍ଥକାମସ୍ୟ ଜନସ୍ୟ ତସ୍ୟ
ପ୍ରମାଦମପ୍ୟର୍ହସି ବୀର ସୋଢୁମ୍ । ୫୧ ।
କୋପଂ କଥଂ ନାମ ଗୁଣପ୍ରକୃଷ୍ଟଃ
କୁମାର କୁର୍ଯ୍ୟାଦପକୃଷ୍ଟସତ୍ତ୍ୱେ ।
କସ୍ତ୍ୱଦ୍ୱିଧଃ କୋପବଶଂ ହି ଗଚ୍ଛେ-
ତ୍ସତ୍ତ୍ୱାବରୁଦ୍ଧସ୍ତପସଃ ପ୍ରସୂତିଃ । ୫୨ ।
ଜାନାମି କୋପଂ ହରିବୀରବନ୍ଧୋ-
ର୍ଜାନାମି କାର୍ଯ୍ୟସ୍ୟ ଚ କାଲସଙ୍ଗମ୍ ।

---

କରିଅଛନ୍ତି; ସୁତରାଂ ଆମକୁ ତାହାର ଉପଯୁକ୍ତ ଉତ୍ତର ଦେବାକୁ ହେବ । ତୁମେ କାର୍ଯ୍ୟତତ୍ତ୍ୱ ଭଲକରି ଜାଣ; ଏତଏବ ତୁମେ ହିଁ କହ ଦେଖି, ଆମର ଏ କ୍ଷେତ୍ରରେ କ'ଣ କରିବା ଉଚିତ" ।୪୯। ଧର୍ମ, ଅର୍ଥ ଏବଂ ଚିନ୍ତାଯୁକ୍ତତାଯୁକ୍ତ ମଧୁରସ୍ୱଭାବବ୍ୟଞ୍ଜକ ଲକ୍ଷ୍ମଣଙ୍କର ବଚନ ଶୁଣି ତାରା ରାମଚନ୍ଦ୍ରଙ୍କ କାର୍ଯ୍ୟବିଷୟରେ ପୁନର୍ବାର ବିଶ୍ୱସ୍ତ ବଚନ କହିଲେ ।୫୦। "ହେ ରାଜପୁତ୍ର ! ଏ କ୍ରୋଧ କରିବାର ସମୟ ନୁହେ, ଆପଣା ଲୋକପ୍ରତି କୋପକରିବା ଉଚିତ ମଧ୍ୟ ନୁହେ । ସୁଗ୍ରୀବ ତୁମ୍ଭର ହିତରୁ ହିଁ ନିଜର ଅର୍ଥ ଏବଂ କାମ ଲାଭକରିଅଛନ୍ତି; ସୁତରାଂ ତାଙ୍କର ଭ୍ରମପ୍ରମାଦକୁ ମଧ୍ୟ ତୁମ୍ଭର କ୍ଷମା କରିବା ଉଚିତ । ୫୧ । ହେ କୁମାର ! ଉତ୍କୃଷ୍ଟ ଗୁଣସମ୍ପନ୍ନ ବ୍ୟକ୍ତି ନୀଚ ପ୍ରାଣୀପ୍ରତି କେବେ କ୍ରୋଧ କରେ କି ? ବିଶୁଦ୍ଧ ସତ୍ତ୍ୱମୟ ପୁରୁଷ ତପସ୍ୟାରୁ ଉତ୍ପନ୍ନ ହୋଇଥାଏ; ସୁତରାଂ ତୁମପରି ବ୍ୟକ୍ତି କି କେବେ କ୍ରୋଧର ବଶୀଭୂତ ହୁଏ ? ।୫୨। ବାନର-ବୀରଙ୍କର ବନ୍ଧୁ (ରାମଚନ୍ଦ୍ର)ଙ୍କର କୋପର କାରଣ ମୁଁ ଜାଣୁଛି, ତାଙ୍କ କାର୍ଯ୍ୟପାଇଁ ନିରୂପିତ ସମୟରେ ଯେ ବିଳମ୍ବ ଘଟିଛି ତାହା ମଧ୍ୟ ମୁଁ ଜାଣୁଛି;

ଜାନାମି କାର୍ଯଂ ତ୍ୱୟି ଯତ୍କୃତଂ ନ-
ସ୍ତଚ୍ଚାପି ଜାନାମି ଯଦତ୍ର କାର୍ଯମ୍ । ୫୩ ।
ତଚ୍ଚାପି ଜାନାମି ତଥାବିଷହ୍ୟମ୍
ବଲଂ ନରଶ୍ରେଷ୍ଠ ଶରୀରଜସ୍ୟ ।
ଜାନାମି ଯସ୍ମିଂଶ୍ଚ ଜନେଽବବଦ୍ଧମ୍
କାମେନ ସୁଗ୍ରୀବମସକ୍ତମଦ୍ୟ । ୫୪ ।
ନ କାମତନ୍ତ୍ରେ ତବ ବୁଦ୍ଧିରସ୍ତି
ତ୍ୱଂ ବୈ ଯଥା ମନ୍ୟୁବଶଂ ପ୍ରପନ୍ନଃ ।
ନ ଦେଶକାଲୌ ହି ଯଥାର୍ଥଧର୍ମା-
ବବେକ୍ଷତେ କାମରତିର୍ମନୁଷ୍ୟଃ । ୫୫ ।
ତଂ କାମବୃତ୍ତଂ ମମ ସଂନିକୃଷ୍ଟମ୍
କାମାଭିଯୋଗାଚ୍ଚ ବିମୁକ୍ତଲଜ୍ଜମ୍ ।
କ୍ଷମସ୍ୱ ତାବତ୍ପରବୀରହନ୍ତ-
ସ୍ତ୍ୱଦ୍‌ଭ୍ରାତରଂ ବାନରବଂଶନାଥମ୍ । ୫୬ ।
ମହର୍ଷୟୋ ଧର୍ମତପୋଽଭିରାମାଃ
କାମାନୁକାମାଃ ପ୍ରତିବଦ୍ଧମୋହାଃ ।

---

ଆମମାନଙ୍କର ଯେଉଁ କାର୍ଯ୍ୟ ତୁମ ଉପରେ ନିର୍ଭର କରୁଥିଲା ତାହା ତୁମେ ସମ୍ପାଦନ କରିଅଛ ଏ କଥା ମଧ୍ୟ ମୁଁ ଜାଣୁଛି । ଏ ବିଷୟରେ ଆମମାନଙ୍କର ଯାହା କର୍ତ୍ତବ୍ୟ କରିବାର ରହିଛି ତାହା ମଧ୍ୟ ମୁଁ ଜାଣୁଛି ।୫୩। ହେ ନରଶ୍ରେଷ୍ଠ ! ଶରୀରଜ କନ୍ଦର୍ପର ବଳ ମଧ୍ୟ ମୁଁ ଜାଣୁଛି । କାମଦେବରୁ ସୁଗ୍ରୀବ ଯାହା ପ୍ରତି ଆସକ୍ତ ହୋଇଅଛନ୍ତି ତାହା ମଧ୍ୟ ମୁଁ ଜାଣୁଛି ଏବଂ ଆଜି ସୁଗ୍ରୀବ ଯେ ଆସକ୍ତିରହିତ ହୋଇଗଲେଣି ଏ କଥା ମଧ୍ୟ ମୁଁ ଜାଣୁଛି । ୫୪ । ତୁମେ ଯେପରି କ୍ରୋଧର ବଶୀଭୂତ ହୋଇପଡ଼ିଅଛ ସେଥିରୁ ଜଣାଯାଉଛି ଯେ କାମଶାସ୍ତ୍ରରେ ତୁମ୍ଭର କୌଣସି ଜ୍ଞାନ ନାହିଁ । କାମାସକ୍ତ ବ୍ୟକ୍ତି ଯେପରି ଦେଶକାଳର ବିଚାର କରେନାହିଁ, ସେହିପରି ଅର୍ଥ ଏବଂ ଧର୍ମର ବିଚାର ମଧ୍ୟ କରେ ନାହିଁ । ୫୫ । ଅତଏବ ମୋ ନିକଟରେ ବିଦ୍ୟମାନ କାମାସକ୍ତ ଏବଂ କାମବଶରୁ ଲଜ୍ଜାହୀନ ହୋଇପଡ଼ିଥିବା ନିଜର ଭାଇ ବାନରରାଜଙ୍କୁ ତୁମେ କ୍ଷମା କର । ୫୬ । ଧର୍ମ ଏବଂ ତପସ୍ୟାଦ୍ୱାରା ଯେ ଶୋଭିତ ଏବଂ ଯେଉଁମାନେ ମୋହକୁ ଦୂରକରି ଦେଇଛନ୍ତି, ସେହି ମହର୍ଷିମାନେ ମଧ୍ୟ କାମାସକ୍ତ ହୋଇପଡ଼ନ୍ତି । ଏ ରାଜା ତ

ଅସ୍ମିଂ ପ୍ରକୃତ୍ୟା ଚପଲଃ କପିସ୍ତୁ
କଥଂ ନ ସଜ୍ଜେତ ସୁଖେଷୁ ରାଜା । ୫୬ ।
ଇତ୍ୟେବମୁକ୍ତ୍ୱା ବଚନଂ ମହାର୍ଥମ୍
ସା ବାନରୀ ଲକ୍ଷ୍ମଣମପ୍ରମେୟମ୍ ।
ପୁନଃ ସଖେଦଂ ମଦବହ୍ୱଲାକ୍ଷୀ
ଭର୍ତ୍ତୁର୍ହିତଂ ବାକ୍ୟମିଦଂ ବଭାଷେ । ୫୮ ।
ଉଦ୍ୟୋଗସ୍ତୁ ଚିରାଜ୍ଞପ୍ତଃ ସୁଗ୍ରୀବେଣ ନରୋତ୍ତମ ।
କାମସ୍ୟାପି ବଧେୟେନ ତବାର୍ଥପ୍ରତିସାଧନେ । ୫୯ ।
ଆଗତା ହି ମହାବୀର୍ଯା ହରୟଃ କାମରୂପିଣଃ ।
କୋଟୀଃ ଶତସହସ୍ରାଣି ନାନାନଗନିବାସିନଃ । ୬୦ ।
ତଦାଗଚ୍ଛ ମହାବାହୋ ଚାରିତ୍ରଂ ରକ୍ଷିତଂ ତ୍ୱୟା ।
ଅଚ୍ଛଲଂ ମିତ୍ରଭାବେନ ସତାଂ ଦାରାବଲୋକନମ୍ । ୬୧ ।
ତାରୟା ଚାଭ୍ୟନୁଜ୍ଞାତସ୍ତ୍ୱରୟା ବାପି ଚୋଦିତଃ ।
ପ୍ରବିବେଶ ମହାବାହୁରଭ୍ୟନ୍ତରମରିଂଦମଃ । ୬୨ ।
ତତଃ ସୁଗ୍ରୀବମାସୀନଂ କାଞ୍ଚନେ ପରମାସନେ ।
ମହାର୍ହାସ୍ତରଣୋପେତେ ଦଦର୍ଶାଦିତ୍ୟସଂନିଭମ୍ । ୬୩ ।

---

ବାନର, ସୁତରାଂ ଚପଳପ୍ରକୃତି । ତେବେ ଏ ଯେ ସୁଖରେ ଆସକ୍ତ ହୋଇ-ପଡ଼ିଲେ ଏଥିରେ ଆଶ୍ଚର୍ଯ୍ୟ କଅଣ ?" । ୫୬ । ସେ ବାନରୀ ଅତୁଳମାୟୁ ଲକ୍ଷ୍ମଣଙ୍କୁ ଏହି ଅର୍ଥଯୁକ୍ତ ବଚନ କହି ପତିଙ୍କର କଲ୍ୟାଣ ନିମନ୍ତେ ପୁଣି ଖେଦପୂର୍ବକ କହିଲେ । ସେତେବେଳେ ତାଙ୍କର (ତାରଙ୍କର) ଆଖି ନିଶାରେ ଢୋଳାଇ ହୋଇପଡ଼ୁଥିଲା ।୫୮।"ହେ ନରୋତ୍ତମ ! କାମର ବଶୀଭୂତ ହୋଇଥିଲେ ମଧ୍ୟ ସୁଗ୍ରୀବ ତୁମ୍ଭ କାର୍ଯ୍ୟସାଧନ ନିମନ୍ତେ ବହୁତ ଆଗରୁ ଉଦ୍‌ଯୋଗ କରିବାର ଆଜ୍ଞା ଦେଇଛନ୍ତି । ୫୯ । ଇଚ୍ଛା-ନୁସାରେ ବିଭିନ୍ନରୂପ ଧାରଣ କରିବାକୁ ସମର୍ଥ, ବିଭିନ୍ନ ପର୍ବତରେ ବାସକରୁଥିବା ଶତସହସ୍ର ଏବଂ କୋଟିକୋଟି ମହାବଳବାନ୍ ବାନର ଆସି ଉପସ୍ଥିତ ହେଲେଣି ।୬୦। ଅତଏବ ହେ ମହାବାହୋ ! ତୁମେ ଶିଷ୍ଟାଚାର ପାଳନ କରିଅଛ, ବର୍ତ୍ତମାନ ଆସ । ମିତ୍ରଭାବରେ ସଜ୍ଜନଲୋକର ପରସ୍ତ୍ରୀକୁ ଦେଖିବା ଦୋଷାବହ ନୁହେଁ" । ୬୧ । ତାରଙ୍କର ଅନୁମତି ପାଇ ଏବଂ ତାଙ୍କଦ୍ୱାରା ସତ୍ୱର ପ୍ରେରିତ ହୋଇ ଶତ୍ରୁହନ୍ତା ମହାବାହୁ ଲକ୍ଷ୍ମଣ (ଅନ୍ତଃପୁର) ଭିତରକୁ ପ୍ରବେଶ କଲେ । ୬୨ । ମୂଲ୍ୟବାନ୍ ଆବରଣବସ୍ତ୍ରଦ୍ୱାରା ଆଚ୍ଛାଦିତ ସୁନାର ଆସନ ଉପରେ ସୂର୍ଯ୍ୟସଦୃଶ ସୁଗ୍ରୀବ

ଦିବ୍ୟାଭରଣଚିତ୍ରାଙ୍ଗଂ ଦିବ୍ୟରୂପଂ ଯଶସ୍ୱିନମ୍ ।
ଦିବ୍ୟମାଲ୍ୟାମ୍ବରଧରଂ ମହେନ୍ଦ୍ରମିବ ଦୁର୍ଜୟମ୍ ।୭୪ ।
ଦିବ୍ୟାଭରଣମାଲାଭିଃ ପ୍ରମଦାଭିଃ ସମନ୍ତତଃ ।
ସଂରବ୍ଧତରରକ୍ତାକ୍ଷୋ ବଭୂବାନ୍ତକସଂନିଭଃ । ୭୫ ।
ରୁମାଂ ତୁ ବୀରଃ ପରିରଭ୍ୟ ଗାଢ଼ମ୍
ବରାସନସ୍ଥୋ ବରହେମବର୍ଣ୍ଣଃ ।
ଦଦର୍ଶ ସୌମିତ୍ରିମଦୀନସତ୍ତ୍ୱମ୍
ବିଶାଳନେତ୍ରଃ ସ ବିଶାଳନେତ୍ରମ୍ । ୭୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ତାରାସାନ୍ତ୍ୱବଚନମ୍
ନାମ ତ୍ରୟସ୍ତ୍ରିଂଶଃ ସର୍ଗଃ

---

ବସିଥିବାର ଲକ୍ଷ୍ମଣ ଦେଖିଲେ । ୭୩ । ଦିବ୍ୟ ଆଭରଣଦ୍ୱାରା ତାହାଙ୍କର ଶରୀର ବିଚିତ୍ର ଶୋଭା ଧାରଣ କରିଥିଲା । ଇନ୍ଦ୍ରସଦୃଶ ଦୁର୍ଜେୟ ଯଶସ୍ୱୀ ସୁଗ୍ରୀବ ଦିବ୍ୟ-ମାଲ୍ୟ ଏବଂ ବସ୍ତ୍ର ପରିଧାନ କରିଥିଲେ । ୭୪ । ଦିବ୍ୟ ଅଳଙ୍କାର ଏବଂ ମାଳା-ଧାରଣକାରିଣୀ ରମଣୀମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ସୁଗ୍ରୀବ ଯମରାଜସଦୃଶ ଦେଖାଯାଉଥିଲେ ଏବଂ ତାଙ୍କର ଚକ୍ଷୁ ରକ୍ତବର୍ଣ୍ଣ ହୋଇଥିଲା । ୭୫ । ଉତ୍କୃଷ୍ଟ ସୁବର୍ଣ୍ଣବର୍ଣ୍ଣଯୁକ୍ତ, ଉତ୍ତମ ଆସନରେ ଉପବିଷ୍ଟ, ବିଶାଳନେତ୍ର, ସୁଗ୍ରୀବ ନିଜର ସ୍ତ୍ରୀ ରୁମାଙ୍କୁ ଗାଢ଼ଭାବରେ ଆଲିଙ୍ଗନ କରି ବିଶାଳନେତ୍ର ତେଜୋଯୁକ୍ତ ଲକ୍ଷ୍ମଣଙ୍କୁ ଦେଖିଲେ । ୭୬ ।

---

# ଚତୁସ୍ତ୍ରିଂଶଃ ସର୍ଗଃ

## ସୁଗ୍ରୀବତର୍ଜନମ୍

ତମପ୍ରତିହତଂ କ୍ରୁଦ୍ଧଂ ପ୍ରବିଷ୍ଟଂ ପୁରୁଷର୍ଷଭମ୍ ।
ସୁଗ୍ରୀବୋ ଲକ୍ଷ୍ମଣଂ ଦୃଷ୍ଟ୍ୱା ବଭୂବ ବ୍ୟଥିତେନ୍ଦ୍ରିୟଃ । ୧ ।
କ୍ରୁଦ୍ଧଂ ନିଃଶ୍ୱସମାନଂ ତଂ ପ୍ରଦୀପ୍ତମିବ ତେଜସା ।
ଭ୍ରାତୁର୍ବ୍ୟସନସଂତପ୍ତଂ ଦୃଷ୍ଟ୍ୱା ଦଶରଥାତ୍ମଜମ୍ । ୨ ।
ଉତ୍ପପାତ ହରିଶ୍ରେଷ୍ଠୋ ହିତ୍ୱା ସୌବର୍ଣମାସନମ୍ ।
ମହାନ୍ମହେନ୍ଦ୍ରସ୍ୟ ଯଥା ସ୍ୱଲଂକୃତ ଇବ ଧ୍ୱଜଃ । ୩ ।
ଉତ୍ପତନ୍ତମନୂତ୍ପେତୁ ରୁମାପ୍ରଭୃତୟଃ ସ୍ତ୍ରିୟଃ ।
ସୁଗ୍ରୀବଂ ଗଗନେ ପୂର୍ଣଂ ଚନ୍ଦ୍ରଂ ତାରାଗଣା ଇବ । ୪ ।
ସଂରକ୍ତନୟନଃ ଶ୍ରୀମାନ୍ ସଂଚଚାର କୃତାଞ୍ଜଳିଃ ।
ବଭୂବାବସ୍ଥିତସ୍ତତ୍ର କଲ୍ପବୃକ୍ଷୋ ମହାନିବ । ୫ ।
ରୁମାଦ୍ୱିତୀୟଂ ସୁଗ୍ରୀବଂ ନାରୀମଧ୍ୟଗତଂ ସ୍ଥିତମ୍ ।
ଅବ୍ରବୀଲ୍ଲକ୍ଷ୍ମଣଃ କ୍ରୁଦ୍ଧଃ ସତାରଂ ଶଶିନଂ ଯଥା । ୬ ।

---

## ୩୪ଶ ସର୍ଗ

(ସୁଗ୍ରୀବଙ୍କୁ ଧମକ)

କ୍ରୁଦ୍ଧ ପୁରୁଷଶ୍ରେଷ୍ଠ ଲକ୍ଷ୍ମଣଙ୍କୁ ଅବାଧଭାବରେ ପ୍ରବେଶ କରିବାର ଦେଖି ସୁଗ୍ରୀବଙ୍କର ସମସ୍ତ ଇନ୍ଦ୍ରିୟ ବ୍ୟାକୁଳ ହୋଇଉଠିଲା । ୧ । କ୍ରୁଦ୍ଧଭାବରେ ଖର ନିଃଶ୍ୱାସ ପକାଉଥିବା, ତେଜୋଦୀପ୍ତ ଏବଂ ଭ୍ରାତୃଦୁଃଖକାତର ଲକ୍ଷ୍ମଣଙ୍କୁ ଦେଖି ବାନରରାଜ ସୁଗ୍ରୀବ ସ୍ୱର୍ଣ୍ଣନିର୍ମିତ ଆସନ ତ୍ୟାଗ କରି ଇନ୍ଦ୍ରଙ୍କ ଅଳଙ୍କୃତ ଧ୍ୱଜାସଦୃଶ ଉଭା ହୋଇଗଲେ । ୨-୩ । ଆକାଶରେ ପୂର୍ଣ୍ଣଚନ୍ଦ୍ର ଉଦିତ ହେବା ପଛେ ପଛେ ତାରାମାନେ ଯେପରି ଉଦିତ ହୁଅନ୍ତି, ସେହିପରି ସୁଗ୍ରୀବ ଉଠିବା ପଛେ ପଛେ ରୁମା ପ୍ରଭୃତି ସ୍ତ୍ରୀମାନେ ମଧ୍ୟ ଉଠି ଠିଆ ହୋଇଗଲେ । ୪ । ରକ୍ତଲୋଚନ ଶ୍ରୀମାନ୍ ସୁଗ୍ରୀବ ହାତଯୋଡ଼ି ଅଗ୍ରସର ହେଲେ ଏବଂ ବିଶାଳ କଳ୍ପବୃକ୍ଷସଦୃଶ ଆସି ଉଭା ହେଲେ । ୫ । ତାରାଯୁକ୍ତ ଚନ୍ଦ୍ରସଦୃଶ ସ୍ତ୍ରୀମାନଙ୍କ ମଧ୍ୟରେ ରୁମାଙ୍କ ସହିତ ଉଭା

ସତ୍ତ୍ୱାଭିଜନସଂପନ୍ନଃ ସାନୁକ୍ରୋଶୋ ଜିତେନ୍ଦ୍ରିୟଃ ।
କୃତଜ୍ଞଃ ସତ୍ୟବାଦୀ ଚ ରାଜା ଲୋକେ ମହୀୟତେ । ୭ ।
ଯସ୍ତୁ ରାଜା ସ୍ଥିତୋଽଧର୍ମେ ମିତ୍ରାଣାମୁପକାରିଣାମ୍ ।
ମିଥ୍ୟା ପ୍ରତିଜ୍ଞାଂ କୁରୁତେ କୋ ନୃଶଂସତରସ୍ତତଃ । ୮ ।
ଶତମଶ୍ୱାନୃତେ ହନ୍ତି ସହସ୍ରଂ ତୁ ଗବାନୃତେ ।
ଆତ୍ମାନଂ ସ୍ୱଜନଂ ହନ୍ତି ପୁରୁଷଃ ପୁରୁଷାନୃତେ । ୯ ।
ପୂର୍ବଂ କୃତାର୍ଥୋ ମିତ୍ରାଣାଂ ନ ତତ୍ପ୍ରତିକରୋତି ଯଃ ।
କୃତଘ୍ନଃ ସର୍ବଭୂତାନାଂ ସ ବଧ୍ୟଃ ପ୍ଲବଗେଶ୍ୱର । ୧୦ ।
ଗୀତୋଽୟଂ ବ୍ରହ୍ମଣା ଶ୍ଳୋକଃ ସର୍ବଲୋକନମସ୍କୃତଃ ।
ଦୃଷ୍ଟ୍ୱା କୃତଘ୍ନଂ କ୍ରୁଦ୍ଧେନ ତନ୍ନିବୋଧ ପ୍ଲବଂଗମ ।୧୧ ।
ଗୋଘ୍ନେ ଚୈବ ସୁରାପେ ଚ ଚୌରେ ଭଗ୍ନବ୍ରତେ ତଥା ।
ନିଷ୍କୃତିର୍ବିହିତା ସଦ୍ଭିଃ କୃତଘ୍ନେ ନାସ୍ତି ନିଷ୍କୃତିଃ । ୧୨ ।
ଅନାର୍ଯ୍ୟସ୍ତ୍ୱଂ କୃତଘ୍ନଶ୍ଚ ମିଥ୍ୟାବାଦୀ ଚ ବାନର ।
ପୂର୍ବଂ କୃତାର୍ଥୋ ରାମସ୍ୟ ନ ତତ୍ପ୍ରତିକରୋଷି ଯତ୍ । ୧୩ ।

---

ହୋଇଥିବା ସୁଗ୍ରୀବଙ୍କୁ କ୍ରୁଦ୍ଧ ଲକ୍ଷ୍ମଣ କହିଲେ ।୬। "ବଳବାନ୍, କୁଳୀନ, ଦୟାଳୁ, ଜିତେନ୍ଦ୍ରିୟ, କୃତଜ୍ଞ ଏବଂ ସତ୍ୟବାଦୀ ରାଜା ଜଗତରେ ମହତ୍ତ୍ୱ ଲାଭକରେ । ୭। ଯେଉଁ ରାଜା ଅଧର୍ମରେ ସ୍ଥିତ ଅଟେ, ଉପକାରୀ ମିତ୍ରମାନଙ୍କ ସହିତ ପ୍ରତିଜ୍ଞାକୁ ଯେ ମିଥ୍ୟା କରେ, ତାହାଠାରୁ ବଳି ନୃଶଂସ ଆଉ କିଏ ଅଛି ?। ୮ । ଘୋଡ଼ା ବିଷୟରେ ମିଥ୍ୟା କହିବାଦ୍ୱାରା ଶତ ଘୋଟକ ମାରିବାର ପାପ ହୁଏ, ଗୋରୁ ସମ୍ବନ୍ଧରେ ମିଥ୍ୟା କହିବାଦ୍ୱାରା ସହସ୍ର ଗୋବଧର ପାପ ହୁଏ ଏବଂ ପୁରୁଷ ସମ୍ବନ୍ଧରେ ମିଥ୍ୟା କହିବାଦ୍ୱାରା ମନୁଷ୍ୟ ନିଜର ଏବଂ ସ୍ୱଜନମାନଙ୍କର ବିନାଶସାଧନ କରେ । ୯ । ହେ ବାନରରାଜ ! ଯେଉଁ ବ୍ୟକ୍ତି ପ୍ରଥମେ ମିତ୍ରଦ୍ୱାରା ନିଜର କାର୍ଯ୍ୟସିଦ୍ଧି କରାଇ ନେଇ ତାହାର ପ୍ରତ୍ୟୁପକାର ନ କରେ, ସେ କୃତଘ୍ନ ଅଟେ ଏବଂ ସେ ସମସ୍ତ ପ୍ରାଣୀମାନଙ୍କଦ୍ୱାରା ବଧ୍ୟ ଅଟେ । ୧୦ । କୃତଘ୍ନକୁ ଦେଖି କ୍ରୁଦ୍ଧଭାବରେ ବ୍ରହ୍ମା ଏହି ସର୍ବଜନପୂଜ୍ୟ ଶ୍ଳୋକ ଗାନ କରିଥିଲେ; ହେ ବାନରରାଜ ତାହା ଶୁଣ । ୧୧ । ସଜ୍ଜନମାନେ ଗୋଘାତୀ, ମଦ୍ୟପାୟୀ, ଚୌର ଏବଂ ବ୍ରତଭଙ୍ଗକାରୀମାନଙ୍କର ପ୍ରାୟଶ୍ଚିତ ବିଧାନ କରିଛନ୍ତି; ମାତ୍ର କୃତଘ୍ନ ବିଷୟରେ କୌଣସି ନିଷ୍କୃତିର ଉପାୟ ନାହିଁ । ୧୨ । ହେ ବାନର ! ତୁମେ ପ୍ରଥମେ ରାମଙ୍କଦ୍ୱାରା କାର୍ଯ୍ୟସିଦ୍ଧି କରିନେଇ ତାଙ୍କ ପ୍ରତି ଯେ ପ୍ରତ୍ୟୁପକାର କରୁନାହଁ, ଅତଏବ ତୁମେ ଅନାର୍ଯ୍ୟ, କୃତଘ୍ନ ଓ ମିଥ୍ୟାବାଦୀ

ନନ୍ନାମ କୃତାର୍ଥେନ ତ୍ୱୟା ରାମସ୍ୟ ବାନର ।
ସୀତାୟା ମାର୍ଗଣେ ଯତ୍ନଃ କର୍ତବ୍ୟଃ କୃତମିଚ୍ଛତା । ୧୪ ।
ସ ତ୍ୱଂ ଗ୍ରାମ୍ୟେଷ୍ୱ ଭୋଗେଷୁ ସକ୍ତୋ ମିଥ୍ୟାପ୍ରତିଶ୍ରବଃ ।
ନ ତ୍ୱାଂ ରାମୋ ବିଜାନୀତେ ସର୍ପଂ ମଣ୍ଡୂକରାବଣମ୍ । ୧୫ ।
ମହାଭାଗେନ ରାମେଣ ପାପଃ କରୁଣବେଦ୍ଧିନା ।
ହରୀଣାଂ ପ୍ରାପିତୋ ରାଜ୍ୟଂ ତ୍ୱଂ ଦୁରାତ୍ମା ମହାତ୍ମନା । ୧୬ ।
କୃତଂ ଚେନ୍ନାଭିଜାନୀଷେ ରାଘବସ୍ୟ ମହାତ୍ମନଃ ।
ସଦ୍ୟସ୍ତ୍ୱଂ ନିଶିତୈର୍ବାଣୈର୍ହତୋ ଦ୍ରକ୍ଷ୍ୟସି ବାଳିନମ୍ । ୧୭ ।
ନ ସ ସଂକୁଚିତଃ ପନ୍ଥା ଯେନ ବାଳୀ ହତୋ ଗତଃ ।
ସମୟେ ତିଷ୍ଠ ସୁଗ୍ରୀବ ମା ବାଳିପଥମନ୍ୱଗାଃ । ୧୮ ।

ନ ନୂନମିକ୍ଷ୍ୱାକୁବରସ୍ୟ କାର୍ମୁକା-
ଚ୍ଚ୍ୟୁତାଂଶ୍ଚ ତାନ୍ ପଶ୍ୟସି ବଜ୍ରସଂନିଭାନ୍ ।
ତତଃ ସୁଖଂ ନାମ ନିଷେବସେ ସୁଖୀ
ନ ରାମକାର୍ଯଂ ମନସାପ୍ୟବେକ୍ଷସେ । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ କଷ୍କିନ୍ଧାକାଣ୍ଡେ ସୁଗ୍ରୀବତର୍ଜନମ୍ ନାମ ଚତୁସ୍ତ୍ରିଂଶଃ ସର୍ଗଃ

---

ଅର୍ଥ । ୧୩ । ହେ ବାନର ! ତୁମ୍ଭର କାର୍ଯ୍ୟସିଦ୍ଧି ହୋଇସାରିଛି । ଯଦି ମଙ୍ଗଳ ଚାହୁଁ ତେବେ ତୁମ୍ଭର ରାମଚନ୍ଦ୍ରଙ୍କ ନିମନ୍ତେ ସୀତାଙ୍କୁ ଅନ୍ୱେଷଣ କରିବାର ଯତ୍ନ କରିବା ଉଚିତ । ମାତ୍ର ତୁମେ ପ୍ରତିଜ୍ଞାକୁ ଅସତ୍ୟ କରି ସ୍ତ୍ରୀସଙ୍ଗଭୋଗରେ ଲିପ୍ତ ହୋଇ-ରହିଛ । ତୁମେ ଭେକସଦୃଶ ରବକରୁଥିବା ସର୍ପ ଅର୍ଥ—ଏକଥା ରାମଚନ୍ଦ୍ରଙ୍କୁ ଜଣା ନାହିଁ । ୧୪-୧୫ । ମହାଭାଗ ଦୟାଳୁ ମହାତ୍ମା ରାମଚନ୍ଦ୍ର, ପାପୀ ଦୁରାତ୍ମା ତୁମକୁ ବାନରମାନଙ୍କର ରାଜ୍ୟ ପ୍ରଦାନ କରିଅଛନ୍ତି । ୧୬ । ଯଦି ମହାତ୍ମା ରାମଚନ୍ଦ୍ରଙ୍କ ଉପକାରକୁ ତୁମେ ନ ବୁଝିବ, ତାହାହେଲେ ତୁମେ ସଙ୍ଗେ ସଙ୍ଗେ ତୀକ୍ଷ୍ଣ ଶରଦ୍ୱାରା ନିହତ ହୋଇ ବାଳୀଙ୍କୁ ଯାଇ ଭେଟିବ । ୧୭ । ମୃତ ବାଳୀ ଯେଉଁ ପଥରେ ଗମନ କରିଅଛନ୍ତି ସେ ପଥ ଅବରୁଦ୍ଧ ହୋଇଯାଇ ନାହିଁ । ସୁଗ୍ରୀବ ! ନିଜର ଜବାବ ରକ୍ଷାକର, ବାଳୀଙ୍କ ପଛା ଅନୁସରଣ କର ନାହିଁ । ୧୮ । ତୁମେ ରାମଙ୍କ କାର୍ଯ୍ୟ ମନମଧ୍ୟରେ ସୁଦ୍ଧା ଚିନ୍ତା କରୁ ନାହିଁ; ରାମଚନ୍ଦ୍ରଙ୍କ ଧନୁରୁ ନିର୍ଗତ ବଜ୍ରସଦୃଶ ଶରକୁ ତୁମେ ଦେଖିପାରୁ ନାହିଁ । ଯେଥିପାଇଁ ତୁମେ ଏପର୍ଯ୍ୟନ୍ତ ସୁଖୀ ହୋଇ ସୁଖଭୋଗରେ ଲିପ୍ତ ରହିଛ” । ୧୯ ।

# ପଞ୍ଚତ୍ରିଂଶଃ ସର୍ଗଃ

## ତାରାସମାଧାନମ୍

ତଥା ବ୍ରୁବାଣଂ ସୌମିତ୍ରିଂ ପ୍ରଦୀପ୍ତମେବ ତେଜସା ।
ଅବ୍ରବୀଲ୍ଲକ୍ଷ୍ମଣଂ ତାରା ତାରାଧିପନିଭାନନା । ୧ ।
ନୈବଂ ଲକ୍ଷ୍ମଣ ବକ୍ତବ୍ୟୋ ନାୟଂ ପରୁଷମର୍ହତି ।
ହରୀଣାମୀଶ୍ୱରଃ ଶ୍ରୋତୁଂ ତବ ବକ୍ତ୍ରାଦ୍ୱିଶେଷତଃ । ୨ ।
ନୈବାକୃତଜ୍ଞଃ ସୁଗ୍ରୀବୋ ନ ଶଠୋ ନାପି ଦାରୁଣଃ ।
ନୈବାନୃତକଥୋ ବୀର ନ ଜିହ୍ମଶ୍ଚ କପୀଶ୍ୱରଃ । ୩ ।
ଉପକାରଂ କୃତଂ ବୀରୋ ନାପ୍ୟୟଂ ବିସ୍ମୃତଃ କପିଃ ।
ରାମେଣ ବୀର ସୁଗ୍ରୀବୋ ଯଦନ୍ୟୈର୍ଦୁଷ୍କରଂ ରଣେ ।୪ ।
ରାମପ୍ରସାଦାତ୍କୀର୍ତ୍ତିଂ ଚ କପିରାଜ୍ୟଂ ଚ ଶାଶ୍ୱତମ୍ ।
ପ୍ରାପ୍ତବାନିହ ସୁଗ୍ରୀବୋ ରୁମାଂ ମାଂ ଚ ପରନ୍ତପ । ୫ ।
ସୁଦୁଃଖଂ ଶୟିତଃ ପୂର୍ବଂ ପ୍ରାପ୍ୟେଦଂ ସୁଖମୁତ୍ତମମ୍ ।
ପ୍ରାପ୍ତକାଲଂ ନ ଜାନୀତେ ବିଶ୍ୱାମିତ୍ରୋ ଯଥା ମୁନିଃ । ୬ ।

---

## ୩୫ଶ ସର୍ଗ

(ତାରଙ୍କର ବୁଝାଇ କହିବା)

ତେଜରେ ଜଳୁଥିବା ଲକ୍ଷ୍ମଣ ଏପରି କହିବା ପରେ ଚନ୍ଦ୍ରମୁଖୀ ତାରା ଲକ୍ଷ୍ମଣଙ୍କୁ କହିଲେ ।୧। "ହେ ଲକ୍ଷ୍ମଣ ତୁମ୍ଭର ଏପରି କହିବା ଉଚିତ ନୁହେଁ । ବାନରମାନଙ୍କର ରାଜା ବିଶେଷତଃ ତୁମ ମୁଖରୁ ଏପରି କଠୋର ବଚନ ଶୁଣିବାର ଉପଯୁକ୍ତ ନୁହନ୍ତି । ୨ । ସୁଗ୍ରୀବ ଅକୃତଜ୍ଞ, ଠକ ବା ନୃଶଂସ ନୁହନ୍ତି । ବାନରରାଜ ସୁଗ୍ରୀବ ଆଉ ଅଟନ୍ତି, ସେ ମିଥ୍ୟାବାଦୀ ବା କପଟୀ ନୁହନ୍ତି । ୩ । ରାମଚନ୍ଦ୍ର ଯୁଦ୍ଧରେ ଅନ୍ୟର ଦୁଷ୍କର ଯେଉଁ ଉପକାର ସାଧନ କରିଛନ୍ତି, ଆଉ ସୁଗ୍ରୀବ ତାହା ଭୁଲିଯାଇ ନାହାନ୍ତି । ୪ । ହେ ଶତ୍ରୁହନ୍ତଃ ! ରାମଙ୍କ ଅନୁଗ୍ରହରୁ ସୁଗ୍ରୀବ କୀର୍ତ୍ତି, ଚିରକାଳ ନିମନ୍ତେ ବାନରମାନଙ୍କର ରାଜ୍ୟ, ରୁମାଙ୍କୁ ଏବଂ ମୋତେ ବର୍ତ୍ତମାନ ପାଇଅଛନ୍ତି । ୫ । ପୂର୍ବେ ସୁଗ୍ରୀବ ଅତି ଦୁଃଖରେ ଶୋଉଥିଲେ, ସୁତରାଂ ବର୍ତ୍ତମାନ ଉତ୍ତମ ସୁଖ ଲାଭକରି, ପୂର୍ବେ ବିଶ୍ୱାମିତ୍ର ମୁନିଙ୍କର ଯେପରି ଘଟିଥିଲା, ସେହିପରି ସ୍ଥିରୀକୃତ ସମୟ ଉପସ୍ଥିତ ହୋଇଥିବାର ଜାଣିପାରି ନାହାନ୍ତି । ୬ । ହେ ଲକ୍ଷ୍ମଣ ! ମହାତ୍ମନ ଧର୍ମାତ୍ମା ବିଶ୍ୱାମିତ୍ର

ଘୃତାଚ୍ୟାଂ କିଲ ସଂସକ୍ତୋ ଦଶ ବର୍ଷାଣି ଲକ୍ଷ୍ମଣ ।
ଅହୋଽମନ୍ୟତ ଧର୍ମାତ୍ମା ବିଶ୍ୱାମିତ୍ରୋ ମହାମୁନିଃ । ୭ ।
ସ ହି ପ୍ରାପ୍ତଂ ନ ଜାନୀତେ କାଳଂ କାଳବିଦାଂ ବରଃ ।
ବିଶ୍ୱାମିତ୍ରୋ ମହାତେଜାଃ କିଂ ପୁନର୍ଯଃ ପୃଥଗ୍ ଜନଃ । ୮ ।
ଦେହଧର୍ମଂ ଗତସ୍ୟାସ୍ୟ ପରିଶ୍ରାନ୍ତସ୍ୟ ଲକ୍ଷ୍ମଣ ।
ଅବିତୃପ୍ତସ୍ୟ କାମେଷୁ ରାମଃ କ୍ଷନ୍ତୁମିହାର୍ହତି । ୯ ।
ନ ଚ ରୋଷବଶଂ ତାତ ଗନ୍ତୁମର୍ହସି ଲକ୍ଷ୍ମଣ ।
ନିଶ୍ଚୟାର୍ଥମବିଜ୍ଞାୟ ସହସା ପ୍ରାକୃତୋ ଯଥା । ୧୦ ।
ସତ୍ତ୍ୱଯୁକ୍ତା ହି ପୁରୁଷାସ୍ତ୍ୱଦ୍ୱିଧାଃ ପୁରୁଷର୍ଷଭ ।
ଅବିମୃଶ୍ୟ ନ ରୋଷସ୍ୟ ସହସା ଯାନ୍ତି ବଶ୍ୟତାମ୍ । ୧୧ ।
ପ୍ରସାଦୟେ ତ୍ୱାଂ ଧର୍ମଜ୍ଞ ସୁଗ୍ରୀବାର୍ଥଂ ସମାହିତା ।
ମହାନ୍ କ୍ରୋଧସମୁତ୍ପନ୍ନଃ ସଂରମ୍ଭସ୍ତ୍ୟଜ୍ୟତାମୟମ୍ । ୧୨ ।
ରୁମାଂ ମାଂ ଚାଙ୍ଗଦଂ ରାଜ୍ୟଂ ଧନଧାନ୍ୟପଶୂନ୍ ଚ ।
ରାମପ୍ରିୟାର୍ଥଂ ସୁଗ୍ରୀବସ୍ତ୍ୟଜେଦିତି ମତିର୍ମମ । ୧୩ ।

---

ଘୃତାଚୀଙ୍କ ପ୍ରତି ଆସକ୍ତ ହୋଇ ଦଶବର୍ଷ ସମୟକୁ ଗୋଟିଏ ଦିନପରି ଜ୍ଞାନକରିଥିଲେ । ।୭। କାଳଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ ମହାତେଜା ବିଶ୍ୱାମିତ୍ର ସେତେବେଳେ ନିରୂପିତ ସମୟ ଉପସ୍ଥିତ ହେବାର ଜାଣିପାରି ନ ଥିଲେ, ସେତେବେଳେ ସାଧାରଣ ବ୍ୟକ୍ତି ବା ତାହା ଜାଣିପାରିବ କିପରି ? ।୮। ସୁଗ୍ରୀବଙ୍କଶରୀର ସ୍ୱାଭାବିକ ଧର୍ମର ଅଧୀନ । ସେ ଅନେକ କଷ୍ଟ ସହିକରି ପରିଶ୍ରାନ୍ତ ହୋଇପଡ଼ିଥିଲେ ଏବଂ କାମଭୋଗରେ ତାଙ୍କର ତୃପ୍ତି ହୋଇ ନ ଥିଲା । ଏଥିନିମନ୍ତେ ରାମଚନ୍ଦ୍ରଙ୍କର ସୁଗ୍ରୀବଙ୍କୁ ଏ କ୍ଷେତ୍ରରେ କ୍ଷମା କରିବା ଉଚିତ । ୯ । ହେ ଲକ୍ଷ୍ମଣ ! ଯଥାର୍ଥ ବିଷୟ ନ ବୁଝି ସାଧାରଣ ବ୍ୟକ୍ତିପରି ତୁମ୍ଭର ହଠାତ୍ କ୍ରୋଧର ଅଧୀନ ହେବା ଉଚିତ ନୁହେ । ୧୦ । ହେ ନରଶ୍ରେଷ୍ଠ ! ତୁମ୍ଭ ସଦୃଶ ପରାକ୍ରମୀ ପୁରୁଷ ବିଚାର ନ କରି ହଠାତ୍ କ୍ରୋଧର ବଶୀଭୂତ ହୁଅନ୍ତି ନାହିଁ । ୧୧ । ହେ ଧର୍ମଜ୍ଞ ! ମୁଁ ସାବଧାନଭାବରେ ସୁଗ୍ରୀବଙ୍କ ନିମନ୍ତେ ତୁମକୁ ପ୍ରସନ୍ନ କରାଉଅଛି । ମହାକ୍ରୋଧରୁ ଉତ୍ପନ୍ନ ଏ କ୍ଷୋଭ ପରିତ୍ୟାଗ କର ।୧୨। ମୋର ମନେହୁଏ, ରାମଚନ୍ଦ୍ରଙ୍କର ପ୍ରିୟକାର୍ଯ୍ୟ କରିବା ନିମନ୍ତେ ସୁଗ୍ରୀବ ରୁମାଙ୍କୁ, ମୋତେ, ଅଙ୍ଗଦଙ୍କୁ ଏବଂ ରାଜ୍ୟ,ଧନଧାନ୍ୟ ପଶୁଆଦି ସମସ୍ତ ତ୍ୟାଗ କରିପାରନ୍ତି ।୧୩।

ସମାନେଷ୍ୟତି ସୁଗ୍ରୀବଃ ସୀତୟା ସହ ରାଘବମ୍ ।
ଶଶାଙ୍କମିବ ରୋହିଣ୍ୟା ହତ୍ୱା ତଂ ରାକ୍ଷସାଧମମ୍ । ୧୪ ।
ଶତକୋଟିସହସ୍ରାଣି ଲଙ୍କାୟାଂ କିଲ ରକ୍ଷସାମ୍ ।
ଅୟୁତାନି ଚ ଷଟ୍‌ତ୍ରିଂଶତ୍‌ସହସ୍ରାଣି ଶତାନି ଚ । ୧୫ ।
ଅହତ୍ୱା ତାଂଶ୍ଚ ଦୁର୍ଦ୍ଧର୍ଷାନ୍‌ରାକ୍ଷସାନ୍ କାମରୂପିଣଃ ।
ଅଶକ୍ୟଂ ରାବଣଂ ହନ୍ତୁଂ ଯେନ ସା ମୈଥିଲୀ ହୃତା । ୧୬ ।
ତେ ନ ଶକ୍ୟା ରଣେ ହନ୍ତୁମସହାୟେନ ଲକ୍ଷ୍ମଣ ।
ରାବଣଃ କ୍ରୂରକର୍ମା ଚ ସୁଗ୍ରୀବେଣ ବିଶେଷତଃ । ୧୭ ।
ଏବମାଖ୍ୟାତବାନ୍ ବାଲୀ ସ ହ୍ୟଭିଜ୍ଞୋ ହରୀଶ୍ୱରଃ ।
ଆଗମସ୍ତୁ ନ ମେ ବ୍ୟକ୍ତଃ ଶ୍ରବାତ୍ତସ୍ୟ ବ୍ରବୀମ୍ୟହମ୍ । ୧୮ ।
ତ୍ୱତ୍‌ସହାୟନିମିତ୍ତଂ ହି ପ୍ରେଷିତା ହରିପୁଙ୍ଗବାଃ ।
ଆନେତୁଂ ବାନରାନ୍ ଯୁଦ୍ଧେ ସୁବହୂନ୍ ହରିପୁଙ୍ଗବାନ୍ । ୧୯ ।
ତାଂଶ୍ଚ ପ୍ରତୀକ୍ଷମାଣୋଽୟଂ ବିକ୍ରାନ୍ତାନ୍ ସୁମହାବଲାନ୍ ।
ରାଘବସ୍ୟାର୍ଥସିଦ୍ଧ୍ୟର୍ଥଂ ନ ନିର୍ଯାତି ହରୀଶ୍ୱରଃ । ୨୦ ।

---

ସୁଗ୍ରୀବ ସେ ରାକ୍ଷସାଧମକୁ ମାରି ଚନ୍ଦ୍ରଙ୍କ ସହିତ ରୋହିଣୀର ସଂଯୋଗ କଲାପରି ରାମଚନ୍ଦ୍ରଙ୍କ ସହିତ ସୀତାଙ୍କର ସଂଯୋଗ କରାଇବେ । ୧୪ । ଲଙ୍କାରେ ରାକ୍ଷସମାନଙ୍କର ସଂଖ୍ୟା ଶହେ ହଜାର କୋଟି ଛତିଶହଜାର ଏବଂ ଛତିଶଶହ ଅଟେ ।୧୫। ଏହି ଦୁର୍ଜେୟ କାମରୂପୀ ରାକ୍ଷସମାନଙ୍କୁ ନ ମାରି, ଯେଉଁ ରାବଣ ସୀତାଙ୍କୁ ହରଣ କରି ନେଇଛି ତାକୁ ମାରିବା ଅସମ୍ଭବ । ୧୬ । ହେ ଲକ୍ଷ୍ମଣ ! ସୁଗ୍ରୀବ ଅନ୍ୟର ସାହାଯ୍ୟ ବ୍ୟତୀତ ଯୁଦ୍ଧରେ ସେମାନଙ୍କୁ ମାରିପାରିବେ ନାହିଁ; ବିଶେଷତଃ କ୍ରୂରକର୍ମା ରାବଣକୁ ମାରିବା ତାଙ୍କ ପକ୍ଷେ ଅସମ୍ଭବ ଅଟେ । ୧୭ । ବାନରରାଜ ବାଲୀ ସେମାନଙ୍କ କଥା ଜାଣିଥିଲେ । ସେ ମୋତେ ଏହା କହିଥିଲେ । ରାକ୍ଷସଙ୍କର ଏତେ ସଂଖ୍ୟା କେଉଁଠାରୁ ଆସିଲା ତାହା ମୋତେ ଜଣା ନାହିଁ । ତାହାଙ୍କଠାରୁ ଯାହା ଶୁଣିଛି ତାହାହିଁ ମୁଁ କହୁଛି । ୧୮ । ତୁମ୍ଭର ସହାୟତା ନିମନ୍ତେ ବହୁସଂଖ୍ୟକ ବାନରଙ୍କୁ ଆହ୍ୱାନ କରି ଆଣିବାପାଇଁ ସୁଗ୍ରୀବ ଅନେକ ପ୍ରଧାନ ପ୍ରଧାନ ବାନରମାନଙ୍କୁ ପଠାଇଅଛନ୍ତି । ୧୯ । ରାମଚନ୍ଦ୍ରଙ୍କର କାର୍ଯ୍ୟସିଦ୍ଧିନିମନ୍ତେ ଏହି ପରାକ୍ରମୀ ମହାବଳବାନ୍ ବାନରମାନଙ୍କୁ ସୁଗ୍ରୀବ ଅପେକ୍ଷାକରି ରହିଛନ୍ତି । ସେହିହେତୁରୁ ସୁଗ୍ରୀବ ଏପର୍ଯ୍ୟନ୍ତ ବାହାରକୁ ବାହାରି ନ ଥିଲେ । ୨୦ । ହେ ଲକ୍ଷ୍ମଣ ! ସୁଗ୍ରୀବ ଆଗରୁ

କୃତା ସୁସଂସ୍ଥା ସୌମିତ୍ରେ ସୁଗ୍ରୀବେଣ ପୁରା ଯଥା ।
ଅଦ୍ୟ ତୈର୍ବାନରୈଃ ସର୍ବୈ ରାଗନ୍ତବ୍ୟଂ ମହାବଲୈଃ । ୨୧ ।
ଋକ୍ଷକୋଟିସହସ୍ରାଣି ଗୋଲାଙ୍ଗୂଲଶତାନି ଚ ।
ଅଦ୍ୟ ତ୍ୱାମୁପଯାସ୍ୟନ୍ତି ଜହି କୋପମରିଂଦମ ।
କୋଟ୍ୟୋଽନେକାସ୍ତୁ କାକୁତ୍‌ସ୍ଥ କପୀନାଂ ଦୀପ୍ତତେଜସାମ୍ ।୨୨

ତବାପି ମୁଖମିଦଂ ନିରୀକ୍ଷ୍ୟ କୋପାତ୍
କ୍ଷତଜସମେ ନୟନେ ନିରୀକ୍ଷମାଣାଃ ।
ହରିବରବନିତା ନ ଯାନ୍ତି ଶାନ୍ତିମ୍
ପ୍ରଥମଭୟସ୍ୟ ହି ଶଙ୍କିତାଃ ସ୍ମ ସର୍ବାଃ । ୨୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ତାରା ସମାଧାନମ୍
ନାମ ପଞ୍ଚତ୍ରିଂଶଃ ସର୍ଗଃ ।

---

ଯେପରି ସୁବ୍ୟବସ୍ଥା କରିଛନ୍ତି, ତଦନୁସାରେ ସେହି ମହାବଳୀ ବାନରମାନେ ଆଜି ଆସି ପହଞ୍ଚିବାର କଥା । ୨୧ । ହଜାରକୋଟି ଭାଲୁ, ଶତକୋଟି ଗୋଲାଙ୍ଗୁଳ-ଜାତୀୟ ବାନର ଏବଂ ବହୁକୋଟି ମହାତେଜାସ୍ୱାନ୍ ବାନର ଆଜି ତୁମ ନିକଟରେ ଆସି ଉପସ୍ଥିତ ହେବେ । ହେ ଶତ୍ରୁହନ୍ତା ! ତୁମେ କ୍ରୋଧ ତ୍ୟାଗକର ।୨୨। କ୍ରୋଧରେ ରୁଧିରସଦୃଶ ରକ୍ତବର୍ଣ୍ଣ ତୁମ୍ଭର ଏ ମୁଖ ଦେଖି ବାନରରାଜଙ୍କର ପତ୍ନୀମାନେ ଶାନ୍ତ ପାଉ ନାହାନ୍ତି । ଆମେମାନେ ସମସ୍ତେ ପ୍ରଥମରୁ ଭୟରେ ଶଙ୍କିତ ହୋଇ ପଡ଼ୁଅଛୁଁ" । ୨୩ ।

# ଷଟ୍‌ତ୍ରିଂଶଃ ସର୍ଗଃ

## ସୁଗ୍ରୀବଲକ୍ଷ୍ମଣାନୁରୋଧଃ

ଇତ୍ୟୁକ୍ତସ୍ତାରୟା ବାକ୍ୟଂ ପ୍ରଶ୍ରିତଂ ଧର୍ମସଂହିତମ୍ ।
ମୃଦୁସ୍ୱଭାବଃ ସୌମିତ୍ରିଃ ପ୍ରତିଜଗ୍ରାହ ତଦ୍‌ବଚଃ । ୧ ।
ତସ୍ମିନ୍ ପ୍ରତିଗୃହୀତେ ତୁ ବାକ୍ୟେ ହରିଗଣେଶ୍ୱରଃ ।
ଲକ୍ଷ୍ମଣାତ୍ସୁମହତ୍ତ୍ରାସଂ ବସ୍ତ୍ରଂ କ୍ଲିନ୍ନମିବାତ୍ୟଜତ୍ । ୨ ।
ତତଃ କଣ୍ଠଗତଂ ମାଲ୍ୟଂ ଚିତ୍ରଂ ବହୁଗୁଣଂ ମହତ୍ ।
ଚିଚ୍ଛେଦ ବିମଦଶ୍ଚାସୀତ୍ସୁଗ୍ରୀବୋ ବାନରେଶ୍ୱରଃ । ୩ ।
ସ ଲକ୍ଷ୍ମଣଂ ଭୀମବଲଂ ସର୍ବବାନରସତ୍ତମଃ ।
ଅବ୍ରବୀତ୍ ପ୍ରଶ୍ରିତଂ ବାକ୍ୟଂ ସୁଗ୍ରୀବଃ ସଂପ୍ରହର୍ଷୟନ୍ । ୪ ।
ପ୍ରନଷ୍ଟା ଶ୍ରୀଶ୍ଚ କୀର୍ତ୍ତିଶ୍ଚ କପିରାଜ୍ୟଂ ଚ ଶାଶ୍ୱତମ୍ ।
ରାମପ୍ରସାଦାତ୍ସୌମିତ୍ରେ ପୁନଶ୍ଚାପ୍ତମିଦଂ ମୟା । ୫ ।
କଃ ଶକ୍ତସ୍ତସ୍ୟ ଦେବସ୍ୟ ଖ୍ୟାତସ୍ୟ ସ୍ୱେନ କର୍ମଣା ।
ତାଦୃଶଂ ପ୍ରତିକୁର୍ବୀତ ଅଂଶେନାପି ନୃପାତ୍ମଜ । ୬ ।

---

## ୩୬ଶ ସର୍ଗ

(ସୁଗ୍ରୀବଙ୍କର ଲକ୍ଷ୍ମଣଙ୍କୁ ଅନୁରୋଧ)

ତାରା ଏହିପ୍ରକାର ନମ୍ର ଏବଂ ଧର୍ମପୂର୍ଣ୍ଣ ବଚନ କହିବା ପରେ ମୃଦୁସ୍ୱଭାବ ଲକ୍ଷ୍ମଣ ତାଙ୍କର ବଚନକୁ ଗ୍ରହଣ କଲେ (ଅର୍ଥାତ୍ ତାରାଙ୍କର କଥା ମାନି କ୍ରୋଧ ତ୍ୟାଗ କଲେ) । ୧ । ଲକ୍ଷ୍ମଣ ତାରାଙ୍କର ବଚନ ମାନିନେବା ପରେ ସୁଗ୍ରୀବ ଲକ୍ଷ୍ମଣଙ୍କ ଠାରୁ ଉତ୍ପନ୍ନ ଭୟକୁ ଆର୍ଦ୍ର ବସ୍ତ୍ର ସଦୃଶ ପରିତ୍ୟାଗ କଲେ । ୨ । ଅନନ୍ତର ସୁଗ୍ରୀବ ଗଳାରେ ଲମ୍ବିଥିବା ବିଚିତ୍ର, ବହୁଗୁଣଯୁକ୍ତ ମାଳାକୁ ଛିଣ୍ଡାଇ ପକାଇଲେ । ବାନରରାଜ ସୁଗ୍ରୀବଙ୍କର ମଦମତ୍ତ ଅବସ୍ଥା ଦୂର ହୋଇଗଲା । ୩ । ସମସ୍ତ ବାନରଙ୍କ ମଧ୍ୟରେ ଶ୍ରେଷ୍ଠ ସୁଗ୍ରୀବ ମହାବଳୀ ଲକ୍ଷ୍ମଣଙ୍କୁ ପ୍ରସନ୍ନ କରି ବିନୀତବଚନ କହିଲେ । ୪ । "ହେ ଲକ୍ଷ୍ମଣ ! ମୋର ସୌଭାଗ୍ୟ, କୀର୍ତ୍ତି ଏବଂ ଚିରନ୍ତନ ବାନରରାଜ୍ୟ ପୂର୍ବରୁ ନଷ୍ଟ ହୋଇଯାଇଥିଲା । ରାମଚନ୍ଦ୍ରଙ୍କ କୃପାରୁ ମୁଁ ପୁଣି ସେ ସମସ୍ତ ଲାଭ କରିଅଛି । ୫ । ନିଜର କର୍ମଦ୍ୱାରା ପ୍ରସିଦ୍ଧ ସେ ଦେବତାଙ୍କର ଉପକାରର ଆଶିଂକଭାବରେ ମଧ୍ୟ ପ୍ରତିଦାନ ଦେବାକୁ କିଏ ସମର୍ଥ ହୋଇପାରେ ? । ୬ । ରାମଚନ୍ଦ୍ର ନିଜର ତେଜଦ୍ୱାରା

ସୀତାଂ ପ୍ରାପ୍‌ସ୍ୟତି ଧର୍ମାତ୍ମା ବଧିଷ୍ୟତି ଚ ରାବଣମ୍‌ ।
ସହାୟମାତ୍ରେଣ ମୟା ରାଘବଃ ସ୍ୱେନ ତେଜସା । ୭ ।
ସହାୟକୃତ୍ୟଂ କିଂ ତସ୍ୟ ଯେନ ସପ୍ତ ମହାଦ୍ରୁମାଃ ।
ଶୈଳାଶ୍ଚ ବସୁଧା ଚୈବ ବାଣେନୈକେନ ଦାରିତାଃ । ୮ ।
ଧନୁର୍ବିସ୍ଫାରମାଣସ୍ୟ ଯସ୍ୟ ଶବ୍ଦେନ ଲକ୍ଷ୍ମଣ ।
ସଶୈଳା କମ୍ପିତା ଭୂମିଃ ସହାୟୈଃ କିଂ ନୁ ତସ୍ୟ ବୈ । ୯ ।
ଅନୁଯାତ୍ରାଂ ନରେନ୍ଦ୍ରସ୍ୟ କରିଷ୍ୟେଽହଂ ନରର୍ଷଭ ।
ଗଚ୍ଛତୋ ରାବଣଂ ହନ୍ତୁଂ ବୈରିଣଂ ସପୁରଃସରମ୍‌ । ୧୦ ।
ଯଦି କିଂଚିଦତିକ୍ରାନ୍ତଂ ବିଶ୍ୱାସାତ୍‌ ପ୍ରଣୟେନ ବା ।
ପ୍ରେଷ୍ୟସ୍ୟ କ୍ଷମିତବ୍ୟଂ ମେ ନ କଶ୍ଚିନ୍ନାପରାଧ୍ୟତି । ୧୧ ।
ଇତି ତସ୍ୟ ବ୍ରୁବାଣସ୍ୟ ସୁଗ୍ରୀବସ୍ୟ ମହାତ୍ମନଃ ।
ଅଭବଲ୍ଲକ୍ଷ୍ମଣଃ ପ୍ରୀତଃ ପ୍ରେମ୍ଣା ଚେଦମୁବାଚ ହ । ୧୨ ।
ସର୍ବଥା ହି ମମ ଭ୍ରାତା ସନାଥୋ ବାନରେଶ୍ୱର ।
ତ୍ୱୟା ନାଥେନ ସୁଗ୍ରୀବ ପ୍ରଶ୍ରିତେନ ବିଶେଷତଃ । ୧୩ ।
ଯସ୍ତେ ପ୍ରଭାବଃ ସୁଗ୍ରୀବ ଯଚ୍ଚ ତେ ଶୌଚମୀଦୃଶମ୍‌ ।
ଅର୍ହସ୍ତ୍ୱଂ କପିରାଜ୍ୟସ୍ୟ ଶ୍ରିୟଂ ଭୋକ୍ତୁମନୁତ୍ତମାମ୍‌ । ୧୪ ।

---

ସୀତାଙ୍କୁ ପୁଣି ପ୍ରାପ୍ତ ହେବେ ଏବଂ ରାବଣକୁ ବଧ କରିବେ । ମୁଁ କେବଳ ତାଙ୍କର ସହାୟମାତ୍ର ହେବି । ୭ । ଯେଉଁ ରାମଚନ୍ଦ୍ର ଗୋଟିଏମାତ୍ର ବାଣରେ ସାତଗୋଟି ମହାଦ୍ରୁମ, ପର୍ବତ ଏବଂ ପୃଥିବୀକୁ ଭେଦକରି ଦେଇଥିଲେ ତାଙ୍କୁ ବା କିଏ କଅଣ ସାହାଯ୍ୟ କରିବ ? । ୮ । ହେ ଲକ୍ଷ୍ମଣ ! ଯାହାଙ୍କର ଧନୁର ଟଙ୍କାର ଶବ୍ଦରେ ପର୍ବତ ସହିତ ସମସ୍ତ ଭୂମି କମ୍ପିଉଠେ, ସାହାଯ୍ୟରେ ତାଙ୍କର ବା କି ପ୍ରୟୋଜନ ? । ୯ । ହେ ନରଶ୍ରେଷ୍ଠ ! ଶତ୍ରୁ ରାବଣକୁ ବଧକରିବା ନିମନ୍ତେ ସେ ଯେତେବେଳେ ଆଗେ ଆଗେ ଯିବେ ସେତେବେଳେ ମୁଁ ତାଙ୍କର ପଛେ ପଛେ ଅନୁସରଣ କରିବି ମାତ୍ର । ୧୦ । ବିଶ୍ୱାସହେତୁରୁ ବା ପ୍ରଣୟହେତୁରୁ ଏ ଦାସର ଯଦି କିଛି ତ୍ରୁଟି ହୋଇଥାଏ, ତାହାହେଲେ ଆପଣ କ୍ଷମା କରନ୍ତୁ, କାରଣ କେଉଁ ଭୃତ୍ୟ କେବେ ଅପରାଧ ନ କରି ରହିଛି ?" । ୧୧ । ମହାତ୍ମା ସୁଗ୍ରୀବ ଏପରି କହିବାପରେ ଲକ୍ଷ୍ମଣ ପ୍ରୀତ ହୋଇଗଲେ ଏବଂ ପ୍ରେମରେ ଏହି କଥା କହିଲେ । ୧୨ । "ହେ ବାନରେଶ୍ୱର! ମୋର ଭାଇ ତୁମପରି ନମ୍ର ବ୍ୟକ୍ତିଙ୍କୁ ନାଥସ୍ୱରୂପ ପାଇ ସନାଥ (ସସହାୟ) ଅଛନ୍ତି । ୧୩ । ହେ ସୁଗ୍ରୀବ । ତୁମର ପ୍ରତାପ ଯେପରି ଏବଂ ତୁମର ମନ ଯେପରି ଶୁଦ୍ଧ, ସେଥିରେ ବାନରରାଜ୍ୟର ଉତ୍ତମଲକ୍ଷ୍ମୀ ଭୋଗକରିବାର ତୁମେ ସର୍ବଥା

ସହାୟେନ ତୁ ସୁଗ୍ରୀବ ତ୍ୱୟା ରାମଃ ପ୍ରତାପବାନ୍ ।
ବଧିଷ୍ୟତି ରଣେ ଶତ୍ରୂନବିରାନ୍ନାତ୍ର ସଂଶୟଃ । ୧୫ ।
ଧର୍ମଜ୍ଞସ୍ୟ କୃତଜ୍ଞସ୍ୟ ସଂଗ୍ରାମେଷ୍ୱନିବର୍ତ୍ତିନଃ ।
ଉପପନ୍ନଂ ଚ ଯୁକ୍ତଂ ଚ ସୁଗ୍ରୀବ ତବ ଭାଷିତମ୍ । ୧୬ ।
ଦୋଷଜ୍ଞଃ ସତି ସାମର୍ଥ୍ୟେ କୋଽନ୍ୟୋ ଭାଷିତୁମର୍ହତି ।
ବର୍ଜୟିତ୍ୱା ମମ ଜ୍ୟେଷ୍ଠଂ ତ୍ୱାଂ ଚ ବାନରସତ୍ତମ । ୧୭ ।
ସଦୃଶଶ୍ଚାସି ରାମେଣ ବିକ୍ରମେଣ ବଲେନ ଚ ।
ସହାୟୋ ଦୈବତୈର୍ଦତ୍ତଶ୍ଚିରାୟ ହରିପୁଙ୍ଗବ । ୧୮ ।
କିଂ ତୁ ଶୀଘ୍ରମିତୋ ବୀର ନିଷ୍କ୍ରମ ତ୍ୱଂ ମୟା ସହ ।
ସାନ୍ତ୍ୱୟସ୍ୱ ବୟସ୍ୟଂ ଚ ଭାର୍ଯାହରଣଦୁଃଖିତମ୍ । ୧୯ ।
ଯଚ୍ଚ ଶୋକାଭିଭୂତସ୍ୟ ଶ୍ରୁତ୍ୱା ରାମସ୍ୟ ଭାଷିତମ୍ ।
ମୟା ତ୍ୱଂ ପରୁଷାଣ୍ୟୁକ୍ତସ୍ତତ୍କ୍ଷମସ୍ୱ ସଖେ ମମ । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଅରଣ୍ୟକାଣ୍ଡେ ସୁଗ୍ରୀବ ଲକ୍ଷ୍ମଣାନୁରୋଧ ନାମ ଷଟ୍ତ୍ରିଂଶଃ ସର୍ଗଃ

---

ଉପଯୁକ୍ତ ।୧୪ । ହେ ସୁଗ୍ରୀବ ! ପ୍ରତାପବାନ୍ ରାମଚନ୍ଦ୍ର ତୁମକୁ ସହାୟସ୍ୱରୂପ ପାଇ ଅତିଶୀଘ୍ର ଯୁଦ୍ଧରେ ଶତ୍ରୁମାନଙ୍କୁ ବଧ କରିବେ, ଏଥିରେ ସନ୍ଦେହ ନାହିଁ । ୧୫ । ଧର୍ମଜ୍ଞ, କୃତଜ୍ଞ ଏବଂ ଯୁଦ୍ଧରେ ଅପରାଙ୍ମୁଖ ଆପଣଙ୍କର ଏ କଥା ସର୍ବଥା ଉଚିତ ଏବଂ ଯୁକ୍ତିଯୁକ୍ତ ଅଟେ । ୧୬ । ହେ ବାନରଶ୍ରେଷ୍ଠ ! ମୋର ବଡ଼ଭାଇ ଏବଂ ତୁମକୁ ଛାଡ଼ିଦେଲେ ଆଉ କେଉଁ ବ୍ୟକ୍ତି ସାମର୍ଥ୍ୟ ଥାଇ ମଧ୍ୟ ନିଜର ଦୋଷ ଜାଣିପାରି ଏପରି ଉପଯୁକ୍ତ କଥା କହିପାରେ ? । ୧୭ । ବିକ୍ରମରେ ଏବଂ ବଳରେ ତୁମେ ରାମଚନ୍ଦ୍ରଙ୍କର ସଦୃଶ ଅଟ । ଅତଏବ ଦେବତାମାନେ ତୁମକୁ ଚିରକାଳ ନିମନ୍ତେ ରାମଚନ୍ଦ୍ରଙ୍କ ସହାୟ କରି ଜନ୍ମାଇଛନ୍ତି । ୧୮ । ହେ ବୀର ! ତୁମେ ଶୀଘ୍ର ଏଠାରୁ ମୋ ସହିତ ଯାଇ ସ୍ତ୍ରୀହରଣଦୁଃଖିତ ନିଜର ମିତ୍ରଙ୍କୁ ସାନ୍ତ୍ୱନା ଦିଅ । ୧୯। ଶୋକ-ପୀଡ଼ିତ ରାମଚନ୍ଦ୍ରଙ୍କ କଥା ଶୁଣି ମୁଁ ତୁମପ୍ରତି ଯେ କଠୋର ବାକ୍ୟ ପ୍ରୟୋଗ କରିଛି, ହେ ମିତ୍ର ! ସେଥିନିମନ୍ତେ ମୋତେ ତୁମେ କ୍ଷମାକର” । ୨୦ ।

# ସପ୍ତତ୍ରିଂଶଃ ସର୍ଗଃ

## କପିସେନାସମାନୟନମ୍

ଏବମୁକ୍ତସ୍ତୁ ସୁଗ୍ରୀବୋ ଲକ୍ଷ୍ମଣେନ ମହାତ୍ମନା ।
ହନୂମନ୍ତଂ ସ୍ଥିତଂ ପାର୍ଶ୍ୱେ ବଚନଂ ଚେଦମବ୍ରବୀତ୍ । ୧ ।
ମହେନ୍ଦ୍ରହିମବଦ୍‌ବିନ୍ଧ୍ୟକୈଳାସଶିଖରେଷୁ ଚ ।
ମନ୍ଦରେ ପାଣ୍ଡୁଶିଖରେ ପଞ୍ଚଶୈଳେଷୁ ଯେ ସ୍ଥିତାଃ । ୨ ।
ତରୁଣାଦିତ୍ୟବର୍ଣ୍ଣେଷୁ ଭ୍ରାଜମାନେଷୁ ନିତ୍ୟଶଃ ।
ପର୍ବତେଷୁ ସମୁଦ୍ରାନ୍ତେ ପଶ୍ଚିମସ୍ୟାଂ ତୁ ଯେ ଦିଶି ।୩।
ଆଦିତ୍ୟଭବନେ ଚୈବ ଗିରୌ ସନ୍ଧ୍ୟାଭ୍ରସଂନିଭେ ।
ପଦ୍ମାଚଲବନଂ ଭୀମାଃ ସଂଶ୍ରିତା ହରିପୁଙ୍ଗବାଃ । ୪ ।
ଅଞ୍ଜନାମ୍ବୁଦସଂକାଶା କୁଞ୍ଜରେନ୍ଦ୍ରମହୌଜସଃ ।
ଅଞ୍ଜନେ ପର୍ବତେ ଚୈବ ଯେ ବସନ୍ତି ପ୍ଲବଙ୍ଗମାଃ ।୫ ।
ମହାଶୈଳଗୁହାବାସା ବାନରାଃ କନକପ୍ରଭାଃ ।
ମେରୁପାର୍ଶ୍ୱଗତାଶ୍ଚୈବ ଯେ ଚ ଧୂମ୍ରଗିରିଂ ଶ୍ରିତାଃ । ୬ ।

---

## ୩୭ଶ ସର୍ଗ

### ( କପିସୈନ୍ୟସମାବେଶ )

ମହାତ୍ମା ଲକ୍ଷ୍ମଣ ଏପରି କହିବାପରେ ସୁଗ୍ରୀବ ତାଙ୍କ ନିକଟରେ ବସିଥିବା ହନୁମାନଙ୍କୁ ଏହି କଥା କହିଲେ । ୧ । "ମହେନ୍ଦ୍ର, ହିମାଳୟ, ବିନ୍ଧ୍ୟ, କୈଳାସ ଏବଂ ଶ୍ୱେତଶିଖରଯୁକ୍ତ ମନ୍ଦର ଏହି ପାଞ୍ଚ ପର୍ବତ ଉପରେ ଯେଉଁ ବାନରମାନେ ବାସକରନ୍ତି, ସମୁଦ୍ରର ଅପରପାର୍ଶ୍ୱରେ ସୂର୍ଯ୍ୟସଦୃଶ ସଦା ଦେଦୀପ୍ୟମାନ ପର୍ବତରେ ଯେଉଁମାନେ ଥାଆନ୍ତି, ସନ୍ଧ୍ୟାକାଳୀନ ମେଘସଦୃଶ ରକ୍ତବର୍ଣ୍ଣ ଉଦୟାଚଳ ଏବଂ ଅସ୍ତାଚଳ ପର୍ବତମାନଙ୍କ ଉପରେ ତଥା ପଦ୍ମାଚଳ ପର୍ବତମାନଙ୍କର ବନରେ ଯେଉଁ ଭୀଷଣ ବାନରମାନେ ଥାଆନ୍ତି, ଅଞ୍ଜନ ପର୍ବତ ଉପରେ ହାତୀମାନଙ୍କପରି ପରାକ୍ରମୀ ଏବଂ କଜ୍ଜଳ ଓ ମେଘସଦୃଶ କୃଷ୍ଣବର୍ଣ୍ଣ ଯେଉଁ ବାନରମାନେ ଥାଆନ୍ତି, ମେରୁ ସମୀପବର୍ତ୍ତୀ ପର୍ବତର ଗୁମ୍ଫାମାନଙ୍କରେ ବାସକରୁଥିବା ସୁବର୍ଣ୍ଣରଙ୍ଗର ବାନରମାନେ, ଧୂମ୍ରଗିରି ଉପରେ

ତରୁଣାଦିତ୍ୟବର୍ଣ୍ଣାଶ୍ଚ ପର୍ବତେ ଯେ ମହାରୁଣେ ।
ପିବନ୍ତୋ ମଧୁ ମୈରେୟଂ ଭୀମବେଗାଃ ପ୍ଲବଙ୍ଗମାଃ । ୭ ।
ବନେଷୁ ଚ ସୁରମ୍ୟେଷୁ ସୁଗନ୍ଧିଷୁ ମହତ୍ସୁ ଚ ।
ତାପସାଶ୍ରମରମ୍ୟେଷୁ ବନାନ୍ତେଷୁ ସମନ୍ତତଃ । ୮ ।
ତାଂସ୍ତାଂସ୍ତ୍ୱମାନୟ କ୍ଷିପ୍ରଂ ପୃଥିବ୍ୟାଂ ସର୍ବବାନରାନ୍ ।
ସାମଦାନାଦିଭିଃ କଲ୍ପୈର୍ବାନରୈର୍ବେଗବତ୍ତରୈଃ । ୯ ।
ପ୍ରେଷିତାଃ ପ୍ରଥମଂ ଯେ ଚ ମୟାଜ୍ଞାତା ମହାଜବାଃ ।
ତ୍ୱରଣାର୍ଥଂ ତୁ ଭୂୟସ୍ତ୍ୱଂ ସଂପ୍ରେଷୟ ହରୀଶ୍ୱରାନ୍ । ୧୦ ।
ଯେ ପ୍ରସକ୍ତାଶ୍ଚ କାମେଷୁ ଦୀର୍ଘସୂତ୍ରାଶ୍ଚ ବାନରାଃ ।
ଇହାନୟସ୍ୱ ତାନ୍ ଶୀଘ୍ରଂ ସର୍ବାନେବ କପୀଶ୍ୱରାନ୍ । ୧୧ ।
ଅହୋଭିର୍ଦଶଭିର୍ଯେ ଚ ନାଗଚ୍ଛନ୍ତି ମମାଜ୍ଞୟା ।
ହନ୍ତବ୍ୟାସ୍ତେ ଦୁରାତ୍ମାନୋ ରାଜଶାସନଦୂଷକାଃ । ୧୨ ।
ଶତାନ୍ୟଥ ସହସ୍ରାଣି କୋଟୀଶ୍ଚ ମମ ଶାସନାତ୍ ।
ପ୍ରୟାନ୍ତୁ କପିସିଂହାନାଂ ନିଦେଶେ ମମ ଯେ ସ୍ଥିତାଃ ।୧୩ ।

---

ଯେଉଁ ବାନରମାନେ ଥାଆନ୍ତି, ମହାରୁଣ ପର୍ବତ ଉପରେ ଥିବା ସୂର୍ଯ୍ୟପର ରକ୍ତବର୍ଣ୍ଣ ପରାକ୍ରମୀ ମଦ୍ୟପାୟୀ ବାନରମାନେ, ବିଶାଳ ସୁଗନ୍ଧିତ ରମଣୀୟ ବନମାନଙ୍କରେ ଯେଉଁ ବାନରମାନେ ଥାଆନ୍ତି, ତପସ୍ୱୀମାନଙ୍କର ଆଶ୍ରମଠାରୁ ବଳି ସୁନ୍ଦରତର ବନମଧ୍ୟରେ ଯେଉଁ ବାନରମାନେ ବାସକରନ୍ତି, ସେହି ସମସ୍ତ ବାନରମାନଙ୍କୁ ସାମ, ଦାନ ଆଦି ସକଳ ଉପାୟରେ ତୁମେ ଶୀଘ୍ର ଅଧିକ ବେଗବାନ୍ ବାନରମାନଙ୍କଦ୍ୱାରା ଅଣାଅ । ୭-୯ । ମୁଁ ପ୍ରଥମେ ଯେଉଁ ବାନରମାନଙ୍କୁ ପଠାଇଛି ସେମାନେ ଖୁବ୍ ଶୀଘ୍ରଗାମୀ, ଏହା ମୁଁ ଜାଣେ । ତଥାପି ଚଞ୍ଚଳ କରିବା ନିମନ୍ତେ ତୁମେ ପୁନର୍ବାର ଶ୍ରେଷ୍ଠ ବାନରମାନଙ୍କୁ ପଠାଅ । ୧୦ । ଯେଉଁ ବାନରମାନେ କାମୋପଭୋଗରେ ଆସକ୍ତ ରହିଛନ୍ତି ଏବଂ ଯେଉଁମାନେ ଦୀର୍ଘସୂତ୍ରୀ, ସେ ସମସ୍ତ ବାନରରାଜାଙ୍କୁ ତୁମେ ଏଠାକୁ ଶୀଘ୍ର ଅଣାଅ । ୧୧ । ମୋର ଆଦେଶ ଅନୁସାରେ ଯେଉଁ ବାନରମାନେ ଦଶ ଦିନ ମଧ୍ୟରେ ନ ଆସିବେ ମୁଁ ସେହି ରାଜାଦେଶ ଅବମାନନାକାରୀ ଦୁରାତ୍ମାମାନଙ୍କୁ ମାରିପକାଇବି । ୧୨ । ମୋର ଆଦେଶପାଳନକାରୀ ଶତ, ସହସ୍ର ଏବଂ କୋଟିଏ ବାନରଙ୍କୁ ମୋର ଆଜ୍ଞାରେ

ମେଘପର୍ବତସଂକାଶାଶ୍ଛାଦୟନ୍ତ ଇବାମ୍ବରମ୍ ।
ଘୋରରୂପାଃ କପିଶ୍ରେଷ୍ଠା ଯାନ୍ତୁ ମଚ୍ଛାସନାଦିତଃ । ୧୪ ।
ତେ ଗତଜ୍ଞା ଗତଂ ଗତ୍ୱା ପୃଥିବ୍ୟାଂ ସର୍ବବାନରାଃ ।
ଆନୟନ୍ତୁ ହରୀନ୍ ସର୍ବାଂସ୍ତ୍ୱରିତାଃ ଶାସନାନ୍ମମ । ୧୫ ।
ତସ୍ୟ ବାନରରାଜସ୍ୟ ଶ୍ରୁତ୍ୱା ବାୟୁସୁତୋ ବଚଃ ।
ଦିକ୍ଷୁ ସର୍ବାସୁ ବିକ୍ରାନ୍ତାନ୍ ପ୍ରେଷୟାମାସ ବାନରାନ୍ । ୧୬ ।
ତେ ପଦଂ ବିଷ୍ଣୁବିକ୍ରାନ୍ତଂ ପତତ୍ରିଜ୍ୟୋତିରଧ୍ୱଗାଃ ।
ପ୍ରୟାତାଃ ପ୍ରହିତା ରାଜ୍ଞା ହରୟସ୍ତୁ କ୍ଷଣେନ ବୈ । ୧୭ ।
ତେ ସମୁଦ୍ରେଷୁ ଗିରିଷୁ ବନେଷୁ ଚ ସରଃସୁ ଚ ।
ବାନରା ବାନରାନ୍ ସର୍ବାନ୍ ରାମହେତୋରଚୋଦୟନ୍ । ୧୮ ।
ମୃତ୍ୟୁକାଲୋପମସ୍ୟାଜ୍ଞାଂ ରାଜରାଜସ୍ୟ ବାନରାଃ ।
ସୁଗ୍ରୀବସ୍ୟାଯୟୁଃ ଶ୍ରୁତ୍ୱା ସୁଗ୍ରୀବଭୟଶଙ୍କିତାଃ । ୧୯ ।
ତତସ୍ତେଽଞ୍ଜନସଂକାଶା ଗିରେସ୍ତସ୍ମାନ୍ମହାବଲାଃ ।
ତିସ୍ରଃ କୋଟ୍ୟଃ ପ୍ଲବଙ୍ଗାନାଂ ନିର୍ଯୟୁର୍ଯତ୍ର ରାଘବଃ । ୨୦ ।

---

ପ୍ରେରଣ କର । ୧୩ । ମେଘ ଏବଂ ପର୍ବତସଦୃଶ ଘୋରକାୟ ଭୀଷଣାକୃତି ବାନରମାନେ ଆକାଶକୁ ଘୋଡ଼ାଇପକାଇ ମୋ ଆଦେଶ ଅନୁସାରେ ଏଠାରୁ ଯାତ୍ରା କରନ୍ତୁ ।୧୪। ଯେଉଁ ବାନରମାନେ ପୃଥିବୀର ଯେଉଁ ଯେଉଁ ଅଞ୍ଚଳ ଚିହ୍ନନ୍ତି,ସେମାନେ ସେହି ସେହି ଅଞ୍ଚଳକୁ ଯାଆନ୍ତୁ ଏବଂ ମୋ ଆଦେଶ ଅନୁସାରେ ସମସ୍ତ ବାନରଙ୍କୁ ଘେନି ଆସନ୍ତୁ” । ୧୫ । ସେହି ବାନରରାଜଙ୍କର ବଚନ ଶୁଣି ବାୟୁପୁତ୍ର ହନୂମାନ ପରାକ୍ରମୀ ବାନରମାନଙ୍କୁ ସବୁ ଦିଗକୁ ପଠାଇଦେଲେ । ୧୬ । ବିହଗ ଓ ଜ୍ୟୋତି-ମାର୍ଗରେ ଗମନଶୀଳ ସେହିସବୁ ବାନର ରାଜାଙ୍କଦ୍ୱାରା ପ୍ରେରିତ ହୋଇ ମୁହୂର୍ତ୍ତକ ମଧ୍ୟରେ ଗଗନମାର୍ଗରେ ଚାଲିଗଲେ । ୧୭ । ସେହି ବାନରମାନେ ସମୁଦ୍ର, ପର୍ବତ, ବନ ଏବଂ ପୁଷ୍କରଣୀମାନଙ୍କରେ ବାସକରୁଥିବା ବାନରମାନଙ୍କୁ ରାମଚନ୍ଦ୍ରଙ୍କ କାର୍ଯ୍ୟ ନିମନ୍ତେ ଆସିବାପାଇଁ ଆହ୍ୱାନକଲେ । ୧୮ । ମୃତ୍ୟୁକାଳସଦୃଶ କଠୋର, ରାଜଶ୍ରେଷ୍ଠ ସୁଗ୍ରୀବଙ୍କ ଆଜ୍ଞା ଶୁଣି, ସୁଗ୍ରୀବଙ୍କ ଭୟରେ ଭୀତହୋଇ ସମସ୍ତବାନର ଆସି ଉପସ୍ଥିତ ହେଲେ । ୧୯ । ଅନନ୍ତର ସେହି ପର୍ବତରୁ କଜ୍ଜଳସଦୃଶ (କୃଷ୍ଣବର୍ଣ୍ଣ) ତିନକୋଟି ମହାବଳୀ ବାନର ରାମଚନ୍ଦ୍ର ଯେଉଁଠାରେ ଥିଲେ ସେଠାକୁ ଗମନକଲେ ।

ଅସ୍ତଂ ଗଚ୍ଛତି ଯତ୍ରାର୍କସ୍ତସ୍ମିନ୍ ଗିରିବରେ ରତାଃ ।
ସଂତପ୍ତହେମବର୍ଣାଭାସ୍ତସ୍ମାତ୍କୋଟ୍ୟୋ ଦଶ ଚ୍ୟୁତାଃ । ୨୧ ।
କୈଳାସଶିଖରେଭ୍ୟଶ୍ଚ ସିଂହକେସରବର୍ଚ୍ଚସାମ୍ ।
ତତଃ କୋଟିସହସ୍ରାଣି ବାନରାଣାଂ ସମାଗମନ୍ । ୨୨ ।
ଫଲମୂଲେନ ଜୀବନ୍ତୋ ହିମବନ୍ତମୁପାଶ୍ରିତାଃ ।
ତେଷାଂ କୋଟିସହସ୍ରାଣାଂ ସହସ୍ରଂ ସମବର୍ତ୍ତତ । ୨୩ ।
ଅଙ୍ଗାରକସମାନାନାଂ ଭୀମାନାଂ ଭୀମକର୍ମଣାମ୍ ।
ବିନ୍ଧ୍ୟାଦ୍ ବାନରକୋଟୀନାଂ ସହସ୍ରାଣ୍ୟପତନ୍ ଦ୍ରୁତମ୍ । ୨୪।
କ୍ଷୀରୋଦବେଲାନିଲୟାସ୍ତମାଲବନବାସିନଃ ।
ନାରିକେଳାଶନାଶ୍ଚୈବ ତେଷାଂ ସଂଖ୍ୟା ନ ବିଦ୍ୟତେ । ୨୫ ।
ବନେଭ୍ୟୋ ଗହ୍ୱରେଭ୍ୟଶ୍ଚ ସରିଭ୍ୟଶ୍ଚ ମହାବଳାଃ ।
ଆଗଚ୍ଛନ୍ ବାନରୀ ସେନା ପିବନ୍ତୀବ ଦିବାକରମ୍ । ୨୬ ।
ଯେ ତୁ ତ୍ୱରୟିତୁଂ ଯାତା ବାନରାଃ ସର୍ବବାନରାନ୍ ।
ତେ ବୀରା ହିମବଚ୍ଛୈଳେ ଦଦୃଶୁସ୍ତଂ ମହାଦ୍ରୁମମ୍ । ୨୭ ।

---

। ୨୦ । ଯେଉଁ ପର୍ବତ ଉପରେ ସୂର୍ଯ୍ୟ ଅସ୍ତଯାନ୍ତି ସେହି ପର୍ବତରେ ରହୁଥିବା ତପ୍ତସୁବର୍ଣ୍ଣସଦୃଶ ବର୍ଣ୍ଣ ଏବଂ ତେଜୋଯୁକ୍ତ ଦଶକୋଟି ବାନର ଆସିଲେ । ୨୧ । କୈଳାସଶିଖରରୁ ସିଂହର କେଶରସଦୃଶ ବର୍ଣ୍ଣବିଶିଷ୍ଟ ହଜାରକୋଟି ବାନର ଆସିଲେ । ୨୨ । ହିମାଳୟରେ ଫଳ ମୂଳ ଭକ୍ଷଣକରି ଜୀବନଧାରଣ କରୁଥିବା ହଜାର କୋଟି ହଜାର ବାନର ଆସି ଉପସ୍ଥିତ ହେଲେ । ୨୩ । ବିନ୍ଧ୍ୟପର୍ବତରୁ ଭୀମକର୍ମକାରୀ ଅଙ୍ଗାରସଦୃଶ କୃଷ୍ଣବର୍ଣ୍ଣ ଭୀଷଣାକୃତି ହଜାର କୋଟି ବାନର ଶୀଘ୍ର ଆସିଲେ । ୨୪ । କ୍ଷୀରସମୁଦ୍ରକୂଳରେ ତମାଳବନରେ ଥିବା ନାରିକେଳ ଭକ୍ଷଣକାରୀ ଯେତେ ବାନର ଆସିଲେ ସେମାନଙ୍କର ସଂଖ୍ୟା ନାହିଁ । ୨୫ । ବନ, ଗୁହା ଏବଂ ନଦୀମାନଙ୍କରୁ ଯେଉଁ ମହାବଳବାନ୍ ବାନରସେନା ଆସିଲେ ସେମାନେ ସତେ ଯେପରି ସୂର୍ଯ୍ୟଙ୍କୁ ପାନକରି ଆସିଲେ ! (ଅର୍ଥାତ୍ ସେମାନଙ୍କ ଆଗମନରେ ସୂର୍ଯ୍ୟ ଘୋଡ଼ାଇ ହୋଇପଡ଼ିଲେ) ।୨୬। ଯେଉଁସବୁ ବାନର ସମସ୍ତ ବାନରଙ୍କୁ ଚଞ୍ଚଳ ଆଣିବା ନିମନ୍ତେ ପ୍ରେରିତ ହୋଇଥିଲେ, ସେହି ବୀରମାନେ ହିମାଳୟ ପର୍ବତ ଉପରେ ଏକ ମହାଦ୍ରୁମ ଦେଖିଲେ । ୨୭ । ସେହି ପବିତ୍ର ପର୍ବତ ଉପରେ ପୂର୍ବ-

ତସ୍ମିନ୍ ଗିରିବରେ ପୁଣ୍ୟେ ଯଜ୍ଞୋ ମାହେଶ୍ୱରଃ ପୁରା ।
ସର୍ବଦେବମନସ୍ତୋଷୋ ବଭୂବ ସୁମନୋରମଃ । ୨୮ ।
ଅନ୍ନନିଷ୍ୟନ୍ଦଜାତାନି ମୂଲାନି ଚ ଫଲାନି ଚ ।
ଅମୃତସ୍ୱାଦୁକଳ୍ପାନି ଦଦୃଶୁସ୍ତତ୍ର ବାନରାଃ । ୨୯ ।
ତଦନ୍ନସଂଭବଂ ଦିବ୍ୟଂ ଫଲମୂଲଂ ମନୋହରମ୍ ।
ଯଃ କଶ୍ଚିତ୍ ସକୃଦଶ୍ନାତି ମାସଂ ଭବତି ତର୍ପିତଃ । ୩୦ ।
ତାନି ମୂଲାନି ଦିବ୍ୟାନି ଫଲାନି ଚ ଫଲାଶନାଃ ।
ଔଷଧାନି ଚ ଦିବ୍ୟାନି ଜଗୃହୁର୍ହରିପୁଙ୍ଗବାଃ । ୩୧ ।
ତସ୍ମାଚ୍ଚ ଯଜ୍ଞାୟତନାତ୍ ପୁଷ୍ପାଣି ସୁରଭୀଣି ଚ ।
ଆନିନ୍ୟୁର୍ବାନରା ଗତ୍ୱା ସୁଗ୍ରୀବପ୍ରିୟକାରଣାତ୍ । ୩୨ ।
ତେ ତୁ ସର୍ବେ ହରିବରାଃ ପୃଥିବ୍ୟାଂ ସର୍ବବାନରାନ୍ ।
ସଂଚୋଦୟିତ୍ୱା ତ୍ୱରିତଂ ଯୂଥାନାଂ ଜଗ୍ମୁରଗ୍ରତଃ । ୩୩ ।
ତେ ତୁ ତେନ ମୁହୂର୍ତ୍ତେନ କପୟଃ ଶୀଘ୍ରଚାରିଣଃ ।
କିଷ୍କିନ୍ଧାଂ ତ୍ୱରୟା ପ୍ରାପ୍ତାଃ ସୁଗ୍ରୀବୋ ଯତ୍ର ବାନରଃ । ୩୪ ।
ତେ ଗୃହୀତ୍ୱୌଷଧୀଃ ସର୍ବାଃ ଫଲମୂଲଂ ଚ ବାନରାଃ ।
ତଂ ପ୍ରତିଗ୍ରାହୟାମାସୁର୍ବଚନଂ ଚେଦମବ୍ରୁବନ୍ । ୩୫ ।

---

କାଳରେ ମହାଦେବଙ୍କର ଏକ ଯଜ୍ଞ ହୋଇଥିଲା । ସେହି ମନୋହର ଯଜ୍ଞରେ ସମସ୍ତ ଦେବତାଙ୍କର ମନ ସନ୍ତୁଷ୍ଟ ହୋଇଥିଲା । ୨୮ । ଅନ୍ନର ରସରୁ ଉତ୍ପନ୍ନ ଅମୃତ-ସଦୃଶ ମିଷ୍ଟ ଫଳମୂଳ ସେଠାରେ ବାନରମାନେ ଦେଖିଲେ । ୨୯ । ଅନ୍ନରୁ ଉତ୍ପନ୍ନ ସେହି ଦିବ୍ୟ ଫଳ ମୂଳ ଯେ ଥରେ ଖାଏ ସେ ଏକମାସ ପର୍ଯ୍ୟନ୍ତ ତୃପ୍ତ ହୋଇଯାଏ । । ୩୦ । ଫଳଭୋଜୀ ବାନରମାନେ ସେହି ଦିବ୍ୟ ଔଷଧ, ଫଳ ଏବଂ ମୂଳ ଘେନି ଆସିଲେ । ୩୧ । ସେହି ଯଜ୍ଞଭୂମିରୁ ସୁଗ୍ରୀବଙ୍କୁ ଖୁସି କରିବା ନିମନ୍ତେ କେତେକ ସୁଗନ୍ଧିତ ପୁଷ୍ପ ମଧ୍ୟ ବାନରମାନେ ଆଣିଲେ । ୩୨ । ସେସବୁ ଶ୍ରେଷ୍ଠବାନରମାନେ ପୃଥିବୀର ସମସ୍ତ ବାନରଙ୍କୁ ଶୀଘ୍ର ଆସିବାପାଇଁ ପ୍ରେରଣା କରି ସେସବୁ ଦଳମାନଙ୍କ ଆଗେ ଆଗେ ଚାଲିଆସିଲେ ।୩୩। ସେ ବାନରମାନେ ଅତିଶୀଘ୍ର ସେହି ସମୟରେ କିଷ୍କିନ୍ଧାରେ ସୁଗ୍ରୀବ ଯେଉଁଠି ଥିଲେ ସେହିଠାରେ ଆସି ପହଞ୍ଚିଗଲେ । । ୩୪ । ସେ ବାନରମାନେ ଫଳ, ମୂଳ ଏବଂ ଔଷଧି ସବୁ ଆଣି ସୁଗ୍ରୀବଙ୍କୁ ଦେଲେ

**ସର୍ବେ ପରିବୃତାଃ ଶୈଳାଃ ସରିତଶ୍ଚ ବନାନି ଚ ।**
**ପୃଥିବ୍ୟାଂ ବାନରାଃ ସର୍ବେ ଶାସନାଦୁପଯାନ୍ତି ତେ । ୩୬ ।**
**ଏବଂ ଶ୍ରୁତ୍ୱା ତତୋ ହୃଷ୍ଟଃ ସୁଗ୍ରୀବଃ ପ୍ଳବଗାଧିପଃ ।**
**ପ୍ରତିଜଗ୍ରାହ ଚ ପ୍ରୀତସ୍ତେଷାଂ ସର୍ବମୁପାୟନମ୍ । ୩୭ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ କପିସେନାସମାନୟନମ୍
ନାମ ସପ୍ତତ୍ରିଂଶଃ ସର୍ଗଃ

---

ଏବଂ ତାଙ୍କୁ ଏହିପ୍ରକାର କହିଲେ । ୩୫ । "ପୃଥିବୀର ସବୁ ପର୍ବତ, ନଦୀ ଏବଂ ବନମାନଙ୍କୁ ଆମ୍ଭେମାନେ ଯାଇଅଛୁଁ । ଆପଣଙ୍କ ଆଦେଶାନୁସାରେ ଆପଣଙ୍କ ନିକଟକୁ ସେମାନେ ଆସୁଅଛନ୍ତି" । ୩୬ । ବାନରାଧିପତି ସୁଗ୍ରୀବ ଏହି କଥା ଶୁଣି ଆନନ୍ଦିତ ହେଲେ ଏବଂ ପ୍ରୀତହୋଇ ସେମାନଙ୍କର ଉପହାର ଗ୍ରହଣ କଲେ । ୩୭ ।

# ଅଷ୍ଟତ୍ରିଂଶଃ ସର୍ଗଃ

## ରାମସମୀପଗମନମ୍

ପ୍ରତିଗୃହ୍ୟ ଚ ତତ୍ସର୍ବମୁପାୟନମୁପାହୃତମ୍ ।
ବାନରାନ୍ ସାନ୍ତ୍ୱୟିତ୍ୱା ଚ ସର୍ବାନେବ ବ୍ୟସର୍ଜୟତ୍ । ୧ ।
ବିସର୍ଜୟିତ୍ୱା ସ ହରୀନ୍ ସହସ୍ରାନ୍ କୃତକର୍ମଣଃ ।
ମେନେ କୃତାର୍ଥମାତ୍ମାନଂ ରାଘବଂ ଚ ମହାବଲମ୍ । ୨ ।
ସ ଲକ୍ଷ୍ମଣୋ ଭୀମବଲଂ ସର୍ବବାନରସତ୍ତମମ୍ ।
ଅବ୍ରବୀତ୍ ପ୍ରଶ୍ରିତଂ ବାକ୍ୟଂ ସୁଗ୍ରୀବଂ ସଂପ୍ରହର୍ଷୟନ୍ । ୩ ।
କିଷ୍କିନ୍ଧାୟା ବିନିଷ୍କ୍ରାମ ଯଦି ତେ ସୌମ୍ୟ ରୋଚତେ ।
ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ଲକ୍ଷ୍ମଣସ୍ୟ ସୁଭାଷିତମ୍ । ୪ ।
ସୁଗ୍ରୀବଃ ପରମପ୍ରୀତୋ ବାକ୍ୟମେତଦୁବାଚ ହ ।
ଏବଂ ଭବତୁ ଗଚ୍ଛାମ ସ୍ଥେୟଂ ତ୍ୱଚ୍ଛାସନେ ମୟା । ୫ ।
ତମେବମୁକ୍ତ୍ୱା ସୁଗ୍ରୀବୋ ଲକ୍ଷ୍ମଣଂ ଶୁଭଲକ୍ଷଣମ୍ ।
ବିସର୍ଜୟାମାସ ତଦା ତାରାଦ୍ୟାଶ୍ଚୈବ ଯୋଷିତଃ । ୬ ।

---

## ୩୮ଶ ସର୍ଗ

( ସୁଗ୍ରୀବଙ୍କର ରାମଙ୍କ ନିକଟକୁ ଗମନ )

ସେମାନେ ଆଣିଥିବା ସମସ୍ତ ଉପହାର ଗ୍ରହଣକରି ସୁଗ୍ରୀବ ସେ ସମସ୍ତ ବାନରଙ୍କୁ ସନ୍ତୁଷ୍ଟକରି ବିଦାୟଦେଲେ । ୧ । ସେ କାର୍ଯ୍ୟ ସମ୍ପନ୍ନ କରିଥିବା ସହସ୍ର ସହସ୍ର ବାନରଙ୍କୁ ବିଦାୟଦେଇ ନିଜକୁ ଏବଂ ମହାବଳୀ ରାମଚନ୍ଦ୍ରଙ୍କୁ କୃତାର୍ଥ ମନେକଲେ । ୨ । ଲକ୍ଷ୍ମଣ ମହାବଳୀ ସମସ୍ତ ବାନରଙ୍କ ମଧ୍ୟରେ ଶ୍ରେଷ୍ଠତମ ସୁଗ୍ରୀବଙ୍କ ପ୍ରସନ୍ନକରି ତାଙ୍କୁ ବିନୀତ ବଚନ କହିଲେ । ୩ । "ହେ ସୌମ୍ୟ ! ଯଦି ତୁମକୁ ଭଲ ଲାଗୁଛି ତେବେ କିଷ୍କିନ୍ଧାରୁ ବାହାରି ଚାଲ ।" ଲକ୍ଷ୍ମଣଙ୍କର ସେହି ଉତ୍ତମ ବଚନ ଶୁଣି ସୁଗ୍ରୀବ ବିଶେଷ ପ୍ରସନ୍ନ ହୋଇ କହିଲେ, "ହଉ ଚାଲ ଆମେମାନେ ଯିବା; ମୋର ତୁମ ଆଦେଶ ମାନିବା ଉଚିତ" ।୪-୫ । ଶୁଭଲକ୍ଷଣସମ୍ପନ୍ନ ଲକ୍ଷ୍ମଣଙ୍କୁ ଏହିପରି କହି ସୁଗ୍ରୀବ ତାରା ପ୍ରଭୃତି ସମସ୍ତ ନାରୀମାନଙ୍କୁ ବିଦାୟଦେଲେ । ୬ । 'ଆସ'

ଏହ୍ୟୁକ୍ତେ ହରିବରାନ୍ ସୁଗ୍ରୀବଃ ସମୁଦାହରତ୍ ।
ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ହରୟଃ ଶୀଘ୍ରମାଯୟୁଃ ।୭।
ବଦ୍ଧାଞ୍ଜଳିପୁଟାଃ ସର୍ବେ ଯେ ସ୍ୟୁଃ ସ୍ତ୍ରୀଦର୍ଶନକ୍ଷମାଃ ।
ତାନୁବାଚ ତତଃ ପ୍ରାପ୍ତାନ୍ ରାଜାର୍କସଦୃଶପ୍ରଭଃ ।୮।
ଉପସ୍ଥାପୟତ କ୍ଷିପ୍ରଂ ଶିବିକାଂ ମମ ବାନରାଃ ।
ଶ୍ରୁତ୍ୱା ତୁ ବଚନଂ ତସ୍ୟ ହରୟଃ ଶୀଘ୍ରବିକ୍ରମାଃ ।୯।
ସମୁପସ୍ଥାପୟାମାସୁଃ ଶିବିକାଂ ପ୍ରିୟଦର୍ଶନାମ୍ ।
ତାମୁପସ୍ଥାପିତାଂ ଦୃଷ୍ଟ୍ୱା ଶିବିକାଂ ବାନରାଧିପଃ ।୧୦।
ଲକ୍ଷ୍ମଣାରୁହ୍ୟତାଂ ଶୀଘ୍ରମିତି ସୌମିତ୍ରିମବ୍ରବୀତ୍ ।
ଇତ୍ୟୁକ୍ତ୍ୱା କାଞ୍ଚନଂ ଯାନଂ ସୁଗ୍ରୀବଃ ସୂର୍ଯସଂନିଭମ୍ ।୧୧।
ବହୁଭିର୍ହରିଭିର୍ୟୁକ୍ତମାରୁରୋହ ସଲକ୍ଷ୍ମଣଃ ।
ପାଣ୍ଡୁରେଣାତପତ୍ରେଣ ଧ୍ରିୟମାଣେନ ମୂର୍ଧନି ।୧୨।
ଶୁକ୍ଲୈଶ୍ଚ ବାଲବ୍ୟଜନୈର୍ଧୂୟମାନୈଃ ସମନ୍ତତଃ ।
ଶଙ୍ଖଭେରୀନିନାଦୈଶ୍ଚ ବନ୍ଦିଭିଶ୍ଚାଭିନନ୍ଦିତଃ ।୧୩।
ନିର୍ଯଯୌ ପ୍ରାପ୍ୟ ସୁଗ୍ରୀବୋ ରାଜ୍ୟଶ୍ରିୟମନୁତ୍ତମାମ୍ ।
ସ ବାନରଶତୈସ୍ତୀକ୍ଷ୍ଣୈର୍ବହୁଭିଃ ଶସ୍ତ୍ରପାଣିଭିଃ ।୧୪।

---

ବୋଲି ଉଚ୍ଚସ୍ୱରରେ ସୁଗ୍ରୀବ ସମସ୍ତ ଶ୍ରେଷ୍ଠ ବାନରଙ୍କୁ ଆହ୍ୱାନକଲେ । ତାଙ୍କର ସେ କଥା ଶୁଣି ବାନରମାନେ ଶୀଘ୍ର ଆସିଲେ ।୭। ଯେଉଁମାନେ ସ୍ତ୍ରୀଲୋକମାନଙ୍କ ସମ୍ମୁଖକୁ ଆସିପାରନ୍ତି ସେମାନେ ସମସ୍ତେ ଆସି ହାତଯୋଡ଼ି ଠିଆହେଲେ । ସେମାନେ ଆସିବାପରେ ସୂର୍ଯ୍ୟସଦୃଶ ତେଜସ୍ୱୀ ସୁଗ୍ରୀବ ସେମାନଙ୍କୁ କହିଲେ ।୮। "ହେ ବାନରଗଣ ! ମୋର ପାଲିଙ୍କି ଶୀଘ୍ର ଆଣି ଉପସ୍ଥାପିତ କର ।" ଶୀଘ୍ରଗତି ବାନରମାନେ ତାଙ୍କ କଥା ଶୁଣି ସୁନ୍ଦର ପାଲିଙ୍କି ଆଣି ପହଞ୍ଚାଇଦେଲେ । ସେହି ଉପସ୍ଥାପିତ ଶିବିକାକୁ ଦେଖି ବାନରରାଜ "ହେ ଲକ୍ଷ୍ମଣ ! ଶୀଘ୍ର ଏଥିରେ ଆରୋହଣକର" ଏହି କଥା ସୌମିତ୍ରିଙ୍କୁ କହିଲେ । ଏହା କହି ସୁଗ୍ରୀବ ସୂର୍ଯ୍ୟସଦୃଶ ପ୍ରଭାଯୁକ୍ତ ସୁବର୍ଣ୍ଣଯାନରେ ଲକ୍ଷ୍ମଣଙ୍କ ସହିତ ଆରୋହଣ କଲେ । ସେହି ଯାନ ବହୁସଂଖ୍ୟକ ବାନରଙ୍କଦ୍ୱାରା ବାହିତ ହେଲା । ତାଙ୍କ ମୁଣ୍ଡ ଉପରେ ଶ୍ୱେତଚ୍ଛତ୍ର ଧରାହୋଇଥିଲା ।୯-୧୨। ତାଙ୍କ ଚାରିପାଖରେ ଶୁକ୍ଳ ଚାମରରେ ଆଲଟ ହେଉଥିଲା । ବନ୍ଦୀମାନେ ଶଙ୍ଖ ଏବଂ ଭେରୀଧ୍ୱନିଦ୍ୱାରା ତାଙ୍କର ଅଭିନନ୍ଦନ କରୁଥିଲେ ।୧୩। ଉତ୍ତମ ରାଜ୍ୟଶ୍ରୀ ଲାଭକରି ସୁଗ୍ରୀବ ଯାତ୍ରାକଲେ । ତାଙ୍କ ଚାରିପାଖରେ ଶତ ଶତ ତୀକ୍ଷ୍ଣବୁଦ୍ଧି ଅସ୍ତ୍ରଧାରୀ ବାନର

ପରିକୀର୍ଣ୍ଣୌ ଯଯୌ ତତ୍ର ଯତ୍ର ରାମୋ ବ୍ୟବସ୍ଥିତଃ ।
ସ ତଂ ଦେଶମନୁପ୍ରାପ୍ୟ ଶ୍ରେଷ୍ଠଂ ରାମନିଷେବିତମ୍ ।୧୫।
ଅବାତରନ୍ମହାତେଜାଃ ଶିବିକାୟାଃ ସଲକ୍ଷ୍ମଣଃ ।
ଆସାଦ୍ୟ ଚ ତତୋ ରାମଂ କୃତାଞ୍ଜଲିପୁଟୋଽଭବତ୍ । ୧୬।
କୃତାଞ୍ଜଲୌ ସ୍ଥିତେ ତସ୍ମିନ୍ ବାନରାଶ୍ଚାଭବଂସ୍ତଥା ।
ତଟାକମିବ ତଂ ଦୃଷ୍ଟ୍ୱା ରାମଃ କୁଡ୍ମଲପଙ୍କଜମ୍ । ୧୭ ।
ବାନରାଣାଂ ମହତ୍‌ସୈନ୍ୟଂ ସୁଗ୍ରୀବେ ପ୍ରୀତିମାନଭୂତ୍ ।
ପାଦୟୋଃ ପତିତଂ ମୂର୍ଧ୍ନା ତମୁତ୍ଥାପ୍ୟ ହରୀଶ୍ୱରମ୍ । ୧୮ ।
ପ୍ରେମ୍ଣା ଚ ବହୁମାନାଚ୍ଚ ରାଘବଃ ପରିଷସ୍ୱଜେ ।
ପରିଷ୍ୱଜ୍ୟ ଚ ଧର୍ମାତ୍ମା ନିଷୀଦେତି ତତୋଽବ୍ରବୀତ୍ । ୧୯ ।
ନିଷଣ୍ଣଂ ତଂ ତତୋ ଦୃଷ୍ଟ୍ୱା କ୍ଷିତୌ ରାମୋଽବ୍ରବୀତ୍ତତଃ ।
ଧର୍ମମର୍ଥଂ ଚ କାମଂ ଚ କାଲେ ଯସ୍ତୁ ନିଷେବତେ । ୨୦ ।
ବିଭଜ୍ୟ ସତତଂ ବୀର ସ ରାଜା ହରିସତ୍ତମ ।
ହିତ୍ୱା ଧର୍ମଂ ତଥାର୍ଥଂ ଚ କାମଂ ଯସ୍ତୁ ନିଷେବତେ । ୨୧ ।

---

ବେଢ଼ି ରହିଥିଲେ । ଯେଉଁଠାରେ ରାମଚନ୍ଦ୍ର ଥିଲେ ସେହି ସ୍ଥାନକୁ ସୁଗ୍ରୀବ ଗଲେ । ରାମଚନ୍ଦ୍ରଙ୍କ ଉତ୍କୃଷ୍ଟ ନିବାସସ୍ଥାନରେ ପହଞ୍ଚି ମହାତେଜସ୍ୱୀ ସୁଗ୍ରୀବ ଲକ୍ଷ୍ମଣଙ୍କ ସହିତ ଶିବିକାରୁ ଓହ୍ଲାଇଲେ ଏବଂ ରାମଙ୍କ ନିକଟକୁ ଯାଇ ହାତଯୋଡ଼ି ଉଭାହେଲେ । ।୧୪-୧୬। ସୁଗ୍ରୀବ ହାତଯୋଡ଼ି ଉଭାହେଲାରୁ ଅନ୍ୟ ବାନରମାନେ ମଧ୍ୟ ତାହାହିଁ କଲେ । ମୁକୁଳିତ ପଦ୍ମପୂର୍ଣ୍ଣ ସରୋବରସଦୃଶ ବାନରମାନଙ୍କର ସେହି ମହତ୍ ସୈନ୍ୟମାନଙ୍କୁ ଦେଖି ରାମଚନ୍ଦ୍ର ସୁଗ୍ରୀବଙ୍କ ପ୍ରତି ବିଶେଷ ପ୍ରସନ୍ନ ହେଲେ । ପାଦତଳେ ମୁଣ୍ଡଲଗାଇ ପଡ଼ିରହିଥିବା ସୁଗ୍ରୀବଙ୍କୁ ଉଠାଇ ପ୍ରେମ ଏବଂ ଆଦରରେ ରାମଚନ୍ଦ୍ର ତାଙ୍କୁ ଆଲିଙ୍ଗନ କଲେ । ଆଲିଙ୍ଗନ କରିସାରି ଧର୍ମାତ୍ମା ରାମଚନ୍ଦ୍ର କହିଲେ, "ବସ" ।୧୭-୧୯ । ତାପରେ ଭୂମି ଉପରେ ତାଙ୍କୁ ବସିବାର ଦେଖି ରାମଚନ୍ଦ୍ର କହିଲେ, "ଧର୍ମ, ଅର୍ଥ ଏବଂ କାମକୁ ଯଥାସମୟରେ ଯେଉଁ ବ୍ୟକ୍ତି ଅନୁଷ୍ଠାନ କରେ ଏବଂ ସେଥି ନିମନ୍ତେ ସେ ଉପଯୁକ୍ତ ସମୟବିଭାଗ କରେ, ହେ ବାନରଶ୍ରେଷ୍ଠ ! ସେହି ପ୍ରକୃତ ରାଜା ଅଟେ । ଧର୍ମ ଏବଂ ଅର୍ଥକୁ ତ୍ୟାଗକରି ଯେଉଁ ବ୍ୟକ୍ତି କେବଳ କାମର ସେବାକରେ ସେ ବୃକ୍ଷଶାଖା ଉପରେ ଶୋଇରହିଥିବା ବ୍ୟକ୍ତି ଖସିପଡ଼ିଲେ ଯେପରି

ସ ବୃକ୍ଷାଗ୍ରେ ଯଥା ସୁପ୍ତଃ ପତିତଃ ପ୍ରତିବୁଧ୍ୟତେ ।
ଅମିତ୍ରାଣାଂ ବଧେ ଯୁକ୍ତୋ ମିତ୍ରାଣାଂ ସଂଗ୍ରହେ ରତଃ । ୨୨ ।
ତ୍ରିବର୍ଗଫଲଭୋକ୍ତା ଚ ରାଜା ଧର୍ମେଣ ପୂଜ୍ୟତେ ।
ଉଦ୍ୟୋଗସମୟସ୍ତ୍ୱେଷ ପ୍ରାପ୍ତଃ ଶତ୍ରୁନିଷୂଦନ । ୨୩ ।
ସଂଚିନ୍ତ୍ୟତାଂ ହି ପିଙ୍ଗେଶ ହରିଭିଃ ସହ ମନ୍ତ୍ରିଭିଃ ।
ଏବମୁକ୍ତସ୍ତୁ ସୁଗ୍ରୀବୋ ରାମଂ ବଚନମବ୍ରବୀତ୍ । ୨୪ ।
ପ୍ରନଷ୍ଟା ଶ୍ରୀଶ୍ଚ କୀର୍ତ୍ତିଶ୍ଚ କପିରାଜ୍ୟଂ ଚ ଶାଶ୍ୱତମ୍ ।
ତ୍ୱତ୍ପ୍ରସାଦାନ୍ମହାବାହୋ ପୁନଃ ପ୍ରାପ୍ତମିଦଂ ମୟା । ୨୫ ।
ତବ ଦେବ ପ୍ରସାଦାଚ୍ଚ ଭ୍ରାତୁଶ୍ଚ ଜୟତାଂ ବର ।
କୃତଂ ନ ପ୍ରତିକୁର୍ଯାଦ୍ୟଃ ପୁରୁଷାଣାଂ ସ ଦୂଷକଃ । ୨୬ ।
ଏତେ ବାନରମୁଖ୍ୟାଶ୍ଚ ଶତଶଃ ଶତ୍ରୁସୂଦନ ।
ପ୍ରାପ୍ତାଶ୍ଚାଦାୟ ବଲିନଃ ପୃଥିବ୍ୟାଂ ସର୍ବବାନରାନ୍ । ୨୭ ।
ଋକ୍ଷାଶ୍ଚ ବାନରାଃ ଶୂରା ଗୋଲାଙ୍ଗୂଲାଶ୍ଚ ରାଘବ ।
କାନ୍ତାରବନଦୁର୍ଗାଣାମଭିଜ୍ଞା ଘୋରଦର୍ଶନାଃ । ୨୮ ।
ଦେବଗନ୍ଧର୍ବପୁତ୍ରାଶ୍ଚ ବାନରାଃ କାମରୂପିଣଃ ।
ସ୍ୱୈଃ ସ୍ୱୈଃ ପରିବୃତାଃ ସୈନ୍ୟୈର୍ବର୍ତ୍ତନ୍ତେ ପଥି ରାଘବ । ୨୯ ।

---

ତାହାର ନିଦଭଙ୍ଗିଯାଏ ସେହିପରି ଅଟେ । ଯେଉଁ ରାଜା ଶତ୍ରୁମାନଙ୍କ ବଧରେ ରତ ଏବଂ ମିତ୍ରମାନଙ୍କ ସଂଗ୍ରହରେ ବ୍ୟାପୃତ ସେ ଅର୍ଥ, ଧର୍ମ ଏବଂ କାମ ଏହି ତ୍ରିବର୍ଗର ଫଳ ଭୋଗକରେ । ହେ ଶତ୍ରୁସୂଦନ ! ଆମମାନଙ୍କର ଉଦ୍‌ଯୋଗ କରିବାର ଏହାହିଁ ସମୟ ଉପସ୍ଥିତ ହୋଇଅଛି । ହେ ବାନରରାଜ ! ତୁମେ ବାନର ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କର ।" ଏପରି କହିବାପରେ ସୁଗ୍ରୀବ ରାମଚନ୍ଦ୍ରଙ୍କୁ କହିଲେ ।୨୦-୨୪। "ହେ ମହାବାହୋ ! ଯେଉଁ ଶ୍ରୀ, କୀର୍ତ୍ତି ଏବଂ ଚିରନ୍ତନ କପିରାଜ୍ୟ ମୋର ନଷ୍ଟହୋଇ ଯାଇଥିଲା, ତାହା ଆପଣଙ୍କ ଅନୁଗ୍ରହରୁ ମୁଁ ପୁନଃପ୍ରାପ୍ତ ହୋଇଅଛି । ୨୫ । ହେ ଶ୍ରେଷ୍ଠବିଜୟି ! ତୁମ୍ଭର ଏବଂ ତୁମ୍ଭ ଭାଇଙ୍କର ଅନୁଗ୍ରହରୁ ମୁଁ ଏହା ପୁଣି ପାଇଅଛି । ଯେଉଁ ବ୍ୟକ୍ତି କୃତ ଉପକାରର ପ୍ରତିଦାନ ନ କରେ, ସେ ପୁରୁଷମାନଙ୍କ ମଧ୍ୟରେ ଦୋଷୀ ଅଟେ । ୨୬ । ହେ ଶତ୍ରୁସୂଦନ ! ଏହି ଶତ ଶତ ମୁଖ୍ୟ ବାନର ପୃଥିବୀର ସମସ୍ତ ବଳବାନ୍ ବାନରମାନଙ୍କୁ ସଂଗ୍ରହ କରି ଆଣିଅଛନ୍ତି । ହେ ରାମଚନ୍ଦ୍ର ! ଏହି ଭାଲୁ, ବାନର ତଥା ଗୋଲାଙ୍ଗୁଳମାନେ ଭୀଷଣାକୃତି ଅଟନ୍ତି ଏବଂ ଏମାନଙ୍କୁ ଦୁର୍ଗମ ବନ ତଥା କାନ୍ତାରମାନ ଜଣା ଅଛି । ୨୭-୨୮ । ହେ ରାଘବ, ଆପଣା ଇଚ୍ଛା ଅନୁସାରେ ବିଭିନ୍ନରୂପ ଧାରଣକାରୀ, ଦେବ ଏବଂ ଗନ୍ଧର୍ବ-ମାନଙ୍କର ପୁତ୍ର ବାନରମାନେ ନିଜ ନିଜ ସୈନ୍ୟମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ

ଶତୈଃ ଶତସହସ୍ରୈଶ୍ଚ ବର୍ତ୍ତନ୍ତେ କୋଟିଭିସ୍ତଥା ।
ଅୟୁତୈଶ୍ଚାବୃତା ବୀରାଃ ଶଙ୍କୁଭିଶ୍ଚ ପରଂତପ । ୩୦ ।
ଅର୍ବୁଦୈରର୍ବୁଦଶତୈର୍ମଧ୍ୟୈଶ୍ଚାନ୍ତ୍ୟୈଶ୍ଚ ବାନରାଃ ।
ସମୁଦ୍ରାଶ୍ଚ ପରାର୍ଦ୍ଧାଶ୍ଚ ହରୟୋ ହରିୟୂଥପାଃ । ୩୧ ।
ଆଗମିଷ୍ୟନ୍ତି ତେ ରାଜନ୍ମହେନ୍ଦ୍ରସମବିକ୍ରମାଃ ।
ମେଘପର୍ବତସଂକାଶା ମେରୁବିନ୍ଧ୍ୟକୃତାଲୟାଃ । ୩୨ ।
ତେ ତ୍ୱାମଭିଗମିଷ୍ୟନ୍ତି ରାକ୍ଷସଂ ଯୋଦ୍ଧୁମାହବେ ।
ନିହତ୍ୟ ରାବଣଂ ଯୁଦ୍ଧେ ହ୍ୟାନୟିଷ୍ୟନ୍ତି ମୈଥିଲୀମ୍ । ୩୩ ।
ତତଃ ସମୁଦ୍ୟୋଗମବେକ୍ଷ୍ୟ ବୀର୍ଯ୍ୟବାନ୍
ହରିପ୍ରବୀରସ୍ୟ ନିଦେଶବର୍ତ୍ତିନଃ ।
ବଭୂବ ହର୍ଷାଦ୍ ବସୁଧାଧିପାତ୍ମଜଃ
ପ୍ରବୁଦ୍ଧନୀଳୋତ୍ପଳତୁଲ୍ୟଦର୍ଶନଃ । ୩୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ରାମସମୀପଗମନମ୍
ନାମ ଅଷ୍ଟତ୍ରିଂଶଃ ସର୍ଗଃ

---

ପଥମଧ୍ୟରେ ଅପେକ୍ଷା କରି ରହିଛନ୍ତି । ୨୯ । କାହା ସହିତ ଶତ ବାନର ଅଛନ୍ତି, କାହା ସହିତ ସହସ୍ର ବାନର ଅଛନ୍ତି, କାହା ସହିତ କୋଟିଏ, କାହା ସହିତ ଅୟୁତ ଏବଂ କାହା ସହିତ ଏକ ଶଙ୍କୁ (ଏକ ଲକ୍ଷ କୋଟି) ବାନର ଅଛନ୍ତି । ୩୦ । କାହା ସହିତ ଅର୍ବୁଦ (ହଜାର ଶଙ୍କୁ), କାହା ସହିତ ଶହେ ଅର୍ବୁଦ, କାହା ସହିତ 'ମଧ୍ୟ' (ଅର୍ବୁଦର ଦଶଗୁଣ), କାହା ସହିତ ଅନ୍ତ୍ୟ (ଦଶ ମଧ୍ୟ) ଏବଂ କାହା ସହିତ ସମୁଦ୍ର (ଦଶ ଅନ୍ତ୍ୟ) ଏବଂ କାହା ସହିତ ପରାର୍ଦ୍ଧ (ତିନିଶି ପରାର୍ଦ୍ଧ) ବାନର ଅଛନ୍ତି ।୩୧। ହେ ରାଜନ୍ ! ମେରୁ ଏବଂ ବିନ୍ଧ୍ୟାଚଳର ଅଧିବାସୀ, ମେଘସଦୃଶ ବର୍ଣ୍ଣବିଶିଷ୍ଟ, ପର୍ବତସଦୃଶ ବିଶାଳ ଏବଂ ଇନ୍ଦ୍ରସଦୃଶ ପରାକ୍ରମୀ ବାନରମାନେ ମଧ୍ୟ ଆସିବେ । । ୩୨ । ସେମାନେ ଯୁଦ୍ଧରେ ରାକ୍ଷସମାନଙ୍କ ସହିତ ଯୁଦ୍ଧ କରିବା ନିମନ୍ତେ ଆପଣଙ୍କ ସଙ୍ଗେ ଯିବେ । ରାବଣକୁ ଯୁଦ୍ଧରେ ବଧକରି ସୀତାଙ୍କୁ ଆଣିବେ" ।୩୩। ଆଜ୍ଞାକାରୀ ବାନରରାଜ ସୁଗ୍ରୀବଙ୍କର ଉଦ୍‌ଯୋଗ ଦେଖି ରାଜପୁତ୍ର ରାମଚନ୍ଦ୍ର ଆନନ୍ଦରେ ବିକଶିତ ନୀଳକମଳପରି ସୁନ୍ଦର ଦେଖାଗଲେ । ୩୪ ।

---

# ଏକୋନଚତ୍ୱାରିଂଶଃ ସର୍ଗଃ

## ସେନାସନ୍ନିବେଶଃ

ଇତି ବ୍ରୁବାଣଂ ସୁଗ୍ରୀବଂ ରାମୋ ଧର୍ମଭୃତାଂ ବରଃ ।
ବାହୁଭ୍ୟାଂ ସଂପରିଷ୍ୱଜ୍ୟ ପ୍ରତ୍ୟୁବାଚ କୃତାଞ୍ଜଳିମ୍ ।୧।
ଯଦୀନ୍ଦ୍ରୋ ବର୍ଷତେ ବର୍ଷଂ ନ ତଚ୍ଚିତ୍ରଂ ଭବିଷ୍ୟତି ।
ଆଦିତ୍ୟୋଽସୌ ସହସ୍ରାଂଶୁଃ କୁର୍ଯାଦ୍ ବିତିମିରଂ ନଭଃ ।୨।
ଚନ୍ଦ୍ରମା ରଜନୀଂ କୁର୍ଯାତ୍ ପ୍ରଭୟା ସୌମ୍ୟ ନିର୍ମଳାମ୍ ।
ତ୍ୱଦ୍‌ବିଧୋ ବାପି ମିତ୍ରାଣାଂ ପ୍ରୀତିଂ କୁର୍ଯାତ୍ପରଂତପ ।୩।
ଏବଂ ତ୍ୱୟି ନ ତଚ୍ଚିତ୍ରଂ ଭବେଦ୍ ଯତ୍ସୌମ୍ୟ ଶୋଭନମ୍ ।
ଜାନାମ୍ୟହଂ ତ୍ୱାଂ ସୁଗ୍ରୀବ ସତତଂ ପ୍ରିୟବାଦିନମ୍ ।୪।
ତ୍ୱତ୍ସନାଥଃ ସଖେ ସଂଖ୍ୟେ ଜେତାସ୍ମି ସକଲାନରୀନ୍ ।
ତ୍ୱମେବ ମେ ସୁହୃନ୍ମିତ୍ରଂ ସାହାଯ୍ୟଂ କର୍ତ୍ତୁମର୍ହସି ।୫।
ଜହାରାତ୍ମବିନାଶାୟ ବୈଦେହୀଂ ରାକ୍ଷସାଧମଃ ।
ବଞ୍ଚୟିତ୍ୱା ତୁ ପୌଲୋମୀମନୁହ୍ଲାଦୋ ଯଥା ଶଚୀମ୍ ।୬।

---

## ୩୯ଶ ସର୍ଗ

( ସୈନ୍ୟସ୍ଥାପନ )

ସୁଗ୍ରୀବ ଏହିପରି ହାତଯୋଡ଼ି କହୁଥିବା ବେଳେ ଧାର୍ମିକଶ୍ରେଷ୍ଠ ରାମଚନ୍ଦ୍ର ତାଙ୍କୁ ଦୁଇବାହୁଦ୍ୱାରା ଆଲିଙ୍ଗନ କରି କହିଲେ ।୧। "ଇନ୍ଦ୍ର ଯେ ଜଳବୃଷ୍ଟି କରୁଛନ୍ତି ଏଥିରେ କିଛି ଆଶ୍ଚର୍ଯ୍ୟ ନାହିଁ, ସହସ୍ରାଂଶୁ ସୂର୍ଯ୍ୟ ଯେ ଆକାଶକୁ ଅନ୍ଧକାରବିମୁକ୍ତ କରୁଛନ୍ତି, ଏଥିରେ କିଛି ଆଶ୍ଚର୍ଯ୍ୟ ନାହିଁ ।୨। ହେ ସୌମ୍ୟ ! ଚନ୍ଦ୍ର ଯେପରି ନିଜର ଜ୍ୟୋତିଦ୍ୱାରା ରାତ୍ରିକୁ ଆଲୋକମୟ କରୁଛନ୍ତି; ସେହିପରି ତୁମ ସଦୃଶ ବ୍ୟକ୍ତି ଯଦି ମିତ୍ରର ପ୍ରୀତିକର କାର୍ଯ୍ୟ କରେ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।୩। ସେହିପରି ତୁମେ ଯେ ସାଧୁ ଶୋଭନ କାର୍ଯ୍ୟ କରିବ ଏଥିରେ କିଛି ବିଚିତ୍ରତା ନାହିଁ । ତୁମେ ସର୍ବଦା ପ୍ରିୟବାଦୀ ଏହା ମୁଁ ଜାଣେ ।୪। ସଖେ ! ତୁମେ ଯୁଦ୍ଧରେ ମୋର ସହାୟ ରହିଲେ ମୁଁ ସମସ୍ତ ଶତ୍ରୁଙ୍କୁ ଜିଣିଯିବି । ତୁମେହିଁ ମୋର ସୁହୃଦ୍ ଏବଂ ମିତ୍ର । ତୁମ୍ଭର ମୋତେ ସାହାଯ୍ୟ କରିବା ଉଚିତ ।୫। ରାକ୍ଷସାଧମ ରାବଣ ନିଜର ବିନାଶ ନିମନ୍ତେ ଜାନକୀଙ୍କୁ ହରଣ କରିଅଛି, ଯେପରି ଇନ୍ଦ୍ରଙ୍କୁ ଠକିଦେଇ ଅନୁହ୍ଲାଦ ଶଚୀଙ୍କୁ ହରଣ କରି ନେଇଥିଲା;

ନଚିରାତ୍ତଂ ବଧିଷ୍ୟାମି ରାବଣଂ ନିଶିତୈଃ ଶରୈଃ ।
ପୌଲୋମ୍ୟାଃ ପିତରଂ ଦୃପ୍ତଂ ଶତକ୍ରତୁରିବାରିହା । ୭ ।
ଏତସ୍ମିନ୍ନନ୍ତରେ ଚୈବ ରଜଃ ସମଭିବର୍ତ୍ତତ ।
ଉଷ୍ଣତୀବ୍ରାଂ ସହସ୍ରାଂଶୋଶ୍ଛାଦୟଦ୍‌ଗଗନେ ପ୍ରଭାମ୍ । ୮ ।
ଦିଶଃ ପର୍ଯ୍ୟାକୁଲାଶ୍ଚାସଂସ୍ତମସା ତେନ ଦୂଷିତାଃ ।
ଚଚାଲ ଚ ମହୀ ସର୍ବା ସଶୈଳବନକାନନା । ୯ ।
ତତୋ ନଗେନ୍ଦ୍ରସଂକାଶୈସ୍ତୀକ୍ଷ୍ଣଦଂଷ୍ଟ୍ରୈର୍ମହାବଲୈଃ ।
କୃତ୍ସ୍ନା ସଂଚ୍ଛାଦିତା ଭୂମିରସଂଖ୍ୟେୟୈଃ ପ୍ଲବଙ୍ଗମୈଃ । ୧୦ ।
ନିମେଷାନ୍ତରମାତ୍ରେଣ ତତସ୍ତୈର୍ହରିୟୂଥପୈଃ ।
କୋଟୀଶତପରୀବାରୈର୍ବାନରୈର୍ହରିୟୂଥପୈଃ । ୧୧ ।
ନାଦେୟୈଃ ପାର୍ବତେୟୈଶ୍ଚ ସାମୁଦ୍ରୈଶ୍ଚ ମହାବଲୈଃ ।
ହରିଭିର୍ମେଘନିର୍ହ୍ରାଦୈରନ୍ୟୈଶ୍ଚ ବନବାସିଭିଃ । ୧୨ ।
ତରୁଣାଦିତ୍ୟବର୍ଣ୍ଣୈଶ୍ଚ ଶଶିଗୌରୈଶ୍ଚ ବାନରୈଃ ।
ପଦ୍ମକେସରବର୍ଣ୍ଣୈଶ୍ଚ ଶ୍ୱେତୈର୍ହେମକୃତାଲୟୈଃ । ୧୩ ।
କୋଟୀସହସ୍ରୈର୍ଦଶଭିଃ ଶ୍ରୀମାନ୍ ପରିବୃତସ୍ତଦା ।
ବୀରଃ ଶତବଲିର୍ନାମ ବାନରଃ ପ୍ରତ୍ୟଦୃଶ୍ୟତ । ୧୪ ।

---

ଶମ୍ବୁହନ୍ତା ଇନ୍ଦ୍ର ଯେପରି ଗର୍ବିତ ପୌଲୋମୀଙ୍କର ପିତାଙ୍କୁ ହତ୍ୟା କରିଥିଲେ, ସେହିପରି ମୁଁ ସେହି ରାବଣକୁ ଶୀଘ୍ର ତୀକ୍ଷ୍ଣଶରରେ ବଧ କରିବି" ।୬-୭। ଏହି ସମୟରେ ଧୂଳି ଉଡ଼ି ସୂର୍ଯ୍ୟଙ୍କର ତପ୍ତ ଜ୍ୟୋତିକୁ ଘୋଡ଼ାଇ ପକାଇଲା ।୮। ଦିଗସବୁ ଅନ୍ଧକାରଦ୍ୱାରା ପରିବ୍ୟାପ୍ତ ହୋଇଗଲା । ପର୍ବତ ଏବଂ କାନନ ଆଦି ସହିତ ପୃଥିବୀ କମ୍ପିବାକୁ ଲାଗିଲା ।୯। ଅନନ୍ତର ତୀକ୍ଷ୍ଣଦନ୍ତବିଶିଷ୍ଟ ପର୍ବତସଦୃଶ ଉଚ୍ଚ ଅସଂଖ୍ୟ ମହାବଳୀ ବାନରମାନଙ୍କଦ୍ୱାରା ସମଗ୍ର ପୃଥିବୀ ଆଚ୍ଛାଦିତ ହୋଇଗଲା ।୧୦। ମୁହୂର୍ତ୍ତକ ମଧ୍ୟରେ ସେହି ଶତ ଶତ କୋଟି ସୈନିକ ଏବଂ ସେମାନଙ୍କ ସେନାପତି-ମାନଙ୍କ ଦ୍ୱାରା ସେ ସ୍ଥାନ ପୂର୍ଣ୍ଣ ହୋଇଗଲା ।୧୧। ନଦୀ, ପର୍ବତ ଏବଂ ସମୁଦ୍ରରେ ବାସ କରୁଥିବା ମେଘସଦୃଶ ଗର୍ଜନକାରୀ ମହାବଳୀ ବାନରମାନଙ୍କ ଦ୍ୱାରା ତଥା ବନବାସୀ ବାନରମାନଙ୍କ ଦ୍ୱାରା ସେ ଭୂମି ପୂର୍ଣ୍ଣ ହୋଇଗଲା ।୧୨। ତରୁଣ ସୂର୍ଯ୍ୟସଦୃଶ ବର୍ଣ୍ଣବିଶିଷ୍ଟ, ଚନ୍ଦ୍ରସଦୃଶ ଗୌରବର୍ଣ୍ଣ, ପଦ୍ମକେଶରସଦୃଶ ପୀତବର୍ଣ୍ଣ ଏବଂ ଶ୍ୱେତବର୍ଣ୍ଣ ହିମାଳୟବାସୀ ଦଶସହସ୍ରକୋଟି ବାନରଙ୍କ ସହିତ ବୀର ଶତବଳ ନାମକ ବାନର ଦୃଷ୍ଟିଗୋଚର ହେଲା ।୧୩-୧୪। ଅନନ୍ତର ସୁବର୍ଣ୍ଣ

ତତଃ କାଞ୍ଚନଶୈଳାଭସ୍ତାରାୟା ବୀର୍ଯ୍ୟବାନ୍ ପିତା ।
ଅନେକୈର୍ବହୁସାହସ୍ରୈଃ କୋଟିଭିଃ ପ୍ରତ୍ୟଦୃଶ୍ୟତ । ୧୫ ।
ତଥାପରେଣ କୋଟୀନାଂ ସହସ୍ରେଣ ସମନ୍ୱିତଃ ।
ପିତା ରୁମାୟାଃ ସଂପ୍ରାପ୍ତଃ ସୁଗ୍ରୀବଶ୍ୱଶୁରୋ ବିଭୁଃ । ୧୬ ।
ପଦ୍ମକେସରସଂକାଶସ୍ତରୁଣାର୍କନିଭାନନଃ
ବୁଦ୍ଧିମାନ୍ ବାନରଶ୍ରେଷ୍ଠଃ ସର୍ବବାନରସତ୍ତମଃ । ୧୭ ।
ଅନେକୈର୍ବହୁସାହସ୍ରୈର୍ବାନରାଣାଂ ସମନ୍ୱିତଃ ।
ପିତା ହନୁମତଃ ଶ୍ରୀମାନ୍ କେସରୀ ପ୍ରତ୍ୟଦୃଶ୍ୟତ । ୧୮ ।
ଗୋଲାଙ୍ଗୁଲମହାରାଜ ଗବାକ୍ଷୋ ଭୀମବିକ୍ରମଃ ।
ବୃତଃ କୋଟିସହସ୍ରେଣ ବାନରାଣାମଦୃଶ୍ୟତ । ୧୯ ।
ଋକ୍ଷାଣାଂ ଭୀମବେଗାନାଂ ଧୂମ୍ରଃ ଶତ୍ରୁନିବର୍ହଣଃ ।
ବୃତଃ କୋଟିସହସ୍ରାଭ୍ୟାଂ ଦ୍ୱାଭ୍ୟାଂ ସମଭିବର୍ତ୍ତତ । ୨୦ ।
ମହାଚଳନିଭୈର୍ଘୋରୈଃ ପନସୋ ନାମ ଯୂଥପଃ ।
ଆଜଗାମ ମହାବୀର୍ଯ୍ୟସ୍ତିସୃଭିଃ କୋଟିଭିର୍ବୃତଃ । ୨୧ ।
ନୀଳାଞ୍ଜନଚୟାକାରୋ ନୀଳୋ ନାମେଣ ଯୂଥପଃ ।
ଅଦୃଶ୍ୟତ ମହାକାୟଃ କୋଟିଭିର୍ଦଶଭିର୍ବୃତଃ । ୨୨ ।

---

ପର୍ବତସଦୃଶ ପ୍ରଭାବିଶିଷ୍ଟ ତାରାଙ୍କର ବଳବାନ୍ ପିତା ଅନେକ ସହସ୍ର କୋଟି ବାନରଙ୍କ ସହିତ ଦେଖାଗଲେ । ୧୫ । ଅନନ୍ତର ଆଉରି ଏକସହସ୍ର କୋଟି ବାନରଙ୍କ ସହିତ ରୁମାଙ୍କର ପିତା, ସୁଗ୍ରୀବଙ୍କର ଶ୍ୱଶୁର ଆସି ଉପସ୍ଥିତ ହେଲେ । ୧୬ । ତାଙ୍କର ବର୍ଣ୍ଣ ପଦ୍ମକେଶରର ବର୍ଣ୍ଣପରି, ତାଙ୍କର ମୁଖ ସୂର୍ଯ୍ୟପରି ଦେଦୀପ୍ୟମାନ, ସେ ବଡ଼ ବୁଦ୍ଧିମାନ୍ ଏବଂ ବାନରମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ । ୧୭ । ଅନେକ ସହସ୍ର ବାନରଙ୍କ ସହିତ ହନୁମାନଙ୍କର ପିତା ଶ୍ରୀମାନ୍ କେଶରୀ ମଧ୍ୟ ଆସି ପହଞ୍ଚିଲେ । ୧୮ । ଅନନ୍ତର ଗୋଲାଙ୍ଗୁଳଜାତିସ୍ଥ ବାନରମାନଙ୍କର ରାଜା ମହାପରାକ୍ରମୀ ଗବାକ୍ଷ ହଜାରକୋଟି ବାନରଙ୍କ ସହିତ ଦେଖାଗଲେ । ୧୯ । ଅତି ବେଗବାନ୍ ଦୁଇହଜାର କୋଟି ଭାଲୁମାନଙ୍କ ସହିତ ଧୂମ୍ର ନାମକ ଭଲ୍ଲୁକରାଜ ଆସି ପହଞ୍ଚିଲେ । ୨୦ । ମହାବଳ (ବ୍ୟାଘ୍ର) ସଦୃଶ ତେଜସ୍ୱୀ ତିନକୋଟି ଉଗ୍ରଙ୍କର ବାନରଙ୍କଦ୍ୱାରା ପରିବେଷ୍ଟିତ ହୋଇ ପନସ ନାମକ ସେନାପତି ଆସିଲେ । ୨୧ । ନୀଳବର୍ଣ୍ଣ କଜ୍ଜଳସମୂହପରି ଆକାରବିଶିଷ୍ଟ ନୀଳ ନାମକ ବିଶାଳକାୟ ଦଳପତି ଦଶକୋଟି ବାନରଙ୍କ ସହିତ ଆସିଲେ । ୨୨ ।

ତତଃ କାଞ୍ଚନଶୈଳାଭୋ ଗବୟୋ ନାମ ଯୂଥପଃ ।
ଆଜଗାମ ମହାବୀର୍ଯ୍ୟଃ କୋଟିଭିଃ ପଞ୍ଚଭିର୍ବୃତଃ । ୨୩ ।
ଦରୀମୁଖଶ୍ଚ ବଳବାନ୍ ଯୂଥପୋଽଭ୍ୟାଯଯୌ ତଦା ।
ବୃତଃ କୋଟିସହସ୍ରେଣ ସୁଗ୍ରୀବଂ ସମବସ୍ଥିତଃ । ୨୪ ।
ମୈନ୍ଦଶ୍ଚ ଦ୍ୱିବିଦଶ୍ଚୋଭାବଶ୍ୱିପୁତ୍ରୌ ମହାବଳୌ ।
କୋଟିକୋଟିସହସ୍ରେଣ ବାନରାଣାମଦୃଶ୍ୟତାଂ । ୨୫ ।
ଗଜଶ୍ଚ ବଳବାନ୍ ବୀରସ୍ତିସୃଭିଃ କୋଟିଭିର୍ବୃତଃ ।
ଋକ୍ଷରାଜୋ ମହାତେଜା ଜାମ୍ବବାନ୍ନାମ ନାମତଃ । ୨୬ ।
କୋଟିଭିର୍ଦଶଭିର୍ବ୍ୟାପ୍ତଃ ସୁଗ୍ରୀବସ୍ୟ ବଶେ ସ୍ଥିତ ।
ରୁମଣ୍ୱାନ୍ନାମ ତେଜସ୍ୱୀ ବିକ୍ରାନ୍ତୈର୍ବାନରୈର୍ବୃତଃ । ୨୭ ।
ଆଗତୋ ବଳବାଂସ୍ତୂର୍ଣଂ କୋଟୀଶତସମାବୃତଃ ।
ତତଃ କୋଟିସହସ୍ରାଣାଂ ସହସ୍ରେଣ ଶତେନ ଚ । ୨୮ ।
ପୃଷ୍ଠତୋଽନୁଗତଃ ପ୍ରାପ୍ତୋଃ ହରିଭିର୍ଗନ୍ଧମାଦନଃ ।
ତତଃ ପଦ୍ମସହସ୍ରେଣ ବୃତଃ ଶଙ୍କୁଶତେନ ଚ । ୨୯ ।

---

ଅନନ୍ତର ସୁବର୍ଣ୍ଣପର୍ବତପର ଜ୍ୟୋତିଷ୍ମାନ୍ ଗବୟ ନାମକ ମହାବୀର୍ଯ୍ୟବାନ୍ ଦଳପତି ପାଞ୍ଚକୋଟି ବାନରଙ୍କ ସହିତ ଆସିଲେ ।୨୩। ତା ପରେ ଦରୀମୁଖ ନାମକ ବଳବାନ୍ ଦଳପତି ଆସିଲେ । ତାଙ୍କ ସହିତ ସହସ୍ର କୋଟି ବାନର ଥିଲେ । ସେ ଆସି ସୁଗ୍ରୀବଙ୍କ ନିକଟରେ ବସିଗଲେ । ୨୪ । ଅଶ୍ୱିନୀକୁମାରଙ୍କର ପୁତ୍ରଦ୍ୱୟ ମହାବଳୀ ମୈନ୍ଦ ଏବଂ ଦ୍ୱିବିଦ ନାମକ ବାନର ହଜାର ହଜାର କୋଟି ବାନରଙ୍କ ସହିତ ଆସି ଉପସ୍ଥିତ ହେଲେ । ୨୫ । ବଳବାନ୍ ଗଜ ନାମକ ବୀର ଆସିଲେ । ତାଙ୍କ ସହିତ ତିନକୋଟି ବାନର ଆସିଲେ । ମହାତେଜସ୍ୱୀ ଜାମ୍ବବାନ୍ ନାମକ ଭଲ୍ଲୁକରାଜ ମଧ ଆସିଲେ । ୨୬ । ତାଙ୍କ ସହିତ ଦଶକୋଟି ସୈନ୍ୟ ଥିଲେ ଏବଂ ସେ ସର୍ବଦା ସୁଗ୍ରୀବଙ୍କର ବଶୀଭୂତ ଥିଲେ । ରୁମଣ୍ୱାନ୍ ନାମକ ତେଜସ୍ୱୀ ବଳବାନ୍ ବାନର ଶୀଘ୍ର ଆସି ପହଞ୍ଚିଲେ । ତାଙ୍କ ସହିତ ଶହେକୋଟି ପରାକ୍ରମୀ ବାନର ଆସିଲେ । ଅନନ୍ତର ଶତସହସ୍ର କୋଟି ବାନରଙ୍କୁ ପଛରେ ଧରି ଗନ୍ଧମାଦନ ନାମକ ବାନର ଆସିଲେ । ଅନନ୍ତର ହଜାର ପଦ୍ମ ଏବଂ ଏକଶତ ଶଙ୍କୁ ବାନରଙ୍କ ସହିତ ନିଜର ପିତାଙ୍କ ସଦୃଶ ପରାକ୍ରମୀ ଯୁବରାଜ ଅଙ୍ଗଦ ଆସି ପହଞ୍ଚିଲେ । ଅନନ୍ତର ତାରା-

ଯୁବରାଜୋଽଙ୍ଗଦଃ ପ୍ରାପ୍ତଃ ପିତୃତୁଲ୍ୟପରାକ୍ରମଃ ।
ତତସ୍ତାରଦ୍ୟୁତିସ୍ତାରୋ ହରିଭିର୍ଭୀମବିକ୍ରମୈଃ । ୩୦ ।
ପଞ୍ଚଭିର୍ହରିକୋଟୀଭିର୍ଦୂରତଃ ପର୍ଯ୍ୟଦୃଶ୍ୟତ ।
ଇନ୍ଦ୍ରଜାନୁଃ କପିର୍ବୀରୋ ଯୂଥପଃ ପ୍ରତ୍ୟଦୃଶ୍ୟତ । ୩୧ ।
ଏକାଦଶାନାଂ କୋଟୀନାମୀଶ୍ୱରସ୍ତୈଶ୍ଚ ସଂବୃତଃ ।
ତତୋ ରମ୍ଭସ୍ତ୍ୱନୁପ୍ରାପ୍ତସ୍ତରୁଣାଦିତ୍ୟସଂନିଭଃ । ୩୨ ।
ଅୟୁତେନ ବୃତଶ୍ଚୈବ ସହସ୍ରେଣ ଶତେନ ଚ ।
ତତୋ ଯୂଥପତିର୍ବୀରୋ ଦୁର୍ମୁଖୋ ନାମ ବାନରଃ । ୩୩ ।
ପ୍ରତ୍ୟଦୃଶ୍ୟତ କୋଟୀଭ୍ୟାଂ ଦ୍ୱାଭ୍ୟାଂ ପରିବୃତୋ ବଲୀ ।
କୈଳାସଶିଖରାକାରୈର୍ବାନରୈର୍ଭୀମବିକ୍ରମୈଃ । ୩୪ ।
ବୃତଃ କୋଟିସହସ୍ରେଣ ହନୁମାନ୍ ପ୍ରତ୍ୟଦୃଶ୍ୟତ ।
ନଳଶ୍ଚାପି ମହାବୀର୍ଯଃ ସଂବୃତୋ ଦ୍ରୁମବାସିଭିଃ । ୩୫ ।
କୋଟୀଶତେନ ସଂପ୍ରାପ୍ତଃ ସହସ୍ରେଣ ଶତେନ ଚ ।
ତତୋ ଦଧିମୁଖଃ ଶ୍ରୀମାନ୍ କୋଟିଭିର୍ଦଶଭିର୍ବୃତଃ । ୩୬ ।
ସଂପ୍ରାପ୍ତୋଽଭିନଦଂସ୍ତସ୍ୟ ସୁଗ୍ରୀବସ୍ୟ ମହାତ୍ମନଃ ।
ଶରଭଃ କୁମୁଦୋ ବହ୍ନିର୍ବାନରୋ ରମ୍ଭ ଏବ ଚ । ୩୭ ।

---

ସଦୃଶ ପ୍ରକାଶମାନ ଭୀମପରାକ୍ରମୀ ତାର ନାମକ ସେନାପତି ପାଞ୍ଚକୋଟି ବାନରଙ୍କ ସହିତ ଦେଖାଦେଲେ । ଇନ୍ଦ୍ରଜାନୁ ନାମକ ବୀର ସେନାପତି ମଧ୍ୟ ଦେଖାଗଲେ । ସେ ଏଗାରକୋଟି ବାନରଙ୍କର ଅଧିପତି ଏବଂ ସେମାନେ ସମସ୍ତେ ତାଙ୍କ ସହିତ ଆସିଥିଲେ । ଅନନ୍ତର ସୂର୍ଯ୍ୟସଦୃଶ ପ୍ରକାଶମାନ ରମ୍ଭ ନାମକ ବାନର ଆସିଲେ । ଏଗାରହଜାର ଏକଶତ ବାନର ତାଙ୍କ ସହିତ ଆସିଲେ । ଅନନ୍ତର ଦୁର୍ମୁଖ ନାମକ ବୀର ଆସିଲେ । ସେ ବଳବାନ୍ ବୀର ଦୁଇକୋଟି ବାନରଙ୍କ ସହିତ ଦେଖାଦେଲେ । କୈଳାସଶିଖରସଦୃଶ ଆକାରବିଶିଷ୍ଟ ମହାପରାକ୍ରମୀ ସହସ୍ରକୋଟି ବାନରଙ୍କ ସହିତ ବୀର ହନୁମାନ୍ ଦେଖାଗଲେ । ପୁଣି ନଳ ନାମକ ମହାବଳୀ ବାନର ଏକଶତ କୋଟି ଏକହଜାର ଏବଂ ଏକଶତ ବୃକ୍ଷବାସୀ ବାନରଙ୍କ ସହିତ ଆସି ପହଞ୍ଚିଲେ । ଦଧିମୁଖନାମକ ସେନାପତି ଦଶକୋଟି ବାନରଙ୍କ ସହିତ ଆସିଲେ । ୨୭-୩୬ । ଶରଭ, କୁମୁଦ, ବହ୍ନି ଏବଂ ରମ୍ଭ ନାମକ ବାନରମାନେ ଗର୍ଜନକରି ଆସି ମହାତ୍ମା ସୁଗ୍ରୀବଙ୍କ ନିକଟରେ ପହଞ୍ଚିଲେ । ୩୭ । ଏମାନେ ତଥା

ଏତେ ଚାନ୍ୟେ ଚ ବହବୋ ବାନରାଃ କାମରୂପିଣଃ ।
ଆବୃତ୍ୟ ପୃଥିବୀଂ ସର୍ବାଂ ପର୍ବତାଂଶ୍ଚ ବନାନି ଚ । ୩୮ ।
ଯୂଥପାଃ ସମନୁପ୍ରାପ୍ତା ଯେଷାଂ ସଂଖ୍ୟା ନ ବିଦ୍ୟତେ ।
ଆଗତାଶ୍ଚ ନିବିଷ୍ଟାଶ୍ଚ ପୃଥିବ୍ୟାଂ ସର୍ବବାନରାଃ । ୩୯ ।
ଆପ୍ଲବନ୍ତଃ ପ୍ଲବନ୍ତଶ୍ଚ ଗର୍ଜନ୍ତଶ୍ଚ ପ୍ଲବଙ୍ଗମାଃ ।
ଅଭ୍ୟବର୍ତ୍ତନ୍ତ ସୁଗ୍ରୀବଂ ସୂର୍ଯ୍ୟମଭ୍ରଗଣା ଇବ । ୪୦ ।
କୁର୍ବାଣା ବହୁଶବ୍ଦାଂଶ୍ଚ ପ୍ରହୃଷ୍ଟା ବାହୁଶାଳିନଃ ।
ଶିରୋଭିର୍ବାନରେନ୍ଦ୍ରାୟ ସୁଗ୍ରୀବାୟ ନ୍ୟବେଦୟନ୍ । ୪୧ ।
ଅପରେ ବାନରଶ୍ରେଷ୍ଠାଃ ସଙ୍ଗମ୍ୟ ଚ ଯଥୋଚିତମ୍ ।
ସୁଗ୍ରୀବେଣ ସମାଗମ୍ୟ ସ୍ଥିତାଃ ପ୍ରାଞ୍ଜଳୟସ୍ତଦା । ୪୨ ।
ସୁଗ୍ରୀବସ୍ତ୍ୱରିତୋ ରାମେ ସର୍ବାଂସ୍ତାଂସ୍ତ୍ୱରିତାଂସ୍ତଦା ।
ନିବେଦୟିତ୍ୱା ଧର୍ମଜ୍ଞଃ ସ୍ଥିତଃ ପ୍ରାଞ୍ଜଳିରବ୍ରବୀତ୍ । ୪୩ ।

---

ଅନ୍ୟାନ୍ୟ ଅନେକ ସ୍ୱେଚ୍ଛାରେ ନାନା ରୂପଧାରୀ ବାନର ସମସ୍ତ ପର୍ବତ, ବନ ଏବଂ ପୃଥିବୀ ବୁଲିବୁଲି ଆସି ପହଞ୍ଚିଲେ । ୩୮ । ଯେତେ ଦଳପତି ଆସିଥିଲେ ସେମାନଙ୍କର ସଂଖ୍ୟା କରିହେବ ନାହିଁ । ସବୁ ବାନର ଆସି ଭୂମି ଉପରେ ବସିଗଲେ । ୩୯ । ସୂର୍ଯ୍ୟଙ୍କ ନିକଟକୁ ମେଘମାନେ ଆସିଲାପରି ଏହି ସବୁ ବାନର ଡେଇଁ, କୁଦି, ଗର୍ଜନ କରି ଆସି ସୁଗ୍ରୀବଙ୍କ ନିକଟରେ ଉପସ୍ଥିତ ହେଲେ ।୪୦ ବାହୁବଳଯୁକ୍ତ ଓ ପ୍ରହୃଷ୍ଟ ଏହି ବାନରମାନେ ଅନେକ ପ୍ରକାର ଶବ୍ଦ କରି ଏବଂ ମସ୍ତକ ଅବନତ କରି ସୁଗ୍ରୀବଙ୍କୁ ସେମାନଙ୍କ ଆଗମନର ସୂଚନା ଦେଲେ । ୪୧ । ଆଉ କେହି କେହି ବାନରଦଳପତି ସୁଗ୍ରୀବଙ୍କ ସହିତ ଯଥୋଚିତଭାବରେ ମିଳିତ ହୋଇ ହାତଯୋଡ଼ି ଉଭାହେଲେ । ୪୨ । ସୁଗ୍ରୀବ ସତ୍ୱର ଏ ସମସ୍ତଙ୍କୁ ରାମଙ୍କ ସମ୍ମୁଖରେ ଉପସ୍ଥିତ କରାଇଲେ ଏବଂ ଧର୍ମଜ୍ଞ ସୁଗ୍ରୀବ ନିଜେ ହାତଯୋଡ଼ି କହିଗଲେ । ୪୩ । ପର୍ବତର ଝରଣା ନିକଟରେ ଏବଂ ବନମାନଙ୍କରେ ବାନର

**ଯଥାସୁଖଂ ପର୍ବତନିର୍ଝରେଷୁ**
**ବନେଷୁ ସର୍ବେଷୁ ଚ ବାନରେନ୍ଦ୍ରାଃ ।**
**ନିବେଶୟିତ୍ୱା ବିଧିବଦ୍‌ବଲାନି**
**ବଲଂ ବଲଜ୍ଞଃ ପ୍ରତିପତ୍ତୁମୀଷ୍ଟେ । ୪୪ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସେନାସନ୍ନିବେଶୋ
ନାମ ଏକୋନଚତ୍ୱାରିଂଶଃ ସର୍ଗଃ

---

ଦଳପତିମାନେ ନିଜ ନିଜ ସୈନ୍ୟମାନଙ୍କୁ ରଖାଇଲେ । ଅନନ୍ତର ସୈନ୍ୟମାନଙ୍କର ବଳ ଜାଣିଥିବା ସୁଗ୍ରୀବ ସେ ସମସ୍ତ ସୈନ୍ୟଙ୍କ ସଂଖ୍ୟା ସ୍ଥିରକରି ଜାଣିବାକୁ ଇଚ୍ଛା କରିଥିଲେ । ୪୪ ।

# ଚତ୍ୱାରିଂଶଃ ସର୍ଗଃ

## ପ୍ରାଚୀପ୍ରେଷଣମ୍

ଅଥ ରାଜା ସମୃଦ୍ଧାର୍ଥଃ ସୁଗ୍ରୀବଃ ପ୍ଲବଗେଶ୍ୱରଃ ।
ଉବାଚ ନରଶାର୍ଦ୍ଦୂଲଂ ରାମଂ ପରବଲାର୍ଦ୍ଦନମ୍ । ୧ ।
ଆଗତା ବିନିବିଷ୍ଟାଶ୍ଚ ବଲିନଃ କାମରୂପିଣଃ ।
ବାନରେନ୍ଦ୍ରା ମହେନ୍ଦ୍ରାଭା ଯେ ମଦ୍‌ବିଷୟବାସିନଃ । ୨।
ତ ଇମେ ବହୁବିକ୍ରାନ୍ତୈର୍ବଲିଭିର୍ଭୀମବିକ୍ରମୈଃ ।
ଆଗତା ବାନରା ଘୋରା ଦୈତ୍ୟଦାନବସଂନିଭାଃ । ୩ ।
ଖ୍ୟାତକର୍ମାପଦାନାଶ୍ଚ ବଲବନ୍ତୋ ଜିତକ୍ଲମାଃ ।
ପରାକ୍ରମେଷୁ ବିଖ୍ୟାତା ବ୍ୟବସାୟେଷୁ ଚୋତ୍ତମାଃ । ୪।
ପୃଥିବ୍ୟମ୍ବୁଚରା ରାମ ନାନାନଗନିବାସିନଃ ।
କୋଟ୍ୟୋଘାଶ୍ଚ ଇମେ ପ୍ରାପ୍ତା ବାନରାସ୍ତବ କିଙ୍କରାଃ । ୫ ।

---

## ୪୦ଂଶ ସର୍ଗ

( ପୂର୍ବଦିଗକୁ ଦୂତପ୍ରେରଣ )

ବାନରରାଜ ସୁଗ୍ରୀବ ସମସ୍ତ ଉପକରଣସମନ୍ୱିତ ହୋଇ ଶତ୍ରୁବିନାଶକ ନରଶ୍ରେଷ୍ଠ ରାମଚନ୍ଦ୍ରଙ୍କୁ କହିଲେ । ୧ । "ମୋର ରାଜ୍ୟର ଅଧିବାସୀ ସମସ୍ତ ବାନର ଆସିଗଲେ । ଏମାନେ ଇନ୍ଦ୍ରସଦୃଶ ବଳବାନ୍ ଏବଂ ଇଚ୍ଛାନୁସାରେ ନାନାରୂପ ଧାରଣକରିପାରନ୍ତି । ଏମାନଙ୍କୁ ଉପଯୁକ୍ତ ସ୍ଥାନରେ ରଖାଇ ଦିଆଯାଇଛି । ୨ । ଅନେକ ଦେଶରେ ଭ୍ରମଣକରି ଏହି ପରାକ୍ରମୀ ଏବଂ ବଳଶାଳୀ ଭୟାନକ ବାନରମାନେ ଆସିଅଛନ୍ତି । ଏମାନେ ଦୈତ୍ୟ ଏବଂ ଦାନବମାନଙ୍କ ସମାନ ଅଟନ୍ତି । ୩। ଯୁଦ୍ଧରେ ଏମାନଙ୍କର ସାହସ ପ୍ରସିଦ୍ଧି ଲାଭ କରିଅଛି । ଏମାନେ କଷ୍ଟସହିଷ୍ଣୁ, ବଳବାନ୍ ଏବଂ ଉଦ୍‌ଯୋଗ କରିବାରେ ଉତ୍କୃଷ୍ଟ ଅଟନ୍ତି । ୪ । ଏମାନେ ପୃଥିବୀ ତଥା ଜଳରେ ବିଚରଣ କରନ୍ତି ଏବଂ ନାନା ପର୍ବତରେ ବାସ କରନ୍ତି । କୋଟି କୋଟି ଏ ଯେଉଁ ବଳବନ୍ତ ବାନରଗଣ ଏଠାକୁ ଆସିଛନ୍ତି ଏମାନେ ସମସ୍ତେ ତୁମ୍ଭର ଆଜ୍ଞାକାରୀ ଭୃତ୍ୟ ଅଟନ୍ତି । ୫ । ଏମାନେ ସମସ୍ତେ ତୁମ୍ଭର

ନିଦେଶବର୍ତ୍ତିନଃ ସର୍ବେ ସର୍ବେ ଗୁରୁହିତେ ସ୍ଥିତାଃ ।
ଅଭିପ୍ରେତମନୁଷ୍ଠାତୁଂ ତବ ଶକ୍ଷ୍ୟନ୍ତ୍ୟରିନ୍ଦମ । ୬ ।
ତ ଇମେ ବହୁସାହସ୍ରୈରନେକୈର୍ବହୁବିକ୍ରମୈଃ ।
ଆଗତା ବାନରା ଘୋରା ଦୈତ୍ୟଦାନବସଂନିଭାଃ । ୭ ।
ଯନ୍ମନ୍ୟସେ ନରବ୍ୟାଘ୍ର ପ୍ରାପ୍ତକାଲଂ ତଦୁଚ୍ୟତାମ୍ ।
ତ୍ୱତ୍ସୈନ୍ୟଂ ତ୍ୱଦ୍ୱଶେ ଯୁକ୍ତମାଜ୍ଞାପୟିତୁମର୍ହସି । ୮ ।
କାମମେବମିଦଂ କାର୍ଯ୍ୟଂ ବିଦିତଂ ମମ ତତ୍ତ୍ୱତଃ ।
ତଥାପି ତୁ ଯଥାଯୁକ୍ତମାଜ୍ଞାପୟିତୁମର୍ହସି । ୯ ।
ତଥା ବ୍ରୁବାଣଂ ସୁଗ୍ରୀବଂ ରାମୋ ଦଶରଥାତ୍ମଜଃ ।
ବାହୁଭ୍ୟାଂ ସଂପରିଷ୍ୱଜ୍ୟ ଇଦଂ ବଚନମବ୍ରବୀତ୍ । ୧୦ ।
ଜ୍ଞାୟତାଂ ସୌମ୍ୟ ବୈଦେହୀ ଯଦି ଜୀବତି ବା ନ ବା ।
ସ ଚ ଦେଶୋ ମହାପ୍ରାଜ୍ଞ ଯସ୍ମିନ୍ ବସତି ରାବଣଃ । ୧୧ ।
ଅଧିଗମ୍ୟ ତୁ ବୈଦେହୀଂ ନିଲୟଂ ରାବଣସ୍ୟ ଚ ।
ପ୍ରାପ୍ତକାଲଂ ବିଧାସ୍ୟାମି ତସ୍ମିନ୍ କାଲେ ସହ ତ୍ୱୟା । ୧୨ ।

---

ଆଜ୍ଞାର ଅଧୀନ ଏବଂ ସ୍ୱାମୀଙ୍କର ହିତସାଧନ କରିବାକୁ ବଦ୍ଧପରିକର । ତୁମ୍ଭର ମନୋରଥ ସିଦ୍ଧି କରିବା ନିମନ୍ତେ ଏମାନେ ସମର୍ଥ ହେବେ ।୬। ବହୁପରାକ୍ରମୀ ସହସ୍ର ସହସ୍ର ସଂଖ୍ୟାରେ ଏହି ଯେ ବାନରଗଣ ଆସିଛନ୍ତି, ଏମାନେ ଦୈତ୍ୟ ଏବଂ ଦାନବ-ମାନଙ୍କ ସଦୃଶ ଅଟନ୍ତି । ୭ । ହେ ନରବ୍ୟାଘ୍ର ! ଏ ସମସ୍ତ ନିମନ୍ତେ ତୁମେ ଯାହା ଉପଯୁକ୍ତ ମନେକରୁଛ ତାହା ଆଜ୍ଞାକର । ଆପଣଙ୍କର ଏ ସେନା ଆପଣଙ୍କର ଅଧୀନ ଅଟନ୍ତି, ଆଜ୍ଞା ଦିଅନ୍ତୁ । ୮ । ଅବଶ୍ୟ ଏ କାର୍ଯ୍ୟ (ସୀତାଙ୍କ ଅନ୍ୱେଷଣକାର୍ଯ୍ୟ) ମୋତେ ବେଶ ଜଣାଅଛି । ତଥାପି ଆପଣ ଯାହା ଉଚିତ ମନେକରୁଛନ୍ତି ସେ ଆଦେଶ ଦେବା ଉଚିତ” । ୯ । ଦଶରଥଙ୍କ ପୁତ୍ର ରାମଚନ୍ଦ୍ର ଏହିପରି କହୁଥିବା ସୁଗ୍ରୀବଙ୍କୁ ଦୁଇବାହୁରେ ଆଲିଙ୍ଗନ କରି ଏହି କଥା କହିଲେ ।୧୦। “ହେ ସୌମ୍ୟ ! ସୀତା ଜୀବିତ ଅଛନ୍ତି କି ନାହିଁ ଏହି ବିଷୟ ସନ୍ଧାନକର ଏବଂ ଯେଉଁ ଦେଶରେ ରାବଣ ବାସ କରିଥାଏ, ସେ ଦେଶର ସନ୍ଧାନ କର । ୧୧ । ସୀତା ଏବଂ ରାବଣର ଘରର ସନ୍ଧାନ ପାଇବା ପରେ ସେ ସମୟରେ ତୁମସହିତ ଯାହା କାଳୋଚିତ ବ୍ୟବସ୍ଥା କରିବାକୁ ହେବ, ତାହିଁର ମୁଁ ବ୍ୟବସ୍ଥା କରିବି । ୧୨ । ହେ ବାନରେନ୍ଦ୍ର ! ଏ କାର୍ଯ୍ୟ ସାଧନ

ନାହମସ୍ମିନ୍ ପ୍ରଭୁଃ କାର୍ଯ୍ୟେ ବାନରେନ୍ଦ୍ର ନ ଲକ୍ଷ୍ମଣଃ ।
ତ୍ୱମସ୍ୟ ହେତୁଃ କାର୍ଯ୍ୟସ୍ୟ ପ୍ରଭୁଶ୍ଚ ପ୍ଲବଗେଶ୍ୱର । ୧୩ ।
ତ୍ୱମେବାଜ୍ଞାପୟ ବିଭୋ ମମ କାର୍ଯ୍ୟବିନିଶ୍ଚୟମ୍ ।
ତ୍ୱଂ ହି ଜାନାସି ମେ କାର୍ଯ୍ୟଂ ମମ ବୀର ନ ସଂଶୟଃ । ୧୪ ।
ସୁହୃଦ୍ଦ୍ୱିତୀୟୋ ବିକ୍ରାନ୍ତଃ ପ୍ରାଜ୍ଞଃ କାଳବିଶେଷବିତ୍ ।
ଭବାନସ୍ମଦ୍ଧିତେ ଯୁକ୍ତଃ ସୁହୃଦାପ୍ତୋଽର୍ଥବିତ୍ତମଃ । ୧୫ ।
ଏବମୁକ୍ତସ୍ତୁ ସୁଗ୍ରୀବୋ ବିନତଂ ନାମ ଯୂଥପମ୍ ।
ଅବ୍ରବୀଦ୍ରାମସାଂନିଧ୍ୟେ ଲକ୍ଷ୍ମଣସ୍ୟ ଚ ଧୀମତଃ । ୧୬ ।
ଶୈଳାଭଂ ମେଘନିର୍ଘୋଷମୂର୍ଜିତଂ ପ୍ଲବଗେଶ୍ୱରମ୍ ।
ସୋମସୂର୍ଯ୍ୟନିଭୈଃ ସାର୍ଧଂ ବାନରୈର୍ବାନରୋତ୍ତମ । ୧୭ ।
ଦେଶକାଳନୟୈର୍ଯୁକ୍ତୋ ବିଜ୍ଞଃ କାର୍ଯ୍ୟବିନିଶ୍ଚୟେ ।
ବୃତଃ ଶତସହସ୍ରେଣ ବାନରାଣାଂ ତରସ୍ୱିନାମ୍ । ୧୮ ।
ଅଧିଗଚ୍ଛ ଦିଶଂ ପୂର୍ବାଂ ସଶୈଳବନକାନନାମ୍ ।
ତତ୍ର ସୀତାଂ ଚ ବୈଦେହୀଂ ନିଳୟଂ ରାବଣସ୍ୟ ଚ । ୧୯ ।

---

କରିବାକୁ ମୁଁ ବା ଲକ୍ଷ୍ମଣ କେହି ସମର୍ଥ ନୋହୁଁ । ତୁମେହିଁ ଏ କାର୍ଯ୍ୟର କାରଣ ଏବଂ ସାଧକ ଅଟ । ୧୩ । କାର୍ଯ୍ୟର ନିଶ୍ଚୟ କର ଏବଂ କଣ କରିବାକୁ ହେବ ତାହା ବିଚାର କରି ତୁମେହିଁ ଆଜ୍ଞା ଦିଅ । ହେ ବୀର ! ତୁମେହିଁ ମୋର କାର୍ଯ୍ୟକୁ ଜାଣ, ଏଥିରେ କୌଣସି ସନ୍ଦେହ ନାହିଁ । ୧୪। ତୁମେ ମୋର ଦ୍ୱିତୀୟ ମିତ୍ର ଅଟ; ପରାକ୍ରମୀ, ବୁଦ୍ଧିମାନ୍ ଏବଂ କାଳଜ୍ଞ ଓ ଯଥାର୍ଥଜ୍ଞାନୀ ଅଟ । ତୁମେହିଁ ମୋର ହିତସାଧନ ନିମନ୍ତେ ବଦ୍ଧପରିକର ହୋଇଅଛ । ତୁମେ ମୋର ବିଶ୍ୱସ୍ତ ବନ୍ଧୁ ଏବଂ ପ୍ରଧାନତମ ଅର୍ଥବିତ୍ ଅଟ" । ୧୫। ରାମଚନ୍ଦ୍ର ଏହିପ୍ରକାରେ କହିବା ପରେ ରାମ ଏବଂ ବୁଦ୍ଧିମାନ୍ ଲକ୍ଷ୍ମଣଙ୍କ ସମୀପରେ ସୁଗ୍ରୀବ ବିନତ ନାମକ ଦଳପତିଙ୍କୁ କହିଲେ । ୧୬ । ସେ ବିନତ ପର୍ବତସଦୃଶ ଉଚ୍ଚ ଥିଲ ଏବଂ ମେଘସଦୃଶ ଗର୍ଜନକରୁଥିଲ ଓ ବଡ଼ ବୀର ଥିଲ ସୁଗ୍ରୀବ ତାକୁ କହିଲେ—"ହେ ବାନରଶ୍ରେଷ୍ଠ ! ତୁମେ କାର୍ଯ୍ୟ ନିଶ୍ଚୟ କରିବାରେ ବିଜ୍ଞ ଅଟ । ତୁମେ ସୂର୍ଯ୍ୟ ଏବଂ ଚନ୍ଦ୍ର ସଦୃଶ ଦୀପ୍ତିମନ୍ତ ଏବଂ ନୀତିଜ୍ଞ ଅଟ । ତୁମେ ଶତସହସ୍ର ବେଗବାନ୍ ବାନରଙ୍କ ସହିତ ପୂର୍ବଦିଗକୁ ଯାଅ । ସେଠାରେ ପର୍ବତ, ବନ ଏବଂ କାନନ ଆଦିରେ ସୀତାଙ୍କର ଏବଂ ରାବଣର ଘରର ଅନୁସନ୍ଧାନ କରିବ ।୧୭-୧୯।

ମାର୍ଗଧ୍ୱଂ ଗିରିଦୁର୍ଗେଷୁ ବନେଷୁ ଚ ନଦୀଷୁ ଚ ।
ନଦୀଂ ଭାଗୀରଥୀଂ ରମ୍ୟାଂ ସରଯୂଂ କୌଶିକୀଂ ତଥା । ୨୦ ।
କାଳିନ୍ଦୀଂ ଯମୁନାଂ ରମ୍ୟାଂ ଯାମୁନଂ ଚ ମହାଗିରିମ୍ ।
ସରସ୍ୱତୀଂ ଚ ସିନ୍ଧୁଂ ଚ ଶୋଣଂ ମଣିନିଭୋଦକମ୍ । ୨୧ ।
ମହୀଂ କାଳମହୀଂ ଚାପି ଶୈଳକାନନଶୋଭିତାମ୍ ।
ବ୍ରହ୍ମମାଲାନ୍ ବିଦେହାଂଶ୍ଚ ମାଳବାନ୍ କାଶିକୋଶଲାନ୍ । ୨୨ ।
ମାଗଧାଂଶ୍ଚ ମହାଗ୍ରାମାନ୍ ପୁଣ୍ଡ୍ରାଂସ୍ତ୍ୱଙ୍ଗାଂସ୍ତଥୈବ ଚ ।
ଭୂମିଂ ଚ କୋଶକାରାଣାଂ ଭୂମିଂ ଚ ରଜତାକରାମ୍ । ୨୩ ।
ସର୍ବଂ ଚ ତଦ୍ ବିଚେତବ୍ୟଂ ମୃଗୟଦ୍ଭିସ୍ତତସ୍ତତଃ ।
ରାମସ୍ୟ ଦୟିତାଂ ଭାର୍ଯାଂ ସୀତାଂ ଦଶରଥସ୍ନୁଷାମ୍ । ୨୪ ।
ସମୁଦ୍ରମବଗାଢ଼ାଂଶ୍ଚ ପର୍ବତାନ୍ ପତ୍ତନାନି ।
ମନ୍ଦରସ୍ୟ ଚ ଯେ କୋଟିଂ ସଂଶ୍ରିତାଃ କେଚିଦାଳୟାଃ । ୨୫ ।
କର୍ଣ୍ଣପ୍ରାବରଣାଶ୍ଚୈବ ତଥା ଚାପ୍ୟୋଷ୍ଠକର୍ଣ୍ଣକାଃ ।
ଘୋରଲୌହମୁଖାଶ୍ଚୈବ ଜବନାଶ୍ଚୈକପାଦକାଃ । ୨୬ ।

---

ସେଦୁର୍ଗମ ପର୍ବତରେ,ବନରେ ଏବଂ ନଦୀମାନଙ୍କରେ ଅନୁସନ୍ଧାନ କରିବ । ଗଙ୍ଗାନଦୀ, ରମଣୀୟ ସରଯୂନଦୀ ଏବଂ କୌଶିକୀନଦୀମାନଙ୍କୁ ଅନ୍ୱେଷଣ କରିବ । ୨୦ । କାଳନ୍ଦୀ, ଯମୁନା, ଯାମୁନ ନାମକ ମହାପର୍ବତ, ସରସ୍ୱତୀ, ସିନ୍ଧୁ ତଥା ମଣିସଦୃଶ ସ୍ୱଚ୍ଛଜଳବିଶିଷ୍ଟ ଶୋଣନଦୀକୁ ଖୋଜିବ । ୨୧ । ପର୍ବତ ଏବଂ ବନଦ୍ୱାରା ଶୋଭିତ ମହୀ ଏବଂ କାଳମହୀ ନାମକ ଦୁଇ ନଦୀକୁ ଖୋଜିବ । ବ୍ରହ୍ମମାଳା, ବିଦେହ, ମାଳବ, କାଶୀ ଏବଂ କୋଶଳ ଦେଶମାନଙ୍କୁ ମଧ୍ୟ ଖୋଜିବ । ବୃହତ୍ ଗ୍ରାମବିଶିଷ୍ଟ ମଗଧ, ପୁଣ୍ଡ୍ର ଏବଂ ଅଙ୍ଗଦେଶକୁ ମଧ୍ୟ ଅନ୍ୱେଷଣ କରିବ । ରେଶମ ଉତ୍ପନ୍ନକାରୀ ଏବଂ ରୌପ୍ୟଖଣିଯୁକ୍ତ ଦେଶମାନଙ୍କୁ ମଧ୍ୟ ଖୋଜିବ । ୨୨-୨୩ । ଏହି ସବୁ ସ୍ଥାନରେ ଏଣେତେଣେ ଗୃହଆଡ଼େ ବୁଲି ଚନ୍ନ ଚନ୍ନ କରି ଅନୁସନ୍ଧାନ କରିବାକୁ ହେବ । ରାମଚନ୍ଦ୍ରଙ୍କର ପ୍ରିୟପତ୍ନୀ ଏବଂ ଦଶରଥଙ୍କର ପୁତ୍ରବଧୂ ସୀତାଙ୍କୁ ଅନ୍ୱେଷଣ କରିବାକୁ ହେବ । ୨୪ । ଯେଉଁ ପର୍ବତ ବା ନଗରମାନ ସମୁଦ୍ରଦ୍ୱାରା ଘୋଡ଼ାଇ ହୋଇ ଯାଇଛି ତାକୁ ସବୁ ଖୋଜିବ ଏବଂ ମନ୍ଦରପର୍ବତର ଶିଖରଦେଶରେ ଯେଉଁ କେତୋଟି ଘର ଅଛି ତାହା ସବୁ ମଧ୍ୟ ଖୋଜିବ । ୨୫ । ଯେଉଁମାନେ କାନକୁ ଘୋଡ଼ାଇ ରଖନ୍ତି, ଓଷ୍ଠ ଯେଉଁମାନଙ୍କର କର୍ଣ୍ଣର କାର୍ଯ୍ୟ କରେ, ଯେଉଁମାନଙ୍କର ମୁଖ ବିକଟ ଏବଂ ଲୌହନିର୍ମିତ, ଯେଉଁମାନଙ୍କର ଗୋଟିଏ ମାତ୍ର ପାଦ ଥିଲେ ମଧ୍ୟ ସେମାନେ ବିଶେଷ

ଅକ୍ଷଯ୍ୟା ବଲବନ୍ତଶ୍ଚ ତଥୈବ ପୁରୁଷାଦକାଃ ।
କିରାତାସ୍ତୀକ୍ଷ୍ଣଚୂଡ଼ାଶ୍ଚ ହେମାଭାଃ ପ୍ରିୟଦର୍ଶନାଃ । ୨୭।
ଆମମୀନାଶନାଶ୍ଚାପି କିରାତା ଦ୍ୱୀପବାସିନଃ ।
ଅନ୍ତର୍ଜଲଚରା ଘୋରା ନରବ୍ୟାଘ୍ରା ଇତି ସ୍ମୃତାଃ । ୨୮ ।
ଏତେଷାମାଶ୍ରୟାଃ ସର୍ବେ ବିଚେୟାଃ କାନନୌକସଃ ।
ଗିରିଭିର୍ଯେ ଚ ଗମ୍ୟନ୍ତେ ପ୍ଲବନେନ ପ୍ଲବେନ ଚ । ୨୯ ।
ଯତ୍ନବନ୍ତୋ ଯବଦ୍ୱୀପଂ ସପ୍ତରାଜ୍ୟୋପଶୋଭିତମ୍ ।
ସୁବର୍ଣରୂପ୍ୟକଦ୍ୱୀପଂ ସୁବର୍ଣାକରମଣ୍ଡିତମ୍ । ୩୦ ।
ଯବଦ୍ୱୀପମତିକ୍ରମ୍ୟ ଶିଶିରୋ ନାମ ପର୍ବତଃ ।
ଦିବଂ ସ୍ପୃଶତି ଶୃଙ୍ଗେଣ ଦେବଦାନବସେବିତଃ । ୩୧ ।
ଏତେଷାଂ ଗିରିଦୁର୍ଗେଷୁ ପ୍ରପାତେଷୁ ବନେଷୁ ଚ ।
ମାର୍ଗଧ୍ୱଂ ସହିତାଃ ସର୍ବେ ରାମପତ୍ନୀଂ ଯଶସ୍ୱିନୀମ୍ । ୩୨ ।
ତତୋ ରକ୍ତଜଲଂ ପ୍ରାପ୍ୟ ଶୋଣାଖ୍ୟଂ ଶୀଘ୍ରବାହିନମ୍ ।
ଗତ୍ୱା ପାରଂ ସମୁଦ୍ରସ୍ୟ ସିଦ୍ଧଚାରଣସେବିତମ୍ । ୩୩ ।

---

ଦ୍ରୁତଗାମୀ, ଯେଉଁମାନଙ୍କର ଘର ନାହିଁ, ଯେଉଁମାନେ ବଳବାନ୍ ଏବଂ ମନୁଷ୍ୟମାନଙ୍କ ଭକ୍ଷଣ କରନ୍ତି, ଯେଉଁମାନେ ତୀକ୍ଷ୍ଣଶିଖାଯୁକ୍ତ, ସୁବର୍ଣ୍ଣରଙ୍ଗବିଶିଷ୍ଟ ଏବଂ ଦେଖିବାକୁ ସୁନ୍ଦର ଯେଉଁମାନେ କଞ୍ଚାମାଛ ଖାନ୍ତି ଏବଂ ଦ୍ୱୀପରେ ବାସକରନ୍ତି, ସେହିସବୁ କିରାତମାନଙ୍କ ସ୍ଥାନରେ ମଧ୍ୟ ଖୋଜିବାକୁ ହେବ । ଯେଉଁମାନେ ଜଳମଧ୍ୟରେ ଥାନ୍ତି, ଦେଖିବାକୁ ଭୀଷଣ ଏବଂ ଯାହାଙ୍କୁ ନରବ୍ୟାଘ୍ର ବୋଲି କୁହାଯାଏ, ସେସବୁ କିରାତମାନଙ୍କ ନିବାସ-ସ୍ଥାନରେ ମଧ୍ୟ ଅନୁସନ୍ଧାନ କରିବ । ୨୭-୨୮ । ଏହିସବୁ ବନବାସୀମାନଙ୍କର ଆଶ୍ରୟସ୍ଥାନମାନ ଖୋଜିବାକୁ ହେବ । ଯେଉଁସବୁ ସ୍ଥାନକୁ ନୌକାଦ୍ୱାରା ବା ଡେଇଁ ଯିବାକୁ ପଡ଼ିବ ସେସବୁ ସ୍ଥାନ ମଧ୍ୟ ଖୋଜିବ । ୨୯ । ସାତଟି ରାଜ୍ୟଦ୍ୱାରା ଶୋଭିତ ଯବଦ୍ୱୀପକୁ ମଧ୍ୟ ତୁମେମାନେ ଅତି ଯତ୍ନ ସହକାରେ ଯିବ । ଯେଉଁଠାରେ ସୁନା ତିଆରି କରିବା ଲୋକମାନେ ଥାଆନ୍ତି, ସେହି ସୁବର୍ଣ୍ଣ ଏବଂ ରୂପ୍ୟକ ଦ୍ୱୀପକୁ ମଧ୍ୟ ତୁମେମାନେ ଯିବ । ୩୦ । ଯବଦ୍ୱୀପ ପାରହେବା ପରେ ଶିଶିର ନାମକ ପର୍ବତ ପଡ଼ିବ । ତାହାର ଶୃଙ୍ଗ ସ୍ୱର୍ଗକୁ ସ୍ପର୍ଶ କରିଅଛି ଏବଂ ସେଠାରେ ଦେବତା ଓ ଦାନବମାନେ ବାସକରନ୍ତି । ଏହିସବୁ ସ୍ଥାନର ଗିରିଗହ୍ୱରରେ, ପ୍ରପାତମାନଙ୍କରେ ଏବଂ ବନମାନଙ୍କରେ ତୁମେ ସମସ୍ତେ ମିଳି ଯଶସ୍ୱିନୀ ରାମପତ୍ନୀ ସୀତାଙ୍କୁ ଅନ୍ୱେଷଣ କରିବ ।୩୨। ତାହାର ଆଗରେ ଶୀଘ୍ରବାହୀ ରକ୍ତଜଳଯୁକ୍ତ ଶୋଣନଦୀତୀରରେ ଯାଇ ସମୁଦ୍ର ପାରହେବ । ସେଠାରେ ସିଦ୍ଧ ଏବଂ ଚାରଣମାନେ ବାସକରନ୍ତି । ୩୩ ।

ତସ୍ୟ ତୀର୍ଥେଷୁ ରମ୍ୟେଷୁ ବିଚିତ୍ରେଷୁ ବନେଷୁ ଚ ।
ରାବଣଃ ସହ ବୈଦେହ୍ୟା ମାର୍ଗିତବ୍ୟସ୍ତତସ୍ତତଃ । ୩୪ ।
ପର୍ବତପ୍ରଭବା ନଦ୍ୟଃ ସୁଭୀମବହୁନିଷ୍କୁଟାଃ ।
ମାର୍ଗିତବ୍ୟା ଦରୀମନ୍ତଃ ପର୍ବତାଶ୍ଚ ବନାନି ଚ । ୩୫ ।
ତତଃ ସମୁଦ୍ରଦ୍ୱୀପାଂଶ୍ଚ ସୁଭୀମାନ୍ ଦ୍ରଷ୍ଟୁମର୍ହଥ ।
ଊର୍ମିମନ୍ତଂ ମହାରୌଦ୍ରଂ କ୍ରୋଶନ୍ତମନିଳୋଦ୍ଧତମ୍ । ୩୬ ।
ତତ୍ରାସୁରା ମହାକାୟାଶ୍ଛାୟାଂ ଗୃହ୍ଣନ୍ତି ନିତ୍ୟଶଃ ।
ବ୍ରହ୍ମଣା ସମନୁଜ୍ଞାତା ଦୀର୍ଘକାଳଂ ବୁଭୁକ୍ଷିତାଃ । ୩୭ ।
ତଂ କାଳମେଘପ୍ରତିମଂ ମହୋରଗନିଷେବିତମ୍ ।
ଅଭିଗମ୍ୟ ମହାନାଦଂ ତୀର୍ଥେନୈବ ମହୋଦଧିମ୍ । ୩୮ ।
ତତୋ ରକ୍ତଜଳଂ ଭୀମଂ ଲୋହିତଂ ନାମ ସାଗରମ୍ ।
ଗତ୍ୱା ପ୍ରେକ୍ଷ୍ୟଥ ତାଂ ଚୈବ ବୃହତୀଂ କୂଟଶାଲ୍ମଳୀମ୍ । ୩୯ ।
ଗୃହଂ ଚ ବୈନତେୟସ୍ୟ ନାନାରତ୍ନବିଭୂଷିତମ୍ ।
ତତ୍ର କୈଳାସସଂକାଶଂ ବିହିତଂ ବିଶ୍ୱକର୍ମଣା । ୪୦ ।

---

ତାହାର ରମଣୀୟ ଘାଟମାନଙ୍କରେ ଏବଂ ବିଚିତ୍ର ବନମାନଙ୍କରେ ସୀତାଙ୍କୁ ଓ ରାବଣକୁ ତନ୍ନ ତନ୍ନ କରି ଖୋଜିବ । ୩୪ । ପର୍ବତରୁ ନିର୍ଗତ ହୋଇଥିବା ନଦୀମାନଙ୍କୁ, ଅତି ଭୟଙ୍କର ବହୁଶିଖରମାନଙ୍କୁ ଏବଂ ଗୁହାଯୁକ୍ତ ପର୍ବତ ଓ ବନମାନଙ୍କୁ ଅନ୍ୱେଷଣ କରିବାକୁ ହେବ । ୩୫ । ଅନନ୍ତର ଅତି ଭୟଙ୍କର ସମୁଦ୍ରଦ୍ୱୀପମାନଙ୍କୁ ମଧ୍ୟ ଭୁମମାନଙ୍କର ଦେଖିବା ଉଚିତ । ଲହରୀଯୁକ୍ତ, ସଦାଗର୍ଜନକାରୀ, ଭୀଷଣ ବାୟୁଦ୍ୱାରା ଉଦ୍‌ବେଳିତ ଇକ୍ଷୁସମୁଦ୍ରକୁ ମଧ୍ୟ ଦେଖିବ । ୩୬ । ସେଠାରେ ବିଶାଳକାୟ ଅସୁରମାନେ ସର୍ବଦା ଛାୟାମାନଙ୍କୁ ଗ୍ରହଣକରନ୍ତି (ଅର୍ଥାତ୍ ପ୍ରାଣୀମାନଙ୍କର. ଛାୟା ଦେଖି ସେହି ସେହି ପ୍ରାଣୀମାନଙ୍କୁ ଧରିନିଅନ୍ତି) । ସେଥିପାଇଁ ସେମାନେ ବ୍ରହ୍ମାଙ୍କଠାରୁ ବର ପାଇଛନ୍ତି; ସେମାନେ ବହୁଦିନରୁ କ୍ଷୁଧାତୁର ଅଛନ୍ତି । ୩୭ । କାଳମେଘସଦୃଶ ବଡ଼ ବଡ଼ ସର୍ପଯୁକ୍ତ ମହାଗର୍ଜନକାରୀ ସେହି ମହାସମୁଦ୍ର ନିକଟକୁ ଖୁବ୍ ସାବଧାନଭାବରେ ତୀର୍ଥପାଖା କଳପରି ଯିବ । ୩୮ । ତା’ପରେ ରକ୍ତଜଳପୂର୍ଣ୍ଣ ଭୟଙ୍କର ଲୋହିତସାଗରକୁ ଯାଇ ଅତି ପ୍ରକାଣ୍ଡ କୂଟଶାଲ୍ମଳୀ ବୃକ୍ଷ ଦେଖିବ । ୩୯ । ସେଠାରେ ବିଶ୍ୱକର୍ମା ଗରୁଡ଼ଙ୍କ ନିମନ୍ତେ ବହୁରତ୍ନଯୁକ୍ତ ଘର ନିର୍ମାଣ କରିଅଛନ୍ତି । ତାହା କୈଳାସପର୍ବତସଦୃଶ ସୁନ୍ଦର ଦେଖାଯାଏ । ୪୦ । ସେଠାରେ ପର୍ବତସଦୃଶ

ତତ୍ର ଶୈଳନଦ୍ୟାଂ ଭୀମା ମନ୍ଦେହା ନାମ ରାକ୍ଷସାଃ ।
ଶୈଳଶୃଙ୍ଗେଷୁ ଲମ୍ବନ୍ତେ ନାନାରୂପା ଭୟାବହାଃ । ୪୧ ।
ତେ ପତନ୍ତି ଜଲେ ନିତ୍ୟଂ ସୂର୍ଯସ୍ୟୋଦୟନଂ ପ୍ରତି ।
ଅଭିତପ୍ତାଃ ସ୍ମ ସୂର୍ଯେଣ ଲମ୍ବନ୍ତେ ସ୍ମ ପୁନଃ ପୁନଃ । ୪୨ ।
ନିହତା ବ୍ରହ୍ମତେଜୋଭିରହନ୍ୟହନି ରାକ୍ଷସାଃ ।
ତତଃ ପାଣ୍ଡୁରମେଘାଭଂ କ୍ଷୀରୋଦଂ ନାମ ସାଗରମ୍ । ୪୩ ।
ଗତ୍ୱା ଦ୍ରକ୍ଷ୍ୟଥ ଦୁର୍ଧର୍ଷା ମୁକ୍ତାହାରମିବୋର୍ମିଭିଃ ।
ତସ୍ୟ ମଧ୍ୟେ ମହାନ୍ ଶ୍ୱେତୋ ଋଷଭୋ ନାମ ପର୍ବତଃ । ୪୪ ।
ଦିବ୍ୟଗନ୍ଧୈଃ କୁସୁମିତୈରାଚିତୈଶ୍ଚ ନଗୈର୍ବୃତଃ ।
ସରଶ୍ଚ ରାଜତୈଃ ପଦ୍ମୈର୍ଜ୍ୱଲିତୈର୍ହେମକେସରୈଃ । ୪୫ ।
ନାମ୍ନା ସୁଦର୍ଶନଂ ନାମ ରାଜହଂସୈଃ ସମାକୁଲମ୍ ।
ବିବୁଧାଶ୍ଚାରଣା ଯକ୍ଷାଃ କିଂନରାଶ୍ଚାପ୍ସରୋଗଣାଃ । ୪୬ ।
ହୃଷ୍ଟାଃ ସମଧିଗଚ୍ଛନ୍ତି ନଳିନୀଂ ତାଂ ରିରଂସବଃ ।
କ୍ଷୀରୋଦଂ ସମତିକ୍ରମ୍ୟ ତଦା ଦ୍ରକ୍ଷ୍ୟଥ ବାନରାଃ । ୪୭ ।

---

ବଡ଼ ବଡ଼ ଭୀଷଣାକୃତି ମନ୍ଦେହ ନାମକ ରାକ୍ଷସମାନେ ବାସକରନ୍ତି । ସେମାନେ ନାନା ଭୟଙ୍କର ରୂପଧାରୀ ଅଟନ୍ତି ଏବଂ ପର୍ବତଶୃଙ୍ଗରେ ଝୁଲି ରହିଥାନ୍ତି । ୪୧ । ସୂର୍ଯ୍ୟ ଉଦୟ ହେବା ସମୟରେ ସେମାନେ ଜଳରେ ପଡ଼ିଯାଆନ୍ତି ଏବଂ ସୂର୍ଯ୍ୟ-କିରଣରେ ତପ୍ତହୋଇ ପୁଣି ପର୍ବତଶିଖର ଉପରେ ଯାଇ ଝୁଲନ୍ତି । ୪୨ । ବ୍ରହ୍ମତେଜରେ ସେ ରାକ୍ଷସମାନେ ଦିନ ଦିନ ନିହତ ହୁଅନ୍ତି । ସେଠାରୁ ଶ୍ୱେତମେଘ-ବର୍ଣ୍ଣଯୁକ୍ତ କ୍ଷୀରୋଦ ସମୁଦ୍ରକୁ ଯିବ । ୪୩ । ଲହରୀମାନଙ୍କ ଦ୍ୱାରା ମୁକ୍ତାହାର ଧାରଣ କଲାପରି ତୁମେ ସେ ସମୁଦ୍ରକୁ ଦେଖିବ । ତାହା ମଧ୍ୟରେ ଋଷଭ ନାମକ ଏକ ଅତି ବଡ଼ ଶ୍ୱେତପର୍ବତ ଅଛି । ୪୪ । ଦିବ୍ୟଗନ୍ଧଯୁକ୍ତ, ପୁଷ୍ପପୂର୍ଣ୍ଣ ଅନେକ ବୃକ୍ଷ ସେହି ପର୍ବତ ଉପରେ ଅଛି । ଗୋଟିଏ ପୁଷ୍କରଣୀ ମଧ୍ୟ ଅଛି । ସେଥିରେ ରୂପାର ପଦ୍ମଫୁଲ ଫୁଟିଅଛି ଏବଂ ସେହି ପଦ୍ମର କେଶର ସୁବର୍ଣ୍ଣନିର୍ମିତ ଅଟେ । ୪୫ । ସେ ସରୋବରର ନାମ ସୁଦର୍ଶନ ଅଟେ । ତାହା ରାଜହଂସରେ ପୂର୍ଣ୍ଣ । ଦେବତା, ଚାରଣ, ଯକ୍ଷ, କିନ୍ନର ଏବଂ ଅପ୍ସରାମାନେ ଅତି ଆନନ୍ଦିତ ହୋଇ ସେହି ସରୋବରରେ ବିହାର କରିବାକୁ ଆସନ୍ତି । ୪୬ । ହେ ବାନର ! ତୁମେ କ୍ଷୀରସମୁଦ୍ରର ଆଗକୁ ଗଲେ ସକଳ ପ୍ରାଣୀଙ୍କର ଭୟଦୂରକାରୀ ଜଳୋଦଧି ସମୁଦ୍ରକୁ ଦେଖିବ । ସେଠାରେ

ଜଲୋଦଂ ସାଗରଂ ଶୀଘ୍ରଂ ସର୍ବଭୂତଭୟାପହମ୍ ।
ତତ୍ର ତତ୍କୋପଜଂ ତେଜଃ କୃତଂ ହୟମୁଖଂ ମହତ୍ । ୪୮ ।
ଅସ୍ୟାଦ୍ଭୁତଂ ମହାବେଗମୋଦନଂ ସଚରାଚରମ୍ ।
ତତ୍ର ବିକ୍ରୋଶତାଂ ନାଦୋ ଭୂତାନାଂ ସାଗରୌକସାମ୍ ।
ଶ୍ରୂୟତେ ଚ ସମର୍ଥାନାଂ ଦୃଷ୍ଟ୍ୱା ଭୂଦ୍ବଡ଼ବାମୁଖମ୍ । ୪୯ ।
ସ୍ୱାଦୂଦସ୍ୟୋତ୍ତରେ ତୀରେ ଯୋଜନାନି ତ୍ରୟୋଦଶ ।
ଜାତରୂପଶିଲୋ ନାମ ସୁମହାନ୍ କନକପ୍ରଭଃ । ୫୦ ।
ତତ୍ର ଚନ୍ଦ୍ରପ୍ରତୀକାଶଂ ପନ୍ନଗଂ ଧରଣୀଧରମ୍ ।
ପଦ୍ମପତ୍ରବିଶାଲାକ୍ଷଂ ତତୋ ଦ୍ରକ୍ଷ୍ୟଥ ବାନରାଃ । ୫୧।
ଆସୀନଂ ପର୍ବତସ୍ୟାଗ୍ରେ ସର୍ବଦେବନମସ୍କୃତମ୍ ।
ସହସ୍ରଶିରସଂ ଦେବମନନ୍ତଂ ନୀଲବାସସମ୍ । ୫୨ ।
ତ୍ରିଶିରାଃ କାଞ୍ଚନଃ କେତୁସ୍ତାଲସ୍ତସ୍ୟ ମହାତ୍ମନଃ ।
ସ୍ଥାପିତଃ ପର୍ବତସ୍ୟାଗ୍ରେ ବିରାଜତ ସବେଦ୍ୱିକଃ । ୫୩ ।
ପୂର୍ବସ୍ୟାଂ ଦିଶି ନିର୍ମାଣଂ କୃତଂ ତତ୍ତ୍ରିଦଶେଶ୍ୱରୈଃ ।
ତତଃ ପରଂ ହେମମୟଃ ଶ୍ରୀମାନୁଦୟପର୍ବତଃ । ୫୪ ।

---

ଔର୍ବଋଷିଙ୍କ ତେଜରୁ ଉତ୍ପନ୍ନ ବଡ଼ବାମୁଖ ନାମକ ମହାନ୍ ତେଜ ତୁମେ ଦେଖିବ । ୪୭-୪୮ । ଏହାର ଅଦ୍ଭୁତ ବେଗ ପ୍ରଳୟକାଳରେ ସଚରାଚର ଜଗତକୁ ଗ୍ରାସ କରିବ । ବଡ଼ବାମୁଖକୁ ଦେଖି ସମର୍ଥ ବା ଅସମର୍ଥ ସମସ୍ତ ସାଗରବାସୀ ପ୍ରାଣୀ ଭୟରେ ଯେଉଁ ଚିତ୍କାର ଧ୍ୱନି କରିଥିଲେ ତାହା ଶୁଣାଯାଏ । ୪୯ । ମଧୁରଜଳଯୁକ୍ତ ଏହି ସମୁଦ୍ରର ଉତ୍ତରତୀରରେ ତେରଯୋଜନବ୍ୟାପୀ ଜାତରୂପ-ଶିଳ ନାମକ ଏକ ବିଶାଳ ସୁବର୍ଣ୍ଣପର୍ବତ ଅଛି । ଏହାର ପ୍ରଭା ସୁବର୍ଣ୍ଣର ପ୍ରଭାସଦୃଶ ଅଟେ । ୫୦ । ହେ ବାନରଗଣ ! ସେଠାରେ ଚନ୍ଦ୍ରସଦୃଶ ଜ୍ୟୋତିଷ୍ମାନ୍, ପୃଥିବୀ ଧାରଣକାରୀ, କମଳପତ୍ରସଦୃଶ ଚକ୍ଷୁବିଶିଷ୍ଟ ସର୍ପରାଜଙ୍କୁ ତୁମେମାନେ ଦେଖିବ ।୫୧। ସେହି ସମସ୍ତ ଦେବତାଙ୍କର ନମସ୍କରଣୀୟ; ନୀଳବସ୍ତ୍ରଧାରୀ, ସହସ୍ରଶୀର୍ଷଯୁକ୍ତ ଅନନ୍ତଦେବଙ୍କୁ ପର୍ବତର ଶିଖରଦେଶରେ ବସିଥିବାର ଦେଖିବ । ୫୨ । ସେହି ପର୍ବତ ଉପରେ ଅନନ୍ତ ଦେବଙ୍କର ସୁବର୍ଣ୍ଣଧ୍ୱଜା ବିରାଜମାନ । ତାହାର ତିନୋଟି ଶାଖା ଅଛି ଏବଂ ତାହାର ନିମ୍ନଦେଶରେ ଗୋଟିଏ ବେଦୀ ରହିଛି । ଧ୍ୱଜାରୂପରେ ଏ ଗୋଟିଏ ସୁନାର ତାଳବୃକ୍ଷ । ୫୩। ଦେବତାମାନେ ପୂର୍ବଦିଗରେ ଏହାକୁ ନିର୍ମାଣ କରିଥିଲେ । ତା'ପରେ ସୁବର୍ଣ୍ଣମୟ ସୁନ୍ଦର ଉଦୟପର୍ବତ ପଡ଼ିବ । ୫୪ । ତାହାର

ତସ୍ୟ କୋଟିର୍ଦିବଂ ସ୍ପୃଷ୍ଟ୍ୱା ଶତଯୋଜନମାୟତା ।
ଜାତରୂପମୟୀ ଦିବ୍ୟା ବିରାଜତି ସବେଦିକା ।୫୫ ।
ସାଲୈସ୍ତାଲୈସ୍ତମାଲୈଶ୍ଚ କର୍ଣିକାରୈଶ୍ଚ ପୁଷ୍ପିତୈଃ ।
ଜାତରୂପମୟୈର୍ଦିବ୍ୟୈଃ ଶୋଭତେ ସୂର୍ଯସଂନିଭୈଃ । ୫୬ ।
ତତ୍ର ଯୋଜନବିସ୍ତାରମୁଚ୍ଛ୍ରିତଂ ଦଶଯୋଜନମ୍ ।
ଶୃଙ୍ଗଂ ସୌମନସଂ ନାମ ଜାତରୂପମୟଂ ଧ୍ରୁବମ୍ । ୫୭ ।
ତତ୍ର ପୂର୍ବପଦଂ କୃତ୍ୱା ପୁରା ବିଷ୍ଣୁସ୍ତ୍ରିବିକ୍ରମେ ।
ଦ୍ୱିତୀୟଂ ଶିଖରେ ମେରୋଶ୍ଚକାର ପୁରୁଷୋତ୍ତମଃ । ୫୮ ।
ଉତ୍ତରେଣ ପରିକ୍ରମ୍ୟ ଜମ୍ବୂଦ୍ୱୀପଂ ଦିବାକରଃ ।
ଦୃଶ୍ୟୋ ଭବତି ଭୂୟିଷ୍ଠଂ ଶିଖରଂ ତନ୍ମହୋଚ୍ଛ୍ରୟମ୍ । ୫୯ ।
ତତ୍ର ବୈଖାନସା ନାମ ବାଲଖିଲ୍ୟା ମହର୍ଷୟଃ ।
ପ୍ରକାଶମାନା ଦୃଶ୍ୟନ୍ତେ ସୂର୍ଯବର୍ଣାସ୍ତପସ୍ୱିନଃ । ୬୦ ।
ଅୟଂ ସୁଦର୍ଶନୋ ଦ୍ୱୀପଃ ପୁରୋ ଯସ୍ୟ ପ୍ରକାଶତେ ।
ତସ୍ମିଂସ୍ତେଜଶ୍ଚ ଚକ୍ଷୁଶ୍ଚ ସର୍ବପ୍ରାଣଭୃତାମପି । ୬୧ ।

---

ଶିଖର ଶତଯୋଜନ ଉଚ୍ଚ ଅଟେ ଏବଂ ତାହା ସ୍ୱର୍ଗକୁ ସ୍ପର୍ଶ କରିଅଛି । ଏହା ସୁବର୍ଣ୍ଣ-ନିର୍ମିତ ଏବଂ ଏହାର ନିମ୍ନଦେଶରେ ଗୋଟିଏ ବେଦୀ ରହିଛି । ୫୫ । ଏହି ପର୍ବତ ସୁବର୍ଣ୍ଣମୟ ଶାଳ, ତାଳ, ତମାଳ ଏବଂ କର୍ଣ୍ଣିକାର ବୃକ୍ଷରେ ଶୋଭାପାଉଅଛି । ସେ ବୃକ୍ଷସବୁ ପୁଷ୍ପିତ ମଧ୍ୟ ହୋଇଅଛନ୍ତି । ଏହି ସବୁ ବୃକ୍ଷ ସୂର୍ଯ୍ୟସଦୃଶ ସୁନ୍ଦର ଦେଖାଯାଉଛନ୍ତି । ୫୬ । ସେଠାରେ ଦଶଯୋଜନ ଉଚ୍ଚ ଏବଂ ଏକଯୋଜନ ଲମ୍ବ ସୌମନସ ନାମକ ଏକ ଶୃଙ୍ଗ ଅଛି । ଏହା ସୁବର୍ଣ୍ଣମୟ ଅଟେ । ୫୭ । ପୂର୍ବେ ବିଷ୍ଣୁ ବାମନ ଅବତାରରେ ଏହିଠାରେ ପ୍ରଥମ ପାଦ ରଖିଥିଲେ ଏବଂ ଦ୍ୱିତୀୟ ପାଦ ମେରୁପର୍ବତର ଶିଖର ଉପରେ ରଖିଥିଲେ । ୫୮ । ଉତ୍ତର ଦିଗରୁ ଜମ୍ବୁଦ୍ୱୀପକୁ ପରିକ୍ରମ କରି ସୂର୍ଯ୍ୟ ଯେତେବେଳେ ଏହି ଉଚ୍ଚ ଶିଖରକୁ ଆସନ୍ତି ସେତେବେଳେ ଅତିଶୟ ପରିସ୍ଫୁଟ ଦେଖାଯାନ୍ତି । ୫୯ । ସେଠାରେ ବାଲଖିଲ୍ୟା ନାମକ ବୈଖାନସ (ଆଜୀବନବ୍ରହ୍ମଚାରୀ) ମହର୍ଷିମାନେ ଦେଖାଯାନ୍ତି । ସେହି ତପସ୍ୱୀମାନେ ସୂର୍ଯ୍ୟଙ୍କ ସଦୃଶ ପ୍ରକାଶମାନ ଅଟନ୍ତି । ୬୦ । ଏହାର ଆଗରେ ଯେଉଁ ଦ୍ୱୀପ ଦେଖାଯାଏ ତାହାର ନାମ ସୁଦର୍ଶନ ଅଟେ । ଏହାଠାରୁ ସବୁ ପ୍ରାଣୀଙ୍କର ତେଜ ଏବଂ ଚକ୍ଷୁର ଜ୍ୟୋତି ମିଳେ । ୬୧ । ସେହି ପର୍ବତ ଉପରେ, ତାହାର

ଶୈଳସ୍ୟ ତସ୍ୟ ପୃଷ୍ଠେଷୁ କନ୍ଦରେଷୁ ବନେଷୁ ଚ ।
ରାବଣଃ ସହ ବୈଦେହ୍ୟା ମାର୍ଗିତବ୍ୟସ୍ତତସ୍ତତଃ । ୬୨ ।
କାଞ୍ଚନସ୍ୟ ଚ ଶୈଳସ୍ୟ ସୂର୍ଯ୍ୟସ୍ୟ ଚ ମହାତ୍ମନଃ ।
ଆବିଷ୍ଟା ତେଜସା ସନ୍ଧ୍ୟା ପୂର୍ବା ରକ୍ତା ପ୍ରକାଶତେ । ୬୩ ।
ପୂର୍ବମେତତ୍କୃତଂ ଦ୍ୱାରଂ ପୃଥିବ୍ୟା ଭୁବନସ୍ୟ ଚ ।
ସୂର୍ଯ୍ୟସ୍ୟୋଦୟନଂ ଚୈବ ପୂର୍ବା ହ୍ୟେଷା ଦିଗୁଚ୍ୟତେ । ୬୪ ।
ତସ୍ୟ ଶୈଳସ୍ୟ ପୃଷ୍ଠେଷୁ ନିର୍ଝରେଷୁ ଗୁହାସୁ ଚ ।
ରାବଣଃ ସହ ବୈଦେହ୍ୟା ମାର୍ଗିତବ୍ୟସ୍ତତସ୍ତତଃ । ୬୫ ।
ତତଃ ପରମଗମ୍ୟା ସ୍ୟାଦ୍ଦିକ୍ ପୂର୍ବା ତ୍ରିଦଶାବୃତା ।
ରହିତା ଚନ୍ଦ୍ରସୂର୍ଯ୍ୟାଭ୍ୟାମଦୃଶ୍ୟା ତମସାବୃତା । ୬୬ ।
ଶୈଳେଷୁ ତେଷୁ ସର୍ବେଷୁ କନ୍ଦରେଷୁ ନଦୀଷୁ ଚ ।
ଯେ ଚ ନୋକ୍ତା ମୟୋଦ୍ଦେଶା ବିଚେୟା ତେଷୁ ଜାନକୀ । ୬୭ ।
ଏତାବଦ୍ ବାନରୈଃ ଶକ୍ୟଂ ଗନ୍ତୁଂ ବାନରପୁଙ୍ଗବାଃ ।
ଅଭାସ୍କରମମର୍ଯ୍ୟାଦଂ ନ ଜାନୀମସ୍ତତଃ ପରମ୍ । ୬୮ ।

---

କନ୍ଦରରେ ଏବଂ ବନମାନଙ୍କରେ ଏଣେ ତେଣେ ସୀତା ଓ ରାବଣଙ୍କୁ ଅନ୍ୱେଷଣ କରିବ । ୬୨ । ସୁବର୍ଣ୍ଣପର୍ବତ ତଥା ମହାତ୍ମା ସୂର୍ଯ୍ୟଙ୍କର ପ୍ରକାଶଦ୍ୱାରା ପୂର୍ବସନ୍ଧ୍ୟା (ପ୍ରାତଃକାଳ) ରକ୍ତବର୍ଣ୍ଣ ଦେଖାଯାଏ । ୬୩ । ପୃଥିବୀ ଏବଂ ଭୁବନର ଏହି ଦ୍ୱାର ପ୍ରଥମେ ନିର୍ମିତ ହୋଇଥିଲା । ଏହି ଦିଗରୁ ପ୍ରଥମେ ସୂର୍ଯ୍ୟଙ୍କର ଉଦୟ ହୁଏ । ସେହେତୁରୁ ଏହାର ନାମ ପୂର୍ବଦିଗ ଅଟେ । । ୬୪ । ଏହି ପର୍ବତର ପୃଷ୍ଠଦେଶରେ ଏବଂ ତାହାର ଝରଣା ଓ ଗୁହାମାନଙ୍କରେ ରାବଣ ଏବଂ ବୈଦେହୀଙ୍କୁ ଚନ୍ନ ଚନ୍ନ କରି ଖୋଜିବ । ୬୫ । ଏହା ପରେ ଆଉ ତେଣିକି ପୂର୍ବଦିଗ ଅଗମ୍ୟ ଅଟେ । ତେଣିକି ଦେବତାମାନଙ୍କର ସ୍ଥାନ । ସେଠାରେ ଚନ୍ଦ୍ର ଏବଂ ସୂର୍ଯ୍ୟଙ୍କର ପ୍ରକାଶ ନାହିଁ; ସୁତରାଂ ତାହା ସର୍ବଦା ଅନ୍ଧକାରାବୃତ ।୬୬। ଯେଉଁସବୁ ସ୍ଥାନର ନାମ ମୁଁ ଉଲ୍ଲେଖ କରି ନାହିଁ ସେସବୁ ପର୍ବତ, ଗୁହା ଏବଂ ନଦୀମାନଙ୍କରେ ମଧ୍ୟ ସୀତାଙ୍କୁ ଅନ୍ୱେଷଣ କରିବ ।୬୭। ହେ ଶ୍ରେଷ୍ଠବାନରଗଣ ! ଏହିପର୍ଯ୍ୟନ୍ତ ବାନରମାନେ ଯାଇପାରନ୍ତି । ଏହା ପରେ ଥିବା ସ୍ଥାନ ସୂର୍ଯ୍ୟରହିତ ଅଟେ । ସେସବୁ ଦେଶର କୌଣସି ସୀମାନିର୍ଦ୍ଦେଶ ନାହିଁ । ଅତଏବ ଏସବୁ ପରବର୍ତ୍ତୀ ସ୍ଥାନମାନଙ୍କ ବିଷୟରେ ମୋତେ କିଛି ଜଣା ନାହିଁ । ୬୮ । ଉଦୟପର୍ବତ ପର୍ଯ୍ୟନ୍ତ ଯାଇ ସୀତା ଏବଂ ରାବଣର ଘରର

ଅଭିଗମ୍ୟ ତୁ ବୈଦେହୀଂ ନିଲୟଂ ରାବଣସ୍ୟ ଚ ।
ମାସେ ପୂର୍ଣେ ନିବର୍ତ୍ତଧ୍ୱମୁଦୟଂ ପ୍ରାପ୍ୟ ପର୍ବତମ୍ । ୬୯ ।
ଊର୍ଦ୍ଧ୍ୱଂ ମାସାନ୍ନବସ୍ତବ୍ୟଂ ବସନ୍ ବଧ୍ୟୋ ଭବେନ୍ମମ ।
ସିଦ୍ଧାର୍ଥାଃ ସଂନିବର୍ତ୍ତଧ୍ୱମଧିଗମ୍ୟ ଚ ମୈଥିଲୀମ୍ । ୭୦ ।
ମହେନ୍ଦ୍ରକାନ୍ତାଂ ବନଷଣ୍ଡମଣ୍ଡିତାମ୍
ଦିଶଂ ଚରିତ୍ୱା ନିପୁଣେନ ବାନରାଃ ।
ଅବାପ୍ୟ ସୀତାଂ ରଘୁବଂଶଜପ୍ରିୟାମ୍
ତତୋ ନିବୃତ୍ତା ସୁଖିନୋ ଭବିଷ୍ୟଥ । ୭୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ପ୍ରାଚୀପ୍ରେଷଣମ୍
ନାମ ଚତ୍ୱାରିଂଶ ସର୍ଗଃ

———

ଅନୁସନ୍ଧାନ କରି ଏକମାସ ପୂର୍ଣ୍ଣ ହେଲାବେଳକୁ ଫେରି ଆସିବ । ୬୯ । ଏକ ମାସରୁ ଅଧିକ ରହିବ ନାହିଁ; ଯେ ରହିବ ସେ ମୋର ବଧ୍ୟ ହେବ । କାର୍ଯ୍ୟ ସିଦ୍ଧିକରି ଏବଂ ଜାନକୀଙ୍କୁ ଠିକଣାକରି ତୁମେମାନେ ଫେରିଆସିବ । ୭୦ । ହେ ବାନରଗଣ ! ବନସମୂହଦ୍ୱାରା ପରିଶୋଭିତ ଇନ୍ଦ୍ରଙ୍କର ପ୍ରିୟ ଏହି ପୂର୍ବଦିଗରେ ବୁଲି ରଘୁବଂଶ-ସଂଭୂତ ରାମଚନ୍ଦ୍ରଙ୍କ ପତ୍ନୀଙ୍କର ସନ୍ଧାନ ପାଇ ଯଦି ତୁମେମାନେ ଫେରିବ ତାହାହେଲେ ସୁଖଲାଭ କରିବ" । ୭୧ ।

# ଏକଚତ୍ୱାରିଂଶଃ ସର୍ଗଃ

## ଦକ୍ଷିଣାପ୍ରେଷଣମ୍

ତତଃ ପ୍ରସ୍ଥାପ୍ୟ ସୁଗ୍ରୀବସ୍ତନ୍ମହଦ୍ ବାନରଂ ବଲମ୍ ।
ଦକ୍ଷିଣାଂ ପ୍ରେଷୟାମାସ ବାନରାନଭିଲକ୍ଷିତାନ୍ । ୧ ।
ନୀଲମଗ୍ନିସୁତଂ ଚୈବ ହନୁମନ୍ତଂ ଚ ବାନରମ୍ ।
ପିତାମହସୁତଂ ଚୈବ ଜାମ୍ବବନ୍ତଂ ମହୌଜସମ୍ । ୨ ।
ସୁହୋତ୍ରଂ ଚ ଶରାରିଂ ଚ ଶରଗୁଲ୍ମଂ ତଥୈବ ଚ ।
ଗଜଂ ଗବାକ୍ଷଂ ଗବୟଂ ସୁଷେଣଂ ବୃଷଭଂ ତଥା । ୩ ।
ମୈନ୍ଦଂ ଚ ଦ୍ୱିବିଦଂ ଚୈବ ସୁଷେଣଂ ଗନ୍ଧମାଦନମ୍ ।
ଉଲ୍କାମୁଖମନଙ୍ଗଂ ଚ ହୁତାଶନସୁତାବୁଭୌ । ୪ ।
ଅଙ୍ଗଦପ୍ରମୁଖାନ୍ ବୀରାନ୍ ବୀରଃ କପିଗଣେଶ୍ୱରଃ ।
ବେଗବିକ୍ରମସଂପନ୍ନାନ୍ ସଂଦିଦେଶ ବିଶେଷବିତ୍ । ୫ ।
ତେଷାମଗ୍ରେସରଂ ଚୈବ ବୃହଦ୍ବଲମଥାଙ୍ଗଦମ୍ ।
ବିଧାୟ ହରିବୀରାଣାମାଦିଶଦ୍ଦକ୍ଷିଣାଂ ଦିଶମ୍ । ୬ ।

---

## ୪୧ଶ ସର୍ଗ

### (ଦକ୍ଷିଣଦିଗକୁ ସୈନ୍ୟପ୍ରେରଣ)

ସେହି ବିଶାଳ ବାନରସେନାଙ୍କୁ ପଠାଇ ଦେଇସାରି ସୁଗ୍ରୀବ ପୂର୍ବରୁ ସ୍ଥିର କରିଥିବା ବାନରମାନଙ୍କୁ ଦକ୍ଷିଣଦିଗକୁ ପଠାଇଲେ । ୧ । ଅଗ୍ନିପୁତ୍ର ନୀଳ, ହନୁମାନ୍, ପିତାମହ (ବ୍ରହ୍ମା)ଙ୍କ ପୁତ୍ର ମହାତେଜା ଜାମ୍ବବାନ୍, ସୁହୋତ୍ର, ଶରାରି, ଶରଗୁଲ୍ମ, ଗଜ, ଗବାକ୍ଷ, ଗବୟ, ସୁଷେଣ, ବୃଷଭ, ମୈନ୍ଦ, ଦ୍ୱିବିଦ, ଗନ୍ଧମାଦନ, ହୁତାଶନଙ୍କର ଦୁଇପୁତ୍ର ଉଲ୍କାମୁଖ ଓ ଅନଙ୍ଗ ଏବଂ ଅଙ୍ଗଦ ପ୍ରମୁଖ ବେଗବାନ୍ ତଥା ପରାକ୍ରମୀ ବୀରମାନଙ୍କୁ ବିଶେଷଜ୍ଞ ସୁଗ୍ରୀବ ସନ୍ଦେଶ ଦେଲେ । ୨-୫ । ବିଶେଷ ବଳବିଶିଷ୍ଟ ଅଙ୍ଗଦଙ୍କୁ ଏହି ଦଳର ନେତା ନିଯୁକ୍ତ କରିଗଲେ ଏବଂ ଏହି ବୀର ବାନର-ମାନଙ୍କୁ ଦକ୍ଷିଣ ଦିଗକୁ ପଠାଗଲା । ୬ । ସେ ଦିଗରେ ଯେଉଁ ସବୁ ଦୁର୍ଗମ ସ୍ଥାନ ଅଛି

ଯେ କେଚନ ସମୁଦ୍ଦେଶାସ୍ତସ୍ୟାଂ ଦଶି ସୁଦୁର୍ଗମାଃ ।
କପୀଶଃ କପିମୁଖ୍ୟାନାଂ ସ ତେଷାଂ ସମୁଦାହରତ୍ । ୭ ।
ସହସ୍ରଶିରସଂ ବିନ୍ଧ୍ୟଂ ନାନାଦ୍ରୁମଲତାଯୁତମ୍ ।
ନର୍ମଦାଂ ଚ ନଦୀଂ ରମ୍ୟାଂ ମହୋରଗନିଷେବିତାମ୍ । ୮ ।
ତତୋ ଗୋଦାବରୀଂ ରମ୍ୟାଂ କୃଷ୍ଣବେଣୀଂ ମହାନଦୀମ୍ ।
ମେଖଲାନୁତ୍କଳାଂଶ୍ଚୈବ ଦଶାର୍ଣନଗରାଣ୍ୟପି । ୯ ।
ଆବ୍ରବନ୍ତୀମବନ୍ତୀଂ ଚ ସର୍ବମେବାନୁପଶ୍ୟତ ।
ବିଦର୍ଭାନୃଷ୍ଟିକାଂଶ୍ଚୈବ ରମ୍ୟାନ୍ମାହିଷକାନପି । ୧୦ ।
ତଥା ମତ୍ସ୍ୟକଳିଙ୍ଗାଂଶ୍ଚ କୌଶିକାଂଶ୍ଚ ସମନ୍ତତଃ ।
ଅନ୍ୱୀକ୍ଷ୍ୟ ଦଣ୍ଡକାରଣ୍ୟଂ ସପର୍ବତନଦୀଗୁହମ୍ । ୧୧ ।
ନଦୀଂ ଗୋଦାବରୀଂ ଚୈବ ସର୍ବମେବାନୁପଶ୍ୟତ ।
ତଥୈବାନ୍ଧ୍ରାଂଶ୍ଚ ପୁଣ୍ଡ୍ରାଂଶ୍ଚ ଚୋଳାନ୍ ପାଣ୍ଡ୍ୟାଂଶ୍ଚ କେରଳାନ୍।୧୨
ଅୟୋମୁଖଶ୍ଚ ଗନ୍ତବ୍ୟଃ ପର୍ବତୋ ଧାତୁମଣ୍ଡିତଃ ।
ବିଚିତ୍ରଶିଖରଃ ଶ୍ରୀମାଂଶ୍ଚିତ୍ରପୁଷ୍ପିତକାନନଃ । ୧୩ ।
ସୁଚନ୍ଦନବନୋଦ୍ଦେଶୋ ମାର୍ଗିତବ୍ୟୋ ମହାଗିରିଃ ।
ତତସ୍ତାମାପଗାଂ ଦିବ୍ୟାଂ ପ୍ରସନ୍ନସଲିଳାଶୟାମ୍ । ୧୪ ।

---

ସେ ସମସ୍ତର ଠିକଣା ଏବଂ ପରିଚୟ ବାନରରାଜ ସୁଗ୍ରୀବ ସେହି ପ୍ରଧାନ ପ୍ରଧାନ ବାନରମାନଙ୍କୁ ବତାଇଦେଲେ । ବହୁ ବୃକ୍ଷ ଏବଂ ଲତାମାନଙ୍କ ଦ୍ୱାରା ଶୋଭିତ ସହସ୍ରଶିଖରଯୁକ୍ତ ବିନ୍ଧ୍ୟପର୍ବତ, ବଡ଼ ବଡ଼ ସର୍ପପୂର୍ଣ୍ଣ ରମଣୀୟ ନର୍ମଦାନଦୀ, ଗୋଦାବରୀ, କୃଷ୍ଣା, ମହାନଦୀ, ମେଖଳ, ଉତ୍କଳ ଏବଂ ଦଶାର୍ଣ୍ଣ ଦେଶର ନଗରମାନ, ଅବନ୍ତୀ, ବିଦର୍ଭ, ଋଷ୍ଟିକ, ରମ୍ୟ, ମାହିଷକ, ମତ୍ସ୍ୟ, କଳିଙ୍ଗ ଏବଂ କୌଶିକ ଦେଶମାନଙ୍କୁ ଭଲକରି ଖୋଜିବ ଏବଂ ପର୍ବତ, ନଦୀ ଓ ଗୁହାମାନଙ୍କ ସହିତ ଦଣ୍ଡକାରଣ୍ୟକୁ ଖୋଜିବ । ଆନ୍ଧ୍ର, ପୁଣ୍ଡ୍ର, ଚୋଳ, ପାଣ୍ଡ୍ୟ, କେରଳ ଏବଂ ଗୋଦାବରୀ ନଦୀ ପ୍ରଭୃତି ସକଳ ସ୍ଥାନ ଅନ୍ୱେଷଣ କରିବ । ୭-୧୨ । ଧାତୁଯୁକ୍ତ ଅୟୋମୁଖ ପର୍ବତକୁ ଯିବ । ତାହାର ଶିଖର ଅତିଶୟ ବିଚିତ୍ର ଅଟେ ଏବଂ ତାହାର ବନମଧ୍ୟରେ ନାନାପ୍ରକାର ବିଚିତ୍ର ଫୁଲ ଫୁଟି ରହିଅଛି । ୧୩ । ଯେଉଁ ପର୍ବତର ବନମଧ୍ୟରେ ଉତ୍ତମ ଚନ୍ଦନ-ବୃକ୍ଷମାନ ଅଛି, ସେହି ମହାଗିରି (ମଳୟ)କୁ ଖୋଜିବ । ତା'ପରେ ତୁମେମାନେ ସ୍ୱଚ୍ଛସଲିଳା କାବେରୀ ନଦୀକୁ ଦେଖିବ । ସେଠାରେ ଅପ୍ସରାମାନେ ବିହାର

ତତ୍ର ଦ୍ରକ୍ଷ୍ୟଥ କାବେରୀଂ ବିହୃତାମପ୍ସରୋଗଣୈଃ ।
ତସ୍ୟାସୀନଂ ନଗସ୍ୟାଗ୍ରେ ମଲୟସ୍ୟ ମହୌଜସଃ । ୧୫ ।
ଦ୍ରକ୍ଷ୍ୟଥାଦିତ୍ୟସଂକାଶମଗସ୍ତ୍ୟମୃଷିସତ୍ତମମ୍ ।
ତତସ୍ତେନାଭ୍ୟନୁଜ୍ଞାତାଃ ପ୍ରସନ୍ନେନ ମହାତ୍ମନା । ୧୬ ।
ତାମ୍ରପର୍ଣୀଂ ଗ୍ରାହଜୁଷ୍ଟାଂ ତରିଷ୍ୟଥ ମହାନଦୀମ୍ ।
ସା ଚନ୍ଦନବନୈଶ୍ଚିତ୍ରୈଃ ପ୍ରଚ୍ଛନ୍ନଦ୍ୱୀପବାରିଣୀ ।୧୭ ।
କାନ୍ତେବ ଯୁବତୀ କାନ୍ତଂ ସମୁଦ୍ରମବଗାହତେ ।
ତତୋ ହେମମୟଂ ଦିବ୍ୟଂ ମୁକ୍ତାମଣିବିଭୂଷିତମ୍ । ୧୮ ।
ଯୁକ୍ତଂ କବାଟଂ ପାଣ୍ଡ୍ୟାନାଂ ଗତା ଦ୍ରକ୍ଷ୍ୟଥ ବାନରାଃ ।
ତତଃ ସମୁଦ୍ରମାସାଦ୍ୟ ସଂପ୍ରଧାର୍ଯାର୍ଥନିଶ୍ଚୟମ୍ । ୧୯ ।
ଅଗସ୍ତ୍ୟେନାନ୍ତରେ ତତ୍ର ସାଗରେ ବିନିବେଶିତଃ ।
ଚିତ୍ରସାନୁନଗଃ ଶ୍ରୀମାନ୍ମହେନ୍ଦ୍ରଃ ପର୍ବତୋତ୍ତମଃ । ୨୦ ।
ଜାତରୂପମୟଃ ଶ୍ରୀମାନବଗାଢ଼ୋ ମହାର୍ଣବମ୍ ।
ନାନାବିଧୈର୍ନଗୈଃ ଫୁଲ୍ଲୈର୍ଲତାଭିଶ୍ଚୋପଶୋଭିତମ୍ । ୨୧ ।

---

କରୁଥାନ୍ତି । ସେହି ମହାତେଜସ୍ୱୀ ମଳୟପର୍ବତର ଶିଖରଦେଶରେ ସୂର୍ଯ୍ୟସଦୃଶ ତେଜୀୟାନ୍ ଋଷିଶ୍ରେଷ୍ଠ ଅଗସ୍ତ୍ୟମୁନିଙ୍କୁ ବସିଥିବାର ଦେଖିବ । ସେହି ପ୍ରସନ୍ନଚିତ୍ତ ମହାତ୍ମାଙ୍କର ଆଜ୍ଞା ପାଇ କୁମ୍ଭୀରପୂର୍ଣ୍ଣ ତାମ୍ରପର୍ଣ୍ଣୀ ବିଶାଳନଦୀକୁ ତୁମେମାନେ ପାରହେବ । ସେ ନଦୀ ଚନ୍ଦନବନଦ୍ୱାରା ଶୋଭିତ ଏବଂ ତାହାର ଜଳମଧ୍ୟରେ ଦ୍ୱୀପମାନେ ଲୁଚି ରହିଥାନ୍ତି । ୧୪-୧୭ । ସୁନ୍ଦରୀ ଯୁବତୀ ଯେପରି ପତିର ନିକଟକୁ ଗମନକରେ, ସେହିପରି ସେହି(ତାମ୍ରପର୍ଣ୍ଣୀ)ନଦୀ ସମୁଦ୍ର ନିକଟକୁ ଯାଉଅଛି । ଅନନ୍ତର ମଣିମୁକ୍ତାବିଭୂଷିତ ସ୍ୱର୍ଣ୍ଣମୟ ପାଣ୍ଡ୍ୟମାନଙ୍କର ଯୋଗ୍ୟ କବାଟ (ନଗରଦ୍ୱାରର କବାଟ)କୁ ତୁମେମାନେ ଯାଇ ଦେଖିବ । ତା'ପରେ ସମୁଦ୍ରତୀରକୁ ଯାଇ ତୁମେମାନେ ନିଜର କର୍ତ୍ତବ୍ୟ ସ୍ଥିର କରିବ । ୧୮-୧୯ । ସେହିଠାରେ ସମୁଦ୍ରମଧ୍ୟରେ ବିଚିତ୍ର ଶୃଙ୍ଗଯୁକ୍ତ ମହେନ୍ଦ୍ରପର୍ବତକୁ ଅଗସ୍ତ୍ୟ ଋଷି ସ୍ଥାପନ କରିଅଛନ୍ତି । ୨୦ । ସୁବର୍ଣ୍ଣମୟ ଏହି ସୁନ୍ଦର ପର୍ବତ ସମୁଦ୍ରମଧ୍ୟରେ ବୁଡ଼ି ରହିଅଛି । ଅନେକ ପ୍ରକାର ପୁଷ୍ପପ୍ରଫୁଟିତ ବୃକ୍ଷ ଏବଂ ଲତାମାନଙ୍କ ଦ୍ୱାରା ଏହା ଶୋଭିତ ହୋଇଅଛି । ୨୧ । ଦେବତା, ଋଷି,

ଦେବର୍ଷିଯକ୍ଷପ୍ରବରୈରପ୍‌ସରୋଭିଶ୍ଚ ଶୋଭିତମ୍ ।
ସିଦ୍ଧଚାରଣସଂଘୈଶ୍ଚ ପ୍ରକୀର୍ଣଂ ସୁମନୋରମମ୍ । ୨୨ ।
ତମୁପୈତି ସହସ୍ରାକ୍ଷଃ ସଦା ପର୍ବସୁ ପର୍ବସୁ ।
ଦ୍ୱୀପସ୍ତସ୍ୟାପରେ ପାରେ ଶତଯୋଜନବିସ୍ତୃତଃ । ୨୩ ।
ଅଗମ୍ୟୋ ମାନୁଷୈର୍ଦୀପ୍ତସ୍ତଂ ମାର୍ଗଧ୍ୱଂ ସମନ୍ତତଃ ।
ତତ୍ର ସର୍ବାତ୍ମନା ସୀତା ମାର୍ଗିତବ୍ୟା ବିଶେଷତଃ । ୨୪ ।
ସ ହି ଦେଶସ୍ତୁ ବଧ୍ୟସ୍ୟ ରାବଣସ୍ୟ ଦୁରାତ୍ମନଃ ।
ରାକ୍ଷସାଧିପତେର୍ବାସଃ ସହସ୍ରାକ୍ଷସମଦ୍ୟୁତେଃ । ୨୫ ।
ଦକ୍ଷିଣସ୍ୟ ସମୁଦ୍ରସ୍ୟ ମଧ୍ୟେ ତସ୍ୟ ତୁ ରାକ୍ଷସୀ ।
ଅଙ୍ଗାରକେତି ବିଖ୍ୟାତା ଛାୟାମାକ୍ଷିପ୍ୟ ଭୋଜନୀ । ୨୬ ।
ଏବଂ ନିଃସଂଶୟାନ୍ କୃତ୍ୱା ସଂଶୟାନ୍ନଷ୍ଟସଂଶୟାଃ ।
ମୃଗୟଧ୍ୱଂ ନରେନ୍ଦ୍ରସ୍ୟ ପତ୍ନୀମମିତତେଜସଃ । ୨୭ ।
ତମତିକ୍ରମ୍ୟ ଲକ୍ଷ୍ମୀବାନ୍ ସମୁଦ୍ରେ ଶତଯୋଜନେ ।
ଗିରିଃ ପୁଷ୍ପିତକୋ ନାମ ସିଦ୍ଧଚାରଣସେବିତଃ । ୨୮ ।

---

ଯକ୍ଷ ଏବଂ ଅପ୍‌ସରାମାନଙ୍କ ଦ୍ୱାରା ଏହି ପର୍ବତ ଶୋଭାପାଉଅଛି । ସିଦ୍ଧ ଏବଂ ଚାରଣମାନଙ୍କର ଦଳ ମଧ୍ୟ ଏଠାରେ ପୂରି ରହିଛନ୍ତି; ଅତଏବ ଏ ପର୍ବତ ବିଶେଷ-ରମଣୀୟ ହୋଇଅଛି । ୨୨ । ପ୍ରତି ଅମାବାସ୍ୟାରେ ଇନ୍ଦ୍ର ଏହି ପର୍ବତ ଉପରକୁ ଆସନ୍ତି । ଏହାର ଅପରପାର୍ଶ୍ୱରେ ଶତଯୋଜନବିସ୍ତୃତ ଏକ ଦ୍ୱୀପ ଅଛି । ୨୩ । ସେ ସ୍ଥାନକୁ ମନୁଷ୍ୟ ଯାଇପାରେ ନାହିଁ; ବିଶେଷତଃ ଏହି ସ୍ଥାନରେ ଖୁବ୍ ଭଲକରି ସୀତାଙ୍କୁ ଖୋଜିବାକୁ ହେବ । ୨୪ । ଏହି ସ୍ଥାନହିଁ ଦୁରାତ୍ମା ବଧ୍ୟ ରାବଣର ଦେଶ ଅଟେ । ଇନ୍ଦ୍ରସଦୃଶ ତେଜୋଯୁକ୍ତ ରାକ୍ଷସାଧିପତିର ଏହାହିଁ ନିବାସସ୍ଥାନ ଅଟେ । ୨୫ । ଦକ୍ଷିଣସମୁଦ୍ର ମଧ୍ୟରେ ଅଙ୍ଗାରକା ନାମକ ଏକ ରାକ୍ଷସୀ ଅଛି । ସେ ଛାୟାକୁ ଆକ୍ରମଣ କରି ପ୍ରାଣୀକୁ ଭକ୍ଷଣ କରେ । ୨୬ । ହେ ସଂଶୟରହିତ ବାନରଗଣ ! ତୁମେମାନେ ନିଜର ସନ୍ଦେହ ଉତ୍ତମରୂପେ ଦୂରକରି ପ୍ରଭୂତ ତେଜସ୍ୱୀ ରାଜା ରାମଚନ୍ଦ୍ରଙ୍କ ପତ୍ନୀଙ୍କୁ ଅନ୍ୱେଷଣ କରିବ । ୨୭ । ସେ ପ୍ରଦେଶକୁ ଅତିକ୍ରମ କରିବା ପରେ ଶତଯୋଜନବିସ୍ତୃତ ସମୁଦ୍ରମଧ୍ୟରେ ତୁମେମାନେ ସିଦ୍ଧ ଏବଂ ଚାରଣମାନଙ୍କ ଦ୍ୱାରା ସେବିତ ପୁଷ୍ପିତକ ନାମକ ପର୍ବତକୁ ଦେଖିବ । ୨୮ । ସେ ପର୍ବତ ସମୁଦ୍ର

ଚନ୍ଦ୍ରସୂର୍ଯ୍ୟାଂଶୁସଂକାଶଃ ସାଗରାମ୍ବୁସମାଶ୍ରୟଃ ।
ଭ୍ରାଜତେ ବିପୁଲୈଃ ଶୃଙ୍ଗୈରମ୍ବରଂ ବିଲିଖନ୍ନିବ । ୨୯ ।
ତସ୍ୟୈକଂ କାଞ୍ଚନଂ ଶୃଙ୍ଗଂ ସେବତେ ଯଂ ଦିବାକରଃ ।
ନ ତଂ କୃତଘ୍ନାଃ ପଶ୍ୟନ୍ତି ନ ନୃଶଂସା ନ ନାସ୍ତିକାଃ । ୩୦ ।
ପ୍ରଣମ୍ୟ ଶିରସା ଶୈଳଂ ତଂ ବିମାର୍ଗଥ ବାନରାଃ ।
ତମତିକ୍ରମ୍ୟ ଦୁର୍ଧର୍ଷଂ ସୂର୍ଯ୍ୟବାନ୍ନାମ ପର୍ବତଃ । ୩୧ ।
ଅଧ୍ୱନା ଦୁର୍ବିଗାହେନ ଯୋଜନାନି ଚତୁର୍ଦ୍ଦଶ ।
ତତସ୍ତମପ୍ୟତିକ୍ରମ୍ୟ ବୈଦ୍ୟୁତୋ ନାମ ପର୍ବତଃ । ୩୨ ।
ସର୍ବକାମଫଳୈର୍ବୃକ୍ଷୈଃ ସର୍ବକାଳମନୋହରୈଃ ।
ତତ୍ର ଭୁକ୍ତ୍ୱା ବରାର୍ହାଣି ମୂଲାନି ଚ ଫଲାନି ଚ । ୩୩ ।
ମଧୂନି ପୀତ୍ୱା ମିଷ୍ଟାନି ପରଂ ଗଚ୍ଛତ ବାନରାଃ ।
ତତ୍ର ନେତ୍ରମନଃକାନ୍ତଃ କୁଞ୍ଜରୋ ନାମ ପର୍ବତଃ । ୩୪ ।
ଅଗସ୍ତ୍ୟଭବନଂ ଯତ୍ର ନିର୍ମିତଂ ବିଶ୍ୱକର୍ମଣା ।
ତତ୍ର ଯୋଜନବିସ୍ତାରମୁଚ୍ଛ୍ରିତଂ ଦଶଯୋଜନମ୍ । ୩୫ ।

---

ମଧ୍ୟରେ ଚନ୍ଦ୍ର ଏବଂ ସୂର୍ଯ୍ୟସମାନ ରହିଅଛି । ନିଜର ବିଶାଳ ଶିଖରମାନଙ୍କ ଦ୍ୱାରା ଏହା ଆକାଶକୁ ସ୍ପର୍ଶ କରିବାପରି ଜଣାଯାଏ । ୨୯ । ତାହାର ଏକ ଶିଖର ଉପରକୁ ସୂର୍ଯ୍ୟ ଆସନ୍ତି । କୃତଘ୍ନ, କ୍ରୂର ଏବଂ ନାସ୍ତିକ ବ୍ୟକ୍ତିମାନେ ଏ ଶିଖରକୁ ଦେଖି-ପାରନ୍ତି ନାହିଁ । ୩୦ । ହେ ବାନରଗଣ ! ଏହି ପର୍ବତକୁ ମୁଣ୍ଡ ଲଗାଇ ପ୍ରଣାମ କରି ତାହାକୁ ଅନ୍ୱେଷଣ କରିବ । ଏହି ଦୁର୍ଗମ ପର୍ବତକୁ ଅତିକ୍ରମ କରିବା ପରେ ସୂର୍ଯ୍ୟବାନ୍ ନାମକ ପର୍ବତ ପଡ଼ିବ । ୩୧ । ତାହା ପରେ ସେ ପର୍ବତକୁ ଅତିକ୍ରମ କରି ଦୁର୍ଗମପଥରେ ଚଉଦଯୋଜନ ଯିବାପରେ ବୈଦ୍ୟୁତ ନାମକ ପର୍ବତ ପଡ଼ିବ ।୩୨। ସର୍ବକାଳରେ ଏବଂ ସର୍ବଦା ମନୋହର ବୃକ୍ଷରେ ସେ ପର୍ବତ ପୂର୍ଣ୍ଣ ଅଟେ । ସେଠାରେ ଉତ୍କୃଷ୍ଟ ଫଳମୂଳ ଖାଇ ଏବଂ ଅତି ମିଷ୍ଟ ମଧୁ ପାନକରି ତୁମେମାନେ ଆଗକୁ ଯିବ । ସେଠାରେ ଚକ୍ଷୁ ଏବଂ ମନର ଆନନ୍ଦଦାୟକ କୁଞ୍ଜର ନାମକ ପର୍ବତ ପଡ଼ିବ ।୩୩-୩୪। ସେଠାରେ ବିଶ୍ୱକର୍ମା ଅଗସ୍ତିଙ୍କ ପାଇଁ ଗୃହ ନିର୍ମାଣ କରିଅଛନ୍ତି । ଏହାର ବିସ୍ତାର ଏକ ଯୋଜନ ଏବଂ ଉଚ୍ଚତା ଦଶଯୋଜନ ଅଟେ । ୩୫ । ଏହା ଦିବ୍ୟ ସୁବର୍ଣ୍ଣ ଏବଂ

ଶରଣଂ କାଞ୍ଚନଂ ଦିବ୍ୟଂ ନାନାରତ୍ନବିଭୂଷିତମ୍ ।
ତତ୍ର ଭୋଗବତୀ ନାମ ସର୍ପାଣାମାଲୟଃ ପୁରୀ । ୩୬ ।
ବିଶାଲରଥ୍ୟା ଦୁର୍ଧର୍ଷା ସର୍ବତଃ ପରିରକ୍ଷିତା ।
ରକ୍ଷିତା ପନ୍ନଗୈର୍ଘୋରୈସ୍ତୀକ୍ଷ୍ଣଦଂଷ୍ଟ୍ରୈର୍ମହାବିଷୈଃ । ୩୭ ।
ସର୍ପରାଜୋ ମହାଘୋରୋ ଯସ୍ୟାଂ ବସତି ବାସୁକିଃ ।
ନିର୍ଯାୟ ମାର୍ଗିତବ୍ୟା ଚ ସା ଚ ଭୋଗବତୀ ପୁରୀ । ୩୮ ।
ତତ୍ର ଚାନନ୍ତରା ଦେଶା ଯେ କେଚନ ସମାବୃତାଃ ।
ତଂ ଚ ଦେଶମତିକ୍ରମ୍ୟ ମହାନୃଷଭସଂସ୍ଥିତଃ । ୩୯ ।
ସର୍ବରତ୍ନମୟଃ ଶ୍ରୀମାନୃଷଭୋ ନାମ ପର୍ବତଃ ।
ଗୋଶୀର୍ଷକଂ ପଦ୍ମକଂ ଚ ହରିଂ ଶ୍ୟାମଂ ଚ ଚନ୍ଦନମ୍ ।୪୦।
ଦିବ୍ୟମୁତ୍ପଦ୍ୟତେ ଯତ୍ର ତଚ୍ଚୈବାଗ୍ନିସମପ୍ରଭମ୍ ।
ନ ତୁ ତଚ୍ଚନ୍ଦନଂ ଦୃଷ୍ଟ୍ୱା ସ୍ପ୍ରଷ୍ଟବ୍ୟଂ ତୁ କଦାଚନ । ୪୧ ।
ରୋହିତା ନାମ ଗନ୍ଧର୍ବା ଘୋରଂ ରକ୍ଷନ୍ତି ତଦ୍ ବନମ୍ ।
ତତ୍ର ଗନ୍ଧର୍ବପତୟଃ ପଞ୍ଚ ସୂର୍ଯ୍ୟ ସମ ପ୍ରଭାଃ । ୪୨ ।

---

ନାନା ରତ୍ନଦ୍ୱାରା ବିଭୂଷିତ ଅଟେ । ସେଠାରେ ସର୍ପମାନଙ୍କର ଆବାସଭୂମି ଭୋଗବତୀ ନାମକ ନଗରୀ ଅଛି । ଏ ନଗରୀର ରାସ୍ତା ସବୁ ଖୁବ୍ ପ୍ରଶସ୍ତ । ଏହା ଚାରିଦିଗରୁ ସୁରକ୍ଷିତ; ସୁତରାଂ କେହି ଏହା ଭିତରକୁ ପ୍ରବେଶ କରିପାରନ୍ତି ନାହିଁ । ତୀକ୍ଷ୍ଣଦନ୍ତଯୁକ୍ତ ଭୟଙ୍କର ବିଷାକ୍ତ ସର୍ପମାନେ ଏହାକୁ ଜଗିରହିଛନ୍ତି । ୩୬-୩୭ । ଏଠାରେ ମହାଭୟଙ୍କର ସର୍ପରାଜ ବାସୁକି ବାସକରନ୍ତି । ସାବଧାନଭାବରେ ଯାଇ ଏ ପୁରୀରେ ଅନ୍ୱେଷଣ କରିବ । ୩୮ । ସେଠାରେ ଯେଉଁ ସବୁ ସ୍ଥାନ ଦୂରବର୍ତ୍ତୀ ବା ଯେଉଁ ସବୁ ସ୍ଥାନ ଘୋଡ଼ାଇ ହୋଇ ଛପି ରହିଛି, ସେସବୁ ସ୍ଥାନକୁ ଖୋଜିବ । ସେଠାରୁ ଅଗ୍ରସର ହେଲେ ତୁମେମାନେ ମହାନ୍ ଋଷଭ ପର୍ବତକୁ ପାଇବ । ୩୯ । ଏଠାରେ ସକଳପ୍ରକାର ରତ୍ନ ଅଛି ଏବଂ ଏହା ବଡ଼ ସୁନ୍ଦର । ଗୋଶୀର୍ଷକ, ପଦ୍ମକ ଏବଂ ହରିଚନ୍ଦନ ନାମକ ଦିବ୍ୟ ଚନ୍ଦନ ଏଠାରେ ଉତ୍ପନ୍ନ ହୁଏ । ଏ ଚନ୍ଦନର ବର୍ଣ୍ଣ ଅଗ୍ନିର ବର୍ଣ୍ଣସଦୃଶ ଅଟେ । ଏ ଚନ୍ଦନକୁ ଦେଖିଲେ ତୁମେମାନେ କଦାପି ଛୁଇଁବ ନାହିଁ ।୪୦-୪୧। ରୋହିତ ନାମଧାରୀ ଗନ୍ଧର୍ବମାନେ ସେହି ଘୋରବନକୁ ରକ୍ଷାକରନ୍ତି । ସେଠାରେ ସୂର୍ଯ୍ୟସଦୃଶ ପ୍ରଭାବଶିଷ୍ଟ, ଶୈଳୂଷ, ଗ୍ରାମଣୀ, ଶିକ୍ଷୁ, ଶୁକ୍ର ଏବଂ ବଭ୍ରୁ ଏହି ପାଞ୍ଚଜଣ

ଶୈଳୂଷୋ ଗ୍ରାମଣୀଃ ଶିକ୍ଷୁଃ ଶୁକ୍ରୋ ବଭ୍ରୁସ୍ତଥୈବ ଚ ।
ରବିସୋମାଗ୍ନିବପୁଷାଂ ନିବାସଃ ପୁଣ୍ୟକର୍ମଣାମ୍ । ୪୩ ।
ଅନ୍ତେ ପୃଥିବ୍ୟା ଦୁର୍ଦ୍ଧର୍ଷାସ୍ତତଃ ସ୍ୱର୍ଗଜିତଃ ସ୍ଥିତାଃ ।
ତତଃ ପରଂ ନ ବଃ ସେବ୍ୟଃ ପିତୃଲୋକଃ ସୁଦାରୁଣଃ । ୪୪ ।
ରାଜଧାନୀ ଯମସ୍ୟୈଷା କଷ୍ଟେନ ତମସାବୃତା ।
ଏତାବଦେବ ଯୁଷ୍ମାଭିର୍ବୀରା ବାନରପୁଙ୍ଗବାଃ ।
ଶକ୍ୟଂ ବିଚେତୁଂ ଗନ୍ତୁଂ ବା ନାତୋ ଗତିମତାଂ ଗତିଃ । ୪୫ ।
ସର୍ବମେତତ୍ସମାଲୋକ୍ୟ ଯଚ୍ଚାନ୍ୟଦପି ଦୃଶ୍ୟତେ ।
ଗତିଂ ବିଦିତ୍ୱା ବୈଦେହ୍ୟାଃ ସଂନିବର୍ତ୍ତିତୁମର୍ହଥ । ୪୬ ।
ଯଶ୍ଚ ମାସାନ୍ନିବୃତ୍ତୋଽଗ୍ରେ ଦୃଷ୍ଟ୍ୱା ସୀତେତି ବକ୍ଷ୍ୟତି ।
ମତ୍ତୁଲ୍ୟବିଭବୋ ଭୋଗୈଃ ସୁଖଂ ସ ବିହରିଷ୍ୟତି । ୪୭ ।
ତତଃ ପ୍ରିୟତରୋ ନାସ୍ତି ମମ ପ୍ରାଣାଦ୍ ବିଶେଷତଃ ।
କୃତାପରାଧୋ ବହୁଶୋ ମମ ବନ୍ଧୁର୍ଭବିଷ୍ୟତି । ୪୮ ।

---

ପୁଣ୍ୟାତ୍ମା ଗନ୍ଧର୍ବପତି ବାସ କରନ୍ତି । ଏମାନଙ୍କର ଶରୀର ସୂର୍ଯ୍ୟ, ଚନ୍ଦ୍ର ଏବଂ ଅଗ୍ନି-ସଦୃଶ ଅଟେ । ୪୨-୪୩ । ପୃଥିବୀର ଅନ୍ତଃସ୍ଥାନ ଦୁର୍ଗମ ଅଟେ । ସେଠାରେ ଦେବତାମାନେ ଥାଆନ୍ତି । ତା'ଆଗକୁ ତୁମମାନଙ୍କର ଯିବା ଉଚିତ ନୁହେଁ, କାରଣ ତାହା ଭୀଷଣ ପିତୃଲୋକ ଅଟେ । ୪୪ । ଏହା ଯମଙ୍କର ରାଜଧାନୀ ଅଟେ । ଅତି କ୍ଲେଶଦାୟକ ଅନ୍ଧକାରରେ ଏ ସ୍ଥାନ ଆବୃତ ଅଟେ । ହେ ବାନରଶ୍ରେଷ୍ଠଗଣ ! ତୁମମାନଙ୍କୁ ଏହି ପର୍ଯ୍ୟନ୍ତ ଯିବାକୁ ହେବ । ଏହି ପର୍ଯ୍ୟନ୍ତ ତୁମେମାନେ ଯାଇପାର ଏବଂ ଅନ୍ୱେଷଣ କରିପାର । ଏହା ଆଗକୁ ଗମନଶୀଳ ପ୍ରାଣୀମାନଙ୍କର ଗତିନାହିଁ ।୪୫। ଏହି ସବୁ ସ୍ଥାନ ଦେଖି ଏବଂ ଆଉ ଯାହା ଯାହା ଦେଖିବ, ସେସବୁ ସ୍ଥାନରେ ଜାନକୀଙ୍କର ସନ୍ଧାନ କରି ତୁମମାନଙ୍କୁ ଫେରିଆସିବାକୁ ହେବ । ୪୬ । ଏକ ମାସ ମଧ୍ୟରେ ଯେ ପ୍ରଥମେ ଫେରିଆସି ସୀତାଙ୍କୁ ଦେଖିଛି ବୋଲି ସମ୍ବାଦ ଦେବ, ସେ ମୋର ସମାନ ଭୋଗ ଏବଂ ସୁଖ ଲାଭକରି ସୁଖରେ ବିହାର କରିବ । ୪୭ । ତାହାଠାରୁ ବଳି ମୋର ଆଉ କେହି ପ୍ରିୟତର ହେବ ନାହିଁ । ଅନେକ ଅପରାଧ

ଅମିତବଲପରାକ୍ରମା ଭବନ୍ତୋ
ବିପୁଲଗୁଣେଷୁ କୁଲେଷୁ ଚ ପ୍ରସୂତାଃ ।
ମନୁଜପତିସୁତାଂ ଯଥା ଲଭଧ୍ୱମ୍
ତଦଧିଗୁଣଂ ପୁରୁଷାର୍ଥମାରଭଧ୍ୱମ୍ । ୪୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ଦକ୍ଷିଣାପ୍ରେଷଣମ୍
ନାମ ଏକଚତ୍ୱାରିଂଶଃ ସର୍ଗଃ

---

କରିଥିଲେ ମଧ୍ୟ ସେ ମୋର ମିତ୍ର ହେବ । ୪୮ । ତୁମେମାନେ ବଡ଼ ପରାକ୍ରମୀ; ବହୁଗୁଣବାନ୍ କୁଳରେ ତୁମେମାନେ ଜନ୍ମହୋଇଛ । ରାଜସୁତା ଜାନକୀଯେପରି ମିଳନ୍ତି ସେହିପରି ଉଦ୍‌ଯୋଗ ତୁମେମାନେ ଆରମ୍ଭ କର" । ୪୯ ।

# ଦ୍ୱିଚତ୍ୱାରିଂଶଃ ସର୍ଗଃ

## ପ୍ରତୀଚୀପ୍ରେଷଣମ୍

ଅଥ ପ୍ରସ୍ଥାପ୍ୟ ସ ହରୀନ୍ ସୁଗ୍ରୀବୋ ଦକ୍ଷିଣାଂ ଦିଶମ୍ ।
ଅବ୍ରବୀନ୍ମେଘସଂକାଶଂ ସୁଷେଣଂ ନାମ ବାନରମ୍ । ୧ ।
ତାରାୟାଃ ପିତରଂ ରାଜା ଶ୍ୱଶୁରଂ ଭୀମବିକ୍ରମମ୍ ।
ଅବ୍ରବୀତ୍ ପ୍ରାଞ୍ଜଳିର୍ବାକ୍ୟମଭିଗମ୍ୟ ପ୍ରଣମ୍ୟ ଚ । ୨ ।
ମହର୍ଷିପୁତ୍ରଂ ମାରୀଚମର୍ଚିଷ୍ମନ୍ତଂ ମହାକପିମ୍ ।
ବୃତଂ କପିବରୈଃ ଶୂରୈର୍ମହେନ୍ଦ୍ରସଦୃଶଦ୍ୟୁତିମ୍ । ୩ ।
ବୁଦ୍ଧିବିକ୍ରମସଂପନ୍ନଂ ବୈନତେୟସମଦ୍ୟୁତିମ୍ ।
ମରୀଚିପୁତ୍ରାନ୍ମାରୀଚାନର୍ଚିର୍ମାଲାନ୍ମହାବଲାନ୍ । ୪ ।
ଋଷିପୁତ୍ରାଂଶ୍ଚ ତାନ୍ ସର୍ବାନ୍ ପ୍ରତୀଚୀମାଦିଶଦ୍ଦିଶମ୍ ।
ଦ୍ୱାଭ୍ୟାଂ ଶତସହସ୍ରାଭ୍ୟାଂ କପୀନାଂ କପିସତ୍ତମାଃ । ୫ ।
ସୁଷେଣପ୍ରମୁଖା ଯୂୟଂ ବୈଦେହୀଂ ପରିମାର୍ଗତ ।
ସୌରାଷ୍ଟ୍ରାନ୍ମହାବାହ୍ଲୀକାଂଶ୍ଚନ୍ଦ୍ରଚିତ୍ରାଂସ୍ତଥୈବ ଚ । ୬ ।

---

## ୪୨ଶ ସର୍ଗ

### (ପଶ୍ଚିମ ଦିଗକୁ ପ୍ରେରଣ)

ଅନନ୍ତର ଦକ୍ଷିଣଦିଗକୁ ବାନରମାନଙ୍କୁ ପଠାଇଦେଇ ସୁଗ୍ରୀବ ମେଘସଦୃଶ ଦୀପ୍ତିମନ୍ତ ସୁଷେଣ ନାମକ ବାନରଙ୍କୁ କହିଲେ । ୧ । ସେ ତାରାର ପିତା, ରାଜାଙ୍କର ଶ୍ୱଶୁର ଏବଂ ମହାପରାକ୍ରମୀ ଥିଲେ । ସୁଗ୍ରୀବ ତାଙ୍କ ନିକଟକୁ ଅଗ୍ରସର ହୋଇ ନମସ୍କାର କରି ହାତଯୋଡ଼ି ତାଙ୍କୁ କହିଲେ । ୨ । ମହର୍ଷି ମରୀଚିଙ୍କର ପୁତ୍ର ଇନ୍ଦ୍ରସଦୃଶ ତେଜସ୍ୱୀ, ବୀର ବାନରମାନଙ୍କଦ୍ୱାରା ପରିବୃତ ଅର୍ଚିଷ୍ମାନ୍ ନାମକ ମହାକପିଙ୍କୁ ମଧ୍ୟ ସେ (ସୁଗ୍ରୀବ) କହିଲେ । ୩ । ବୁଦ୍ଧିବିକ୍ରମସମ୍ପନ୍ନ, ଗରୁଡ଼ସଦୃଶ ତେଜୋଯୁକ୍ତ ଅର୍ଚିଷ୍ମାନଙ୍କୁ ଏବଂ ତେଜଃପୂର୍ଣ୍ଣ ମାଳାଧାରଣକାରୀ ମରୀଚଙ୍କ ପୁତ୍ର ମହାବଳ ବାନରମାନଙ୍କୁ ମଧ୍ୟ ସୁଗ୍ରୀବ ପଶ୍ଚିମଦିଗକୁ ଯିବା ନିମନ୍ତେ ଆଜ୍ଞା ଦେଲେ । "ହେ ବାନରଶ୍ରେଷ୍ଠଗଣ ! ସୁଷେଣ ପ୍ରଭୃତି ଆପଣମାନେ ଦୁଇଶତସହସ୍ର ବାନର ସଙ୍ଗରେନେଇ ସୀତାଙ୍କୁ ଅନ୍ୱେଷଣ କର । ସୌରାଷ୍ଟ୍ର, ମହାବାହ୍ଲିକ, ଚନ୍ଦ୍ରଚିତ୍ର ଆଦି ଦେଶରେ ତୁମେମାନେ ଅନ୍ୱେଷଣ କର । ୪-୬ । ସମୃଦ୍ଧିମନ୍ତ ଜନପଦ ଏବଂ ବିଶାଳ ନଗରୀ-

ସ୍ଫୀତାଞ୍ଜନପଦାନ୍ ରମ୍ୟାନ୍ ବିପୁଳାନି ପୁରାଣି ଚ ।
ପୁଂନାଗଗହନଂ କୁକ୍ଷିଂ ବକୁଲୋଦ୍ଦାଲକାକୁଳମ୍ । ୭ ।
ତଥା କେତକଖଣ୍ଡାଂଶ୍ଚ ମାର୍ଗଧ୍ୱଂ ହରିପୁଂଗବାଃ ।
ପ୍ରତ୍ୟକ୍‌ସ୍ରୋତୋବହାଶ୍ଚୈବ ନଦ୍ୟଃ ଶୀତଜଳାଃ ଶିବାଃ । ୮ ।
ତାପସାନାମରଣ୍ୟାନି କାନ୍ତାରଗିରୟଶ୍ଚ ଯେ ।
ତତ୍ର ସ୍ଥଲୀର୍ମରୁପ୍ରାୟା ଅତ୍ୟୁଚ୍ଚଶିଶିରାଃ ଶିଳାଃ । ୯ ।
ଗିରିଜାଲାବୃତାଂ ଦୁର୍ଗାଂ ମାର୍ଗିତ୍ୱା ପଶ୍ଚିମାଂ ଦିଶମ୍ ।
ତତଃ ପଶ୍ଚିମମାଗମ୍ୟ ସମୁଦ୍ରଂ ଦ୍ରଷ୍ଟୁମର୍ହଥ । ୧୦ ।
ତିମିନକ୍ରାକୁଳଜଳଂ ଗତ୍ୱା ଦ୍ରକ୍ଷ୍ୟଥ ବାନରାଃ ।
ତତଃ କେତକଖଣ୍ଡେଷୁ ତମାଲଗହନେଷୁ ଚ । ୧୧ ।
କପୟୋ ବିହରିଷ୍ୟନ୍ତି ନାରିକେଳବନେଷୁ ଚ ।
ତତ୍ର ସୀତାଂ ଚ ମାର୍ଗଧ୍ୱଂ ନିଳୟଂ ରାବଣସ୍ୟ ଚ । ୧୨ ।
ବେଳାତଳନିବିଷ୍ଟେଷୁ ପର୍ବତେଷୁ ବନେଷୁ ଚ ।
ମୁରଚୀପତ୍ତନଂ ଚୈବ ରମ୍ୟଂ ଚୈବ ଜଟାପୁରମ୍ । ୧୩ ।
ଅବନ୍ତୀମଙ୍ଗଲେପାଂ ଚ ତଥା ଚାଲକ୍ଷିତଂ ବନମ୍ ।
ରାଷ୍ଟ୍ରାଣି ଚ ବିଶାଳାନି ପତ୍ତନାନି ତତସ୍ତତଃ । ୧୪ ।

---

ମାନଙ୍କୁ ଏବଂ ପୁନାଗ ବକୁଳ ଓ ଉଦ୍ଦାଳକ ବୃକ୍ଷପୂର୍ଣ୍ଣ କୁକ୍ଷି ପ୍ରଦେଶକୁ ମଧ୍ୟ ତୁମେମାନେ ଖୋଜିବ । ୭ । ହେ ବାନରଗଣ ! କେତକୀବନକୁ ଏବଂ ପଶ୍ଚିମବାହିନୀ ଶୀତଳ ଜଳପୂର୍ଣ୍ଣ ନଦୀମାନଙ୍କୁ ମଧ୍ୟ ତୁମେମାନେ ଖୋଜିବ । ୮ । ତପସ୍ୱୀମାନଙ୍କର ବନ, କାନ୍ତାର, ପର୍ବତ, ମରୁଭୂମି ଏବଂ ଅତ୍ୟୁଚ୍ଚ ପର୍ବତଶିଖରମାନଙ୍କୁ ତୁମେମାନେ ଖୋଜିବ । ୯ । ପର୍ବତ ଏବଂ ଜଳପୂର୍ଣ୍ଣ ଦୁର୍ଗମ ପଶ୍ଚିମଦିଗକୁ ଅନ୍ୱେଷଣ କରିସାରି, ସେଠାରୁ ଆହୁରି ଆଗକୁ ଯାଇ ତୁମେମାନେ ପଶ୍ଚିମସମୁଦ୍ରକୁ ଦେଖିବ । ୧୦ । ଏ ସମୁଦ୍ର ତିମି ଏବଂ ମଗରରେ ପୂର୍ଣ୍ଣ ଅଛି । ତା'ପରେ କେତକୀବନ, ତମାଲବନ ଏବଂ ନାରିକେଳ ବନରେ ବାନରମାନେ ବିହାର କରିବେ । ସେଠାରେ ମଧ୍ୟ ସୀତାଙ୍କୁ ଏବଂ ରାବଣର ଘରକୁ ଖୋଜିବ । ୧୧-୧୨ । ସମୁଦ୍ରତୀରରେ ଥିବା ପର୍ବତ ଏବଂ ବନମାନଙ୍କରେ ମୁରଚୀନଗରରେ ଏବଂ ରମଣୀୟ ଜଟାପୁରରେ ମଧ୍ୟ ତୁମେମାନେ ସୀତାଙ୍କୁ ଖୋଜିବ । ୧୩ । ଅବନ୍ତୀ ଓ ଅଙ୍ଗଲେପାନଗରରେ, ଅଦୃଶ୍ୟ ବନରେ, ବଡ଼ ବଡ଼ ଦେଶ ଏବଂ ବଡ଼ ବଡ଼ ନଗରରେ ତୁମେମାନେ ସୀତାଙ୍କୁ ତନ୍ନ ତନ୍ନ

ସିନ୍ଧୁସାଗରୟୋଶ୍ଚୈବ ସଂଗମେ ତତ୍ର ପର୍ବତଃ ।
ମହାନ୍ ସୋମଗିରିର୍ନାମ ଶତଶୃଙ୍ଗୋ ମହାଦ୍ରୁମଃ । ୧୫ ।
ତତ୍ର ପ୍ରସ୍ଥେଷୁ ରମ୍ୟେଷୁ ସିଂହାଃ ପକ୍ଷଗମାଃ ସ୍ଥିତାଃ ।
ତିମିମତ୍ସ୍ୟଗଜାଂଶ୍ଚୈବ ନୀଡ଼ାନ୍ୟାରୋପୟନ୍ତି ତେ । ୧୬ ।
ତାନି ନୀଡ଼ାନି ସିଂହାନାଂ ଗିରିଶୃଙ୍ଗଗତାଶ୍ଚ ଯେ ।
ଦୃପ୍ତାସ୍ତୃପ୍ତାଶ୍ଚ ମାତଙ୍ଗାସ୍ତୋୟଦସ୍ୱନନିଃସ୍ୱନାଃ । ୧୭ ।
ବିଚରନ୍ତି ବିଶାଳେଽସ୍ମିଂସ୍ତୋୟପୂର୍ଣ୍ଣେ ସମନ୍ତତଃ ।
ତସ୍ୟ ଶୃଙ୍ଗଂ ଦିବସ୍ପର୍ଶଂ କାଞ୍ଚନଂ ଚିତ୍ରପାଦପମ୍ । ୧୮ ।
ସର୍ବମାଶୁ ବିଚେତବ୍ୟଂ କପିଭିଃ କାମରୂପିଭିଃ ।
କୋଟିଂ ତତ୍ର ସମୁଦ୍ରସ୍ୟ କାଞ୍ଚନୀଂ ଶତଯୋଜନାମ୍ । ୧୯ ।
ଦୁର୍ଦର୍ଶାଂ ପାରିଯାତ୍ରସ୍ୟ ଗତ୍ୱା ଦ୍ରକ୍ଷ୍ୟଥ ବାନରାଃ ।
କୋଟ୍ୟସ୍ତତ୍ର ଚତୁର୍ବିଂଶଦ୍ଗନ୍ଧର୍ବାଣାଂ ତପସ୍ୱିନାମ୍ । ୨୦ ।
ବସନ୍ତ୍ୟଗ୍ନିନିକାଶାନାଂ ଘୋରାଣାଂ ପାପକର୍ମଣାମ୍ ।
ପାବକାର୍ଚ୍ଚିଃପ୍ରତୀକାଶାଃ ସମବେତାଃ ସମନ୍ତତଃ । ୨୧ ।

---

କରି ଖୋଜିବ । ୧୪ । ସିନ୍ଧୁ ଏବଂ ସାଗରର ସଙ୍ଗମସ୍ଥଳରେ ସୋମଗିରି ନାମକ ଏକ ବିଶାଳ ପର୍ବତ ଅଛି । ଏହାର ଶହେଗୋଟି ଶୃଙ୍ଗ ଅଛି ଏବଂ ଏଥିରେ ଅନେକ ବଡ଼ ବଡ଼ ଦ୍ରୁମ ଅଛି । ୧୫ । ସେହି ପର୍ବତର ରମଣୀୟ ପ୍ରସ୍ତର ଉପରେ ସିଂହନାମକ ଏକପ୍ରକାର ପକ୍ଷୀ ଅଛନ୍ତି । ସେମାନେ ତିମିମାଛ ଏବଂ ହାତୀମାନଙ୍କୁ ମଧ୍ୟ ନିଜ ନୀଡ଼ଭିତରକୁ ଘେନିଆସି ରଖନ୍ତି । ୧୬ । ପର୍ବତ ଶିଖର ଉପରେ ସିଂହପକ୍ଷୀ-ମାନଙ୍କ ନୀଡ଼ଭିତରକୁ ଯେଉଁ ହାତୀମାନେ ଯାଆନ୍ତି ସେମାନେ ଗର୍ବିତ ଏବଂ ତୃପ୍ତହୋଇ ରହନ୍ତି ଏବଂ ମେଘର ଗର୍ଜନପରି ଗର୍ଜନ କରନ୍ତି । ୧୭ । ସେମାନେ ଜଳପୂର୍ଣ୍ଣ ସେହି ବିଶାଳ ପର୍ବତ ଉପରେ ବିଚରଣ କରନ୍ତି । ସେ ପର୍ବତର ସୁବର୍ଣ୍ଣମୟ ଶୃଙ୍ଗ ସ୍ୱର୍ଗକୁ ସ୍ପର୍ଶ କରିଅଛି ଏବଂ ସେଠାରେ ଅନେକ ବିଚିତ୍ର ବୃକ୍ଷ ଅଛି । ୧୮ । ଇଚ୍ଛାନୁସାରେ ବିଭିନ୍ନ ରୂପଧାରଣ କରିବାରେ ସମର୍ଥ ବାନରମାନେ ଏ ସମସ୍ତ ସ୍ଥାନ ଖୋଜିବା ଆବଶ୍ୟକ । ସେଠାରେ ସମୁଦ୍ରମଧ୍ୟରେ ଶତଯୋଜନବିସ୍ତୃତ ପାରିଯାତ୍ର ପର୍ବତର ସୁବର୍ଣ୍ଣଶୃଙ୍ଗ ତୁମେମାନେ ଦେଖିପାରିବ । ଏ ଶୃଙ୍ଗ ଦେଖିବା ଅନ୍ୟପକ୍ଷରେ କଷ୍ଟକର । ସେହି ପର୍ବତ ଉପରେ ଅଗ୍ନିସଦୃଶ ତେଜସ୍ୱୀ, ଭୟଙ୍କର ପାପାତ୍ମା ଚବିଶକୋଟି ଗନ୍ଧର୍ବତପସ୍ୱୀ ବାସକରନ୍ତି । ସେମାନେ ଅଗ୍ନିର ଶିଖାସଦୃଶ

ନାତ୍ୟାସାଦୟିତବ୍ୟାସ୍ତେ ବାନରୈର୍ଭୀମବିକ୍ରମୈଃ ।
ନାଦେୟଞ୍ଚ ଫଳଂ ତସ୍ମାଦ୍ଦେଶାତ୍କିଂଚିତ୍ ପ୍ଳବଙ୍ଗମୈଃ । ୨୨ ।
ଦୁରାସଦା ହି ତେ ବୀରାଃ ସତ୍ତ୍ୱବନ୍ତୋ ମହାବଳାଃ ।
ଫଳମୂଳାନି ତେ ତତ୍ର ରକ୍ଷନ୍ତେ ଭୀମବିକ୍ରମାଃ । ୨୩।
ତତ୍ର ଯତ୍ନଶ୍ଚ କର୍ତ୍ତବ୍ୟୋ ମାର୍ଗିତବ୍ୟା ଚ ଜାନକୀ ।
ନ ହି ତେଭ୍ୟୋ ଭୟଂ କିଂଚିତ୍କପିତ୍ୱମନୁବର୍ତ୍ତତାମ୍ । ୨୪ ।
ତତ୍ର ବୈଦୂର୍ଯ୍ୟବର୍ଣାଭୋ ବଜ୍ରସଂସ୍ଥାନସଂସ୍ଥିତଃ ।
ନାନାଦ୍ରୁମଲତାକୀର୍ଣୋ ବଜ୍ରୋ ନାମ ମହାଗିରିଃ । ୨୫ ।
ଶ୍ରୀମାନ୍ ସମୁଦ୍ରିତସ୍ତତ୍ର ଯୋଜନାନାଂ ଶତଂ ସମମ୍ ।
ଗୁହାସ୍ତତ୍ର ବିଚେତବ୍ୟାଃ ପ୍ରଯତ୍ନେନ ପ୍ଳବଙ୍ଗମାଃ । ୨୬ ।
ଚତୁର୍ଭାଗେ ସମୁଦ୍ରସ୍ୟ ଚକ୍ରବାନ୍ନାମ ପର୍ବତଃ ।
ତତ୍ର ଚକ୍ରଂ ସହସ୍ରାରଂ ନିର୍ମିତଂ ବିଶ୍ୱକର୍ମଣା ।୨୭ ।
ତତ୍ର ପଞ୍ଚଜନଂ ହତ୍ୱା ହୟଗ୍ରୀବଂ ଚ ଦାନବମ୍ ।
ଆଜହାର ତତଶ୍ଚକ୍ରଂ ଶଙ୍ଖଂ ଚ ପୁରୁଷୋତ୍ତମଃ । ୨୮ ।

---

ଏକନ ହୋଇଥାଆନ୍ତି । ୧୯-୨୧ । ପରାକ୍ରମୀ ବାନରମାନଙ୍କର ସେମାନଙ୍କର ଅତି ନିକଟକୁ ଯିବା ଉଚିତ ନୁହେ ବା ସେ ସ୍ଥାନର ଫଳ ଗ୍ରହଣ କରିବା ଉଚିତ ନୁହେ ।୨୨। ସେହି ଦୁର୍ଜୟ ମହାବଳୀ ଗନ୍ଧର୍ବମାନେ ସେଠାରେ ଫଳମୂଳମାନ ରକ୍ଷାକରନ୍ତି । ୨୩ । ସେଠାରେ ମଧ୍ୟ ତୁମେମାନେ ଯତ୍ନକରି ସୀତାଙ୍କୁ ଅନ୍ୱେଷଣ କରିବ । ବାନରରୂପରେ ଥିବାଯାଏ ସେ ଗନ୍ଧର୍ବମାନଙ୍କଠାରୁ ତୁମମାନଙ୍କର କୌଣସି ଭୟ ନାହିଁ । ୨୪ । ସେଠାରେ ବୈଦୂର୍ଯ୍ୟମଣିସଦୃଶ ବର୍ଣ୍ଣଯୁକ୍ତ, ହୀରକସଦୃଶ କଠିନ, ବହୁ ବୃକ୍ଷ ଏବଂ ଲତାପୂର୍ଣ୍ଣ ବଜ୍ର ନାମକ ଏକ ସୁନ୍ଦର ମହାପର୍ବତ ଅଛି । ତାହା ଶତଯୋଜନ ବିସ୍ତୃତ । ବାନରମାନଙ୍କର ଖୁବ ଯତ୍ନର ସହିତ ଏହାର ଗୁହାମାନଙ୍କୁ ଖୋଜିବା ଉଚିତ । ୨୫-୨୬ । ସମୁଦ୍ରର ଚତୁର୍ଥଭାଗରେ ଚକ୍ରବାନ୍ ନାମକ ଏକ ପର୍ବତ ଅଛି । ସେଠାରେ ବିଶ୍ୱକର୍ମା ସହସ୍ର ଅରଯୁକ୍ତ ଏକ ଚକ୍ର ନିର୍ମାଣ କରିଅଛନ୍ତି । ୨୭ । ସେଠାରେ ପଞ୍ଚଜନ ଏବଂ ହୟଗ୍ରୀବ ଦାନବଙ୍କୁ ମାରି ପୁରୁଷୋତ୍ତମ ବିଷ୍ଣୁ ଚକ୍ର ଏବଂ ଶଙ୍ଖ ସେଠାରୁ ନେଇ ଆସିଥିଲେ । ୨୮ । ତାହାର ରମଣୀୟ ଶିଖରଦେଶରେ ଏବଂ

ତତ୍ର ସାନୁଷୁ ରମ୍ୟେଷୁ ବିଶାଳାସୁ ଗୁହାସୁ ଚ ।
ରାବଣଃ ସହ ବୈଦେହ୍ୟା ମାର୍ଗିତବ୍ୟସ୍ତତସ୍ତତଃ । ୨୯ ।
ଯୋଜନାନି ଚତୁଃଷଷ୍ଟିର୍ବରାହୋ ନାମ ପର୍ବତଃ ।
ସୁବର୍ଣ୍ଣଶୃଙ୍ଗଃ ସୁମହାନଗାଧେ ବରୁଣାଳୟେ । ୩୦ ।
ତତ୍ର ପ୍ରାଗ୍‌ଜ୍ୟୋତିଷଂ ନାମ ଜାତରୂପମୟଂ ପୁରମ୍ ।
ତସ୍ମିନ୍ ବସତି ଦୁଷ୍ଟାତ୍ମା ନରକୋ ନାମ ଦାନବଃ ।୩୧ ।
ତତ୍ର ସାନୁଷୁ ରମ୍ୟେଷୁ ବିଶାଳାସୁ ଗୁହାସୁ ଚ ।
ରାବଣଃ ସହ ବୈଦେହ୍ୟା ମାର୍ଗିତବ୍ୟସ୍ତତସ୍ତତଃ । ୩୨ ।
ତମତିକ୍ରମ୍ୟ ଶୈଳେନ୍ଦ୍ରଂ କାଞ୍ଚନାନ୍ତରଦର୍ଶନମ୍ ।
ପର୍ବତଃ ସର୍ବସୌବର୍ଣ୍ଣୋ ଧାରାପ୍ରସ୍ରବଣାୟୁତଃ । ୩୩ ।
ତତ୍ର ଗଜା ବରାହାଶ୍ଚ ସିଂହବ୍ୟାଘ୍ରାଶ୍ଚ ସର୍ବତଃ ।
ଅଭିଗର୍ଜନ୍ତି ସତତଂ ତେନ ଶବ୍ଦେନ ଦର୍ପିତାଃ । ୩୪ ।
ଯସ୍ମିନ୍ ହରିହୟଃ ଶ୍ରୀମାନ୍ମହେନ୍ଦ୍ରଃ ପାକଶାସନଃ ।
ଅଭିଷିକ୍ତଃ ସୁରୈ ରାଜା ମେଘୋ ନାମ ସ ପର୍ବତଃ । ୩୫ ।

---

ବିଶାଳ ଗୁହାମାନଙ୍କରେ ଘୁରିଆଡ଼େ ବୁଲି ସୀତାଙ୍କ ସହିତ ରାବଣକୁ ଖୋଜିବାକୁ ହେବ । ୨୯ । ଅଗାଧ ସମୁଦ୍ର ମଧ୍ୟରେ ସୁବର୍ଣ୍ଣଶୃଙ୍ଗଯୁକ୍ତ ଚଉଷଠି ଯୋଜନ ଲମ୍ବା ବରାହ ନାମକ ପର୍ବତ ଅଛି । ୩୦ । ସେଠାରେ ପ୍ରାଗ୍‌ଜ୍ୟୋତିଷ ନାମକ ଏକ ସୁବର୍ଣ୍ଣମୟ ନଗରୀ ଅଛି । ସେଠାରେ ନରକ ନାମକ ଦୁରାତ୍ମା ଦାନବ ବାସ କରେ । ୩୧ । ସେ ପର୍ବତର ରମଣୀୟ ଶିଖରରେ ଏବଂ ବିଶାଳ ଗୁହାମାନଙ୍କରେ ସୀତାଙ୍କ ସହିତ ରାବଣକୁ ତନ୍ନ ତନ୍ନ କରି ଖୋଜିବାକୁ ହେବ । ୩୨ । ଏହି ପର୍ବତ ମଧ୍ୟରେ ସୁବର୍ଣ୍ଣ ଦେଖାଯାଏ । ଏହି ପର୍ବତକୁ ଅତିକ୍ରମ କରି ଆଗକୁ ଗଲେ ସର୍ବାଙ୍ଗ ସୁବର୍ଣ୍ଣମୟ ଏକ ପର୍ବତ ମିଳିବ । ସେଥିରେ ଅନେକ ଝରଣା ଏବଂ ଜଳପ୍ରବାହ ଅଛି । ୩୩ । ସେ ପର୍ବତ ଉପରେ ହସ୍ତୀ, ବରାହ, ସିଂହ ଏବଂ ବ୍ୟାଘ୍ରମାନେ ନିଜର ଶବ୍ଦର ପ୍ରତିଧ୍ୱନିରେ ଗର୍ବିତ ହୋଇ ସବୁଆଡ଼େ ଗର୍ଜନ କରୁଥାନ୍ତି । ୩୪ । ଯାହା ଉପରେ ସବୁଜବର୍ଣ୍ଣ ଘୋଡ଼ା ଥିବା ଇନ୍ଦ୍ରଙ୍କର ଅଭିଷେକ ଦେବତାମାନେ କରିଥିଲେ, ଏ ସେହି ମେଘ ନାମକ ପର୍ବତ । ୩୫ । ଇନ୍ଦ୍ରଙ୍କ ଦ୍ୱାରା ପରିପାଳିତ ସେହି ପର୍ବତ-

ତମତିକ୍ରମ୍ୟ ଶୈଳେନ୍ଦ୍ରଂ ମହେନ୍ଦ୍ରପରିପାଳିତମ୍ ।
ଷଷ୍ଟିଂ ଗିରିସହସ୍ରାଣି କାଞ୍ଚନାନି ଗମିଷ୍ୟଥ । ୩୬ ।
ତରୁଣାଦିତ୍ୟବର୍ଣାନି ଭ୍ରାଜମାନାନି ସର୍ବଶଃ ।
ଜାତରୂପମୟୈର୍ବୃକ୍ଷୈଃ ଶୋଭିତାନି ସୁପୁଷ୍ପିତୈଃ । ୩୭ ।
ତେଷାଂ ମଧ୍ୟେ ସ୍ଥିତୋ ରାଜା ମେରୁରୁତ୍ତରପର୍ବତଃ ।
ଆଦିତ୍ୟେନ ପ୍ରସନ୍ନେନ ଶୈଳୋ ଦତ୍ତବରଃ ପୁରା । ୩୮ ।
ତେନୈବମୁକ୍ତଃ ଶୈଳେନ୍ଦ୍ରଃ ସର୍ବ ଏବ ତ୍ୱଦାଶ୍ରୟାଃ ।
ମତ୍ପ୍ରସାଦାଦ୍ଭବିଷ୍ୟନ୍ତି ଦିବା ରାତ୍ରୌ ଚ କାଞ୍ଚନାଃ । ୩୯ ।
ତ୍ୱୟି ଯେ ଚାପି ବତ୍ସ୍ୟନ୍ତି ଦେବଗନ୍ଧର୍ବଦାନବାଃ ।
ତେ ଭବିଷ୍ୟନ୍ତି ଭକ୍ତାଶ୍ଚ ପ୍ରଭୟା କାଞ୍ଚନପ୍ରଭାଃ । ୪୦ ।
ବିଶ୍ୱେଦେବାଶ୍ଚ ବସବୋ ମରୁତଶ୍ଚ ଦିବୌକସଃ ।
ଆଗତ୍ୟ ପଶ୍ଚିମାଂ ସନ୍ଧ୍ୟାଂ ମେରୁମୁତ୍ତରପର୍ବତମ୍ । ୪୧ ।
ଆଦିତ୍ୟମୁପତିଷ୍ଠନ୍ତି ତୈଶ୍ଚ ସୂର୍ଯୋଽଭିପୂଜିତଃ ।
ଅଦୃଶ୍ୟଃ ସର୍ବଭୂତାନାମସ୍ତଂ ଗଚ୍ଛତି ପର୍ବତମ୍ । ୪୨ ।
ଯୋଜନାନାଂ ସହସ୍ରାଣି ଦଶ ତାନି ଦିବାକରଃ ।
ମୁହୂର୍ତାର୍ଧେନ ତଂ ଶୀଘ୍ରମଭିଯାତି ଶିଲୋଚ୍ଚୟମ୍ । ୪୩ ।

---

ରାଜକୁ ଅତିକ୍ରମ କରିଗଲେ ଷାଠିଏ ହଜାର ସ୍ୱର୍ଣ୍ଣପର୍ବତମାନଙ୍କ ନିକଟରେ ତୁମେମାନେ ପହଞ୍ଚିବ । ୩୬ । ଏସବୁ ପର୍ବତର ବର୍ଣ୍ଣ ବାଳସୂର୍ଯ୍ୟର ବର୍ଣ୍ଣପରି ଦେଦୀପ୍ୟମାନ । ପୁଷ୍ପପୂର୍ଣ୍ଣ ସୁବର୍ଣ୍ଣମୟ ବୃକ୍ଷରେ ଏ ପର୍ବତମାନ ଶୋଭା ପାଉଅଛନ୍ତି ।୩୭। ସେହି ପର୍ବତମାନଙ୍କ ମଧ୍ୟରେ ପର୍ବତମାନଙ୍କର ରାଜା ମେରୁ ନାମକ ଶ୍ରେଷ୍ଠ ପର୍ବତ ଅବସ୍ଥିତ ଅଛି । ପୂର୍ବେ ସୂର୍ଯ୍ୟ ପ୍ରସନ୍ନ ହୋଇ ଏହି ପର୍ବତକୁ ବର ଦେଇଥିଲେ । ୩୮। ସେ ପର୍ବତରାଜକୁ ଏହିପରି କହିଥିଲେ, "ଦିନ ଏବଂ ରାତିରେ ଯେ କେହି ତୁମ ଆଶ୍ରୟରେ ରହିବ ସେ ମୋ ଅନୁଗ୍ରହରୁ ସୁବର୍ଣ୍ଣମୟ ହୋଇଯିବ ।୩୯। ଦେବତା, ଗନ୍ଧର୍ବ ଏବଂ ଦାନବ ଯେ କେହି ତୁମ ଉପରେ ବାସକରିବ ସେ ସୁବର୍ଣ୍ଣର ପ୍ରଭାଯୁକ୍ତ ଏବଂ ଭକ୍ତ ହୋଇଯିବ" । ୪୦ । ବିଶ୍ୱେଦେବ, ବସୁ ଏବଂ ମରୁତ ଆଦି ଦେବତାମାନେ ଆସି ଏହି ପର୍ବତ ଉପରେ ସୂର୍ଯ୍ୟଙ୍କୁ ଉପାସନା କରନ୍ତି । ସେମାନଙ୍କ ଦ୍ୱାରା ପୂଜିତ ହୋଇ ସୂର୍ଯ୍ୟଦେବ ସମସ୍ତ ପ୍ରାଣୀଙ୍କର ଅଦୃଶ୍ୟ ହୋଇ ଅସ୍ତାଚଳ ପର୍ବତକୁ ଚାଲିଯାନ୍ତି । ୪୧-୪୨ । ସୂର୍ଯ୍ୟଦେବ ଅର୍ଦ୍ଧମୁହୂର୍ତ୍ତ ମଧ୍ୟରେ ଅତି ଶୀଘ୍ର ସେହି ପର୍ବତ ଉପରେ ଦଶ ହଜାର ଯୋଜନ ବାଟ ଚାଲିଯାଆନ୍ତି ।୪୩। ସେ ପର୍ବତର ଶୃଙ୍ଗ ଉପରେ

ଶୃଙ୍ଗେ ତସ୍ୟ ମହଦ୍ଦିବ୍ୟଂ ଭବନଂ ସୂର୍ଯ୍ୟସଂନିଭମ୍ ।
ପ୍ରାସାଦଗଣସଂବାଧଂ ବିହିତଂ ବିଶ୍ୱକର୍ମଣା । ୪୪ ।
ଶୋଭିତଂ ତରୁଭିଶ୍ଚିତ୍ରୈର୍ନାନାପକ୍ଷିସମାକୁଳୈଃ ।
ନିକେତଂ ପାଶହସ୍ତସ୍ୟ ବରୁଣସ୍ୟ ମହାତ୍ମନଃ । ୪୫ ।
ଅନ୍ତରା ମେରୁମସ୍ତଂ ଚ ତାଳୋ ଦଶଶିରା ମହାନ୍ ।
ଜାତରୂପମୟଃ ଶ୍ରୀମାନ୍ ଭ୍ରାଜତେ ଚିତ୍ରବେଦିକଃ । ୪୬ ।
ତେଷୁ ସର୍ବେଷୁ ଦୁର୍ଗେଷୁ ସରଃସୁ ଚ ସରିତ୍ସୁ ଚ ।
ରାବଣଃ ସହ ବୈଦେହ୍ୟା ମାର୍ଗିତବ୍ୟସ୍ତତସ୍ତତଃ । ୪୭ ।
ଯତ୍ର ତିଷ୍ଠତି ଧର୍ମଜ୍ଞସ୍ତପସା ସ୍ୱେନ ଭାବିତଃ ।
ମେରୁସାବର୍ଣିରିତ୍ୟେଷ ଖ୍ୟାତୋ ବୈ ବ୍ରହ୍ମଣା ସମଃ । ୪୮ ।
ପ୍ରଷ୍ଟବ୍ୟୋ ମେରୁସାବର୍ଣିର୍ମହର୍ଷିଃ ସୂର୍ଯ୍ୟସଂନିଭଃ ।
ପ୍ରଣମ୍ୟ ଶିରସା ଭୂମୌ ପ୍ରବୃତ୍ତିଂ ମୈଥିଲୀଂ ପ୍ରତି ।୪୯ ।
ଏତାବଜ୍ଜୀବଲୋକସ୍ୟ ଭାସ୍କରୋ ରଜନୀକ୍ଷୟେ ।
କୃତ୍ୱା ବିତିମିରଂ ସର୍ବମସ୍ତଂ ଗଚ୍ଛତି ପର୍ବତମ୍ । ୫୦ ।

---

'ସୂର୍ଯ୍ୟସଦୃଶ ପ୍ରଭାବଶିଷ୍ଟ ପ୍ରାସାଦସମୂହଯୁକ୍ତ ଏକ ଦିବ୍ୟଭବନ ବିଶ୍ୱକର୍ମା ନିର୍ମାଣ କରିଅଛନ୍ତି । ୪୪ । ପାଶଧାରୀ ମହାତ୍ମା ବରୁଣଦେବଙ୍କର ଏ ଭବନ ଅଟେ । ଏ ଗୃହ ବିଚିତ୍ର ବୃକ୍ଷଦ୍ୱାରା ଶୋଭିତ ଏବଂ ନାନାଜାତୀୟ ପକ୍ଷୀମାନଙ୍କରେ ପରିପୂର୍ଣ୍ଣ ଅଟେ । ୪୫ । ମେରୁ ଏବଂ ଅସ୍ତାଚଳର ମଧ୍ୟରେ ସୁବର୍ଣ୍ଣର ଏକ ମହାନ୍ ତାଳବୃକ୍ଷ ଅଛି । ଏହାର ଦଶଟି ମୁଣ୍ଡ । ଏହାର ନିମ୍ନଦେଶରେ ଗୋଟିଏ ବିଚିତ୍ର ବେଦୀ ଥିବାରୁ ଏହା ବିଶେଷ ଶୋଭାପାଉଅଛି । ୪୬ । ଏହି ସବୁ ଦୁର୍ଗମ ସ୍ଥାନରେ, ପୁଷ୍କରିଣୀରେ ଏବଂ ନଦୀମାନଙ୍କରେ ରାବଣ ସହିତ ସୀତାଙ୍କୁ ତନ୍ନ ତନ୍ନ କରି ଖୋଜିବାକୁ ହେବ । ୪୭ । ନିଜର ତପଃପ୍ରଭାବରେ ପ୍ରକାଶମାନ ମେରୁସାବର୍ଣ୍ଣି ନାମରେ ବିଖ୍ୟାତ ଜଣେ ଧର୍ମଜ୍ଞ ମହର୍ଷି ଏଠାରେ ଥାଆନ୍ତି । ସେ ବ୍ରହ୍ମାଙ୍କ ସଦୃଶ ପ୍ରଭାବଶାଳୀ । ୪୮ । ଏହି ସୂର୍ଯ୍ୟସଦୃଶ ଦୀପ୍ତିମାନ୍ ମେରୁସାବର୍ଣ୍ଣି ମହର୍ଷିଙ୍କୁ ମୁଣ୍ଡ ଲଗାଇ ପ୍ରଣାମ କରି ସୀତାଙ୍କ ବିଷୟରେ ପଚାରିବ । ୪୯ । ରାତ୍ରି ସମାପ୍ତ ହେଲେ ପ୍ରାଣୀମାନଙ୍କ ନିମନ୍ତେ ଏତିକି ସ୍ଥାନର ଅନ୍ଧକାର ଦୂରକରି ସୂର୍ଯ୍ୟଦେବ ଅସ୍ତାଚଳକୁ ଯାଆନ୍ତି ।୫୦।

ଏତାବଦ୍ ବାନରୈଃ ଶକ୍ୟଂ ଗନ୍ତୁଂ ବାନରପୁଙ୍ଗବାଃ ।
ଅଭାସ୍କରମମର୍ଯ୍ୟାଦଂ ନ ଜାନୀମସ୍ତତଃ ପରମ୍ । ୫୧ ।
ଅବଗମ୍ୟ ତୁ ବୈଦେହୀଂ ନିଲୟଂ ରାବଣସ୍ୟ ଚ ।
ଅସ୍ତଂ ପର୍ବତମାସାଦ୍ୟ ପୂର୍ଣ୍ଣେ ମାସେ ନିବର୍ତ୍ତତ । ୫୨ ।
ଊର୍ଦ୍ଧ୍ୱଂ ମାସାନ୍ନବସ୍ତବ୍ୟଂ ବସନ୍ ବଧ୍ୟୋ ଭବେନ୍ମମ ।
ସହୈବ ଶରେ ଯୁଷ୍ମାଭିଃ ଶ୍ୱଶୁରୋ ମେ ଗମିଷ୍ୟତି । ୫୩ ।
ଶ୍ରୋତବ୍ୟଂ ସର୍ବମେତସ୍ୟ ଭବଦ୍ଭିର୍ଦ୍ଦିଷ୍ଟକାରିଭିଃ ।
ଗୁରୁରେଷ ମହାବାହୁଃ ଶ୍ୱଶୁରୋ ମେ ମହାବଲଃ । ୫୪ ।
ଭବନ୍ତଶ୍ଚାପି ବିକ୍ରାନ୍ତାଃ ପ୍ରମାଣଂ ସର୍ବ ଏବ ହି ।
ପ୍ରମାଣମେନଂ ସଂସ୍ଥାପ୍ୟ ପଶ୍ୟଧ୍ୱଂ ପଶ୍ଚିମାଂ ଦିଶମ୍ । ୫୫ ।
କୃତକୃତ୍ୟା ଭବିଷ୍ୟାମଃ କୃତସ୍ୟ ପ୍ରତିକର୍ମଣା ।
ଅତୋଽନ୍ୟଦପି ଯତ୍କାର୍ଯ୍ୟଂ କାର୍ଯ୍ୟସ୍ୟାସ୍ୟ ପ୍ରିୟଂ ଭବେତ୍ ।
ସଂପ୍ରଧାର୍ଯ୍ୟ ଭବଦ୍ଭିଶ୍ଚ ଦେଶକାଲାର୍ଥସଂହିତମ୍ । ୫୬ ।

---

ହେ ବାନରଶ୍ରେଷ୍ଠଗଣ ! ଏତିକି ଦୂର ସ୍ଥାନପର୍ଯ୍ୟନ୍ତ ବାନରମାନେ ଯିବାକୁ ସମର୍ଥ ହେବେ । ଏହାର ପରବର୍ତ୍ତୀ ଭୂମିରେ ସୂର୍ଯ୍ୟ ନ ଥାନ୍ତି ବା ତାହାର କୌଣସି ସୀମା ନାହିଁ; ମୁଁ ସେ ବିଷୟରେ କିଛି ଜାଣେ ନାହିଁ । ୫୧ । ଅସ୍ତାଚଳ ପର୍ବତ ପର୍ଯ୍ୟନ୍ତ ଯାଇ ସୀତା ଏବଂ ରାବଣର ଘରର ସନ୍ଧାନ ବୁଝି ଏକମାସ ପୂର୍ଣ୍ଣ ହେବାବେଳକୁ ଫେରି ଆସିବ । ୫୨ । ମାସକରୁ ଅଧିକ କାଳ ରହିବ ନାହିଁ । ମାସକରୁ ଅଧିକ ଯେ ରହିବ ସେ ମୋର ବଧ୍ୟ ହେବ । ତୁମମାନଙ୍କ ସହିତ ମୋର ଶ୍ୱଶୁର ବୀର ଯିବେ । ୫୩ । ତୁମେମାନେ ସମସ୍ତେ ଏହାଙ୍କର ଆଜ୍ଞା ପାଳନ କରିବ ଏବଂ ଏହାଙ୍କର କଥା ଶୁଣିବ । ଏ ମହାବାହୁ ମହାବଳୀ ମୋର ଶ୍ୱଶୁର ଏବଂ ଗୁରୁ ଅଟନ୍ତି ।୫୪। ଆପଣମାନେ ସମସ୍ତେ ମଧ୍ୟ ପରାକ୍ରମୀ ଏବଂ କାର୍ଯ୍ୟାକାର୍ଯ୍ୟବିଚାରକ ଅଟନ୍ତି । ଆପଣମାନଙ୍କୁ ପରିଚାଳିତ କରିବାପାଇଁ ଏହାଙ୍କୁ ନିଯୁକ୍ତ କରି ପଶ୍ଚିମଦିଗକୁ ଅନୁସନ୍ଧାନ କର । ୫୫ । ଏହିପରି ଉପକାରର ପ୍ରତ୍ୟୁପକାର କରି ଆମେମାନେ କୃତକୃତ୍ୟ ହୋଇପାରିବା । ଏହାର ଅତିରିକ୍ତ ଏ କାର୍ଯ୍ୟସିଦ୍ଧି ନିମନ୍ତେ ଯାହା ଉଚିତ ତାହା ବିବେଚନା କରି ଦେଶକାଳ ଅନୁସାରେ ଆପଣମାନେ କରିବେ; ।୫୬।

ତତଃ ସୁଷେଣପ୍ରମୁଖାଃ ପ୍ଲବଙ୍ଗାଃ
ସୁଗ୍ରୀବବାକ୍ୟଂ ନିପୁଣଂ ନିଶମ୍ୟ ।
ଆମନ୍ତ୍ର୍ୟ ସର୍ବେ ପ୍ଲବଗାଧିପାସ୍ତେ
ଜଗ୍ମୁର୍ଦିଶଂ ତାଂ ବରୁଣାଭିଗୁପ୍ତାମ୍ । ୫୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ପ୍ରତୀଚୀପ୍ରେଷଣମ୍ ନାମ ଦ୍ୱିଚତ୍ୱାରିଂଶଃ ସର୍ଗଃ

---

ସୁଷେଣ ପ୍ରମୁଖ ବାନରମାନେ ସୁଗ୍ରୀବଙ୍କର ଯଥାର୍ଥ ବଚନ ଶୁଣି ସୁଗ୍ରୀବଙ୍କର ଆଜ୍ଞା ଗ୍ରହଣ କରି ସମସ୍ତ ବାନରଦଳପତି ବରୁଣପାଳିତ (ପଶ୍ଚିମ) ଦିଗକୁ ଗଲେ । ୫୭ ।

---

# ତ୍ରିଚତ୍ୱାରିଂଶଃ ସର୍ଗଃ

## ଉଦୀଚୀପ୍ରେଷଣମ୍

ତତଃ ସଂଦେଶ୍ୟ ସୁଗ୍ରୀବଃ ଶ୍ୱଶୁରଂ ପଶ୍ଚିମାଂ ଦିଶମ୍ ।
ବୀରଂ ଶତବଲଂ ନାମ ବାନରଂ ବାନରେଶ୍ୱରଃ । ୧ ।
ଉବାଚ ରାଜା ସର୍ବଜ୍ଞଃ ସର୍ବବାନରସତ୍ତମଃ ।
ବାକ୍ୟମାତ୍ମହିତଂ ଚୈବ ରାମସ୍ୟ ଚ ହିତଂ ତଦା । ୨ ।
ବୃତଃ ଶତସହସ୍ରେଣ ତ୍ୱଦ୍‌ବିଧାନାଂ ବନୌକସାମ୍ ।
ବୈବସ୍ୱତସୁତୈଃ ସାର୍ଧଂ ପ୍ରତିଷ୍ଠସ୍ୱ ସର୍ବମନ୍ତ୍ରିଭିଃ । ୩ ।
ଦିଶଂ ହ୍ୟୁଦୀଚୀଂ ବିକ୍ରାନ୍ତାଂ ହିମଶୈଳାବତଂସିକାମ୍ ।
ସର୍ବତଃ ପରିମାର୍ଗଧ୍ୱଂ ରାମପତ୍ନୀଂ ଯଶସ୍ୱିନୀମ୍ । ୪ ।
ଅସ୍ମିନ୍ କାର୍ଯେ ବିନିର୍ବୃତ୍ତେ କୃତେ ଦାଶରଥେଃ ପ୍ରିୟେ ।
ଋଣାନ୍ମୁକ୍ତା ଭବିଷ୍ୟାମଃ କୃତାର୍ଥାର୍ଥବିଦାଂ ବର । ୫ ।
କୃତଂ ହି ପ୍ରିୟମସ୍ମାକଂ ରାଘବେଣ ମହାତ୍ମନା ।
ତସ୍ୟ ଚେତ୍ ପ୍ରତିକାରୋଽସ୍ତି ସଫଳଂ ଜୀବିତଂ ଭବେତ୍ । ୬ ।

---

## ୪୩ଶ ସର୍ଗ

(ଉତ୍ତର ଦିଗକୁ ପ୍ରେରଣ)

ଅନନ୍ତର ବାନରରାଜ ସୁଗ୍ରୀବ ନିଜର ଶ୍ୱଶୁରଙ୍କୁ ପଶ୍ଚିମଦିଗକୁ ପଠାଇଦେଇ ଶତବଳ ନାମକ ବୀର ବାନରଙ୍କୁ କହିଲେ । ୧ । ସର୍ବବାନରଶ୍ରେଷ୍ଠ ସର୍ବଜ୍ଞ ରାଜା ଯେଉଁ ବଚନ କହିଲେ ତାହା ରାମଚନ୍ଦ୍ରଙ୍କର ତଥା ନିଜର ହିତକାରୀ ଅଟେ । ୨ । "ଶହେହଜାର ଆପଣଙ୍କ ସମକକ୍ଷ ସୂର୍ଯ୍ୟଙ୍କ ପୁତ୍ର ବାନରମାନଙ୍କୁ ସଙ୍ଗରେ ନେଇ ଏବଂ ସମସ୍ତ ମନ୍ତ୍ରୀମାନଙ୍କ ସହିତ ଆପଣ ହିମାଳୟ ପର୍ବତଦ୍ୱାରା ଶୋଭିତ ଉତ୍ତରଦିଗକୁ ଯାଆନ୍ତୁ ଏବଂ ସକଳପ୍ରକାରେ ଯଶସ୍ୱିନୀ ରାମଚନ୍ଦ୍ରଙ୍କପତ୍ନୀଙ୍କୁ ଅନ୍ୱେଷଣ କରନ୍ତୁ ।୩-୪। ହେ ଶ୍ରେଷ୍ଠ ଅର୍ଥଜ୍ଞ ! ଏ କାର୍ଯ୍ୟ ସିଦ୍ଧ ହୋଇଗଲେ ଏବଂ ରାମଚନ୍ଦ୍ରଙ୍କର ପ୍ରିୟକାର୍ଯ୍ୟ ସାଧନ କରିସାରିଲେ ଆମେମାନେ ଋଣମୁକ୍ତ ହେବା ଏବଂ କୃତାର୍ଥ ହେବା । ୫ । ମହାତ୍ମା ରାଘବ ଆମମାନଙ୍କର ପ୍ରିୟକାର୍ଯ୍ୟ କରିଅଛନ୍ତି । ଆମେମାନେ ଯଦି ତାହାର ପ୍ରତିଦାନ ଦେଇ ପାରିବା ତାହାହେଲେ ଆମମାନଙ୍କର ଜୀବନ ସଫଳ

ଅର୍ଥିନଃ କାର୍ଯନିର୍ବୃତ୍ତିମକର୍ତ୍ତୁରପି ଯଶ୍ଚରେତ୍ ।
ତସ୍ୟ ସ୍ୟାତ୍ସଫଲଂ ଜନ୍ମ କିଂ ପୂନଃ ପୂର୍ବକାରିଣଃ । ୭ ।
ଏତାଂ ବୁଦ୍ଧିଂ ସମାସ୍ଥାୟ ଦୃଶ୍ୟତେ ଜାନକୀ ଯଥା ।
ତଥା ଭବଦ୍ଭିଃ କର୍ତ୍ତବ୍ୟମସ୍ମତ୍ପ୍ରିୟହିତୈଷିଭିଃ । ୮ ।
ଅୟଂ ହି ସର୍ବଭୂତାନାଂ ମାନ୍ୟସ୍ତୁ ନରସତ୍ତମଃ ।
ଅସ୍ମାସୁ ଚ ଗତଃ ପ୍ରୀତିଂ ରାମଃ ପରପୁରଞ୍ଜୟଃ । ୯ ।
ଇମାନି.ବହୁଦୁର୍ଗାଣି ନଦ୍ୟଃ ଶୈଳାନ୍ତରାଣି ଚ ।
ଭବନ୍ତଃ ପରିମାର୍ଗନ୍ତୁ ବୁଦ୍ଧିବିକ୍ରମ ସମ୍ପଦା । ୧୦ ।
ତତ୍ର ମ୍ଳେଚ୍ଛାନ୍ ପୁଳିନ୍ଦାଂଶ୍ଚ ଶୂରସେନାଂସ୍ତଥୈବ ଚ ।
ପ୍ରସ୍ଥଳାନ୍ ଭରତାଂଶ୍ଚୈବ କୁରୂଂଶ୍ଚ ସହ ମଦ୍ରକୈଃ । ୧୧ ।
କାମ୍ବୋଜଯବନାଂଶ୍ଚୈବ ଶକାନାଂ ପତ୍ତନାନି ଚ ।
ଅନ୍ୱୀଷ୍ୟ ବରଦାଂଶ୍ଚୈବ ହିମବନ୍ତଂ ବିଚିନ୍ୱଥ । ୧୨ ।
ଲୋଧ୍ରପଦ୍ମକଖଣ୍ଡେଷୁ ଦେବଦାରୁବନେଷୁ ଚ ।
ରାବଣଃ ସହ ବୈଦେହ୍ୟା ମାର୍ଗିତବ୍ୟ ସ୍ତତସ୍ତତଃ । ୧୩ ।

---

ହେବ । ୬। ଯେଉଁ ବ୍ୟକ୍ତି କୌଣସି ଉପକାର ନ କରିଛି, ସେପରି ପ୍ରାର୍ଥୀର ମନୋରଥ ସିଦ୍ଧ କରିପାରିବ ତାହାର ଜନ୍ମସଫଳ ହୋଇଯାଏ; ପୁଣି ସେ ବ୍ୟକ୍ତି ପୂର୍ବରୁ ଉପକାର କରିଅଛି ତାହା କଥା ଆଉ କ'ଣ କହିବା । ୭ । ଏହି ବିଚାରକୁ ମନରେ ଧାରଣ କରି ମୋର ହିତାକାଂକ୍ଷୀ ଆପଣମାନଙ୍କର ଜାନକୀଙ୍କ ଖୋଜିବାର ପ୍ରଯତ୍ନ କରିବା ଉଚିତ । ୮ । ଏହି ନରଶ୍ରେଷ୍ଠ ରାମଚନ୍ଦ୍ର ସକଳ ପ୍ରାଣୀଙ୍କର ପୂଜ୍ୟ ଅଟନ୍ତି । ସେ ଆମମାନଙ୍କ ସହିତ ପ୍ରୀତି-ସ୍ଥାପନ କରିଅଛନ୍ତି । ୯ । ଆପଣମାନେ ବୁଦ୍ଧି, ପରାକ୍ରମ ରୂପ ସମ୍ପଦ ସାହାଯ୍ୟରେ ସମସ୍ତ ଦୁର୍ଗ, ବନ, ନଦୀ ଏବଂ ପର୍ବତ ଉପତ୍ୟକାମାନଙ୍କୁ ଖୋଜନ୍ତୁ । ୧୦ । ମ୍ଳେଚ୍ଛ, ପୁଳିନ୍ଦ, ଶୂରସେନ, ପ୍ରସ୍ଥଳ, ଭରତ, ମଦ୍ରଦେଶ, କୁରୁ, କାମ୍ବୋଜ, ଯବନ ଓ ଶକମାନଙ୍କର ନଗର ଏବଂ ବରଦ ଦେଶମାନ ଅନ୍ୱେଷଣ କରି ହିମାଳୟ ପର୍ବତକୁ ଅନ୍ୱେଷଣ କରିବ । ୧୧-୧୨ । ଲୋଧ୍ର ଏବଂ ଚନ୍ଦନବନରେ ତଥା ଦେବଦାରୁ ବନରେ ରାବଣ ସହିତ ସୀତାଙ୍କୁ ଭଲକରି ଖୋଜିବ । ୧୩ । ତା'ପରେ ଦେବତା

ତତଃ ସୋମାଶ୍ରମଂ ଗତ୍ୱା ଦେବଗନ୍ଧର୍ବସେବିତମ୍ ।
କାଲଂ ନାମ ମହାସାନୁଂ ପର୍ବତଂ ତଂ ଗମିଷ୍ୟଥ । ୧୪ ।
ମହତ୍ସୁ ତସ୍ୟ ଶୈଳେଷୁ ପର୍ବତେଷୁ ଗୁହାସୁ ଚ ।
ବିଚିନୁତ ମହାଭାଗାଂ ରାମପତ୍ନୀମନିନ୍ଦିତାମ୍ । ୧୫ ।
ତମତିକ୍ରମ୍ୟ ଶୈଳେନ୍ଦ୍ରଂ ହେମଗର୍ଭଂ ମହାଗିରିମ୍ ।
ତତଃ ସୁଦର୍ଶନଂ ନାମ ପର୍ବତଂ ଗନ୍ତୁମର୍ହଥ । ୧୬ ।
ତତୋ ଦେବସଖୋ ନାମ ପର୍ବତଃ ପତଗାଲୟଃ ।
ନାନାପକ୍ଷିସମାକୀର୍ଣ୍ଣୋ ବିବିଧଦ୍ରୁମଭୂଷିତଃ । ୧୭ ।
ତସ୍ୟ କାଞ୍ଚନଖଣ୍ଡେଷୁ ନିର୍ଦ୍ଦରେଷୁ ଗୁହାସୁ ଚ ।
ରାବଣଃ ସହ ବୈଦେହ୍ୟା ମାର୍ଗିତବ୍ୟସ୍ତତସ୍ତତଃ । ୧୮ ।
ତମତିକ୍ରମ୍ୟ ଚାକାଶଂ ସର୍ବତଃ ଶତଯୋଜନମ୍ ।
ଅପର୍ବତନଦୀବୃକ୍ଷଂ ସର୍ବସତ୍ତ୍ୱବିବର୍ଜିତମ୍ । ୧୯ ।
ତତ୍ତୁ ଶୀଘ୍ରମତିକ୍ରମ୍ୟ କାନ୍ତାରଂ ରୋମହର୍ଷଣମ୍ ।
କୈଳାସଂ ପାଣ୍ଡୁରଂ ପ୍ରାପ୍ୟ ହୃଷ୍ଟା ଯୂୟଂ ଭବିଷ୍ୟଥ । ୨୦ ।
ତତ୍ର ପାଣ୍ଡୁରମେଘାଭଂ ଜାମ୍ବୂନଦପରିଷ୍କୃତମ୍ ।
କୁବେରଭବନଂ ରମ୍ୟଂ ନିର୍ମିତଂ ବିଶ୍ୱକର୍ମଣା । ୨୧ ।

---

ଏବଂ ଗନ୍ଧର୍ବମାନଙ୍କର ବାସଭୂମି ସୋମାଶ୍ରମକୁ ଯାଇ ଉଚ୍ଚ ଶିଖରଯୁକ୍ତ କାଳ ନାମକ ପର୍ବତ ଉପରକୁ ତୁମେମାନେ ଯିବ । ୧୪ । ସେ ମହାପର୍ବତରେ ଏବଂ ତାହାର ଗୁହାମାନଙ୍କରେ ଅନିନ୍ଦିତା ପୂଜନୀୟା ରାମପତ୍ନୀଙ୍କୁ ଅନ୍ୱେଷଣ କରିବ । ୧୫ । ସେହି ସୁବର୍ଣ୍ଣଗର୍ଭ ମହାପର୍ବତକୁ ଅତିକ୍ରମକରି ତୁମେମାନେ ସୁଦର୍ଶନ ନାମକ ପର୍ବତକୁ ଯିବ । ୧୬ । ତାପରେ ଦେବସଖା ନାମକ ପର୍ବତ ପଡ଼ିବ । ଏହା ପକ୍ଷୀମାନଙ୍କର ନିବାସସ୍ଥାନ ଅଟେ । ଏଠାରେ ଅନେକ ପ୍ରକାର ପକ୍ଷୀ ପୂର୍ଣ୍ଣ ହୋଇ ଅଛନ୍ତି ଏବଂ ଏଠାରେ ଅନେକ ଦ୍ରୁମ ଅଛି । ୧୭ । ଏହାର ସୁବର୍ଣ୍ଣବନରେ, ନିର୍ଝର ଏବଂ ଗୁହାମାନଙ୍କରେ ରାବଣ ସହିତ ସୀତାଙ୍କୁ ଚାରିଆଡ଼େ ଖୋଜିବ । ୧୮ । ଏହା ପାରହେବା ପରେ ଶତଯୋଜନବିସ୍ତୃତ ଏକ ପ୍ରାନ୍ତର ପଡ଼ିବ । ସେଠାରେ କୌଣସି ନଦୀ, ବୃକ୍ଷ ବା ପର୍ବତ ନାହିଁ କି କୌଣସି ପ୍ରାଣୀ ମଧ୍ୟ ନାହାନ୍ତି । ୧୯ । ଏହି ଭୀଷଣ ଲୋମହର୍ଷଣକାରୀ କାନ୍ତାରକୁ ଶୀଘ୍ର ପାର ହୋଇ ଶ୍ୱେତକୈଳାସ ପର୍ବତରେ ପହଞ୍ଚି ତୁମେମାନେ ଆନନ୍ଦିତ ହେବ । ୨୦ । ସେଠାରେ ଶ୍ୱେତମେଘସଦୃଶ ସ୍ୱର୍ଣ୍ଣାଳଂକୃତ ରମଣୀୟ କୁବେରଙ୍କର ଗୃହକୁ ବିଶ୍ୱକର୍ମା ନିର୍ମାଣ କରି ଅଛନ୍ତି । ୨୧ । ସେଠାରେ

ବିଶାଳା ନଳିନୀ ଯତ୍ର ପ୍ରଭୂତକମଳୋତ୍ପଳା ।
ହଂସକାରଣ୍ଡବାକୀର୍ଣ୍ଣା ଅପ୍‌ସରୋଗଣସେବିତା । ୨୨ ।
ତତ୍ର ବୈଶ୍ରବଣୋ ରାଜା ସର୍ବଲୋକନମସ୍କୃତଃ ।
ଧନଦୋ ରମତେ ଶ୍ରୀମାନ୍ ଗୁହ୍ୟକୈଃ ସହ ଯକ୍ଷରାଟ୍ । ୨୩ ।
ତସ୍ୟ ଚନ୍ଦ୍ରନିକାଶେଷୁ ପର୍ବତେଷୁ ଗୁହାସୁ ଚ ।
ରାବଣଃ ସହ ବୈଦେହ୍ୟା ମାର୍ଗିତବ୍ୟସ୍ତତସ୍ତତଃ । ୨୪ ।
କ୍ରୌଞ୍ଚଂ ତୁ ଗିରିମାସାଦ୍ୟ ବିଲଂ ତସ୍ୟସୁଦୁର୍ଗମମ୍ ।
ଅପ୍ରମତ୍ତୈଃ ପ୍ରବେଷ୍ଟବ୍ୟଂ ଦୁଷ୍ପ୍ରବେଶଂ ହି ତତ୍ ସ୍ମୃତମ୍ । ୨୫
ବସନ୍ତି ହି ମହାତ୍ମାନସ୍ତତ୍ର ସୂର୍ଯ୍ୟସମପ୍ରଭାଃ ।
ଦେବୈରଭ୍ୟର୍ଥିତାଃ ସମ୍ୟଗ୍ ଦେବରୂପା ମହର୍ଷୟଃ । ୨୬ ।
କ୍ରୌଞ୍ଚସ୍ୟ ତୁ ଗୁହାଶ୍ଚାନ୍ୟାଃ ସାନୂନି ଶିଖରାଣି ଚ ।
ଦର୍ଦରାଶ୍ଚ ନିତମ୍ବାଶ୍ଚ ବିଚେତବ୍ୟାସ୍ତତସ୍ତତଃ । ୨୭ ।
ଅବୃକ୍ଷଂ କାମଶୈଳଂ ଚ ମାନସଂ ବିହଗାଳୟମ୍ ।
ନ ଗତିସ୍ତତ୍ର ଭୂତାନାଂ ଦେବାନାଂ ନ ଚ ରକ୍ଷସାମ୍ ।୨୮ ।

---

ପ୍ରଚୁର ପଦ୍ମ ଓ ନୀଳୋତ୍ପଳପୂର୍ଣ୍ଣ ଏବଂ ହଂସ ଓ କାରଣ୍ଡବପୂର୍ଣ୍ଣ ଏକ ବିଶାଳ ସରୋବର ଅଛି । ସେ ସରୋବରରେ ଅପ୍‌ସରାମାନେ ବିହାର କରନ୍ତି ।୨୨। ସେଠାରେ ସକଳ ପ୍ରାଣୀମାନଙ୍କଦ୍ୱାରା ପୂଜିତ ଧନଦ ବୈଶ୍ରବଣ ରାଜା (କୁବେର) ଯକ୍ଷମାନଙ୍କ ସହିତ ବିହାର କରନ୍ତି ।୨୩। ସେହି କୈଳାସର ଚନ୍ଦ୍ରସଦୃଶ ଶୁଭ୍ରପର୍ବତ-ମାନଙ୍କରେ ଏବଂ ଗୁହାମାନଙ୍କରେ ସୀତାଙ୍କ ସହିତ ରାବଣକୁ ତନ୍ନ ତନ୍ନ କରି ଖୋଜିବାକୁ ହେବ । ୨୪ । କ୍ରୌଞ୍ଚ ପର୍ବତକୁ ଯାଇ ତାହାର ଦୁର୍ଗମ ଗୁହାମଧ୍ୟରେ ତୁମେମାନେ ପ୍ରବେଶ କରିବ; ଖୁବ ସାବଧାନ ହୋଇ ପ୍ରବେଶ କରିବ, କାରଣ ସେଥିମଧ୍ୟରେ ପ୍ରବେଶକରିବା ବିଶେଷ କଷ୍ଟକର ଅଟେ । ୨୫ । ସେଠାରେ ସୂର୍ଯ୍ୟଙ୍କ ସଦୃଶ ତେଜସ୍ୱୀ ଦେବରୂପ ମହାତ୍ମା ମହର୍ଷିମାନେ ଥାଆନ୍ତି । ଦେବତାମାନେ ମଧ୍ୟ ସେମାନଙ୍କର ପୂଜା କରନ୍ତି । ୨୬ । କ୍ରୌଞ୍ଚ ପର୍ବତର ଅନ୍ୟ ଗୁହାମାନଙ୍କୁ, ଶୃଙ୍ଗମାନଙ୍କୁ ଶ୍ରେଷ୍ଠ ଶ୍ରେଷ୍ଠ ପର୍ବତମାନଙ୍କୁ ତଥା ମଧ୍ୟଭାଗକୁ ତନ୍ନ ତନ୍ନ କରି ଅନ୍ୱେଷଣ କରିବ । । ୨୭ । ଏହାପରେ ମାନସ ପର୍ବତ ପଡ଼ିବ । ତାହା ପକ୍ଷୀମାନଙ୍କର ବାସସ୍ଥାନ ଏବଂ ତାହାକୁ ଦେଖିଲେ ମନୋରଥ ସିଦ୍ଧ ହୁଏ । ତାହା ଉପରେ କୌଣସି ବୃକ୍ଷ ନାହିଁ । ପ୍ରାଣୀ, ଦେବତା ଏବଂ ରାକ୍ଷସମାନଙ୍କର ସେଠାକୁ ଗତି ନାହିଁ । ୨୮ । ତୁମ୍ଭେମାନେ

ସ ଚ ସର୍ବୈର୍ବିଚେତବ୍ୟଃ ସସାନୁପ୍ରସ୍ଥଭୂଧରଃ ।
କ୍ରୌଞ୍ଚଂ ଗିରିମତିକ୍ରମ୍ୟ ମୈନାକୋ ନାମ ପର୍ବତଃ । ୨୯ ।
ମୟସ୍ୟ ଭବନଂ ତତ୍ର ଦାନବସ୍ୟ ସ୍ୱୟଂ କୃତମ୍ ।
ମୈନାକସ୍ତୁ ବିଚେତବ୍ୟଃ ସସାନୁପ୍ରସ୍ଥକନ୍ଦରଃ । ୩୦ ।
ସ୍ତ୍ରୀଣାମଶ୍ୱମୁଖୀନାଂ ତୁ ନିକେତସ୍ତତ୍ର ତତ୍ର ତୁ ।
ତଂ ଦେଶଂ ସମତିକ୍ରମ୍ୟ ଆଶ୍ରମଂ ସିଦ୍ଧସେବିତମ୍ । ୩୧ ।
ସିଦ୍ଧା ବୈଖାନସା ଯତ୍ର ବାଲଖିଲ୍ୟାଶ୍ଚ ତାପସାଃ ।
ବନ୍ଦିତବ୍ୟା ସ୍ତତଃ ସିଦ୍ଧାସ୍ତପସା ବୀତକଲ୍ମଷାଃ । ୩୨ ।
ପ୍ରଷ୍ଟବ୍ୟା ଚାପି ସୀତାୟାଃ ପ୍ରବୃତ୍ତିର୍ବିନୟାନ୍ୱିତୈଃ ।
ହେମପୁଷ୍କରସଂଚ୍ଛନ୍ନଂ ତତ୍ର ବୈଖାନସଂ ସରଃ । ୩୩ ।
ତରୁଣାଦିତ୍ୟସଂକାଶୈର୍ହଂସୈର୍ବିଚରିତଂ ଶୁଭୈଃ ।
ଔପବାହ୍ୟଃ କୁବେରସ୍ୟ ସାର୍ବଭୌମ ଇତି ସ୍ମୃତଃ । ୩୪ ।
ଗଜଃ ପର୍ୟେତି ତଂ ଦେଶଂ ସଦା ସହ କରେଣୁଭିଃ ।
ତତ୍ସରଃ ସମତିକ୍ରମ୍ୟ ନଷ୍ଟଚନ୍ଦ୍ରଦିବାକରମ୍ ।
ଅନକ୍ଷତ୍ରଗଣଂ ବ୍ୟୋମ ନିଷ୍ପୟୋଦମନାଦିତମ୍ । ୩୫ ।

---

ସମସ୍ତେ ସେ ପର୍ବତର ସମସ୍ତ ସ୍ତର ଏବଂ ଶୃଙ୍ଗମାନଙ୍କୁ ଖୋଜିବ । କ୍ରୌଞ୍ଚପର୍ବତ ପାର ହୋଇଗଲେ ମୈନାକ ପର୍ବତ ପଡ଼ିବ । ୨୯ । ସେଠାରେ ମୟଦାନବର ଗୃହ। ସେ ଗୃହକୁ ସେ ନିଜେ ନିର୍ମାଣ କରିଅଛି । ମୈନାକ ପର୍ବତର ଶୃଙ୍ଗ, ପ୍ରସ୍ଥ ଏବଂ କନ୍ଦରମାନଙ୍କୁ ମଧ୍ୟ ଖୋଜିବାକୁ ହେବ । ୩୦ । ସେଠାରେ ଅଶ୍ୱର ମୁଖପରି ମୁଖବିଶିଷ୍ଟ ସ୍ତ୍ରୀମାନଙ୍କର ନିବାସ । ତାହାକୁ ପାର ହୋଇଗଲେ ସିଦ୍ଧମାନଙ୍କର ଆଶ୍ରମ ପଡ଼ିବ । ୩୧ । ସେଠାରେ ସିଦ୍ଧ, ବୈଖାନସ (ଆଜୀବନ ବ୍ରହ୍ମଚାରୀ) ଏବଂ ତପସ୍ୱୀମାନେ ଥାଆନ୍ତି । ସେହି ପାପଶୂନ୍ୟ ସିଦ୍ଧ ଓ ତପସ୍ୱୀମାନଙ୍କୁ ତୁମମାନଙ୍କର ପ୍ରଣାମ କରିବା ଉଚିତ । ୩୨ । ତା'ପରେ ବିନମ୍ରସହକାରେ ସେମାନଙ୍କୁ ସୀତାଙ୍କ ହାଲ ପଚାରିବ । ସେଠାରେ ସୁବର୍ଣ୍ଣପଦ୍ମପୂର୍ଣ୍ଣ ବୈଖାନସ ହ୍ରଦ ଅଛି । ୩୩ । ବାଲସୂର୍ଯ୍ୟସଦୃଶ ସୁନ୍ଦର ହଂସମାନେ ସେଠାରେ ବିଚରଣ କରନ୍ତି । କୁବେରଙ୍କର ବାହନ ସାର୍ବଭୌମ ନାମକ ହସ୍ତୀ ନିଜର ହସ୍ତିଣୀମାନଙ୍କ ସହିତ ସେଠାକୁ ଆସେ । ସେ ସରକୁ ପାରହୋଇଗଲେ ଯେଉଁ ସ୍ଥାନ ପଡ଼ିବ ସେଠାରେ ଚନ୍ଦ୍ର ବା ସୂର୍ଯ୍ୟ ନାହାନ୍ତି । ସେଠାର ଆକାଶରେ ନକ୍ଷତ୍ର ବା ମେଘ ନ ଥାନ୍ତି । ବା କୌଣସି ଶବ୍ଦ ନ

ଗଭସ୍ତିଭିରିବାର୍କସ୍ୟ ସ ତୁ ଦେଶଃ ପ୍ରକାଶ୍ୟତେ ।
ବିଶ୍ରାମ୍ୟଭିସ୍ତପଃସିଦ୍ଧୈର୍ଦେବକଳ୍ପୈଃ ସ୍ୱୟଂପ୍ରଭୈଃ । ୩୭ ।
ତଂ ତୁ ଦେଶମତିକ୍ରମ୍ୟ ଶୈଳୋଦା ନାମ ନିମ୍ନଗା ।
ଉଭୟୋସ୍ତୀରୟୋସ୍ତସ୍ୟାଃ କୀଚକା ନାମ ବେଣବଃ । ୩୭ ।
ତେ ନୟନ୍ତି ପରଂ ତୀରଂ ସିଦ୍ଧାନ ପ୍ରତ୍ୟାନୟନ୍ତି ଚ ।
ଉତ୍ତରାଂ କୁରୁବସ୍ତତ୍ର କୃତପୁଣ୍ୟପ୍ରତିଶ୍ରୟାଃ ।
ତତଃ କାଞ୍ଚନପଦ୍ମାଭିଃ ପଦ୍ମିନୀଭିଃ କୃତୋଦକାଃ । ୩୮ ।
ନୀଲବୈଦୂର୍ଯ୍ୟପତ୍ରାଢ୍ୟା ନଦ୍ୟସ୍ତତ୍ର ସହସ୍ରଶଃ ।
ରକ୍ତୋତ୍ପଳବନୈଶ୍ଚାତ୍ର ମଣ୍ଡିତାଶ୍ଚ ହିରଣ୍ମୟୈଃ । ୩୯ ।
ତରୁଣାଦିତ୍ୟସଂକାଶା ଭାନ୍ତି ତତ୍ର ଜଳାଶୟାଃ ।
ମହାର୍ହମଣିରତ୍ନୈଶ୍ଚ କାଞ୍ଚନପ୍ରଭକେସରୈଃ । ୪୦ ।
ନୀଲୋତ୍ପଳବନୈଶ୍ଚିତ୍ରୈଃ ସ ଦେଶଃ ସର୍ବତୋ ବୃତଃ ।
ନିସ୍ତୁଲାଭିଶ୍ଚ ମୁକ୍ତାଭିର୍ମଣିଭିଶ୍ଚ ମହାଧନୈଃ । ୪୧ ।
ଉଦ୍ଧୂତପୁଳିନାସ୍ତତ୍ର ଜାତରୂପୈଶ୍ଚ ନିମ୍ନଗାଃ ।
ସର୍ବରତ୍ନମୟୈଶ୍ଚିତ୍ରୈରବଗାଢ଼ା ନଗୋତ୍ତମୈଃ । ୪୨।

---

ଥାଏ ।୩୪-୩୫। ମାତ୍ର ସେଠାରେ ବିଶ୍ରାମକାରୀ ତପଃସିଦ୍ଧ ଆତ୍ମପ୍ରଭାପ୍ରାପ୍ତ ଦେବତୁଲ୍ୟ ତପସ୍ୱୀମାନଙ୍କର ଶରୀରର ପ୍ରଭାଦ୍ୱାରା ସୂର୍ଯ୍ୟକିରଣସଦୃଶ ସେ ସ୍ଥାନ ଆଲୋକିତ ହୋଇଥାଏ ।୩୬। ସେ ଦେଶକୁ ପାର ହୋଇଗଲେ ଶୈଳୋଦା ନାମକ ନଦୀ ପଡ଼ିବ । ସେ ନଦୀର ଦୁଇ ତୀରରେ କୀଚକ ନାମକ ବାଉଁଶମାନ ଅଛି । ୩୭ । ସେହି ବାଉଁଶମାନଙ୍କ ସାହାଯ୍ୟରେ ସିଦ୍ଧମାନେ ନଦୀର ଏ ପାଖରୁ ସେ ପାଖକୁ ଯିବା ଆସିବା କରନ୍ତି । ସେହିଠାରେ ପୁଣ୍ୟାତ୍ମାମାନଙ୍କର ନିବାସଭୂମି ଉତ୍ତର କୁରୁଦେଶ ଅବସ୍ଥିତ । ସୁବର୍ଣ୍ଣ-କମଳପୂର୍ଣ୍ଣ ପୁଷ୍କରିଣୀରୁ ସେମାନେ ଜଳ ଲାଭକରନ୍ତି ।୩୮। ସେଠାରେ ନୀଳ ବୈଦୂର୍ଯ୍ୟ ମଣିସଦୃଶ ଜଳଯୁକ୍ତ ସହସ୍ର ସହସ୍ର ନଦୀ ଅଛି । ସେସବୁ ନଦୀ ସୁବର୍ଣ୍ଣମୟ ରକ୍ତପଦ୍ମଦ୍ୱାରା ଶୋଭିତ । ୩୯ । ମୂଲ୍ୟବାନ୍ ମଣି ଓ ରତ୍ନ ତଥା ସୁବର୍ଣ୍ଣ କେଶରଯୁକ୍ତ ପଦ୍ମଦ୍ୱାରା ଶୋଭିତ ସୂର୍ଯ୍ୟସଦୃଶ ପ୍ରକାଶମାନ ଜଳାଶୟ ସେଠାରେ ଅଛି । ୪୦ । ସେ ଦେଶର ଚାରିଆଡ଼େ ବିଚିତ୍ର ନୀଳୋତ୍ପଳବନମାନ ପୂରିରହିଛି । ଅତୁଳନୀୟ ମହାମୂଲ୍ୟ ମୁକ୍ତା ଏବଂ ମଣିଦ୍ୱାରା ସେଠାରେ ନଦୀମାନଙ୍କର ଉଭୟ ତଟର ଶୋଭା ପାଉଅଛି । ସେ ନଦୀମାନଙ୍କ ମଧ୍ୟରେ ସର୍ବରତ୍ନଯୁକ୍ତ ବିଚିତ୍ର ପର୍ବତମାନେ ବୁଡ଼ି

ଜାତରୂପମୟୈଶ୍ଚାପି ହୁତାଶନସମପ୍ରଭୈଃ ।
ନିତ୍ୟପୁଷ୍ପଫଳାସ୍ତତ୍ର ନଗାଃ ପତ୍ରରଥାକୁଳାଃ । ୪୩ ।
ଦିବ୍ୟଗନ୍ଧରସସ୍ପର୍ଶାଃ ସର୍ବକାମାନ୍ ସ୍ରବନ୍ତି ଚ ।
ନାନାକାରାଣି ବାସାଂସି ଫଳନ୍ତ୍ୟନ୍ୟେ ନଗୋତ୍ତମାଃ । ୪୪ ।
ମୁକ୍ତାବୈଦୂର୍ଯ୍ୟଚିତ୍ରାଣି ଭୂଷଣାନି ତଥୈବ ଚ ।
ସ୍ତ୍ରୀଣାଂ ଯାନ୍ୟନୁରୂପାଣି ପୁରୁଷାଣାଂ ତଥୈବ ଚ । ୪୫ ।
ସର୍ବର୍ତ୍ତୁସୁଖସେବ୍ୟାନି ଫଳନ୍ତ୍ୟନ୍ୟେ ନଗୋତ୍ତମାଃ ।
ମହାର୍ହମଣିଚିତ୍ରାଣି ଫଳନ୍ତ୍ୟନ୍ୟେ ନଗୋତ୍ତମାଃ । ୪୬ ।
ଶୟନାନି ପ୍ରସୂୟନ୍ତେ ଚିତ୍ରାସ୍ତରଣବନ୍ତି ଚ ।
ମନଃକାନ୍ତାନି ମାଲ୍ୟାନି ଫଳନ୍ତ୍ୟତ୍ରାପରେ ଦ୍ରୁମାଃ । ୪୭ ।
ପାନାନି ଚ ମହାର୍ହାଣି ଭକ୍ଷ୍ୟାଣି ବିବିଧାନି ଚ ।
ସ୍ତ୍ରିୟଶ୍ଚ ଗୁଣସଂପନ୍ନା ରୂପଯୌବନଲକ୍ଷିତାଃ । ୪୮ ।
ଗନ୍ଧର୍ବାଃ କିଂନରାଃ ସିଦ୍ଧା ନାଗାବିଦ୍ୟାଧରାସ୍ତଥା ।
ରମନ୍ତେ ସତତଂ ତତ୍ର ନାରୀଭିର୍ଭାସ୍ୱରପ୍ରଭାଃ । ୪୯ ।

---

ରହିଛନ୍ତି । ୪୧-୪୨ । ସେହି ସବୁ ପର୍ବତ ସୁବର୍ଣ୍ଣମୟ ଏବଂ ଅଗ୍ନିତୁଲ୍ୟ ପ୍ରଭାଯୁକ୍ତ । ସେ ପର୍ବତମାନଙ୍କ ଉପରେ ସର୍ବଦା ଫୁଲ ଓ ଫଳ ଥାଏ ଏବଂ ତାହା ପକ୍ଷୀମାନଙ୍କରେ ପୂର୍ଣ୍ଣ ଅଟେ । ୪୩ । ଅନ୍ୟ ପର୍ବତମାନେ ଦିବ୍ୟ ଗନ୍ଧ, ରସ ଏବଂ ସ୍ପର୍ଶଯୁକ୍ତ । ସେମାନେ ସକଳ କାମନାକୁ ପୂର୍ଣ୍ଣ କରନ୍ତି ଏବଂ ଅନେକ ପ୍ରକାର ବସ୍ତ୍ର ଉତ୍ପନ୍ନ କରନ୍ତି । ୪୪ । ମୋତି ଏବଂ ବୈଦୂର୍ଯ୍ୟ ଆଦି ରତ୍ନଦ୍ୱାରା ଖଚିତ ପୁରୁଷ ଓ ନାରୀମାନଙ୍କର ବ୍ୟବହାରଯୋଗ୍ୟ ଅଳଙ୍କାରମାନ ମଧ୍ୟ ସେ ପର୍ବତମାନେ ଉତ୍ପାଦନ କରନ୍ତି । ୪୫ । ଅନ୍ୟ କେତେକ ପର୍ବତ ସର୍ବ ଋତୁରେ ଉପଭୋଗ-ଯୋଗ୍ୟ ସାମଗ୍ରୀ ଉତ୍ପାଦନ କରନ୍ତି । ଅନ୍ୟ କେତେକ ପର୍ବତରେ ବହୁ ମୂଲ୍ୟ ବିଚିତ୍ର ମଣିଶୋଭିତ ଏବଂ ବିଚିତ୍ର ଆବରଣବସ୍ତ୍ରଯୁକ୍ତ ଶଯ୍ୟାମାନ ଉତ୍ପନ୍ନ ହୁଏ । ଅନ୍ୟ ବୃକ୍ଷମାନଙ୍କରେ ମନୋମୁଗ୍ଧକର ମାଳାମାନ ଉତ୍ପନ୍ନ ହୁଏ । ୪୬-୪୭ । ବହୁମୂଲ୍ୟ ପାନୀୟ ଦ୍ରବ୍ୟ, ଅନେକପ୍ରକାର ଭୋଜନସାମଗ୍ରୀ ଏବଂ ରୂପ,ଗୁଣ ଓ ଯୌବନସମ୍ପନ୍ନା ରମଣୀମାନଙ୍କୁ ମଧ୍ୟ ସେଠାର ବୃକ୍ଷମାନେ ଉତ୍ପାଦନ କରନ୍ତି । ୪୮ । ଅତି ଉଜ୍ଜ୍ୱଳ ଦୀପ୍ତିମାନ୍ ଗନ୍ଧର୍ବ, କିନ୍ନର, ସିଦ୍ଧ, ନାଗ ଏବଂ ବିଦ୍ୟାଧରମାନେ ସେଠାରେ ସର୍ବଦା ସ୍ତ୍ରୀମାନଙ୍କ ସହିତ ରମଣ କରୁଥାନ୍ତି । ୪୯ । ସମସ୍ତ ପୁଣ୍ୟାତ୍ମା ଏବଂ ସମସ୍ତ

ସର୍ବେ ସୁକୃତକର୍ମାଣଃ ସର୍ବେ ରତିପରାୟଣାଃ ।
ସର୍ବେ କାମାର୍ଥସହିତା ବସନ୍ତି ସହଯୋଷିତଃ । ୫୦ ।
ଗୀତବାଦିତ୍ରନିର୍ଘୋଷଃ ସୋତ୍କୃଷ୍ଟହସିତସ୍ୱନୈଃ ।
ଶ୍ରୂୟତେ ସତତଂ ତତ୍ର ସର୍ବଭୂତମନୋରମଃ । ୫୧ ।
ତତ୍ର ନାମୁଦିତଃ କଶ୍ଚିନ୍ନାସ୍ତି କଶ୍ଚିଦସତ୍ପ୍ରିୟଃ ।
ଅହନ୍ୟହନି ବର୍ଧନ୍ତେ ଗୁଣାସ୍ତତ୍ର ମନୋରମାଃ । ୫୨ ।
ସମତିକ୍ରମ୍ୟ ଶୈଲେନ୍ଦ୍ରମୁତ୍ତରଃ ପୟସାଂ ନିଧିଃ ।
ତତ୍ର ସୋମଗିରିର୍ନାମ ମଧ୍ୟେ ହେମମୟୋ ମହାନ୍ । ୫୩ ।
ସ ତୁ ଦେଶୋ ବିସୂର୍ଯୋଽପି ତସ୍ୟ ଭାସା ପ୍ରକାଶତେ ।
ସୂର୍ଯଲକ୍ଷ୍ୟାଭିବିଜ୍ଞେୟସ୍ତପତେବ ବିବସ୍ୱତା । ୫୪ ।
ଭଗବାଂସ୍ତତ୍ର ବିଶ୍ୱାତ୍ମା ଶମ୍ଭୁରେକାଦଶାତ୍ମକଃ ।
ବ୍ରହ୍ମା ବସତି ଦେବେଶୋ ବ୍ରହ୍ମର୍ଷିପରିବାରିତଃ । ୫୫ ।
ନ କଥଂଚନ ଗନ୍ତବ୍ୟଂ କୁରୂଣାମୁତ୍ତରେଣ ବଃ ।
ଅନ୍ୟେଷାମପି ଭୂତାନାଂ ନାନୁକ୍ରାମତି ବୈ ଗତିଃ । ୫୬ ।
ସ ହି ସୋମଗିରିର୍ନାମ ଦେବାନାମପି ଦୁର୍ଗମଃ ।
ତମାଲୋକ୍ୟ ତତଃ କ୍ଷିପ୍ରମୁପାବର୍ତିତୁମର୍ହଥ । ୫୭ ।

---

ପୂର୍ଣ୍ଣମନୋରଥ ବ୍ୟକ୍ତିମାନେ ( ସିଦ୍ଧ, ଗନ୍ଧର୍ବ ଆଦି ) ସ୍ତ୍ରୀମାନଙ୍କ ସହିତ ସେଠାରେ ଥାଆନ୍ତି ଏବଂ ପ୍ରେମପରାୟଣ ହୁଅନ୍ତି । ୫୦ । ସର୍ବପ୍ରାଣୀଙ୍କର ମନୋମୁଗ୍ଧକାରୀ ଗାନ ଏବଂ ବାଦ୍ୟର ଶବ୍ଦ ଉତ୍ତମ ହାସ୍ୟ ସହିତ ମିଶ୍ରିତ ହୋଇ ସେଠାରେ ସର୍ବଦା ଶୁଣାଯାଏ । ୫୧ । ସେଠାରେ କେହି ନିରାନନ୍ଦ ହୋଇ ରହେ-ନାହିଁ ବା କେହି ଅସତ୍ କାର୍ଯ୍ୟ କରେ ନାହିଁ । ସେଠାରେ ଦିନ ଦିନ ସଦ୍ଗୁଣମାନ ବର୍ଦ୍ଧିତ ହୁଏ । ୫୨ । ସେହି ପର୍ବତକୁ ଅତିକ୍ରମ କରିଗଲେ ଉତ୍ତର ସମୁଦ୍ର ପଡ଼ିବ । ତାହାର ମଧ୍ୟଦେଶରେ ସୋମଗିରିନାମକ ଏକ ବିଶାଳ ସୁବର୍ଣ୍ଣମୟ ପର୍ବତ ଅଛି । । ୫୩ । ସେ ଦେଶରେ ସୂର୍ଯ୍ୟ ନ ଥିଲେ ମଧ୍ୟ ଏହି ପର୍ବତର ତେଜରେ ତାହା ଆଲୋକିତ ହୋଇଥାଏ । ସତେ ଯେପରି ଜଣାପଡ଼େ ସୂର୍ଯ୍ୟ ହିଁ ସେ ସ୍ଥାନକୁ ଉତ୍ତାପ ଦେଉଅଛନ୍ତି । ୫୪ । ସେଠାରେ ବିଶ୍ୱାତ୍ମା ଏକାଦଶମୂର୍ତ୍ତି ଭଗବାନ୍ ଶମ୍ଭୁ ଏବଂ ବ୍ରହ୍ମର୍ଷିସେବିତ ଦେବେଶ ବ୍ରହ୍ମା ବାସକରନ୍ତି । ୫୫ । ଉତ୍ତରକୁରୁର ଆଗକୁ ତୁମମାନଙ୍କର ଯିବା କୌଣସିମତେ ଉଚିତ ନୁହେ । ଅନ୍ୟ କୌଣସି ପ୍ରାଣୀଙ୍କର ମଧ୍ୟ ସେଠାକୁ ଯିବା ସମ୍ଭବ ନୁହେ । ୫୬ । ସେହି ସୋମଗିରି ଉପରକୁ ଦେବତା-ମାନଙ୍କର ମଧ୍ୟ ଯିବା କଷ୍ଟକର । ସେହି ପର୍ବତକୁ ଦେଖିସାରି ତୁମେମାନେ ଶୀଘ୍ର

ଏତାବଦ୍‌ବାନରୈଃ ଶକ୍ୟଂ ଗନ୍ତୁଂ ବାନରପୁଙ୍ଗବାଃ ।
ଅଭାସ୍କରମମର୍ଯାଦଂ ନ ଜାନୀମସ୍ତତଃପରମ୍ । ୫୮ ।
ସର୍ବମେତଦ୍‌ବିଚେତବ୍ୟଂ ଯନ୍ମୟା ପରିକୀର୍ତ୍ତିତମ୍ ।
ଯଦନ୍ୟଦପି ନୋକ୍ତଂ ଚ ତତ୍ରାପି କ୍ରିୟତାଂ ମତିଃ । ୫୯ ।
ତତଃ କୃତଂ ଦାଶରଥେର୍ମହତ୍‌ପ୍ରିୟମ୍
ମହତ୍ତରଂ ଚାପି ତତୋ ମମ ପ୍ରିୟମ୍ ।
କୃତଂ ଭବିଷ୍ୟତ୍ୟନିଳାନଳୋପମା
ବିଦେହଜାଦର୍ଶନଜେନ କର୍ମଣା । ୬୦ ।
ତତଃ କୃତାର୍ଥାଃ ସହିତାଃ ସବାନ୍ଧବା-
ମୟାର୍ଚ୍ଚିତାଃ ସର୍ବଗୁଣୈର୍ମନୋରମୈଃ ।
ଚରିଷ୍ୟଥୋର୍ବୀଂ ପ୍ରତିଶାନ୍ତଶାତ୍ରବାଃ
ସହପ୍ରିୟା ଭୂତଧରାଃ ପ୍ଲବଙ୍ଗମାଃ । ୬୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ଉଦୀଚୀପ୍ରେଷଣମ୍
ନାମ ତ୍ରିଚତ୍ୱାରିଂଶଃ ସର୍ଗଃ

---

ଫେରିଆସିବ । ୫୭ । "ହେ ବାନରଶ୍ରେଷ୍ଠଗଣ ! ବାନରମାନେ ଏତିକିପର୍ଯ୍ୟନ୍ତ ଯାଇପାରନ୍ତି । ଏହାର ପରବର୍ତ୍ତୀ ସ୍ଥାନ ସୂର୍ଯ୍ୟରହିତ ଏବଂ ଅସୀମ ଅଟେ । ସୁତରାଂ ସେ ବିଷୟରେ ମୁଁ କିଛି ଜାଣେ ନାହିଁ । ୫୮ । ମୁଁ ଯେଉଁ ସବୁ ସ୍ଥାନ କଥା କହିଗଲି ସେ ସମସ୍ତ ସ୍ଥାନ ତୁମମାନଙ୍କୁ ଖୋଜିବାକୁ ହେବ । ମୁଁ ଯେଉଁ ଯେଉଁ ସ୍ଥାନକଥା ନ କହିଛି ସେସବୁ ସ୍ଥାନରେ ମଧ୍ୟ ପ୍ରଯତ୍ନ କରିବ । ୫୯ । ହେ ଅଗ୍ନି ଏବଂ ବାୟୁଙ୍କ ସଦୃଶ ବାନରଗଣ ! ସୀତା ମିଳିଗଲେ ରାମଚନ୍ଦ୍ରଙ୍କର ବିଶେଷ ପ୍ରିୟକାର୍ଯ୍ୟ ସାଧିତ ହେବ ଏବଂ ତାହାଠାରୁ ବଳି ମୋର ନିଜର ପ୍ରିୟତର କାର୍ଯ୍ୟ ସାଧିତ ହେବ । ୬୦ । ହେ ବାନରଗଣ ! ରାମଚନ୍ଦ୍ରଙ୍କର ପ୍ରିୟସାଧନ କଲେ ମୁଁ ଅତି ଉତ୍ତମ ମନୋରମ ଦ୍ରବ୍ୟଦ୍ୱାରା ତୁମ୍ଭମାନଙ୍କୁ ସନ୍ତୁଷ୍ଟ କରିବ । ତାହାହେଲେ ତୁମମାନଙ୍କର ଆଉ କେହି ଶତ୍ରୁ ରହିବ ନାହିଁ । ତୁମେମାନେ ସ୍ତ୍ରୀମାନଙ୍କ ସହିତ ସୁଖରେ ଜୀବନ ନିର୍ବାହ କରିବ ଏବଂ ଅତି ଆନନ୍ଦର ସହିତ ପୃଥିବୀରେ ବିଚରଣ କରିବ" । ୬୧ ।

# ଚତୁଶ୍ଚତ୍ୱାରିଂଶଃ ସର୍ଗଃ

## ହନୂମତ୍ସନ୍ଦେଶଃ

ବିଶେଷେଣ ତୁ ସୁଗ୍ରୀବୋ ହନୂମତ୍ୟର୍ଥମୁକ୍ତବାନ୍ ।
ସ ହି ତସ୍ମିନ୍ ହରିଶ୍ରେଷ୍ଠେ ନିଶ୍ଚିତାର୍ଥୋଽର୍ଥସାଧନେ । ୧ ।
ଅବ୍ରବୀଚ୍ଚ ହନୂମନ୍ତଂ ବିକ୍ରାନ୍ତମନିଲାତ୍ମଜମ୍ ।
ସୁଗ୍ରୀବଃ ପରମପ୍ରୀତଃ ପ୍ରଭୁଃ ସର୍ବବନୌକସାମ୍ । ୨ ।
ନ ଭୂମୌ ନାନ୍ତରିକ୍ଷେ ବା ନାମ୍ବରେ ନାମରାଳୟେ ।
ନାପ୍ସୁ ବା ଗତିସଙ୍ଗଂ ତେ ପଶ୍ୟାମି ହରିପୁଙ୍ଗବ । ୩ ।
ସାସୁରାଃ ସହଗନ୍ଧର୍ବାଃ ସନାଗନରଦେବତାଃ ।
ବିଦିତାଃ ସର୍ବଲୋକାସ୍ତେ ସସାଗରଧରାଧରାଃ । ୪ ।
ଗତିର୍ବେଗଶ୍ଚ ତେଜଶ୍ଚ ଲାଘବଂ ଚ ମହାକପେ ।
ପିତୁସ୍ତେ ସଦୃଶଂ ବୀର ମାରୁତସ୍ୟ ମହୌଜସଃ । ୫ ।
ତେଜସା ବାପି ତେ ଭୂତଂ ନ ସମଂ ଭୁବି ବିଦ୍ୟତେ ।
ତଦ୍ ଯଥା ଲଭ୍ୟତେ ସୀତା ତତ୍ତ୍ୱମେବାନୁଚିନ୍ତୟ । ୬ ।

---

# ୪୪ଶ ସର୍ଗ

( ରାମଙ୍କର ହନୂମାନଙ୍କୁ ସନ୍ଦେଶପ୍ରଦାନ )

ସୁଗ୍ରୀବ ବିଶେଷଭାବରେ ହନୂମାନଙ୍କୁ ସବୁ କଥା ବୁଝାଇକରି କହିଲେ; କାରଣ ସେହି ବାନରଶ୍ରେଷ୍ଠ (ହନୂମାନ୍) କାର୍ଯ୍ୟସାଧନ କରିବାରେ ବିଶେଷ ସମର୍ଥ ହେବେ ବୋଲି ତାଙ୍କର ବିଶ୍ୱାସ ଥିଲା । ୧ । ସମସ୍ତ ବନବାସୀ ବାନରଙ୍କର ସ୍ୱାମୀ ସୁଗ୍ରୀବ ବିଶେଷ ପ୍ରୀତ ହୋଇ ବିକ୍ରମଶାଳୀ ବାୟୁପୁତ୍ର ହନୂମାନଙ୍କୁ କହିଲେ । । ୨ । "ହେ ବାନରଶ୍ରେଷ୍ଠ, କି ପୃଥିବୀ କି ଅନ୍ତରୀକ୍ଷ, କି ଆକାଶ, କି ସ୍ୱର୍ଗ, କି ଜଳ କୌଣସିଠାରେ ତୁମ୍ଭର ଗତିର ପ୍ରତିବନ୍ଧକ ନାହିଁ। ୩ । ଅସୁର, ଗନ୍ଧର୍ବ, ନାଗ, ନର, ଦେବତା ପ୍ରଭୃତି ସକଳ ଲୋକ ଏବଂ ସସାଗର ପର୍ବତ, ସମଗ୍ର ପୃଥିବୀ ତୁମକୁ ବିଦିତ ଅଛି ।୪। ହେ କପିଶ୍ରେଷ୍ଠ ! ଗତି, ବେଗ, ତେଜ ଏବଂ ଲଘୁତା ଏ ସମସ୍ତ ବିଷୟରେ ତୁମେ ନିଜର ପରାକ୍ରମୀ ପିତା ବାୟୁଙ୍କ ସହିତ ସମାନ ଅଟ । ୫ । ଏ ପୃଥିବୀରେ ତୁମ ସଦୃଶ ତେଜସ୍ୱୀ ପ୍ରାଣୀ କେହି ନାହିଁ । ସୁତରାଂ ସୀତା ଯେପରି

ତ୍ୱୟ୍ୟେବ ହନୁମନ୍ନସ୍ତି ବଲଂ ବୁଦ୍ଧିଃ ପରାକ୍ରମଃ ।
ଦେଶକାଲାନୁବୃତ୍ତିଶ୍ଚ ନୟଶ୍ଚ ନୟପଣ୍ଡିତ ।୭।
ତତଃ କାର୍ଯସମାସଙ୍ଗମବଗମ୍ୟ ହନୂମତି ।
ବିଦିତ୍ୱା ହନୁମନ୍ତଂ ଚ ଚିନ୍ତୟାମାସ ରାଘବଃ ।୮।
ସର୍ବଥା ନିଶ୍ଚିତାର୍ଥୋଽୟଂ ହନୂମତି ହରୀଶ୍ୱରଃ ।
ନିଶ୍ଚିତାର୍ଥତରଶ୍ଚାପି ହନୁମାନ୍ କାର୍ଯସାଧନେ ।୯।
ତଦେବ ପ୍ରସ୍ଥିତସ୍ୟାସ୍ୟ ପରିଜ୍ଞାତସ୍ୟ କର୍ମଭିଃ ।
ଭର୍ତ୍ରା ପରିଗୃହୀତସ୍ୟ ଧ୍ରୁବଃ କାର୍ଯଫଲୋଦୟଃ ।୧୦।
ତଂ ସମୀକ୍ଷ୍ୟ ମହାତେଜା ବ୍ୟବସାୟୋତ୍ତରଂ ହରିମ୍ ।
କୃତାର୍ଥ ଇବ ସଂହୃଷ୍ଟଃ ପ୍ରହୃଷ୍ଟେନ୍ଦ୍ରିୟମାନସଃ ।୧୧।
ଦଦୌ ତସ୍ୟ ତତଃ ପ୍ରୀତଃ ସ୍ୱନାମାଙ୍କୋପଶୋଭିତମ୍ ।
ଅଙ୍ଗୁଲୀୟମଭିଜ୍ଞାନଂ ରାଜପୁତ୍ର୍ୟାଃ ପରଂତପଃ ।୧୨।
ଅନେନ ତ୍ୱାଂ ହରିଶ୍ରେଷ୍ଠ ଚିହ୍ନେନ ଜନକାତ୍ମଜା ।
ମତ୍ସକାଶାଦନୁପ୍ରାପ୍ତମନୁଦ୍‌ବିଗ୍ନାନୁପଶ୍ୟତି ।୧୩।

---

ମିଳିବେ ସେ ବିଷୟ ତୁମେ ହିଁ ଚିନ୍ତା କର ।୬। ହେ ନୀତିପଣ୍ଡିତ ହନୁମନ୍ ! ତୁମଠାରେ ବଳ, ବୁଦ୍ଧି, ପରାକ୍ରମ ଦେଶକାଳୋଚିତ କର୍ତ୍ତବ୍ୟସାଧନ ଏବଂ ନୀତିଜ୍ଞାନ ବିଦ୍ୟମାନ ରହିଛି” ।୭। ଅନନ୍ତର ହନୂମାନଙ୍କଠାରେ କାର୍ଯ୍ୟସିଦ୍ଧିର ସମସ୍ତ ଭାର ଦିଆ ଯାଉଅଛି ଜାଣି ଏବଂ ହନୂମାନଙ୍କୁ ଭଲ କରି ଜାଣି ତାଙ୍କ ବିଷୟରେ ରାମଚନ୍ଦ୍ର ଚିନ୍ତା କରିବାକୁ ଲାଗିଲେ ।୮। ସୁଗ୍ରୀବଙ୍କର ହନୂମାନଙ୍କ ବିଷୟରେ ଦୃଢ଼ବିଶ୍ୱାସ ଅଛି (ଅର୍ଥାତ୍ ହନୂମାନ୍ ହିଁ କାର୍ଯ୍ୟସାଧନ କରିପାରିବେ ଏ ବିଶ୍ୱାସ ସୁଗ୍ରୀବଙ୍କର ଅଛି)। ହନୂମାନଙ୍କର ମଧ୍ୟ କାର୍ଯ୍ୟସାଧନ କରିବା ବିଷୟରେ ନିଜଠାରେ ଆହୁରି ଅଧିକତର ବିଶ୍ୱାସ ଅଛି ।୯। ଯେ ଏହିପରି ସୁଗ୍ରୀବଙ୍କଦ୍ୱାରା ପ୍ରେରିତ ହୋଇଛନ୍ତି, ଏହାଙ୍କୁ କାର୍ଯ୍ୟଦ୍ୱାରା ପରୀକ୍ଷା କରାହୋଇଅଛି, ଏହାଙ୍କଠାରେ ସ୍ୱାମୀଙ୍କର ବିଶ୍ୱାସ ଅଛି, ସୁତରାଂ ଏହାଙ୍କଦ୍ୱାରା ଅବଶ୍ୟ କାର୍ଯ୍ୟସିଦ୍ଧି ହେବ ।୧୦। ମହାତେଜସ୍ୱୀ ରାମଚନ୍ଦ୍ର ଉଦ୍‌ଯୋଗିଶ୍ରେଷ୍ଠ ହନୂମାନଙ୍କୁ ଦେଖି ନିଜକୁ କୃତାର୍ଥ ମନେକଲେ ଏବଂ ତାହାଙ୍କର ଇନ୍ଦ୍ରିୟ ଏବଂ ମନ ପ୍ରସନ୍ନ ହୋଇଉଠିଲା ।୧୧। ଅନନ୍ତର ପ୍ରସନ୍ନ ହୋଇ ରାମଚନ୍ଦ୍ର ନିଜର ନାମାଙ୍କିତ ମୁଦ୍ରିକା ରାଜପୁତ୍ରୀ ସୀତାଙ୍କ ନିମନ୍ତେ ସଙ୍କେତସ୍ୱରୂପ ତାଙ୍କୁ ଦେଲେ ।୧୨। "ହେ ବାନରଶ୍ରେଷ୍ଠ ! ଏହି ସଙ୍କେତଦ୍ୱାରା ସୀତା ତୁମକୁ ମୋ ନିକଟରୁ ପ୍ରେରିତ ହୋଇଥିବାର ଜାଣିପାରିବେ ଏବଂ ତୁମକୁ ଦେଖି ତାଙ୍କ ମନରେ କୌଣସି ଉଦ୍‌ବେଗ ଜାତ ହେବ ନାହିଁ ।୧୩। ହେ ବୀର ! ତୁମ୍ଭର

**ବ୍ୟବସାୟଶ୍ଚ ତେ ବୀର ସତ୍ତ୍ୱଯୁକ୍ତଶ୍ଚ ବିକ୍ରମଃ ।**
**ସୁଗ୍ରୀବସ୍ୟ ଚ ସନ୍ଦେଶଃ ସିଦ୍ଧିଂ କଥୟତୀବ ମେ । ୧୪ ।**
**ସ ତଦ୍‌ଗୃହ୍ୟ ହରିଶ୍ରେଷ୍ଠଃ କୃତ୍ୱା ମୂର୍ଦ୍ଧ୍ନି କୃତାଞ୍ଜଳିଃ ।**
**ବନ୍ଦିତ୍ୱା ଚରଣୌ ଚୈବ ପ୍ରସ୍ଥିତଃ ପ୍ଲବଗର୍ଷଭଃ । ୧୫ ।**
**ସ ତତ୍ ପ୍ରକର୍ଷନ୍ ହରିଣାଂ ମହଦ୍‌ବଳମ୍**
**ବଭୂବ ବୀରଃ ପବନାତ୍ମଜଃ କପିଃ ।**
**ଗତାମ୍ବୁ ଦେ ବ୍ୟୋମ୍ନି ବିଶୁଦ୍ଧମଣ୍ଡଳଃ**
**ଶଶୀବ ନକ୍ଷତ୍ରଗଣୋପଶୋଭିତଃ । ୧୬ ।**
**ଅତିବଳ ବଳମାଶ୍ରିତସ୍ତବାହମ୍**
**ହରିବରବିକ୍ରମ ବିକ୍ରମୈରନଳ୍ପୈଃ ।**
**ପବନସୁତ ଯଥାଧିଗମ୍ୟତେ ସା**
**ଜନକସୁତା ହନୁମଂସ୍ତଥା କୁରୁଷ୍ୱ । ୧୭ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ହନୂମତ୍ସନ୍ଦେଶୋ
ନାମ ଚତୁଶ୍ଚତ୍ୱାରିଂଶଃ ସର୍ଗଃ

---

ଦୃଢ଼ବିକ୍ରମ, ଉଦ୍‌ଯୋଗ ଏବଂ ସୁଗ୍ରୀବଙ୍କର ତୁମ ପ୍ରତି ସନ୍ଦେଶ—ଏସବୁ ଦେଖି କାର୍ଯ୍ୟସିଦ୍ଧି ହେବ ବୋଲି ମୋତେ ଜଣାପଡ଼ ଯାଉଅଛି" । ୧୪। ବାନରଶ୍ରେଷ୍ଠ ହନୂମାନ୍ ସେହି ମୁଦ୍ରିକା ଗ୍ରହଣକରି ହାତଯୋଡ଼ି ମୁଣ୍ଡରେ ଲଗାଇ ତାହାଙ୍କୁ (ରାମଚନ୍ଦ୍ରଙ୍କୁ) ପ୍ରଣାମ କରି ପ୍ରସ୍ଥାନ କଲେ । ୧୫ । ବାୟୁପୁତ୍ର ବୀର ବାନର ସେହି ବିଶାଳ ସୈନ୍ୟମାନଙ୍କୁ ନେଇ ଗଲାବେଳେ ମେଘହୀନ ଆକାଶମଣ୍ଡଳରେ ବିଶୁଦ୍ଧ ଚନ୍ଦ୍ରମଣ୍ଡଳ ମଧ୍ୟରେ ନକ୍ଷତ୍ରମାନଙ୍କ ଦ୍ୱାରା ଶୋଭିତ ଚନ୍ଦ୍ର ସଦୃଶ ଦେଖାଗଲେ । ୧୬ । (ରାମଚନ୍ଦ୍ର କହିଲେ) "ହେ ବାୟୁପୁତ୍ର, ଅତିବଳୀ ହନୂମନ୍ ! ମୁଁ ତୁମ୍ଭର ବଳକୁ ଆଶ୍ରା କରିଅଛି । ସୀତା ଯେପରି ମିଳିବେ ବିଶେଷ ପରାକ୍ରମରେ ସେହିପରି ତୁମେ ତହିଁର ବିଧାନକର" । ୧୭ ।

# ପଞ୍ଚଚତ୍ୱାରିଂଶଃ ସର୍ଗଃ

## ବାନରବଲପ୍ରତିଷ୍ଠା

ସର୍ବାଂଶ୍ଚାହୂୟ ସୁଗ୍ରୀବଃ ପ୍ଲବଗାନ୍ ପ୍ଲବଗର୍ଷଭଃ ।
ସମସ୍ତାଂଶ୍ଚାବ୍ରବୀଦ୍‌ରାଜା ରାମକାର୍ଯ୍ୟାର୍ଥସିଦ୍ଧୟେ । ୧ ।
ଏବମେତଦ୍ ବିଚେତବ୍ୟଂ ଭବଦ୍ଭିର୍ବାନରୋତ୍ତମୈଃ ।
ତଦୁଗ୍ରଶାସନଂ ଭର୍ତୁର୍ବିଜ୍ଞାୟ ହରିପୁଙ୍ଗବାଃ । ୨ ।
ଶଲଭା ଇବ ସଂଛାଦ୍ୟ ମେଦିନୀଂ ସଂପ୍ରତସ୍ଥିରେ ।
ରାମଃ ପ୍ରସ୍ରବଣେ ତସ୍ମିନ୍ନ୍ୟବସତ୍ସହଲକ୍ଷ୍ମଣଃ । ୩ ।
ପ୍ରତୀକ୍ଷମାଣସ୍ତଂ ମାସଂ ସୀତାଧିଗମନେ କୃତଃ ।
ଉତ୍ତରାଂ ତୁ ଦିଶଂ ରମ୍ୟାଂ ଗିରିରାଜସମାବୃତାମ୍ । ୪ ।
ପ୍ରତସ୍ଥେ ସହସା ବୀରୋ ହରିଃ ଶତବଲିସ୍ତଦା ।
ପୂର୍ବାଂ ଦିଶଂ ପ୍ରତିୟଯୌ ବିନତୋ ହରିଯୂଥପଃ । ୫ ।
ତାରାଙ୍ଗଦାଦିସହିତଃ ପ୍ଲବଗଃ ପବନାତ୍ମଜ ।
ଅଗସ୍ତ୍ୟଚରିତାମାଶାଂ ଦକ୍ଷିଣାଂ ହରିଯୂଥପଃ । ୬ ।

---

## ୪୫ଶ ସର୍ଗ

( ବାନରମାନଙ୍କର ଆତ୍ମଶକ୍ତିପରିଚୟ )

ବାନରଶ୍ରେଷ୍ଠ ସୁଗ୍ରୀବ ସମସ୍ତ ବାନରଙ୍କୁ ଡାକି ରାମଚନ୍ଦ୍ରଙ୍କ କାର୍ଯ୍ୟ-ସିଦ୍ଧି ନିମନ୍ତେ ସମସ୍ତଙ୍କୁ କହିଲେ । ୧ । "ହେ ବାନରଶ୍ରେଷ୍ଠଗଣ ! ମୁଁ ଯେପରି କହିଲି ସେହିପରି ସବୁଆଡ଼େ ଖୋଜିବାକୁ ହେବ ।" ପ୍ରଭୁଙ୍କର ଏହି କଠୋର ଆଜ୍ଞା ଶୁଣି ବାନରଗଣ ପତଙ୍ଗଦଳସଦୃଶ ପୃଥିବୀକୁ ଘୋଡ଼ାଇ ପକାଇ ପ୍ରସ୍ଥାନ କଲେ । ରାମଚନ୍ଦ୍ର ଲକ୍ଷ୍ମଣଙ୍କ ସହିତ ସେ ପ୍ରସ୍ରବଣ ପର୍ବତ ଉପରେ ସୀତାଙ୍କୁ ଅନୁସନ୍ଧାନ କରିବା ପାଇଁ ଯେଉଁ ମାସାବଧି ସମୟ ନିର୍ଦ୍ଦେଶ କରାଯାଇଥିଲା, ସେହି ମାସ ପୂରିବାକୁ ଅପେକ୍ଷା କରି ରହିଲେ । ପର୍ବତରାଜ (ହିମାଳୟ) ଯେଉଁ ଦିଗକୁ ବ୍ୟାପି ରହିଛି ସେହି ଉତ୍ତର ଦିଗକୁ ବାନରବୀର ଶତବଳି ସତ୍ୱର ପ୍ରସ୍ଥାନ କଲେ । ବାନର ସେନାପତି ବିନତ ପୂର୍ବ ଦିଗକୁ ଯାତ୍ରା କଲେ । ୨-୫ । ବାନର ସେନାପତି ପବନପୁତ୍ର ହନୁମାନ ତାର ଏବଂ ଅଙ୍ଗଦ ପ୍ରଭୃତିଙ୍କ ସହିତ ଅଗସ୍ତ୍ୟମୁନିଙ୍କର

ପଶ୍ଚିମାଂ ଚ ଦିଶଂ ଘୋରାଂ ସୁଷେଣଃ ପ୍ଲବଗେଶ୍ୱରଃ ।
ପ୍ରତସ୍ଥେ ହରିଶାର୍ଦ୍ଦୂଲୋ ଦିଶଂ ବରୁଣପାଳିତାମ୍ । ୭ ।
ତତଃ ସର୍ବା ଦିଶୋ ରାଜା ଚୋଦୟିତ୍ୱା ଯଥାତଥମ୍ ।
କପିସେନାପତୀନ୍ ବୀରୋ ମୁମୋଦ ସୁଖିତଃ ସୁଖମ୍ । ୮ ।
ଏବଂ ସଞ୍ଚୋଦିତାଃ ସର୍ବେ ରାଜ୍ଞା ବାନରଯୂଥପାଃ ।
ସ୍ୱାଂ ସ୍ୱାଂ ଦିଶମଭିପ୍ରେତ୍ୟ ତ୍ୱରିତାଃ ସମ୍ପ୍ରତସ୍ଥିରେ । ୯।
ନଦନ୍ତଶ୍ଚୋନ୍ନଦନ୍ତଶ୍ଚ ଗର୍ଜନ୍ତଶ୍ଚ ପ୍ଲବଙ୍ଗମାଃ ।
କ୍ଷ୍ୱେଡ଼ନ୍ତୋ ଧାବମାନାଶ୍ଚ ବିନଦନ୍ତୋ ମହାବଲାଃ । ୧୦ ।
ଏବଂ ସଞ୍ଚୋଦିତାଃ ସର୍ବେ ରାଜ୍ଞା ବାନରଯୂଥପାଃ ।
ଆନୟିଷ୍ୟାମହେ ସୀତାଂ ହନିଷ୍ୟାମଶ୍ଚ ରାବଣମ୍ । ୧୧ ।
ଅହମେକୋ ବଧିଷ୍ୟାମି ପ୍ରାପ୍ତଂ ରାବଣମାହବେ ।
ତତଶ୍ଚୋନ୍ମଥ୍ୟ ସହସା ହରିଷ୍ୟେ ଜନକାତ୍ମଜାମ୍ । ୧୨।
ବେପମାନାଂ ଶ୍ରମେଣାଦ୍ୟ ଭବଦ୍ଭିଃ ସ୍ଥୀୟତାମିତି ।
ଏକ ଏବାହରିଷ୍ୟାମି ପାତାଳାଦପି ଜାନକୀମ୍ । ୧୩ ।

---

ବିଚରଣଭୂମି ଦକ୍ଷିଣ ଦିଗକୁ ଗଲେ । ୬ । ବାନରଶ୍ରେଷ୍ଠ ସୁଷେଣ ବରୁଣପାଳିତ ଭୀଷଣ ପଶ୍ଚିମ ଦିଗକୁ ଗଲେ । ୭ । ଏହିପରି ବାନରମାନଙ୍କୁ ସବୁ ଦିଗକୁ ଯଥାଯଥ-ଭାବରେ ପଠାଇ ଦେଇ ବୀର ବାନର ସୁଗ୍ରୀବ ଆନନ୍ଦ ଅନୁଭବ କରି ସୁଖୀହେଲେ ।୮। ବାନରସେନାପତିମାନେ ଏହିପରି ରାଜାଙ୍କ ଦ୍ୱାରା ଆଦିଷ୍ଟ ହୋଇ ଆପଣା ଆପଣା ଦିଗ ଆଡ଼କୁ ସତ୍ୱର ଯାତ୍ରା କଲେ । ୯ । ମହାବଳୀ ବାନରମାନେ କଳକଳା ଶବ୍ଦକରି, ଚିତ୍କାର କରି, ଗର୍ଜନ କରି, ସିଂହନାଦ କରି, ଦୌଡ଼ଧାପଡ଼ କରି ପରସ୍ପର ଶିଦାରି କରି ସୁଗ୍ରୀବଙ୍କ ଆଜ୍ଞା ଅନୁସାରେ ସମସ୍ତେ ଚାଲିଗଲେ । ସେମାନେ କହି କହି ଯାଉଥିଲେ, "ଆମେମାନେ ରାବଣକୁ ମାରିବୁଁ ଏବଂ ସୀତାଙ୍କୁ ଆଣିବୁଁ । ୧୦-୧୧ । ମୁଁ ଏକା ଯୁଦ୍ଧରେ ରାବଣକୁ ପାଇଲେ ମାରିଦେବି । ଅନ୍ୟ ରାକ୍ଷସମାନଙ୍କୁ ବ୍ୟତିବ୍ୟସ୍ତ କରି ଦେଇ ଅତିଶୀଘ୍ର ସୀତାଙ୍କୁ ନେଇ ଆସିବି । ୧୨ । ତୁମେମାନେ ସମସ୍ତେ ପରିଶ୍ରାନ୍ତ ହୋଇଛ, ଏଇଠାରେ ଅପେକ୍ଷା କରି ରହ । ମୁଁ ଏକାକୀ (ଭୟରେ) କମ୍ପୁଥିବା ସୀତାଙ୍କୁ ପାତାଳରୁ ମଧ୍ୟ ନେଇ ଆସିବି । ୧୩ ।

ବାଧମିଷ୍ୟାମ୍ୟହଂ ବୃକ୍ଷାନ୍ ଧାରୟିଷ୍ୟାମ୍ୟହଂ ଗିରୀନ୍ ।
ଧରଣୀଂ ଦାରୟିଷ୍ୟାମି କ୍ଷୋଭୟିଷ୍ୟାମି ସାଗରାନ୍ । ୧୪ ।
ଅହଂ ଯୋଜନସଂଖ୍ୟାୟାଃ ପ୍ଲବେୟଂ ନାତ୍ର ସଂଶୟଃ ।
ଶତଯୋଜନସଂଖ୍ୟାୟାଃ ଶତଂ ସମଧିକଂ ହ୍ୟହମ୍ । ୧୫ ।
ଭୂତଲେ ସାଗରେ ବାପି ଶୈଳେଷୁ ଚ ବନେଷୁ ଚ ।
ପାତାଳସ୍ୟାପି ବା ମଧ୍ୟେ ନ ମମାଚ୍ଛିଦ୍ୟତେ ଗତିଃ । ୧୬ ।
ଇତ୍ୟେକୈକଂତଦା ତତ୍ର ବାନରା ବଲଦର୍ପିତାଃ ।
ଊଚୁଶ୍ଚ ବଚନଂ ତସ୍ୟ ହରିରାଜସ୍ୟ ସଂନିଧୌ । ୧୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ବାନରବଲ ପ୍ରତିଷ୍ଠା
ନାମ ପଞ୍ଚଚତ୍ୱାରିଂଶଃ ସର୍ଗଃ ।

---

ମୁଁ ଗଛମାନଙ୍କୁ ଭାଙ୍ଗି ପକାଇବି, ପର୍ବତମାନଙ୍କୁ ଉପାଡ଼ି ପକାଇବି, ପୃଥିବୀକୁ ବିଦୀର୍ଣ୍ଣ କରିପକାଇବି ଏବଂ ସମୁଦ୍ରକୁ ଉଦ୍‌ବେଳିତ କରିଦେବି । ୧୪ । ମୁଁ ଯୋଜନ-ସଂଖ୍ୟାର ପଥ ଡେଇଁପାରିବି, ମୁଁ ଶହେଯୋଜନରୁ ଅଧିକ ଦୂର ମଧ୍ୟ ଡେଇଁଯାଇ ପାରିବି । ୧୫ । ପୃଥିବୀ, ସମୁଦ୍ର, ପର୍ବତ, ବନ ବା ପାତାଳରେ ମଧ୍ୟ ମୋର ଗତି କେହି ରୋକିପାରିବେ ନାହିଁ ।” ବଲଦର୍ପିତ ବାନରମାନେ ସୁଗ୍ରୀବଙ୍କ ନିକଟରେ ଏହିପରି ପରସ୍ପର କହିବାକୁ ଲାଗିଲେ । ୧୬-୧୭ ।

# ଷଟ୍‌ଚତ୍ୱାରିଂଶଃ ସର୍ଗଃ

## ଭୂମଣ୍ଡଳଭ୍ରମଣକଥନମ୍

ଗତେଷ୍ୱ ବାନରେନ୍ଦ୍ରେଷୁ ରାମଃ ସୁଗ୍ରୀବମବ୍ରବୀତ୍ ।
କଥଂ ଭବାନ୍ ବିଜାନୀତେ ସର୍ବଂ ବୈ ମଣ୍ଡଳଂ ଭୁବଃ । ୧ ।
ସୁଗ୍ରୀବସ୍ତୁ ତତୋ ରାମମୁବାଚ ପ୍ରଣତାତ୍ମବାନ୍ ।
ଶ୍ରୂୟତାଂ ସର୍ବମାଖ୍ୟାସ୍ୟେ ବିସ୍ତରେଣ ବଚୋ ମମ । ୨ ।
ଯଦା ତୁ ଦୁନ୍ଦୁଭିଂ ନାମ ଦାନବଂ ମହିଷାକୃତିମ୍ ।
ପ୍ରତିକାଲୟତେ ବାଲୀ ମଲୟଂ ପ୍ରତି ପର୍ବତମ୍ । ୩ ।
ତଦା ବିବେଶ ମହିଷୋ ମଲୟସ୍ୟ ଗୁହାଂ ପ୍ରତି ।
ବିବେଶ ବାଲୀ ତତ୍ରାପି ମଲୟଂ ତଜ୍ଜିଘାଂସୟା । ୪ ।
ତତୋଽହଂ ତତ୍ର ନିକ୍ଷିପ୍ତୋ ଗୁହାଦ୍ୱାରି ବିନୀତବତ୍ ।
ନ ଚ ନିଷ୍କ୍ରାମତେ ବାଲୀ ତଦା ସଂବତ୍ସରେ ଗତେ । ୫ ।
ତତଃ କ୍ଷତଜବେଗେନ ଆପୁପୂରେ ତଦା ବିଲମ୍ ।
ତଦହଂ ବିସ୍ମିତୋ ଦୃଷ୍ଟ୍ୱା ଭ୍ରାତୁଃ ଶୋକବିଷାର୍ଦିତଃ । ୬ ।

---

## ୪୬ଶ ସର୍ଗ

(ପୃଥିବୀଭ୍ରମଣବୃତ୍ତାନ୍ତ)

ବାନର ଦଳପତିମାନେ ଚାଲିଯିବା ପରେ ରାମଚନ୍ଦ୍ର ସୁଗ୍ରୀବଙ୍କୁ ପଚାରିଲେ, "ତୁମେ ପୃଥିବୀର ସବୁ ଦେଶକୁ କପରି ଜାଣିଲ ?" । ସୁଗ୍ରୀବ ନମସ୍କାର ହୋଇ ରାମଙ୍କୁ କହିଲେ, "ସବୁକଥା ମୁଁ ବିସ୍ତୃତଭାବରେ କହୁଅଛି ଶୁଣନ୍ତୁ । ୧-୨ ।ଯେତେବେଳେ ମହିଷାକୃତି ଦୁନ୍ଦୁଭି ରାକ୍ଷସର ପଛରେ ବାଲୀ ଗୋଡ଼ାଉଥିଲେ ସେତେବେଳେ ସେ ମଳୟ ପର୍ବତ ଉପରକୁ ପଳାଇଗଲା । ୩ । ମହିଷ ସେତେବେଳେ ମଳୟ ପର୍ବତର ଗୁହାଭିତରେ ପଶିଗଲା ଏବଂ ତାକୁ ମାରିବା ଉଦ୍ଦେଶ୍ୟରେ ବାଲୀ ମଧ୍ୟ ସେହି ଗୁହା ଭିତରେ ପଶିଗଲେ । ୪ । ଅନନ୍ତର ମୁଁ ଗୁହାର ଦ୍ୱାରରେ ବିନୀତଭାବରେ ଅପେକ୍ଷା କରି ରହିଲି । ଏକବର୍ଷକାଳ ବିତିଗଲେ ମଧ୍ୟ ବାଲୀ ତା'ଭିତରୁ ବାହାରିଲେ ନାହିଁ । ୫ । ରକ୍ତଧାରାରେ ସେ ଗୁହା ଭରିଗଲା, ତାହା ଦେଖି ମୁଁ ବିସ୍ମିତ ହେଲି ଏବଂ ଭାଇର ଶୋକରେ ବ୍ୟଥିତ ହୋଇପଡ଼ିଲି । ୬ । ତା'ପରେ ମୋ ମନରେ ସ୍ଥିର

ଅଥାହଂ ଗତବୁଦ୍ଧିସ୍ତୁ ସୁବ୍ୟକ୍ତଂ ନିହତୋ ଗୁରୁଃ ।
ଶିଳା ପର୍ବତ ସଂକାଶା ବିଲଦ୍ୱାରି ମୟା କୃତା । ୭ ।
ଅଶକ୍ନୁବନ୍ନିଷ୍କ୍ରମିତୁଂ ମହିଷୋ ବିନଶିଷ୍ୟତି ।
ତତୋଽହମାଗାଂ କିଷ୍କିନ୍ଧାଂ ନିରାଶସ୍ତସ୍ୟ ଜୀବିତେ । ୮ ।
ରାଜ୍ୟଂ ଚ ସୁମହତ୍ ପ୍ରାପ୍ୟ ତାରାଂ ଚ ରୁମୟା ସହ ।
ମିତ୍ରୈଶ୍ଚ ସହିତସ୍ତସ୍ୟ ବସାମି ବିଗତଜ୍ୱରଃ । ୯ ।
ଆଜଗାମ ତତୋ ବାଲୀ ହତ୍ୱା ତଂ ବାନରର୍ଷଭଃ ।
ତତୋଽହମଦଦାଂ ରାଜ୍ୟଂ ଗୌରବାଦ୍ଭୟଯନ୍ତ୍ରିତଃ । ୧୦ ।
ସ ମାଂ ଜିଘାଂସୁର୍ଦୁଷ୍ଟାତ୍ମା ବାଲୀ ପ୍ରବ୍ୟଥିତେନ୍ଦ୍ରିୟଃ ।
ପରିକାଲୟତେ ବାଲୀ ଧାବନ୍ତଂ ସଚିବୈଃ ସହ । ୧୧ ।
ତତୋଽହଂ ବାଲିନା ତେନ ସୋଽନୁବଦ୍ଧଃ ପ୍ରଧାବିତଃ ।
ନଦୀଶ୍ଚ ବିବିଧାଃ ପଶ୍ୟନ୍ ବନାନି ନଗରାଣି ଚ । ୧୨ ।
ଆଦର୍ଶତଲସଂକାଶା ତତୋ ବୈ ପୃଥିବୀ ମୟା ।
ଅଲାତଚକ୍ରପ୍ରତିମା ଦୃଷ୍ଟ୍ୱା ଗୋଷ୍ପଦବତ୍କୃତା । ୧୩ ।

---

ବିଶ୍ୱାସ ଜନ୍ମିଗଲା ଯେ ମୋର ଗୁରୁ (ବଡ଼ଭାଇ) ମରିଗଲେ । ତା'ପରେ ପର୍ବତ-ଆକାରର ଏକ ଶିଳାଖଣ୍ଡ ମୁଁ ଗୁହାଦ୍ୱାରରେ ମଡ଼ାଇଦେଲି । ୭ । (ମୁଁ ଭାବିଲି) ମହିଷ ଏ ଗୁହାଭିତରୁ ଆଉ ବାହାରି ନ ପାରି ତାରି ଭିତରେ ମରିଯିବ । ଅନନ୍ତର ଭାଇଙ୍କ ଜୀବନ ବିଷୟରେ ନିରାଶ ହୋଇ ମୁଁ କିଷ୍କିନ୍ଧାକୁ ଚାଲିଆସିଲି । ୮ । ତାରା, ରୁମା ଏବଂ ବିଶାଳ ରାଜ୍ୟ ପାଇ ମୁଁ ତାହାଙ୍କର (ବାଳୀର) ମିତ୍ରମାନଙ୍କ ସହିତ ନିଃଶଙ୍କଭାବରେ ବାସ କରିବାକୁ ଲାଗିଲି । ୯ । ବାନରରାଜ ବାଳୀ ଅନନ୍ତର ସେ ରାକ୍ଷସକୁ ହତ୍ୟାକରି ଫେରିଆସିଲେ । ତାଙ୍କପ୍ରତି ସମ୍ମାନ ଏବଂ ଭୟହେତୁରୁ ମୁଁ ତାଙ୍କୁ ରାଜ୍ୟ ଫେରାଇଦେଲି । ୧୦ । ମାତ୍ର ଅତିଶୟ କ୍ରୁଦ୍ଧହୋଇ ସେହି ଦୁଷ୍ଟାତ୍ମା ବାଳୀ ମୋତେ ହତ୍ୟାକରିବା ଉଦ୍ଦେଶ୍ୟରେ ମନ୍ତ୍ରୀମାନଙ୍କ ସହିତ ପଳାଉଥିବା ମୋର ପଛେ ପଛେ ଗୋଡ଼ାଇଲେ । ୧୧ । ନଦୀ, ନଗର ଏବଂ ବନମାନ ଦେଖି ଦେଖି ମୁଁ ପଳାଇବାକୁ ଲାଗିଲି ଏବଂ ସେ ମୋ ପଛେ ପଛେ ଗୋଡ଼ାଇବାକୁ ଲାଗିଲେ ।୧୨। ସେତେବେଳେ ଦର୍ପଣର କାଚପରି ମୁଁ ସମସ୍ତ ପୃଥିବୀକୁ ଦେଖିଲି । ପୃଥିବୀ ସେତେବେଳେ ମୋତେ, ଏକ ନିଆଁ ଖୁଣ୍ଟା ବୁଲାଇଲେ ଯେପରି ଚକ୍ରାକାର ଦେଖାଯାଏ ସେହିପରି ଦେଖାଗଲା । ମୁଁ କ୍ଷୁଦ୍ର ଗୋଷ୍ପଦ ହ୍ରଦପରି ସମସ୍ତ ପୃଥିବୀକୁ ବୁଲିଗଲି ।୧୩।

ପୂର୍ବାଂ ଦିଶଂ ତତୋ ଗତ୍ୱା ପଶ୍ୟାମି ବିବିଧାନ୍ ଦ୍ରୁମାନ୍ ।
ପର୍ବତାନ୍ ସଦରୀନ୍ ରମ୍ୟାନ୍ ସରାଂସି ବିବିଧାନି ଚ ।୧୪।
ଉଦୟଂ ତତ୍ର ପଶ୍ୟାମି ପର୍ବତଂ ଧାତୁମଣ୍ଡିତମ୍ ।
କ୍ଷୀରୋଦଂ ସାଗରଂ ଚୈବ ନିତ୍ୟମପ୍ସରସାଲୟମ୍ ।୧୫।
ପରିକାଲ୍ୟମାନସ୍ତଦା ବାଲିନାଭିଦ୍ରୁତୋ ହ୍ୟହମ୍ ।
ପୁନରାବୃତ୍ୟ ସହସା ପ୍ରସ୍ଥିତୋଽହଂ ତଦା ବିଭୋ ।୧୬।
ଦିଶସ୍ତସ୍ୟାସ୍ତତୋ ଭୂୟଃ ପ୍ରସ୍ଥିତୋ ଦକ୍ଷିଣାଂ ଦିଶମ୍ ।
ବିନ୍ଧ୍ୟପାଦପସଂକୀର୍ଣାଂ ଚନ୍ଦନଦ୍ରୁମଶୋଭିତାମ୍ ।୧୭।
ଦ୍ରୁମଶୈଳାନ୍ତରେ ପଶ୍ୟନ୍ ଭୂୟୋ ଦକ୍ଷିଣତୋଽପରାମ୍ ।
ଅପରାଂ ଚ ଦିଶଂ ପ୍ରାପ୍ତୋ ବାଲିନା ସମଭିଦ୍ରୁତଃ ।୧୮।
ସଂପଶ୍ୟନ୍ ବିବିଧାନ୍ ଦେଶାନସ୍ତଂ ଚ ଗିରିସତ୍ତମମ୍ ।
ପ୍ରାପ୍ୟ ଚାସ୍ତଂ ଗିରିଶ୍ରେଷ୍ଠମୁତ୍ତରଂ ସଂପ୍ରଧାବିତଃ ।୧୯।
ହିମବନ୍ତଂ ଚ ମେରୁଂ ଚ ସମୁଦ୍ରଂ ଚ ତଥୋତ୍ତରମ୍ ।
ଯଦା ନ ବିନ୍ଦେ ଶରଣଂ ବାଲିନା ସମଭିଦ୍ରୁତଃ ।୨୦।
ତତୋ ମାଂ ବୁଦ୍ଧିସଂପନ୍ନୋ ହନୁମାନ୍ ବାକ୍ୟମବ୍ରବୀତ୍ ।
ଇଦାନୀଂ ମେ ସ୍ମୃତଂ ରାଜନ୍ ଯଥା ବାଲୀ ହରୀଶ୍ୱରଃ ।୨୧।

---

ପ୍ରଥମେ ମୁଁ ପୂର୍ବଦିଗକୁ ଗଲି । ସେଠାରେ ମୁଁ ଅନେକପ୍ରକାର ବୃକ୍ଷ, ଗୁହାମାନଙ୍କ ସମେତ ଅନେକ ପର୍ବତ ଏବଂ ହ୍ରଦମାନ ଦେଖିଲି । ୧୪ । ସେଠାରେ ଧାତୁ-ବିଭୂଷିତ ଉଦୟ ପର୍ବତକୁ ମୁଁ ଦେଖିଲି । ସର୍ବଦା ଅପ୍ସରାମାନେ ଯେଉଁଠାରେ ବିହାର କରୁଥାନ୍ତି ସେହି କ୍ଷୀରୋଦ ସମୁଦ୍ରକୁ ମଧ୍ୟ ମୁଁ ସେଠାରେ ଦେଖିଲି । ୧୫ । ବାଲୀଦ୍ୱାରା ପଶ୍ଚାଦ୍ଧାବିତ ହୋଇ ମୁଁ ଖୁବ୍ ଜୋରରେ ଦୌଡ଼ିଲି ଏବଂ ହଠାତ୍ ଫେରିପଡ଼ି ମୁଁ ପୁଣି ଆଗକୁ ଦୌଡ଼ିଲି । ୧୬ । ସେ ଦିଗରୁ ପୁଣି ଦକ୍ଷିଣ ଦିଗକୁ ଗଲି । ସେ ଦିଗରେ ବିନ୍ଧ୍ୟପର୍ବତ ଅଛି, ଅନେକ ବୃକ୍ଷ ଅଛନ୍ତି ଏବଂ ତାହା ଚନ୍ଦନବୃକ୍ଷରେ ଶୋଭାପାଉଅଛି । ୧୭ । ବୃକ୍ଷ ଏବଂ ପର୍ବତମାନଙ୍କ ଅନ୍ତରାଳରୁ ସେ ଦିଗକୁ ଦେଖି ମୁଁ ବାଲୀଦ୍ୱାରା ପ୍ରଧାବିତ ହୋଇ ଅନ୍ୟଦିଗ ପଶ୍ଚିମଦିଗକୁ ପଳାଇଗଲି । ୧୮ । ସେଠାରେ ଅନେକ ସ୍ଥାନ ଦେଖି ଏବଂ ପର୍ବତଶ୍ରେଷ୍ଠ ଅସ୍ତାଚଳ ପର୍ବତକୁ ଦେଖି ଦେଖି ମୁଁ ଉତ୍ତରଦିଗକୁ ଦୌଡ଼ିଲି । ୧୯ । ବାଲୀଦ୍ୱାରା ପ୍ରଧାବିତ ହୋଇ ହିମାଳୟ, ମେରୁପର୍ବତ ଏବଂ ଉତ୍ତର ସମୁଦ୍ରକୁ ଯାଇ ଯେତେବେଳେ ମୁଁ କାହାରିକୁ ଶରଣ କରି ନ ପାଇଲି, ସେତେବେଳେ ବୁଦ୍ଧିମାନ୍ ହନୁମାନ୍ ମୋତେ

**ମତଙ୍ଗେନ ତଦା ଶପ୍ତୋ ହ୍ୟସ୍ମିନ୍ନାଶ୍ରମମଣ୍ଡଳେ ।**
**ପ୍ରବିଶେଦ୍ ଯଦି ବା ବାଲୀ ମୂର୍ଦ୍ଧାସ୍ୟ ଶତଧା ଭବେତ୍ ।୨୨ ।**
**ତତ୍ର ବାସଃ ସୁଖୋଽସ୍ମାକଂ ନିରୁଦ୍‌ବିଗ୍ନୋ ଭବିଷ୍ୟତି ।**
**ତତ୍ର ପର୍ବତମାସାଦ୍ୟ ଋଷ୍ୟମୂକଂ ନୃପାତ୍ମଜ । ୨୩ ।**
**ନ ବିବେଶ ତଦା ବାଲୀ ମତଙ୍ଗସ୍ୟ ଭୟାତ୍ତଦା ।**
**ଏବଂ ମୟା ତଦା ରାଜନ୍ ପ୍ରତ୍ୟକ୍ଷମୁପଲକ୍ଷିତମ୍ ।**
**ପୃଥିବୀମଣ୍ଡଳଂ ସର୍ବଂ ଗୁହାମସ୍ୟାଗତସ୍ତତଃ । ୨୪ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍‌ ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ଭୂମଣ୍ଡଳ ଭ୍ରମଣ କଥନମ୍ ନାମ ଷଟ୍‌ଚତ୍ୱାରିଂଶଃ ସର୍ଗଃ

---

କହିଲେ, "ହେ ରାଜନ୍ ! ବର୍ତ୍ତମାନ ମୋର ଗୋଟିଏ କଥା ମନେପଡ଼ିଲା । ମତଙ୍ଗ ମୁନି ବାନରରାଜ ବାଳୀକୁ ଶାପଦେଇଛନ୍ତି ଯେ ଯଦି ସେ ତାଙ୍କ ଆଶ୍ରମକୁ ଆସିବ ତେବେ ତାର ମସ୍ତକ ଶତଖଣ୍ଡ ହୋଇ ଫାଟିଯିବ ।୨୦-୨୨। ଆମେମାନେ ସେଠାରେ ନିରୁଦ୍‌ବିଗ୍ନଭାବରେ ସୁଖରେ ବାସକରି ପାରିବା"। ହେ ରାଜକୁମାର ! ସେହି ଋଷ୍ୟମୂକ ପର୍ବତରେ ଆମେମାନେ ଉପସ୍ଥିତ ହେବାରୁ ମତଙ୍ଗଙ୍କ ଭୟରେ ବାଳୀ ଆଉ ସେଠାକୁ ପ୍ରବେଶ କଲାନାହିଁ । ହେ ରାଜନ୍ ! ସେ ସମୟରେ ଏହିପ୍ରକାରେ ମୁଁ ସମସ୍ତ ପୃଥିବୀମଣ୍ଡଳକୁ ଦେଖିଥିଲି ଏବଂ ତା'ପରେ ଏ ଗୁହାକୁ ଆସିଥିଲି" । ୨୪ ।

---

# ସପ୍ତଚତ୍ୱାରିଂଶଃ ସର୍ଗଃ

## କପିସେନାପ୍ରତ୍ୟାଗମନମ୍

ଦର୍ଶନାର୍ଥଂ ତୁ ବୈଦେହ୍ୟାଃ ସର୍ବତଃ କପିକୁଞ୍ଜରାଃ ।
ବ୍ୟାଦିଷ୍ଟା କପିରାଜେନ ଯଥୋକ୍ତଂ ଜଗ୍ମୁରଞ୍ଜସା । ୧ ।
ତେ ସରାଂସି ସରିତ୍କକ୍ଷ୍ୟ ନାକାଶଂ ନଗରାଣି ଚ ।
ନଦୀଦୁର୍ଗାଂସ୍ତଥା ଦେଶାନ୍ ବିଚିନ୍ୱନ୍ତି ସମନ୍ତତଃ । ୨ ।
ସୁଗ୍ରୀବେଣ ସମାଖ୍ୟାତାଃ ସର୍ବେ ବାନରଯୂଥପାଃ ।
ତତ୍ର ଦେଶାନ୍ ବିଚିନ୍ୱନ୍ତି ସଶୈଳବନକାନନାନ୍ । ୩ ।
ବିଚିତ୍ୟ ଦିବସଂ ସର୍ବେ ସୀତାଧିଗମନେ ଧୃତାଃ ।
ସମାୟାନ୍ତି ସ୍ମ ମେଦିନ୍ୟାଂ ନିଶାକାଲେଷୁ ବାନରାଃ । ୪ ।
ସର୍ବର୍ତୁକାଂଶ୍ଚ ଦେଶେଷୁ ବାନରାଃ ସଫଲଦ୍ରୁମାନ୍ ।
ଆସାଦ୍ୟ ରଜନୀଂ ଶଯ୍ୟାଂ ଚକ୍ରୁଃ ସର୍ବେଷ୍ୱହଃସୁ ତେ । ୫ ।
ତଦହଃ ପ୍ରଥମଂ କୃତ୍ୱା ମାସେ ପ୍ରସ୍ରବଣଂ ଗତାଃ ।
କପିରାଜେନ ସଂଗମ୍ୟ ନିରାଶାଃ କପିକୁଞ୍ଜରାଃ । ୬ ।

---

## ୪୭ଶ ସର୍ଗ

(କପିସେନାଙ୍କ ପ୍ରତ୍ୟାବର୍ତ୍ତନ)

ଯେଉଁ ମୁଖ୍ୟବାନରମାନଙ୍କୁ ସୀତାଙ୍କୁ ଅନ୍ୱେଷଣ କରିବା ନିମନ୍ତେ ଭିନ୍ନ ଭିନ୍ନ ଦିଗକୁ ଯିବାପାଇଁ ଆଦେଶ ଦିଆଯାଇଥିଲା, ସେମାନେ ସୁଗ୍ରୀବଙ୍କ ଆଜ୍ଞା ଅନୁସାରେ ବେଗରେ ଚାରିଆଡ଼େ ଗମନକଲେ । ୧ । ସେମାନେ ହ୍ରଦ, ନଦୀ, ମଣ୍ଡପ, ଆକାଶ, ନଗର, ପାହାଡ଼ ଏବଂ ଦେଶମାନଙ୍କରେ ଏଣେତେଣେ ତନ୍ନ ତନ୍ନ କରି ଖୋଜିଲେ । ୨ । ସୁଗ୍ରୀବଙ୍କ ଦ୍ୱାରା ଆଦିଷ୍ଟ ହୋଇ ସକଳ ବାନରଦଳପତି ପର୍ବତ ଏବଂ କାନନ ସହିତ ସେ ସବୁ ଦେଶମାନଙ୍କୁ ଖୋଜିଲେ । ୩ । ସୀତାଙ୍କୁ ପାଇବା ଉଦ୍ଦେଶ୍ୟରେ ଦିନଯାକ ଖୋଜି ଖୋଜି ରାତିକାଳରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସେମାନେ ଏକତ୍ର ହେଉଥିଲେ । ୪ । ସେହି ବାନରମାନେ ଦେଶମାନଙ୍କରେ ସବୁ ଋତୁରେ ଫଳ ପ୍ରଦାନ କରୁଥିବା ବୃକ୍ଷମାନଙ୍କ ନିକଟକୁ ଯାଇ ପ୍ରତିଦିନ ରାତିରେ ସେହିଠାରେ ଶୋଉଥିଲେ । ୫ । ସେହିଦିନଠାରୁ ଏକ ମାସ ପୂର୍ତ୍ତି ହେବାରେ ବାନର ସେନାପତିମାନେ ନିରାଶ ହୋଇ ସେହି ପ୍ରସ୍ରବଣ ପର୍ବତ ଉପରେ ଆସି ସୁଗ୍ରୀବଙ୍କ

ବିଚିତ୍ୟ ତୁ ଦିଶଂ ପୂର୍ବାଂ ଯଥୋକ୍ତାଂ ସଚିବୈଃ ସହ ।
ଅଦୃଷ୍ଟ୍ୱା ବିନତଃ ସୀତାମାଜଗାମ ମହାବଲଃ । ୭ ।
ଦିଶମପ୍ୟୁତ୍ତରାଂ ସର୍ବାଂ ବିଚିତ୍ୟ ସ ମହାକପିଃ ।
ଆଗତଃ ସହ ସୈନ୍ୟେନ ଭୀତଃ ଶତବଲିସ୍ତଦା । ୮ ।
ସୁଷେଣଃ ପଶ୍ଚିମାମାଶାଂ ବିଚିତ୍ୟ ସହ ବାନରୈଃ ।
ସମେତ୍ୟ ମାସେ ପୂର୍ଣ୍ଣେ ତୁ ସୁଗ୍ରୀବମୁପଚକ୍ରମେ । ୯ ।
ତଂ ପ୍ରସ୍ରବଣପୃଷ୍ଠସ୍ଥଂ ସମାସାଦ୍ୟାଭିବାଦ୍ୟ ଚ । ସ୍ମ
ଆସୀନଂ ସହ ରାମେଣ ସୁଗ୍ରୀବମିଦମବ୍ରୁବନ୍ । ୧୦ ।
ବିଚିତାଃ ପର୍ବତାଃ ସର୍ବେ ବନାନି ଗହନାନି ଚ ।
ନିମ୍ନଗାଃ ସାଗରାନ୍ତାଶ୍ଚ ସର୍ବେ ଜନପଦାଶ୍ଚ ଯେ । ୧୧ ।
ଗୁହାଶ୍ଚ ବିଚିତାଃ ସର୍ବା ଯାଶ୍ଚ ତେ ପରିକୀର୍ତ୍ତିତାଃ ।
ବିଚିତାଶ୍ଚ ମହାଗୁଲ୍ମା ଲତାବିତତସନ୍ତତାଃ । ୧୨ ।
ଗହନେଷୁ ଚ ଦେଶେଷୁ ଦୁର୍ଗେଷୁ ବିଷମେଷୁ ଚ ।
ସତ୍ତ୍ୱାନ୍ୟତିପ୍ରମାଣାନି ବିଚିତାନି ହତାନି ଚ ।
ଯେ ଚୈବ ଗହନା ଦେଶା ବିଚିତାସ୍ତେ ପୁନଃ ପୁନଃ । ୧୩ ।

---

ସହିତ ମିଳିତ ହେଲେ । ୭ । ମହାବଳୀ ବିନତ ସୁଗ୍ରୀବଙ୍କ କହିଥିବା ଅନୁସାରେ ମନ୍ତ୍ରୀମାନଙ୍କ ସହିତ ପୂର୍ବଦିଗ ଖୋଜି ସୀତାଙ୍କୁ ନ ଦେଖି ଫେରି ଆସିଲେ ।୭। ତା'ପରେ ମୁଖ୍ୟ କପି ଶତବଳି ମଧ୍ୟ ସୈନ୍ୟମାନଙ୍କ ସହିତ ସମସ୍ତ ଉତ୍ତର ଦିଗ ଖୋଜିସାରି ଭୟରେ ଫେରିଆସିଲେ ।୮। ସୁଷେଣ ମଧ୍ୟ ସମସ୍ତ ବାନରଙ୍କ ସହିତ ପଶ୍ଚିମ ଦିଗ ଖୋଜି ଏକ ମାସ ପୂର୍ଣ୍ଣ ହେବାରେ ସୁଗ୍ରୀବଙ୍କ ନିକଟରେ ଆସି ପହଞ୍ଚିଲେ । ୯ । ପ୍ରସ୍ରବଣ ପର୍ବତ ଉପରେ ରାମଚନ୍ଦ୍ରଙ୍କ ପାଖରେ ବସିଥିବା ସୁଗ୍ରୀବଙ୍କ ନିକଟକୁ ଆସି ଏବଂ ତାଙ୍କୁ ପ୍ରଣାମ କରି ବାନରମାନେ ସମସ୍ତେ କହିଲେ । ୧୦ । "ସବୁ ପର୍ବତ, ନିବିଡ଼ ଅରଣ୍ୟ, ସବୁ ନଦୀ ଏବଂ ସମୁଦ୍ରତୀର ପର୍ଯ୍ୟନ୍ତ ସମସ୍ତ ଦେଶ ଖୋଜାଗଲା । ୧୧ । ତୁମେ ଯେଉଁ ସବୁ ଗୁହାମାନଙ୍କ କଥା କହିଥିଲ ସେ ସମସ୍ତ ମଧ୍ୟ ଖୋଜା ହୋଇଅଛି; ସାନ୍ଦ୍ର ଲତାପୂର୍ଣ୍ଣ ମହାଗୁଳ୍ମମାନଙ୍କୁ ମଧ୍ୟ ଖୋଜିଲୁଁ; ବନ, ଦେଶ ଏବଂ ବିଷମ ଦୁର୍ଗମ ସ୍ଥାନକୁ ମଧ୍ୟ ଖୋଜିଲୁଁ; ଅନେକ ଅଦ୍ଭୁତ ଜନ୍ତୁମାନଙ୍କୁ ମଧ୍ୟ ଖୋଜିଲୁଁ ଏବଂ ସେମାନଙ୍କୁ ମାରିଦେଲୁଁ । ଯେଉଁସବୁ

ଉଦାରସତ୍ତ୍ୱାଭିଜନୋ ହନୂମାନ୍
ସ ମୈଥିଲୀଂ ଜ୍ଞାସ୍ୟତି ବାନରେନ୍ଦ୍ରଃ ।
ଦିଶଂ ତୁ ଯାମେବ ଗତା ତୁ ସୀତା
ତାମାସ୍ଥିତୋ ବାୟୁସୁତୋ ହନୂମାନ୍ ।୧୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ କପିସେନାପ୍ରତ୍ୟାଗମନଂ
ନାମ ସପ୍ତଚତ୍ୱାରିଂଶଃ ସର୍ଗଃ

---

---

ଦୁର୍ଗମ ଦେଶ, ତାକୁ ବାରମ୍ବାର ଖୋଜିଲୁଁ । ୧୨-୧୩ । କୁଳୀନ ଏବଂ ବଳବାନ୍ କପିଶ୍ରେଷ୍ଠ ହନୁମାନଙ୍କୁ ସୀତାଙ୍କର ସନ୍ଧାନ ପାଇବେ; କାରଣ ସୀତା ଯେଉଁ ଦିଗକୁ ଯାଇଛନ୍ତି ସେହି ଦିଗକୁ ବାୟୁପୁତ୍ର ହନୁମାନ୍ ଯାଇଅଛନ୍ତି" । ୧୪ ।

---

# ଅଷ୍ଟଚତ୍ୱାରିଂଶଃ ସର୍ଗଃ

## କଣ୍ଡୂବନାଦ୍ଵିଚୟଃ

ସହ ତାରାଙ୍ଗଦାଭ୍ୟାଂ ତୁ ସହସା ହନୂମାନ୍ କପିଃ ।
ସୁଗ୍ରୀବେଣ ଯଥୋଦ୍ଦିଷ୍ଟଂ ଗନ୍ତୁଂ ଦେଶଂ ପ୍ରଚକ୍ରମେ । ୧ ।
ସ ତୁ ଦୂରମୁପାଗମ୍ୟ ସର୍ବୈସ୍ତୈଃ କପିସତ୍ତମୈଃ ।
ତତୋ ବିଚିତ୍ୟ ବିନ୍ଧ୍ୟସ୍ୟ ଗୁହାଶ୍ଚ ଗହନାନି ଚ । ୨ ।
ପର୍ବତାଗ୍ରନଦୀଦୁର୍ଗାନ୍ ସରାଂସି ବିପୁଲଦ୍ରୁମାନ୍ ।
ବୃକ୍ଷଖଣ୍ଡାଂଶ୍ଚ ବିବିଧାନ୍ ପର୍ବତାନ୍ ବନପାଦପାନ୍ । ୩ ।
ଅନ୍ୱେଷମାଣାସ୍ତେ ସର୍ବେ ବାନରାଃ ସର୍ବତୋ ଦିଶମ୍ ।
ନ ସୀତାଂ ଦଦୃଶୁର୍ବୀରା ମୈଥିଲୀଂ ଜନକାତ୍ମଜାମ୍ । ୪ ।
ତେ ଭକ୍ଷୟନ୍ତୋ ମୂଲାନି ଫଲାନି ବିବିଧାନ୍ୟପି ।
ଅନ୍ୱେଷମାଣା ଦୁର୍ଧର୍ଷା ନ୍ୟବସଂସ୍ତତ୍ର ତତ୍ର ହ । ୫ ।
ସ ତୁ ଦେଶୋ ଦୁରନ୍ୱେଷୋ ଗୁହାଗହନବାନ୍ମହାନ୍ ।
ନିର୍ଜଲଂ ନିର୍ଜନଂ ଶୂନ୍ୟଂ ଗହନଂ ଘୋରଦର୍ଶନମ୍ । ୬ ।

---

## ୪୮ଶ ସର୍ଗ

(କଣ୍ଡୂବନ ଅନ୍ୱେଷଣ)

ବାନରଶ୍ରେଷ୍ଠ ହନୂମାନ୍ ତାର ଏବଂ ଅଙ୍ଗଦଙ୍କ ସହିତ ସୁଗ୍ରୀବ ବତାଇ ଦେଇଥିବା ଦେଶକୁ ଯିବା ନିମନ୍ତେ ଶୀଘ୍ର ବାହାରିଲେ । ୧ । ସେ ସେହି ବାନରମାନଙ୍କ ସହିତ ବହୁତ ଦୂର ଆସି ସେଠାରେ ବିନ୍ଧ୍ୟାଚଳର ଗୁହା ଏବଂ ଅରଣ୍ୟମାନଙ୍କୁ ଖୋଜି ପର୍ବତର ଅଗ୍ରଦେଶରେ ଥିବା ଦୁର୍ଗମ ନଦୀ, ହ୍ରଦମାନଙ୍କୁ ଏବଂ ବିଶାଳ ବୃକ୍ଷମାନଙ୍କୁ ତଥା ଅନେକ ପର୍ବତ ଏବଂ ଜଙ୍ଗଲି ବୃକ୍ଷମାନଙ୍କୁ ସବୁ ଆଡ଼େ ଭଲକରି ଖୋଜିଲେ; ମାତ୍ର ବାନରମାନେ ଜନକଦୁହିତା ମୈଥିଳୀ ସୀତାଙ୍କୁ କୌଣସିଠାରେ ଦେଖିଲେ ନାହିଁ । ୨-୪ । ଅନେକ ପ୍ରକାର ଫଳମୂଳ ଖାଇ ଏବଂ ସୀତାଙ୍କୁ ଖୋଜି ଖୋଜି ସେହି ଅଜେୟ ବାନରମାନେ ଯେଉଁଠି ଇଚ୍ଛା ସେଠ

ତାଦୃଶାନ୍ୟପ୍ୟରଣ୍ୟାନି ବିଚିତ୍ୟ ଭୃଶପୀଡ଼ିତାଃ ।
ସ ଦେଶସ୍ତୁ ଦୁରନ୍ୱେଷୋ ଗୁହାଗହନବାନ୍ନିହାନ୍ । ୭ ।
ତ୍ୟକ୍ତ୍ୱା ତୁ ତଂ ତତୋ ଦେଶଂ ସର୍ବେ ବୈ ହରିଯୂଥପାଃ ।
ଦେଶମନ୍ୟଂ ଦୁରାଧର୍ଷଂ ବିବିଶୁଶ୍ଚାକୁତୋଭୟାଃ । ୮ ।
ଯତ୍ର ବନ୍ଧ୍ୟଫଲା ବୃକ୍ଷା ବିପୁଷ୍ପାଃ ପର୍ଣ୍ଣବର୍ଜିତାଃ
ନିସ୍ତୋୟାଃ ସରିତୋ ଯତ୍ର ମୂଳଂ ଯତ୍ର ସୁଦୁର୍ଲଭମ୍ । ୯ ।
ନ ସନ୍ତି ମହିଷା ଯତ୍ର ନ ମୃଗା ନ ଚ ହସ୍ତିନଃ ।
ଶାର୍ଦ୍ଦୂଳାଃ ପକ୍ଷିଣୋ ବାପି ଯେ ଚାନ୍ୟେ ବନଗୋଚରାଃ ।୧୦ ।
ନ ଚାତ୍ର ବୃକ୍ଷା ନୌଷଧ୍ୟୋ ନ ଲତା ନାପି ବୀରୁଧଃ ।
ସ୍ନିଗ୍ଧପତ୍ରାଃ ସ୍ଥଳେ ଯତ୍ର ପଦ୍ମିନୀଃ ଫୁଲ୍ଲପଙ୍କଜାଃ । ୧୧ ।
ପ୍ରେକ୍ଷଣୀୟାଃ ସୁଗନ୍ଧାଶ୍ଚ ଭ୍ରମରୈଶ୍ଚ ବିବର୍ଜିତାଃ ।
କଣ୍ଡୁର୍ନାମ ମହାଭାଗଃ ସତ୍ୟବାଦୀ ତପୋଧନଃ ।୧୨ ।
ମହର୍ଷିଃ ପରମାମର୍ଷୀ ନିୟମୈର୍ଦୁଷ୍ପ୍ରଧର୍ଷଣଃ ।
ତସ୍ୟ ତସ୍ମିନ୍ ବନେ ପୁତ୍ରୋ ବାଳକୋ ଦଶବାର୍ଷିକଃ । ୧୩ ।

---

ଉଦ୍ୱିଗ୍ନ ହୋଇଥିଲେ । ନିର୍ଜଳ, ନିର୍ଜନ ଅରଣ୍ୟପୂର୍ଣ୍ଣ ଏବଂ ଦେଖିବାକୁ ଭୟଙ୍କର ସ୍ଥାନମାନଙ୍କୁ ତଥା ଅନ୍ୟାନ୍ୟ ଅରଣ୍ୟମାନଙ୍କୁ ଅତି କଷ୍ଟରେ ସହିତ ସେ ବାନରମାନେ ଖୋଜିଲେ । ସେସବୁ ଅଞ୍ଚଳ ବଡ଼ ଗୁହା ଓ ନିବିଡ଼ ଅରଣ୍ୟପୂର୍ଣ୍ଣ ଥିବାରୁ ସେ ସ୍ଥାନମାନ ଖୋଜିବା ଅତ୍ୟନ୍ତ ଅସମ୍ଭବ ଥିଲା । ୫-୭ । ଅନନ୍ତର ସବୁ ବାନରଦଳପତିମାନେ ସେ ଦେଶ ଛାଡ଼ି ନିର୍ଭିକଭାବରେ ଅନ୍ୟ ଦୁର୍ଗମ ଦେଶ ମଧ୍ୟରେ ପ୍ରବେଶ କଲେ । ୮ । ସେ ଦେଶର ବୃକ୍ଷମାନଙ୍କରେ ଫଳ ହୁଏ ନାହିଁ, ଫୁଲ ନ ଥାଏ, କି ପତ୍ର ନ ଥାଏ । ସେଠାରେ ନଦୀମାନଙ୍କରେ ପାଣି ନାହିଁ ବା ମୂଳ ମଧ୍ୟ ସେଠାରେ ମିଳିବା ଅତି ଦୁର୍ଲଭ । ୯ । ସେଠାରେ ମହିଷ, ମୃଗ, ହାତୀ, ବାଘ, ପକ୍ଷୀ ବା ଅନ୍ୟ କୌଣସି ବନଚର ପ୍ରାଣୀ ନ ଥିଲେ ।୧୦। ସେଠାରେ ବୃକ୍ଷ ନ ଥିଲା, କି ଔଷଧି ନ ଥିଲା, କି ଲତା ବା ଗୁଳ୍ମ ଆଦି କିଛି ନ ଥିଲା । ସେ ସ୍ଥାନରେ ସରୋବରମାନଙ୍କରେ ସ୍ନିଗ୍ଧ ପତ୍ରବିଶିଷ୍ଟ ଦର୍ଶନୀୟ ସୁଗନ୍ଧ ପଦ୍ମଫୁଲମାନ ଫୁଟିଥିଲା; ମାତ୍ର ସେଥିରେ ଭ୍ରମର ଆଦୌ ନ ଥିଲେ । କଣ୍ଡୁ ନାମକ ଜଣେ ପୂଜନୀୟ ସତ୍ୟବାଦୀ ତପସ୍ୱୀ ସେଠାରେ ଥିଲେ । ୧୧-୧୨ । ସେ ମହର୍ଷି ବଡ଼ କ୍ରୋଧୀ ଥିଲେ ଏବଂ ନିୟମ କଠୋରତାରେ ତାଙ୍କୁ କେହି ଜିଣିପାରିବ ନାହିଁ । ସେ

ପ୍ରନଷ୍ଟୋ ଜୀବିତାନ୍ତାୟ କ୍ରୁଦ୍ଧସ୍ତେନ ମହାମୁନିଃ ।
ତେନ ଧର୍ମାତ୍ମନା ଶପ୍ତଂ କୃତ୍ସ୍ନଂ ତତ୍ର ମହଦ୍ ବନମ୍ । ୧୪ ।
ଅଶରଣ୍ୟଂ ଦୁରାଧର୍ଷଂ ମୃଗପକ୍ଷିବିବର୍ଜିତମ୍ ।
ତସ୍ୟ ତେ କାନନାନ୍ତାଂସ୍ତୁ ଗିରୀଣାଂ କନ୍ଦରାଣି ଚ । ୧୫ ।
ପ୍ରଭବାଣି ନଦୀନାଞ୍ଚ ବିଚିନ୍ୱନ୍ତି ସମାହିତାଃ ।
ତତ୍ର ଚାପି ମହାତ୍ମାନୋ ନାପଶ୍ୟନ୍ ଜନକାତ୍ମଜାମ୍ । ୧୬ ।
ହର୍ତାରଂ ରାବଣଂ ଚାପି ସୁଗ୍ରୀବପ୍ରିୟକାରିଣଃ ।
ତେ ପ୍ରବିଶ୍ୟାଶୁ ତଂ ଭୀମଂ ଲତାଗୁଲ୍ମସମାବୃତମ୍ । ୧୭ ।
ଦଦୃଶୁର୍ଭୀମକର୍ମାଣମସୁରଂ ସୁରନିର୍ଭୟମ୍ ।
ତଂ ଦୃଷ୍ଟ୍ୱା ବାନରା ଘୋରଂ ସ୍ଥିତଂ ଶୈଳମିବାସୁରମ୍ । ୧୮ ।
ଗାଢ଼ଂ ପରିହିତାଃ ସର୍ବେ ଦୃଷ୍ଟ୍ୱା ତଂ ପର୍ବତୋପମମ୍ ।
ସୋଽପି ତାନ୍ ବାନରାନ୍ ସର୍ବାନ୍ନଷ୍ଟାଃ ସ୍ଥେତ୍ୟବ୍ରବୀଦ୍‌ବଲୀ ।୧୯।
ଅଭ୍ୟଧାବତ ସଂକ୍ରୁଦ୍ଧୋ ମୁଷ୍ଟିମୁଦ୍ୟମ୍ୟ ସଙ୍ଗତମ୍ ।
ତମାପତନ୍ତଂ ସହସା ବାଲୀପୁତ୍ରୋଽଙ୍ଗଦସ୍ତଦା । ୨୦ ।

---

ବନରେ ତାଙ୍କର ଦଶବର୍ଷର ଗୋଟିଏ ବାଳକ ପୁତ୍ର ମରିଗଲା । ସେଥିରେ ସେ ମହାମୁନି କ୍ରୁଦ୍ଧହୋଇ ସେହି ମହାବନର ବିନାଶ ନିମନ୍ତେ ତାହାକୁ ଶାପ ଦେଲେ । ୧୩-୧୪ । ନିଷ ଅରଣ୍ୟ ରହିବାର ଅଯୋଗ୍ୟ, ପ୍ରବେଶ କରିବାର ଅଯୋଗ୍ୟ ଏବଂ ମୃଗପକ୍ଷୀ ବିବର୍ଜିତ ହୋଇଗଲା । ସେ ବନର ସୀମାମାନଙ୍କୁ, ପର୍ବତକନ୍ଦରମାନଙ୍କୁ ଏବଂ ନଦୀମାନଙ୍କର ଉତ୍ପତ୍ତିସ୍ଥାନମାନଙ୍କୁ ଅତି ଯତ୍ନରେ ସହିତ ସେ ବାନରମାନେ ଖୋଜିଲେ; ମାତ୍ର ସେଠାରେ ମଧ୍ୟ ଜନକଦୁହିତାଙ୍କୁ ଦେଖିଲେ ନାହିଁ । ୧୫-୧୬ । ସୁଗ୍ରୀବଙ୍କ ପ୍ରିୟସାଧନକାରୀ ସେହି ବାନରମାନେ ସୀତାଙ୍କ ଅପହରଣକାରୀ ରାବଣକୁ ମଧ୍ୟ ଦେଖିଲେ ନାହିଁ । ସେମାନେ ସେହି ଭୀଷଣ ଲତାଗୁଳ୍ମପୂର୍ଣ୍ଣ ବନରେ ପ୍ରବେଶ କରି ଦେବତାମାନଙ୍କୁ ଭୟ ନ କରୁଥିବା ଏକ ଭୀଷଣ କର୍ମକାରୀ ଅସୁରକୁ ପର୍ବତାକାରରେ ବସିଥିବାର ଦେଖିଲେ । ୧୭-୧୮ । ସେହି ପର୍ବତୋପମ ଅସୁରକୁ ଦେଖି, ସେମାନେ ସମସ୍ତେ ଲୁଗାପଟା କଷାକଷି କରି ପ୍ରସ୍ତୁତ ହୋଇଗଲେ । ସେହି ବଳବାନ୍ ଅସୁର ମଧ୍ୟ ଏହି ବାନରମାନଙ୍କୁ ଦେଖି କହିଲା, "ତୁମେ ସମସ୍ତେ ମଲ" । ୧୯ । ସେ କ୍ରୋଧକରି ମୁଠି ଉଠାଇ ଏମାନଙ୍କ ଆଡ଼କୁ ଦୌଡ଼ିଲା । ତାହାକୁ ଆକ୍ରମଣ କରୁଥିବାର ଦେଖି ବାଳୀପୁତ୍ର ଅଙ୍ଗଦ 'ଏହି ରାବଣ'

ରାବଣୋଽପ୍ୟମିତ ଜ୍ଞାତ୍ୱା ତଳେନାଭିଜଘାନ ହ ।
ସ ବାଲୀ ପୁତ୍ରାଭିହତୋ ବକ୍ତ୍ରାଚ୍ଛୋଣିତମୁଦ୍ୱମନ୍ । ୨୧ ।
ଅସୁରୋ ନ୍ୟପତଦ୍ ଭୂମୌ ପର୍ଯ୍ୟସ୍ତ ଇବ ପର୍ବତଃ ।
ତେ ତୁ ତସ୍ମିନ୍ନିରୁଚ୍ଛ୍ୱାସେ ବାନରା ଜିତକାଶିନଃ ।୨୨ ।
ବ୍ୟଚିନ୍ୱନ୍ ପ୍ରାୟଶସ୍ତତ୍ର ସର୍ବଂ ତେ ଗିରିଗହ୍ୱରମ୍ ।
ବିଚିତଂ ତୁ ତତଃ ସର୍ବଂ ସର୍ବେ ତେ କାନନୌକସଃ । ୨୩ ।
ଅନ୍ୟଦେବାପରଂ ଘୋରଂ ବିବିଶୁର୍ଗିରିଗହ୍ୱରଂ ।
ତେ ବିଚିତ୍ୟ ପୁନଃ ଖିନ୍ନା ବିନିଷ୍ପତ୍ୟ ସମାଗତାଃ ।
ଏକାନ୍ତେ ବୃକ୍ଷମୂଲେ ତୁ ନିଷେଦୁର୍ଦୀନମାନସାଃ । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ କଣ୍ଡୁବନାଦିବିଚୟଃ
ନାମ ଅଷ୍ଟଚତ୍ୱାରିଂଶଃ ସର୍ଗଃ

---

ବୋଲି ବିଗୁରି ଗୁସ୍ସାଟିଏ ମାରିଲି । ଅଙ୍ଗଦର ମାଡ଼ ଖାଇ ସେ ଅସୁର ମୁହଁରୁ ରକ୍ତବାନ୍ତି କରି, ଭାଙ୍ଗିଯାଇଥିବା ପର୍ବତପରି ଭୂମି ଉପରେ ପଡ଼ିଗଲା । ସେ ଅସୁରର ଶ୍ୱାସ ବନ୍ଦ ହୋଇଯିବାରୁ (ଅର୍ଥାତ୍ ସେ ମରିଯିବାରୁ) ବାନରମାନେ ବିଜୟ ପ୍ରକାଶ କଲେ ଏବଂ ସେଠାରେ ପ୍ରାୟ ସମସ୍ତ ପର୍ବତଗହ୍ୱରକୁ ଏବଂ ଅନ୍ୟ ସମସ୍ତ ବିଜନ ସ୍ଥାନମାନଙ୍କୁ ବାନରମାନେ ସମସ୍ତେ ଖୋଜିଲେ । ୨୦-୨୩ । ତା'ପରେ ସେମାନେ ଆଉରି ଗୋଟିଏ ଭୀଷଣ ଗିରିଗହ୍ୱରରେ ପ୍ରବେଶ କଲେ । ତାହାକୁ ଖୋଜିସାରି ସେମାନେ କଷ୍ଟରେ ସେଠାରୁ ବାହାରି ଅତି ଦୁଃଖିତମନରେ ଗୋଟିଏ ନିର୍ଜନ ବୃକ୍ଷମୂଳରେ ଆସି ବସିଗଲେ । ୨୪ ।

---

# ଏକୋନପଞ୍ଚାଶଃ ସର୍ଗଃ

## ରଜତପର୍ବତବିଚୟଃ

ଅଥାଙ୍ଗଦସ୍ତଦା ସର୍ବାନ୍ ବାନରାନିଦମବ୍ରବୀତ୍ ।
ପରିଶ୍ରାନ୍ତୋ ମହାପ୍ରାଜ୍ଞଃ ସମାଶ୍ୱାସ୍ୟ ଶନୈର୍ବଚଃ । ୧ ।
ବନାନି ଗିରୟୋ ନଦ୍ୟୋ ଦୁର୍ଗାଣି ଗହନାନି ଚ ।
ଦରୀଗିରିଗୁହାଶ୍ଚୈବ ବିଚିତାଃ ସର୍ବମନ୍ତତଃ । ୨ ।
ତତ୍ର ତତ୍ର ସହାସ୍ମାଭିର୍ଜାନକୀ ନ ଚ ଦୃଶ୍ୟତେ ।
ତଥା ରକ୍ଷୋଽପହର୍ତ୍ତା ଚ ସୀତାୟାଶ୍ଚୈବ ଦୁଷ୍କୃତୀ । ୩ ।
କାଲଶ୍ଚ ନୋ ମହାନ୍ ଯାତଃ ସୁଗ୍ରୀବଶ୍ଚୋଗ୍ରଶାସନଃ ।
ତସ୍ମାଦ୍ଭବନ୍ତଃ ସହିତା ବିଚିନ୍ୱନ୍ତୁ ସମନ୍ତତଃ । ୪ ।
ବିହାୟ ତନ୍ଦ୍ରାଂ ଶୋକଂ ଚ ନିଦ୍ରାଂ ଚୈବ ସମୁତ୍ଥିତାମ୍ ।
ବିଚିନ୍ୱଧ୍ୱଂ ତଥା ସୀତାଂ ପଶ୍ୟାମୋ ଜନକାତ୍ମଜାମ୍ । ୫ ।
ଅନିର୍ବେଦଂ ଚ ଦାକ୍ଷ୍ୟଂ ଚ ମନସଶ୍ଚାପରାଜୟମ୍ ।
କାର୍ଯସିଦ୍ଧିକରାଣ୍ୟାହୁସ୍ତସ୍ମାଦେତଦ୍ବ୍ରବୀମ୍ୟହମ୍ । ୬ ।

---

## ୪୯ଶ ସର୍ଗ

(ରଜତପର୍ବତ ଅନ୍ୱେଷଣ)

ଅନନ୍ତର ବୁଦ୍ଧିମାନ୍ ପରିଶ୍ରାନ୍ତ ଅଙ୍ଗଦ ସମସ୍ତ ବାନରଙ୍କୁ ଆଶ୍ୱାସନା ଦେଇ ଆସ୍ତେ ଆସ୍ତେ ଏହି କଥା କହିଲେ ।୧। "ବନ, ପର୍ବତ, ନଦୀ ଏବଂ ଦୁର୍ଗମ, ଗହନ ସ୍ଥାନମାନ ଏବଂ ପର୍ବତଗୁହାମାନ ଆମେମାନେ ଖୁବ୍ ଭଲକରି ଖୋଜିଲେଣି । ୨ । ମାତ୍ର ସେସବୁ ସ୍ଥାନରେ କେଉଁଠାରେ ଆମେମାନେ ସୀତାଙ୍କୁ ଦେଖିଲେଣି ନାହିଁ ବା ସୀତାଙ୍କ ଅପହରଣକାରୀ ଦୁରାତ୍ମା ରାକ୍ଷସକୁ ମଧ୍ୟ ଦେଖିଲେଣି ନାହିଁ । ୩ । ଆମମାନଙ୍କର ନିର୍ଦ୍ଦିଷ୍ଟକାଳ ବିତିଗଲାଣି । ସୁଗ୍ରୀବ ଅତିଶୟ କଠୋର ଶାସନକାରୀ ଅଟନ୍ତି ; ସୁତରାଂ ଆପଣମାନେ ସମସ୍ତେ ମିଶି ଚାରିଆଡ଼େ ଭଲ କରି ଅନୁସନ୍ଧାନ କରନ୍ତୁ । ୪ । ତନ୍ଦ୍ରା, ଶୋକ ଏବଂ ଉପସ୍ଥିତ ନିଦ୍ରା ତ୍ୟାଗକରି ଆପଣମାନେ ଏପରି-ଭାବରେ ସୀତାଙ୍କୁ ଖୋଜନ୍ତୁ, ଯେପରି ଆମେ ନିଶ୍ଚୟ ତାଙ୍କୁ ପାଇପାରିବା । ୫ । ବିଷାଦହୀନତା, ନିପୁଣତା ଏବଂ ମନର ଅଜେୟତା ଏହି ସବୁଦ୍ୱାରା କାର୍ଯ୍ୟସିଦ୍ଧି ହୁଏ । ସେଥିହେତୁରୁ ମୁଁ ଆପଣମାନଙ୍କୁ ଏକଥା କହୁଛି ।୬। ହେ ବାନରଗଣ !

ଅଦ୍ୟାପୀଦଂ ବନଂ ଦୁର୍ଗଂ ବିଚିନ୍ୱନ୍ତୁ ବନୌକସଃ ।
ଖେଦଂ ତ୍ୟକ୍ତ୍ୱା ପୁନଃ ସର୍ବଂ ବନମେବ ବିଚିନ୍ୱତାମ୍ ।୭।
ଅବଶ୍ୟଂ କୁର୍ବତାଂ ତସ୍ୟ ଦୃଶ୍ୟତେ କର୍ମଣଃ ଫଲମ୍ ।
ପରଂ ନିର୍ବେଦମାଗମ୍ୟ ନ ହି ନୋନ୍ମୀଲନଂ କ୍ଷମମ୍ ।୮।
ସୁଗ୍ରୀବଃ କ୍ରୋଧନୋ ରାଜା ତୀକ୍ଷ୍ଣଦଣ୍ଡଶ୍ଚ ବାନରାଃ ।
ଭେତବ୍ୟଂ ତସ୍ୟ ସତତଂ ରାମସ୍ୟ ଚ ମହାତ୍ମନଃ ।୯।
ହିତାର୍ଥମେତଦୁକ୍ତଂ ବଃ କ୍ରିୟତାଂ ଯଦି ରୋଚତେ ।
ଉଚ୍ୟତାଂ ହି କ୍ଷମଂ ଯତ୍ତତ୍ସର୍ବେଷାମେବ ବାନରାଃ ।୧୦।
ଅଙ୍ଗଦସ୍ୟ ବଚଃ ଶ୍ରୁତ୍ୱା ବଚନଂ ଗନ୍ଧମାଦନଃ ।
ଉବାଚ ବ୍ୟକ୍ତୟା ବାଚା ପିପାସାଶ୍ରମଖିନ୍ନୟା ।୧୧।
ସଦୃଶଂ ଖଲୁ ବୋ ବାକ୍ୟମଙ୍ଗଦୋ ଯଦୁବାଚ ହ ।
ହିତଂ ଚୈବାନୁକୂଲଂ ଚ କ୍ରିୟତାମସ୍ୟ ଭାଷିତମ୍ ।୧୨।
ପୁନର୍ମାର୍ଗାମହେ ଶୈଲାନ୍ କନ୍ଦରାଂଶ୍ଚ ଶିଳାସ୍ତଥା ।
କାନନାନି ଚ ଶୂନ୍ୟାନି ଗିରିପ୍ରସ୍ରବଣାନି ଚ ।୧୩।

---

ଏ ବନକୁ ଆପଣମାନେ ଆଜହିଁ ଅନୁସନ୍ଧାନ କରନ୍ତୁ । ଖେଦ ଛାଡ଼ି ପୁଣି ଥରେ ସମଗ୍ର ବନକୁ ଖୋଜନ୍ତୁ ।୭। କର୍ମ କରିବାର ଫଳ ଅବଶ୍ୟ କର୍ତ୍ତାକୁ ମିଳିବ; ମାତ୍ର ଉଦାସୀନ ହୋଇ ଚୁପ୍‌ଚାପ ବସିପଡ଼ିଲେ ପୁଣି ଉତ୍ସାହ ଲାଭ କରିବା ସମ୍ଭବ ନୁହେଁ ।୮। ହେ ବାନରଗଣ ! ରାଜା ସୁଗ୍ରୀବ କ୍ରୋଧୀ ଏବଂ ସେ କଠୋର ଦଣ୍ଡ ଦିଅନ୍ତି, ସୁତରାଂ ତାଙ୍କୁ ଏବଂ ମହାତ୍ମା ରାମଚନ୍ଦ୍ରଙ୍କୁ ସର୍ବଦା ଭୟ କରିବା ଉଚିତ ।୯। ତୁମମାନଙ୍କର ମଙ୍ଗଳ ନିମନ୍ତେ ମୁଁ ଏ କଥା କହିଲି । ଯଦି ତୁମମାନଙ୍କ ମନକୁ ପାଉଛି ତେବେ ତାହା କର । ସମସ୍ତ ବାନରଙ୍କର ଯାହା କରିବା ଉଚିତ ସେ କଥା ଆପଣମାନେ ମଧ୍ୟ କହନ୍ତୁ" ।୧୦। ଅଙ୍ଗଦଙ୍କ କଥା ଶୁଣି ପିପାସା ଏବଂ ଶ୍ରମଦ୍ୱାରା କ୍ଲାନ୍ତ ଗନ୍ଧମାଦନ ପରିଷ୍କାର ଭାଷାରେ କହିଲେ ।୧୧। "ଅଙ୍ଗଦ ଯାହା କହିଲେ ତାହା ଆପଣମାନଙ୍କର ପାଳନ କରିବାର ଉପଯୁକ୍ତ ଅଟେ । ସେ କଥା ହିତକର ଏବଂ ଅନୁକୂଳ ଅଟେ । ଅତଏବ ଆପଣମାନେ ତାଙ୍କ କହିବା ଅନୁସାରେ କାର୍ଯ୍ୟ କରନ୍ତୁ ।୧୨। ପର୍ବତଗୁହା, ପଥର, ନିର୍ଜନ ବନ ଏବଂ ଗିରିନିର୍ଝରିଣୀମାନଙ୍କୁ ଆମେମାନେ ପୁଣି ଥରେ ଖୋଜିବା ।୧୩। ମହାତ୍ମା ସୁଗ୍ରୀବ ଯେଉଁସବୁ

ଯଥୋଦ୍ଦିଷ୍ଟାନି ସର୍ବାଣି ସୁଗ୍ରୀବେଣ ମହାତ୍ମନା ।
ବିଚିନ୍ୱନ୍ତୁ ବନଂ ସର୍ବେ ଗିରିଦୁର୍ଗାଣି ସଂଗତାଃ । ୧୪ ।
ତତଃ ସମୁତ୍‌ଥାୟ ପୁନର୍ବାନରାସ୍ତେ ମହାବଲାଃ ।
ବିନ୍ଧ୍ୟକାନନସଂକୀର୍ଣାଂ ବିଚେରୁର୍ଦକ୍ଷିଣାଂ ଦିଶମ୍ । ୧୫ ।
ତେ ଶାରଦାଭ୍ରପ୍ରତିମଂ ଶ୍ରୀମଦ୍ରଜତପର୍ବତମ୍ ।
ଶୃଙ୍ଗବନ୍ତଂ ଦରୀବନ୍ତମଧିରୁହ୍ୟ ଚ ବାନରାଃ । ୧୬ ।
ତତ୍ର ଲୋଧ୍ରବନଂ ରମ୍ୟଂ ସପ୍ତପର୍ଣବନାନି ଚ ।
ବିଚିନ୍ୱନ୍ତୋ ହରିବରାଃ ସୀତାଦର୍ଶନକାଙ୍‌କ୍ଷିଣଃ । ୧୭ ।
ତସ୍ୟାଗ୍ରମଧିରୂଢ଼ାସ୍ତେ ଶ୍ରାନ୍ତା ବିପୁଲବିକ୍ରମାଃ ।
ନ ପଶ୍ୟନ୍ତି ସ୍ମ ବୈଦେହୀଂ ରାମସ୍ୟ ମହିଷୀଂ ପ୍ରିୟାମ୍ । ୧୮ ।
ତେ ତୁ ଦୃଷ୍ଟିଗତଂ ଦୃଷ୍ଟ୍ୱା ତଂ ଶୈଳଂ ବହୁକନ୍ଦରମ୍ ।
ଅଧ୍ୟାରୋହନ୍ତି ହରୟୋ ବୀକ୍ଷମାଣାଃ ସମନ୍ତତଃ । ୧୯ ।
ଅବରୁହ୍ୟ ତତୋ ଭୂମିଂ ଶ୍ରାନ୍ତା ବିଗତଚେତସଃ ।
ସ୍ଥିତ୍ୱା ମୁହୂର୍ତ୍ତଂ ତତ୍ରାଥ ବୃକ୍ଷମୂଳମୁପାଶ୍ରିତାଃ । ୨୦ ।

---

ସ୍ଥାନ କଥା ବତାଇଦେଇଛନ୍ତି ସମସ୍ତେ ମିଳି ସେହି ସମସ୍ତ ବନ ଏବଂ ଗିରିଦୁର୍ଗ ଖୋଜନ୍ତୁ" । ୧୪ । ଅନନ୍ତର ସେହି ମହାବଳୀ ବାନରମାନେ ଉଠି ବିନ୍ଧ୍ୟ ପର୍ବତର ବନମାନଙ୍କଦ୍ୱାରା ପୂର୍ଣ୍ଣ ଦକ୍ଷିଣ ଦିଗରେ ଭ୍ରମଣ କରିବାକୁ ଲାଗିଲେ । ୧୫ । ସେହି ବାନରମାନେ ଶୃଙ୍ଗ ଏବଂ ଗୁହାଯୁକ୍ତ, ଶରତ୍‌ମେଘସଦୃଶ ଶୁଭ୍ର ରଜତ-ପର୍ବତ ଉପରକୁ ଚଢ଼ିଗଲେ । ୧୬ । ସୀତାଙ୍କୁ ଦେଖିବାକୁ ଉତ୍ସୁକ ବାନରମାନେ ସେଠାରେ ରମଣୀୟ ଲୋଧ୍ରବଣ ଏବଂ ସପ୍ତପର୍ଣ୍ଣବନମାନଙ୍କୁ ଖୋଜିଲେ । ୧୭ । ବିପୁଳପରାକ୍ରମୀ ପରିଶ୍ରାନ୍ତ ସେହି ବାନରମାନେ ସେହି ପର୍ବତ ଶିଖରେ ଉପରକୁ ଉଠିଗଲେ । ମାତ୍ର ରାମଚନ୍ଦ୍ରଙ୍କର ପ୍ରିୟମହିଷୀ ସୀତାଙ୍କୁ କୌଣସିଠାରେ ଦେଖିଲେ ନାହିଁ । ୧୮ । ସେହି ପର୍ବତରେ ବହୁତ କନ୍ଦର ଦେଖି ଏବଂ ଚାରିଆଡ଼କୁ ଚାହିଁ ଚାହିଁ ସେହି ବାନରମାନେ ତାହା ଉପରକୁ ଚଢ଼ିଗଲେ । ୧୯ । ତା'ପରେ ବୁଲି ବୁଲି କ୍ଳାନ୍ତରେ ଅଚେତନପ୍ରାୟ ହୋଇ ସେମାନେ ତଳକୁ ଓହ୍ଲାଇ ଆସିଲେ ଏବଂ ଗୋଟିଏ ଗଛମୂଳକୁ ଆଶ୍ରାକରି ମୁହୂର୍ତ୍ତିକାଳ ସେହିଠାରେ ବସିଗଲେ । ୨୦ ।

**ତେ ମୁହୂର୍ତ୍ତଂ ସମାଶ୍ୱସ୍ତାଃ କିଂଚିଦ୍ଭଗ୍ନପରିଶ୍ରମାଃ ।**
**ପୁନରେବୋଦ୍ୟତାଃ କୃତ୍ସ୍ନାଂ ମାର୍ଗିତୁଂ ଦକ୍ଷିଣାଂ ଦିଶମ୍ । ୨୧ ।**
**ହନୁମତ୍ପ୍ରମୁଖାସ୍ତାବତ୍ ପ୍ରସ୍ଥିତାଃ ପ୍ଲବଗର୍ଷଭାଃ ।**
**ବିନ୍ଧ୍ୟମେବାଦିତଃ କୃତ୍ୱା ବିଚେରୁଶ୍ଚ ସମନ୍ତତଃ । ୨୨ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ରଜତପର୍ବତବିଚୟୋ
ନାମ ଏକୋନପଞ୍ଚାଶଃ ସର୍ଗଃ ।

---

ମୁହୂର୍ତ୍ତକାଳ ବିଶ୍ରାମ କରିବା ଦ୍ୱାରା ଶ୍ରାନ୍ତ ଦୂରହେବାରୁ ସେମାନେ ପୁଣି ସମଗ୍ର ଦକ୍ଷିଣ ଦିଗକୁ ଖୋଜିବା ପାଇଁ ପ୍ରସ୍ତୁତ ହେଲେ । ୨୧ । ହନୂମାନ ପ୍ରଭୃତି ଉଦ୍ୟୋଗୀ ବାନରମାନେ ପ୍ରଥମେ ବିନ୍ଧ୍ୟପର୍ବତର ଚାରିଆଡ଼େ ଭଲକରି ବିଚରଣ କରିବାକୁ ଲାଗିଲେ । ୨୨ ।

# ପଞ୍ଚାଶଃ ସର୍ଗଃ

## ଋକ୍ଷବିଲପ୍ରବେଶଃ

ସହ ତାରାଙ୍ଗଦାଭ୍ୟାଂ ତୁ ସଂଗମ୍ୟ ହନୁମାନ୍ କପଃ ।
ବିଚିନୋତି ଚ ବିନ୍ଧ୍ୟସ୍ୟ ଗୁହାଶ୍ଚ ଗହନାନି ଚ । ୧ ।
ସିଂହଶାର୍ଦ୍ଦୂଳଜୁଷ୍ଟାଶ୍ଚ ଗୁହାଶ୍ଚ ପରିତସ୍ତଦା ।
ବିଷମେଷୁ ନଗେନ୍ଦ୍ରସ୍ୟ ମହାପ୍ରସ୍ରବଣେଷୁ ଚ । ୨ ।
ଆସେଦୁସ୍ତସ୍ୟ ଶୈଳସ୍ୟ କୋଟିଂ ଦକ୍ଷିଣପଶ୍ଚିମାମ୍ ।
ତେଷାଂ ତତ୍ରୈବ ବସତାଂ ସ କାଲୋ ବ୍ୟତ୍ୟବର୍ତ୍ତତ । ୩ ।
ସ ହି ଦେଶୋ ଦୁରନ୍ୱେଷ୍ୟୋ ଗୁହାଗହନବାନ୍ମହାନ୍ ।
ତତ୍ର ବାୟୁସୁତଃ ସର୍ବଂ ବିଚିନୋତି ସ୍ମ ପର୍ବତମ୍ । ୪ ।
ପରସ୍ପରେଣ ରହିତା ଅନ୍ୟୋନ୍ୟସ୍ୟାବିଦୂରତଃ ।
ଗଜୋ ଗବାକ୍ଷୋ ଗବୟଃ ଶରଭୋ ଗନ୍ଧମାଦନଃ । ୫ ।
ମୈନ୍ଦଶ୍ଚ ଦ୍ୱିବିଦଶ୍ଚୈବ ହନୂମାନ୍ ଜାମ୍ବବାନପି ।
ଅଙ୍ଗଦୋ ଯୁବରାଜଶ୍ଚ ତାରଶ୍ଚ ବନଗୋଚରଃ । ୬ ।

---

## ୫୦ଶ ସର୍ଗ

### ( ଋକ୍ଷଗୁହାରେ ପ୍ରବେଶ )

ତାର ଏବଂ ଅଙ୍ଗଦଙ୍କ ସହିତ ମିଶି ହନୂମାନ୍ ବିନ୍ଧ୍ୟାଚଳର ଗୁହା ଏବଂ ଅରଣ୍ୟମାନଙ୍କୁ ଖୋଜିଲେ । ୧ । ସିଂହ ଏବଂ ବାଘ ରହୁଥିବା ଗୁହାମାନଙ୍କୁ ଏବଂ ପର୍ବତର ଦୁର୍ଗମ ସ୍ଥାନମାନଙ୍କରେ ଥିବା ନଦୀ ଏବଂ ବଡ଼ ବଡ ଝରମାନଙ୍କୁ ଏମାନେ ସେତେବେଳେ ଖୋଜିଲେ । ୨ । ସେହି ପର୍ବତର ଦକ୍ଷିଣ-ପଶ୍ଚିମ ଶିଖର ଉପରେ ଏ ବାନର ସବୁ ବସିଲେ । ସେମାନେ ସେହିଠାରେ ବାସ କରୁଥିବାବେଳେ ସୁଗ୍ରୀବଙ୍କ ନିରୂପିତ ସମୟ ଅତିକ୍ରାନ୍ତ ହୋଇଗଲା । ୩ । ସେ ଦେଶରେ ବଡ ବଡ଼ ଗୁହାମାନ ଏବଂ ନିବିଡ ଅରଣ୍ୟ ଥିବାରୁ ତାହା ଅନ୍ୱେଷଣ କରିବା ବଡ଼ ଦୁଃସାଧ୍ୟ ଥିଲା । ସେଠାରେ ବାୟୁପୁତ୍ର ହନୂମାନ୍ ସମସ୍ତ ପର୍ବତକୁ ଖୋଜିଲେ । ୪ । ପରସ୍ପରଠାରୁ ପୃଥକ୍ ପୃଥକ୍ ହୋଇ, ମାତ୍ର ପରସ୍ପରଠାରୁ ବେଶି ଦୂର ଅନ୍ତରିତ ନ ହୋଇ ଗଜ, ଗବାକ୍ଷ, ଗବୟ, ଶରଭ, ଗନ୍ଧମାଦନ, ମୈନ୍ଦ, ଦ୍ୱିବିଦ, ହନୂମାନ୍, ଜାମ୍ବବାନ, ଯୁବରାଜ ଅଙ୍ଗଦ ଏବଂ ତାର ଆଦି ବାନରମାନେ

ଗିରିଜାଳାବୃତାନ୍ ଦେଶାନ୍ମାର୍ଗିତ୍ୱା ଦକ୍ଷିଣାଂ ଦିଶମ୍ ।
ବିଚିନ୍ୱନ୍ତସ୍ତତସ୍ତତ୍ର ଦଦୃଶୁର୍ବିବୃତଂ ବିଲମ୍ ।୭।
ଦୁର୍ଗମୃକ୍ଷବିଲଂ ନାମ ଦାନବେନାଭିରକ୍ଷିତମ୍ ।
କ୍ଷୁତ୍ପିପାସାପରୀତାସ୍ତୁ ଶ୍ରାନ୍ତାସ୍ତୁ ସଲିଲାର୍ଥିନଃ ।୮।
ଅବକୀର୍ଣ୍ଣଂ ଲତାବୃକ୍ଷୈର୍ଦଦୃଶୁସ୍ତେ ମହାବିଲମ୍ ।
ତତ୍ର କ୍ରୌଞ୍ଚାଶ୍ଚ ହଂସାଶ୍ଚ ସାରସାଶ୍ଚାପି ନିଷ୍କ୍ରମନ୍ ।୯।
ଜଲାର୍ଦ୍ରାଶ୍ଚକ୍ରବାକାଶ୍ଚ ରକ୍ତାଙ୍ଗାଃ ପଦ୍ମରେଣୁଭିଃ ।
ତତସ୍ତଦ୍ବିଲମାସାଦ୍ୟ ସୁଗନ୍ଧି ଦୁରତିକ୍ରମମ୍ ।୧୦।
ବିସ୍ମୟବ୍ୟଗ୍ରମନସୋ ବଭୂବୁର୍ବାନରର୍ଷଭାଃ ।
ସଞ୍ଜାତପରିଶଙ୍କାସ୍ତେ ତଦ୍ବିଲଂ ପ୍ଲବଗୋତ୍ତମାଃ ।୧୧।
ଅଭ୍ୟପଦ୍ୟନ୍ତ ସଂହୃଷ୍ଟାସ୍ତେଜୋବନ୍ତୋ ମହାବଲାଃ ।
ନାନାସତ୍ତ୍ୱସମାକୀର୍ଣ୍ଣଂ ଦୈତ୍ୟେନ୍ଦ୍ରନିଲୟୋପମମ୍ ।୧୨।
ଦୁର୍ଦର୍ଶମିବ ଘୋରଂ ଚ ଦୁର୍ବିଗାହ୍ୟଂ ଚ ସର୍ବଶଃ ।
ତତଃ ପର୍ବତକୂଟାଭୋ ହନୁମାନ୍ମାରୁତାତ୍ମଜଃ ।୧୩।

---

ପାର୍ବତ୍ୟଦେଶକୁ ଖୋଜି ଖୋଜି ଦକ୍ଷିଣ ଦିଗକୁ ଖୋଜି ଖୋଜି ସେଠାରେ ଏକ ମେଲାମୁହାଁ ବିଶାଳ ବିଲ ଦେଖିଲେ । ୬-୭ । ସେ ବିଲର ନାମ ଋକ୍ଷବିଲ ଏବଂ ତାହାକୁ ଏକ ଦାନବ ରକ୍ଷା କରୁଥିଲା । କ୍ଷୁଧା ଓ ତୃଷାରେ ବ୍ୟଥିତ ହୋଇ ଏବଂ କ୍ଲାନ୍ତ ହୋଇ ସେମାନେ ଜଳ ପିଇବାକୁ ଇଚ୍ଛା କରୁଥିବାବେଳେ ଲତା ଏବଂ ବୃକ୍ଷାଦିଦ୍ୱାରା ଘୋଡ଼ାଇ ହୋଇଥିବା ଏହି ମହାବିଳକୁ ଦେଖିଲେ । ତାହା ମଧ୍ୟରୁ ହଂସ, କ୍ରୌଞ୍ଚ, ସାରସମାନେ ବାହାରିବାର ସେମାନେ ଦେଖିଲେ ।୮-୯। ପଦ୍ମରେଣୁରେ ରକ୍ତବର୍ଣ୍ଣ ହୋଇଥିବା ଏବଂ ପାଣିରେ ଓଦା ହୋଇଥିବା ଚକ୍ରବାକମାନଙ୍କୁ ମଧ୍ୟ ସେମାନେ ଦେଖିଲେ । ସେହି ସୁଗନ୍ଧ ଏବଂ ଦୁର୍ଗମ ବିଲନିକଟକୁ ଯାଇ ବାନରମାନଙ୍କର ମନ ବିସ୍ମୟରେ ବ୍ୟଗ୍ର ହୋଇଉଠିଲା । ସେହି ମହାବଳୀ ତେଜସ୍ୱୀ ବାନରମାନଙ୍କ ମନରେ ଶଙ୍କା ଜାତ ହେଲା । ସେମାନେ ସେହି ବିଲନିକଟକୁ ଆନନ୍ଦମନରେ (ଜଳ ପାଇବା ଆଶାରେ) ଗଲେ । ସେହି ବିଲମଧ୍ୟରେ ଅନେକପ୍ରକାର ଜୀବଜନ୍ତୁ ଥିଲେ ଏବଂ ତାହା ଦୈତ୍ୟରାଜଙ୍କର ଗୃହସଦୃଶ ଥିଲା । ୧୦-୧୨ । ସେ ବିଲ ଦେଖିବାକୁ ଭୀଷଣ ଏବଂ ପ୍ରବେଶ କରିବାକୁ ଦୁଃସାଧ ଥିଲା । ପର୍ବତଶୃଙ୍ଗସଦୃଶ ବାୟୁପୁତ୍ର ହନୁମାନଙ୍କୁ ଦୁର୍ଗମ ବନମାନଙ୍କ କଥା

ଅବ୍ରବୀଦ୍‌ବାନରାନ୍ ଘୋରାନ୍ କାନ୍ତାରବନକୋବିଦଃ ।
ଗିରିଜାଳାବୃତାନ୍ ଦେଶାନ୍ମାର୍ଗିତ୍ୱା ଦକ୍ଷିଣାଂ ଦିଶମ୍ । ୧୪ ।
ବୟଂ ସର୍ବେ ପରିଶ୍ରାନ୍ତା ନ ଚ ପଶ୍ୟାମ ମୈଥିଲୀମ୍ ।
ଅସ୍ମାଚ୍ଚାପି ବିଲାଦ୍ଧଂସାଃ କ୍ରୌଞ୍ଚାଶ୍ଚ ସହ ସାରସୈଃ । ୧୫ ।
ଜଲାର୍ଦ୍ରାଶ୍ଚକ୍ରବାକାଶ୍ଚ ନିଷ୍ପତନ୍ତି ସ୍ମ ସର୍ବଶଃ ।
ନୂନଂ ସଲିଲବାନତ୍ର କୂପୋ ବା ଯଦି ବା ହ୍ରଦଃ । ୧୬ ।
ତଥା ଚେମେ ବିଲଦ୍ୱାରେ ସ୍ନିଗ୍‌ଧାସ୍ତିଷ୍ଠନ୍ତି ପାଦପାଃ ।
ଇତ୍ୟୁକ୍ତାସ୍ତଦ୍‌ବିଲଂ ସର୍ବେ ବିବିଶୁସ୍ତିମିରାବୃତମ୍ । ୧୭ ।
ଅଚନ୍ଦ୍ରସୂର୍ଯ୍ୟଂ ହରୟୋ ଦଦୃଶୂ ରୋମହର୍ଷଣମ୍ ।
ନିଶାମ୍ୟ ତସ୍ମାତ୍ସିଂହାଂଶ୍ଚ ତାଂସ୍ତାଂଶ୍ଚ ମୃଗପକ୍ଷିଣଃ । ୧୮ ।
ପ୍ରବିଷ୍ଟା ହରିଶାର୍ଦ୍ଦୂଲା ବିଲଂ ତିମିରସଂବୃତମ୍ ।
ନ ତେଷାଂ ସଜ୍ଜତେ ଦୃଷ୍ଟିର୍ନ ତେଜୋ ନ ପରାକ୍ରମଃ ।୧୯।
ବାୟୋରିବ ଗତିସ୍ତେଷାଂ ଦୃଷ୍ଟିସ୍ତମସି ବର୍ତ୍ତତେ ।
ତେ ପ୍ରବିଷ୍ଟାସ୍ତୁ ବେଗେନ ତଦ୍‌ବିଲଂ କପିକୁଞ୍ଜରାଃ । ୨୦ ।

---

ଜଣା ଥିଲା । ସେ ଏହି କ୍ଷୁଧାକ୍ଳାନ୍ତ ବାନରମାନଙ୍କୁ କହିଲେ, "ପର୍ବତଶ୍ରେଣୀପୂର୍ଣ୍ଣ ଦକ୍ଷିଣ ଦିଗକୁ ଖୋଜି ଆମେମାନେ ଥକିଗଲେଣି ଅଥଚ ଆମେମାନେ ସୀତାଙ୍କୁ ଦେଖିଲେଣି ନାହିଁ । ସାରସମାନଙ୍କ ସହିତ ଏହି ବିଲରୁ ହଂସ, କ୍ରୌଞ୍ଚ, ଚକ୍ରବାକ ଆଦି ପକ୍ଷୀମାନେ ଜଳରେ ଆର୍ଦ୍ର ହୋଇ ବାହାରୁଅଛନ୍ତି । ଅବଶ୍ୟ ଏଠାରେ ଜଳପୂର୍ଣ୍ଣ କୂପ ବା ପୁଷ୍କରିଣୀ ଅଛି । ୧୩-୧୬ । ଆଉ ମଧ୍ୟ ଦେଖନ୍ତି, ଏହି ବିଲଦ୍ୱାରରେ ବହୁତ ଚିକ୍କଣ ଗଛ ରହିଛି ।" ହନୁମାନ୍ ଏପରି କହିବାରୁ ସେମାନେ ସମସ୍ତେ ସେହି ଅନ୍ଧକାରପୂର୍ଣ୍ଣ ବିଲମଧ୍ୟରେ ପ୍ରବେଶ କଲେ । ୧୭ । ଚନ୍ଦ୍ର-ସୂର୍ଯ୍ୟରହିତ ସେହି ରୋମହର୍ଷଣକାରୀ ଗୁହାକୁ ବାନରମାନେ ଦେଖିଲେ । ତାହା ମଧ୍ୟରେ ସେମାନେ ସିଂହ ଓ ଅନ୍ୟାନ୍ୟ ପଶୁ ଏବଂ ପକ୍ଷୀମାନଙ୍କର ଶବ୍ଦ ଶୁଣିଲେ । ୧୮ । ସେହି ଅନ୍ଧକାରଚ୍ଛନ୍ନ ବିଲମଧ୍ୟରେ ବାନରମାନେ ପ୍ରବେଶ କଲେ । ସେମାନଙ୍କର ଦୃଷ୍ଟି, ତେଜ ବା ପରାକ୍ରମ ଟିକିଏ ହେଲେ ଦବିଗଲା ନାହିଁ । ୧୯ । ବାୟୁସମାନ ସେମାନଙ୍କର ଗତି ଥିଲା ଏବଂ ସେମାନେ ଅନ୍ଧକାରରେ ମଧ୍ୟ ଦେଖିପାରୁଥିଲେ । ସେହି କପିଶ୍ରେଷ୍ଠମାନେ ଅତି ବେଗରେ ସେହି ବିଲମଧ୍ୟରେ ପ୍ରବେଶ

ପ୍ରକାଶଂ ଚାଭିରାମଂ ଚ ଦଦୃଶୁର୍ଦ୍ଦେଶମୁତ୍ତମମ୍ ।
ତତସ୍ତସ୍ମିନ୍ ବିଲେ ଭୀମେ ନାନାପାଦପସଙ୍କୁଲେ । ୨୧ ।
ଅନ୍ୟୋନ୍ୟଂ ସଂପରିଷ୍ୱଜ୍ୟ ଜଗ୍ମୁର୍ଯୋଜନମନ୍ତରମ୍ ।
ତେ ନଷ୍ଟସଂଜ୍ଞାସ୍ତୃଷିତାଃ ସଂଭ୍ରାନ୍ତାଃ ସଲିଳାର୍ଥିନଃ । ୨୨ ।
ପରିପେତୁର୍ବିଲେ ତସ୍ମିନ୍ କଞ୍ଚିତ୍କାଲମତନ୍ଦ୍ରିତାଃ ।
ତେ କୃଶା ଦୀନବଦନାଃ ପରିଶ୍ରାନ୍ତାଃ ପ୍ଲବଙ୍ଗମାଃ । ୨୩ ।
ଆଲୋକଂ ଦଦୃଶୁର୍ବୀରା ନିରାଶା ଜୀବିତେ ଯଦା ।
ତତସ୍ତଂ ଦେଶମାଗମ୍ୟ ସୌମ୍ୟଂ ବିତିମିରଂ ବନମ୍ । ୨୪ ।
ଦଦୃଶୁଃ କାଞ୍ଚନାନ୍ ବୃକ୍ଷାନ୍ ଦୀପ୍ତବୈଶ୍ୱାନରପ୍ରଭାନ୍ ।
ସାଲାଂସ୍ତାଲାଂସ୍ତମାଲାଂଶ୍ଚ ପୁଂନାଗାନ୍ ବଞ୍ଜୁଲାନ୍ ବନାନ୍ ।୨୫
ଚମ୍ପକାନ୍ନାଗବୃକ୍ଷାଂଶ୍ଚ କର୍ଣ୍ଣିକାରାଂଶ୍ଚ ପୁଷ୍ପିତାନ୍ ।
ସ୍ତବକୈଃ କାଞ୍ଚନୈଶ୍ଚିତ୍ରୈ ରକ୍ତୈଃ କିସଲୟୈସ୍ତଥା । ୨୬ ।
ଆପୀଡୈଶ୍ଚ ଲତାଭିଶ୍ଚ ହେମାଭରଣଭୂଷିତାନ୍ ।
ତରୁଣାଦିତ୍ୟସଂକାଶାନ୍ ବୈଦୂର୍ଯମୟବେଦିକାନ୍ । ୨୭ ।

---

ଗଲେ । ୨୦ । ସେହି ନାନା ବୃକ୍ଷପୂର୍ଣ୍ଣ ଭୀଷଣ ବିଳମଧ୍ୟରେ ସେମାନେ ଆଲୋକପୂର୍ଣ୍ଣ ରମଣୀୟ ଦେଶ ଦେଖିବାକୁ ପାଇଲେ । ୨୧ । ସେମାନେ ତୃଷାରେ ଚେତନା ହରାଇ ଜଳଲାଭ ଆଶାରେ ପରସ୍ପରକୁ କୁଣ୍ଢାଇ ଏକ-ଯୋଜନ ପର୍ଯ୍ୟନ୍ତ ସେହି ବିଳମଧ୍ୟରେ ଚାଲିଗଲେ । ୨୨ । ଶ୍ରାନ୍ତ ଓ ଶୁଷ୍କ-ବଦନ ଏବଂ କ୍ଷୀଣ ବାନରମାନେ କେତେକ ସମୟ ପର୍ଯ୍ୟନ୍ତ ସେହି ବିଳମଧ୍ୟରେ ଚାଲିବାକୁ ଲାଗିଲେ । ୨୩। ଯେତେବେଳେ ସେମାନେ ନିଜ ଜୀବନ ବିଷୟରେ ନିରାଶ ହୋଇ-ପଡ଼ିଲେ, ସେତେବେଳେ ସେମାନଙ୍କୁ ଆଲୋକ ଦେଖାଗଲା । ସେହି ଆଲୋକିତ ଦେଶକୁ ଆସି ସେମାନେ ଏକ ଅନ୍ଧକାରହୀନ ବନ ଦେଖିପାରିଲେ । ସେହି ବନରେ ସେମାନେ ଜ୍ୱଳନ୍ତ ଅଗ୍ନିସଦୃଶ ଦୀପ୍ତିମନ୍ତ ସୁନାର ତାଳ, ଶାଳ, ତମାଳ, ପୁନ୍ନାଗ, ବଞ୍ଜୁଳ, ଧବ, ଚମ୍ପକ ଏବଂ କର୍ଣ୍ଣିକାର ବୃକ୍ଷମାନ ଦେଖିଲେ । ତାହା ସବୁ ପୁଷ୍ପରେ ପୂର୍ଣ୍ଣ ଥିଲା । ସୁନାର ପେନ୍ଥାସବୁ ଏବଂ ରକ୍ତବର୍ଣ୍ଣ କଢ଼ିମାନ ସେ ବୃକ୍ଷମାନଙ୍କରେ ଥିଲା । ୨୪-୨୬ । ସେହି ବୃକ୍ଷମାନଙ୍କୁ ବେଢ଼ି ରହିଥିବା ଲତାମାନଙ୍କ ଦ୍ୱାରା ବୃକ୍ଷଗୁଡ଼ିକ ସୁବର୍ଣ୍ଣର ଅଳଙ୍କାରରେ ଭୂଷିତ ହୋଇଥିବାପରି ଦେଖାଯାଉଥିଲା । ସେହି ବୃକ୍ଷମାନଙ୍କ ମୂଳରେ ବୈଦୂର୍ଯ୍ୟମଣିର ବେଦୀ ସବୁ ତିଆରି ହୋଇଥିଲା ଏବଂ ବୃକ୍ଷଗୁଡ଼ିକ ବାଳସୂର୍ଯ୍ୟପରି ସୁନ୍ଦର ଦେଖାଯାଉଥିଲା । ସେହି

ବଭ୍ରାଜମାନାନ୍ ବପୁଷା ପାଦପାଂଶ୍ଚ ହିରଣ୍ମୟାନ୍ ।
ନୀଲବୈଦୂର୍ଯ୍ୟବର୍ଣ୍ଣାଶ୍ଚ ପଦ୍ମିନୀଃ ପତଗୈର୍ବୃତାଃ । ୨୮ ।
ମହଦ୍ଭିଃ କାଞ୍ଚନୈର୍ବୃକ୍ଷୈର୍ବୃତଂ ବାଲାର୍କସଂନିଭୈଃ ।
ଜାତରୂପମୟୈର୍ମତ୍ସ୍ୟୈର୍ମହଦ୍ଭିଶ୍ଚାଥ ପଙ୍କଜୈଃ । ୨୯ ।
ନଳିନୀସ୍ତତ୍ର ଦଦୃଶୁଃ ପ୍ରସନ୍ନସଲିଲାୟୁତାଃ ।
କାଞ୍ଚନାନି ବିମାନାନି ରାଜତାନି ତଥୈବ ଚ । ୩୦ ।
ତପନୀୟଗବାକ୍ଷାଣି ମୁକ୍ତାଜାଲାବୃତାନି ଚ ।
ହୈମରାଜତଭୌମାନି ବୈଦୂର୍ଯ୍ୟମଣିମନ୍ତି ଚ । ୩୧ ।
ଦଦୃଶୁସ୍ତତ୍ର ହରୟୋ ଗୃହମୁଖ୍ୟାନି ସର୍ବଶଃ ।
ପୁଷ୍ପିତାନ୍ ଫଲିନୋ ବୃକ୍ଷାନ୍ ପ୍ରବାଲମଣିସଂନିଭାନ୍ ।୩୨।
କାଞ୍ଚନଭ୍ରମରାଂଶ୍ଚୈବ ମଧୂନି ଚ ସମନ୍ତତଃ ।
ମଣିକାଞ୍ଚନଚିତ୍ରାଣି ଶୟନାନ୍ୟାସନାନି ଚ । ୩୩ ।
ବିବିଧାନି ବିଶାଲାନି ଦଦୃଶୁସ୍ତେ ସମନ୍ତତଃ ।
ହୈମରାଜତକାଂସ୍ୟାନାଂ ଭାଜନାନାଂ ଚ ରାଶୟଃ । ୩୪ ।
ଅଗୁରୂଣାଂ ଚ ଦିବ୍ୟାନାଂ ଚନ୍ଦନାନାଂ ଚ ସଞ୍ଚୟାନ୍ ।
ଶୁଚୀନ୍ୟଭ୍ୟବହାର୍ଯ୍ୟାଣି ମୂଳାନି ଚ ଫଲାନି ଚ । ୩୫ ।

---

ସୁବର୍ଣ୍ଣ ବୃକ୍ଷମାନଙ୍କର ଦେହ ତେଜରେ ଝଟକୁଥିଲା । ଅନେକ ପକ୍ଷିପୂର୍ଣ୍ଣ ନୀଳ ବୈଦୂର୍ଯ୍ୟମଣିର ବର୍ଣ୍ଣସଦୃଶ ସରୋବର ମଧ୍ୟ ସେଠାରେ ସେମାନେ ଦେଖିଲେ । ୨୭-୨୮ । ବାଳସୂର୍ଯ୍ୟସଦୃଶ ସୁନାର ବଡ଼ ବଡ଼ ବୃକ୍ଷ, ସୁନାର ବଡ଼ ବଡ଼ ମାଛ ଏବଂ ସୁନାର ବଡ଼ ବଡ଼ ପଦ୍ମରେ ପୂର୍ଣ୍ଣ,ସ୍ୱଚ୍ଛଜଳଯୁକ୍ତ ପୁଷ୍କରିଣୀ ସେମାନେ ଦେଖିଲେ । ସୁନା ଏବଂ ରୂପାରେ ତିଆରି ହୋଇଥିବା ବିମାନମାନ ମଧ୍ୟ ସେମାନେ ଦେଖିଲେ । ୨୯-୩୦ । ସୁନାର ଝିଡ଼କିମାନଙ୍କରେ ମୋତିର ଝାଲର ଲାଗିଥିଲା । ସୁନା ଏବଂ ରୁପା କଳସମାନଙ୍କରେ ବୈଦୂର୍ଯ୍ୟ ମଣିସବୁ ଖଞ୍ଜାହୋଇଥିଲା । ୩୧ । ବାନରମାନେ ସେଠାରେ ଚାରିଆଡ଼େ ଉତ୍କୃଷ୍ଟ ଗୃହମାନ ଦେଖିଲେ । ପୋହଳା ଏବଂ ମଣିସଦୃଶ ଫଳଫୁଲଯୁକ୍ତ ବୃକ୍ଷମାନଙ୍କୁ ମଧ୍ୟ ସେମାନେ ଦେଖିଲେ । ୩୨ । ସୁନାର ଭ୍ରମର, ମଧୁ, ମଣି ଏବଂ ସୁବର୍ଣ୍ଣରେ ଅଲଙ୍କୃତ ନାନା ପ୍ରକାର ବଡ ବଡ଼ ଆସନ ଏବଂ ଶଯ୍ୟାମାନ ମଧ୍ୟ ସେମାନେ ଚାରିଆଡ଼େ ଦେଖିଲେ । ସୁନା, ରୂପା ଏବଂ କଂସାର ନାନାପ୍ରକାର ବଡ଼ ବଡ଼ ବାସନକୁସନ ମଧ୍ୟ ସେମାନେ ଦେଖିଲେ ।୩୩-୩୪। ଦିବ୍ୟ ଅଗୁରୁ ଏବଂ ଚନ୍ଦନ ମଧ୍ୟ ସେଠାରେ ଗଦା ହୋଇଥିଲା । ପବିତ୍ର ଭୋଜନସାମଗ୍ରୀ ଏବଂ ଫଳମୂଳ ମଧ୍ୟ ସେମାନେ ଦେଖିଲେ । ୩୫ । ବହୁମୂଲ୍ୟ ଯାନ, ସରସ ମଦ୍ୟ,

ମହାର୍ହାଣି ଚ ଯାନାନି ମଧୂନି ରସବନ୍ତି ଚ ।
ଦିବ୍ୟାନାମମ୍ବରାଣାଂ ଚ ମହାର୍ହାଣାଂ ଚ ସଞ୍ଚୟାନ୍ । ୩୬ ।
କମ୍ବଳାନାଂ ଚ ଚିତ୍ରାଣାମଜିନାନାଂ ଚ ସଞ୍ଚୟାନ୍ ।
ତତ୍ର ତତ୍ର ବିଚିନ୍ୱନ୍ତୋ ବିଲେ ତତ୍ର ମହାପ୍ରଭାଃ ।୩୭ ।
ଦଦୃଶୁର୍ବାନରାଃ ଶୂରାଃ ସ୍ତ୍ରିୟଂ କାଞ୍ଚିଦଦୂରତଃ ।
ତାଂ ଚ ତେ ଦଦୃଶୁସ୍ତତ୍ର ଚୀରକୃଷ୍ଣାଜିନାମ୍ବରାମ୍ । ୩୮ ।
ତାପସୀଂ ନିୟତାହାରାଂ ଜ୍ୱଲନ୍ତୀମିବ ତେଜସା ।
ବିସ୍ମିତା ହରୟସ୍ତତ୍ର ବ୍ୟବତିଷ୍ଠନ୍ତ ସର୍ବଶଃ ।
ପପ୍ରଚ୍ଛ ହନୂମାଂସ୍ତତ୍ର କାସି ତ୍ୱଂ କସ୍ୟ ବା ବିଲମ୍ । ୩୯ ।
ତତୋ ହନୂମାନ୍ ଗିରିସଂନିକାଶଃ
କୃତାଞ୍ଜଳିସ୍ତାମଭିବାଦ୍ୟ ବୃଦ୍ଧାମ୍ ।
ପପ୍ରଚ୍ଛ କା ତ୍ୱଂ ଭବନଂ ବିଲଂ ଚ
ରତ୍ନାନି ଚେମାନି ବଦସ୍ୱ କସ୍ୟ । ୪୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ଋକ୍ଷ ବିଲ ପ୍ରବେଶୋ
ନାମ ପଞ୍ଚାଶଃ ସର୍ଗଃ

---

ଏବଂ ଉତ୍ତମ ବହୁମୂଲ୍ୟ ବସ୍ତ୍ରରାଶି ମଧ୍ୟ ସେମାନେ ଦେଖିଲେ । ୩୬ । ବିଚିତ୍ର କମ୍ବଳ ଏବଂ ମୃଗଚର୍ମ ଆଦିର ଗଦାମାନ ମଧ୍ୟ ସେହି ବିଲମଧ୍ୟରେ ଖୋଜୁ ଖୋଜୁ ସେହି ତେଜସ୍ୱୀ ବାନରମାନେ ଦେଖିଲେ । ୩୭ । କିଛିଦୂରରେ ସେହି ବୀର ବାନରମାନେ ଖଣ୍ଡିଏ କୃଷ୍ଣବର୍ଣ୍ଣର ରେଶମୀ ଶାଢ଼ୀ ପିନ୍ଧିଥିବା ଏକ ସ୍ତ୍ରୀଲୋକକୁ ଦେଖିଲେ । ୩୮ । ନିୟମିତଭାବରେ ଆହାର କରୁଥିବା ଏବଂ ନିଜର ତେଜରେ ଦୀପ୍ତିମତୀ ସେହି ତପସ୍ୱିନୀଙ୍କୁ ଦେଖି ସେହି ବାନରମାନେ ବିସ୍ମୟରେ ଥକ୍କା ହୋଇ ରହିଗଲେ । ସେଠାରେ ହନୁମାନ୍ ତାଙ୍କୁ ପଚାରିଲେ "ତୁମେ କିଏ ଏବଂ ଏ ବିଲ କାହାର?" ।୩୯। ପର୍ବତସଦୃଶ ହନୁମାନ୍ ହାତଯୋଡ଼ି ପ୍ରଣାମ କରି ସେ ବୃଦ୍ଧାଙ୍କୁ ପଚାରିଲେ, "ତୁମେ କିଏ, ଏ ବିଲ ଓ ଘର କାହାର ଏସବୁ ରତ୍ନ କାହାର କହ" । ୪୦ ।

---

# ଏକପଞ୍ଚାଶଃ ସର୍ଗଃ

## ସ୍ୱୟଂପ୍ରଭାତିଥ୍ୟମ୍

ଇତ୍ୟୁକ୍ତ୍ୱା ହନୁମାଂସ୍ତତ୍ର ଚୀରକୃଷ୍ଣାଜିନାମ୍ବରାମ୍ ।
ଅବ୍ରବୀତ୍ତାଂ ମହାଭାଗାଂ ତାପସୀଂ ଧର୍ମଚାରିଣୀମ୍ ।୧।
ଇଦଂ ପ୍ରବିଷ୍ଟାଃ ସହସା ବିଲଂ ତିମିରସଂବୃତମ୍ ।
କ୍ଷୁତ୍ପିପାସାପରିଶ୍ରାନ୍ତାଃ ପରିଖିନ୍ନାଶ୍ଚ ସର୍ବଶଃ । ୨ ।
ମହଦ୍ଧରଣ୍ୟା ବିବରଂ ପ୍ରବିଷ୍ଟାଃ ସ୍ମ ପିପାସିତାଃ ।
ଇମାଂସ୍ତ୍ୱେବଂବିଧାନ୍ ଭାବାନ୍ ବିବିଧାନଦ୍ଭୁତୋପମାନ୍ । ୩ ।
ଦୃଷ୍ଟ୍ୱା ବୟଂ ପ୍ରବ୍ୟଥିତାଃ ସଂଭ୍ରାନ୍ତା ନଷ୍ଟଚେତସଃ ।
କସ୍ୟୈତେ କାଞ୍ଚନା ବୃକ୍ଷାସ୍ତରୁଣାଦିତ୍ୟସଂନିଭାଃ । ୪ ।
ଶୁଚୀନ୍ୟଭ୍ୟବହାର୍ଯାଣି ମୂଲାନି ଚ ଫଲାନି ଚ ।
କାଞ୍ଚନାନି ବିମାନାନି ରାଜତାନି ଗୃହାଣି ଚ । ୫ ।
ତପନୀୟଗବାକ୍ଷାଣି ମଣିଜାଲାବୃତାନି ଚ ।
ପୁଷ୍ପିତାଃ ଫଲବନ୍ତଶ୍ଚ ପୁଣ୍ୟାଃ ସୁରଭିଗନ୍ଧୟଃ । ୬ ।

---

## ୫୧ଶ ସର୍ଗ

( ସ୍ୱୟଂପ୍ରଭାଙ୍କର ଆତିଥ୍ୟଗ୍ରହଣ )

କୃଷ୍ଣମୃଗଚର୍ମଧାରିଣୀ ସେହି ଧର୍ମଚାରିଣୀ ତପସ୍ୱିନୀଙ୍କୁ ଏହିପରି କହି ପୁଣି ହନୁମାନ୍ କହିଲେ ।୧। "କ୍ଷୁଧା ଏବଂ ପିପାସାରେ ପରିଶ୍ରାନ୍ତ ହୋଇ ସର୍ବଥା ବିପନ୍ନଭାବରେ ଆମେମାନେ ସହସା ଏହି ଅନ୍ଧକାରପୂର୍ଣ୍ଣ ବିଲ ଭିତରକୁ ଚାଲିଆସି-ଅଛୁଁ । ୨ । ପୃଥିବୀର ଏହି ମହାଗର୍ତ୍ତ ମଧ୍ୟରେ ଆମେମାନେ ପିପାସିତ ହୋଇ ପ୍ରବେଶ କରିଅଛୁଁ । ଏଠାରେ ନାନାବିଧ ପଦାର୍ଥକୁ ବଡ଼ ଅଦ୍ଭୁତ ପ୍ରକାରର ଦେଖି ଆମ୍ଭେମାନେ ବ୍ୟଥିତ ଓ ଭୀତ ହୋଇଅଛୁଁ ଏବଂ ଆମମାନଙ୍କର ଚେତନା ଲୋପ ପାଇଯାଇଅଛି । ବାଲାର୍କସଦୃଶ ଏହି ସୁବର୍ଣ୍ଣ ବୃକ୍ଷସବୁ କାହାର ? ।୩-୪ । ଏସବୁ ପବିତ୍ର ଖାଦ୍ୟସାମଗ୍ରୀ, ଫଳମୂଳ, ସୁନାର ବିମାନ, ରୁପାର ଘର, ସୁନାର ଝରକା, ମଣିର ଝାଲର, ପୁଷ୍ପିତ ଏବଂ ଫଳଯୁକ୍ତ ସୁଗନ୍ଧମୟ ଏସବୁ ସୁନାର ବୃକ୍ଷ ଏବଂ ବିମଳ ଜଳରେ ଜାତ ଏସବୁ କାଞ୍ଚନପଦ୍ମ କାହାତେଜରେ ଉତ୍ପନ୍ନହୋଇଅଛନ୍ତି ?

ଇମେ ଜାମ୍ବୁନଦମୟାଃ ପାଦପାଃ କସ୍ୟ ତେଜସା ।
କାଞ୍ଚନାନି ଚ ପଦ୍ମାନି ଜାତାନି ବିମଲେ ଜଲେ । ୭ ।
କଥଂ ମତ୍ସ୍ୟାଶ୍ଚ ସୌବର୍ଣ୍ଣା ଦୃଶ୍ୟନ୍ତେ ସହ କଚ୍ଛପୈଃ ।
ଆତ୍ମନସ୍ତ୍ୱନୁଭାବାଦ୍ୱା କସ୍ୟ ବୈ ତପୋବଲମ୍ । ୮ ।
ଅଜାନତାଂ ନଃ ସର୍ବେଷାଂ ସର୍ବମାଖ୍ୟାତୁମର୍ହସି ।
ଏବମୁକ୍ତା ହନୂମତା ତାପସୀ ଧର୍ମଚାରିଣୀ । ୯ ।
ପ୍ରତ୍ୟୁବାଚ ହନୂମନ୍ତଂ ସର୍ବଭୂତହିତେ ରତା ।
ମୟୋ ନାମ ମହାତେଜା ମାୟାବୀ ବାନରର୍ଷଭ । ୧୦ ।
ତେନେଦଂ ନିର୍ମିତଂ ସର୍ବଂ ମାୟୟା କାଞ୍ଚନଂ ବନମ୍ ।
ପୁରା ଦାନବମୁଖ୍ୟାନାଂ ବିଶ୍ୱକର୍ମା ବଭୂବ ହ । ୧୧ ।
ଯେନେଦଂ କାଞ୍ଚନଂ ଦିବ୍ୟଂ ନିର୍ମିତଂ ଭବନୋତ୍ତମମ୍ ।
ସ ତୁ ବର୍ଷସହସ୍ରାଣି ତପସ୍ତପ୍ତ୍ୱା ମହଦ୍ୱନେ । ୧୨ ।
ପିତାମହାତ୍ ବରଂ ଲେଭେ ସର୍ବମୌଶନସଂ ଧନମ୍ ।
ବିଧାୟ ସର୍ବଂ ବଲବାନ୍ ସର୍ବକାମେଶ୍ୱରସ୍ତଦା । ୧୩ ।

---

ସୁବର୍ଣ୍ଣ କଚ୍ଛପମାନଙ୍କ ସହିତ ଏସବୁ ସୁନାର ମତ୍ସ୍ୟମାନେ କାହିଁକି ଦେଖାଯାଉଛନ୍ତି ? ଏସବୁ ନିଜର ପ୍ରତାପରେ, ନା ଅନ୍ୟ କାହାର ତପୋବଳରେ ଉତ୍ପନ୍ନ ହୋଇଅଛନ୍ତି ?। ୭-୮। ଆମମାନଙ୍କୁ ଏ ବୃତ୍ତାନ୍ତ କିଛି ଜଣାନାହିଁ; ସୁତରାଂ ଆମମାନଙ୍କୁ ଏସବୁ ବିଷୟ ତୁମ୍ଭର କହିବା ଉଚିତ ।” ହନୁମାନ୍ ଏପରି କହିବା ପରେ ସମସ୍ତ ପ୍ରାଣୀଙ୍କର ହିତାକାଂକ୍ଷିଣୀ ଧର୍ମଚାରିଣୀ ସେହି ତପସ୍ୱିନୀ ହନୂମାନଙ୍କୁ କହିଲେ । “ହେ ବାନରଶ୍ରେଷ୍ଠ ! ମୟ ନାମକ ମହାତେଜସ୍ୱୀ ଦାନବ ଥିଲେ ।୯-୧୦। ସେ ମାୟାବଳରେ ଏହି ସମସ୍ତ ସୁବର୍ଣ୍ଣବନ ନିର୍ମାଣ କରିଅଛନ୍ତି । ପୂର୍ବେ ସେ ମୁଖ୍ୟ ଦାନବମାନଙ୍କର ବିଶ୍ୱକର୍ମା ଥିଲେ । ୧୧ । ସେ ହିଁ ଏହି ଉତ୍ତମ ସୁବର୍ଣ୍ଣଗୃହ ନିର୍ମାଣ କରିଥିଲେ । ହଜାରେ ବର୍ଷପର୍ଯ୍ୟନ୍ତ ମହାରଣ୍ୟରେ ତପସ୍ୟାକରି ବ୍ରହ୍ମାଙ୍କ ବରଦ୍ୱାରା ସେ ଶୁକ୍ରାଚାର୍ଯ୍ୟଙ୍କର ସମସ୍ତ ଧନ ପାଇଥିଲେ । ଏହି ଧନବଳରେ ବଳୀ ହୋଇ ସେ ସେତେବେଳେ ନିଜର ସମସ୍ତ କାମନା ଲାଭ କରିବାକୁ ସମର୍ଥ ହୋଇଥିଲେ ।୧୨-୧୩।

ଉବାସ ସୁଖିତଃ କାଳଂ କଞ୍ଚିଦସ୍ମିନ୍ମହାବନେ ।
ତମପ୍‌ସରସି ହେମାୟାଂ ସକ୍ତଂ ଦାନବପୁଙ୍ଗବମ୍ ।୧୪।
ବିକ୍ରମ୍ୟୈବାଶନିଂ ଗୃହ୍ୟ ଜଘାନେଶଃ ପୁରନ୍ଦରଃ ।
ଇଦଂ ଚ ବ୍ରହ୍ମଣା ଦତ୍ତଂ ହେମାୟୈ ବନମୁତ୍ତମମ୍ ।୧୫।
ଶାଶ୍ୱତଃ କାମଭୋଗଶ୍ଚ ଗୃହଂ ଚେଦଂ ହିରଣ୍ମୟମ୍ ।
ଦୁହିତା ମେରୁସାବର୍ଣେରହଂ ତସ୍ୟା ସ୍ୱୟଂପ୍ରଭା ।୧୬।
ଇଦଂ ରକ୍ଷାମି ଭବନଂ ହେମାୟା ବାନରୋତ୍ତମ ।
ମମ ପ୍ରିୟସଖୀ ହେମା ନୃତ୍ତଗୀତବିଶାରଦା ।୧୭।
ତୟା ଦତ୍ତବରା ଚାସ୍ମି ରକ୍ଷାମି ଭବନଂ ମହତ୍ ।
କିଂ କାର୍ଯଂ କସ୍ୟ ବା ହେତୋଃ କାନ୍ତାରାଣି ପ୍ରପଦ୍ୟଥାଃ ।୧୮।
କଥଂ ଚେଦଂ ବନଂ ଦୁର୍ଗଂ ଯୁଷ୍ମାଭିରୁପଲକ୍ଷିତମ୍ ।
ଶୁଚୀନ୍ୟଭ୍ୟବହାରୀଣି ମୂଳାନି ଚ ଫଳାନି ଚ ।
ଭୁକ୍ତ୍ୱା ପିତ୍ୱା ଚ ପାନୀୟଂ ସର୍ବଂ ମେ ବକ୍ତୁମର୍ହସି ।୧୯।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସ୍ୱୟଂପ୍ରଭାତଥ୍ୟଂ
ନାମ ଏକପଞ୍ଚାଶଃ ସର୍ଗଃ

---

ମୟ ଏହି ବନରେ କିଛିକାଳପର୍ଯ୍ୟନ୍ତ ସୁଖରେ ବାସକରିଥିଲେ । ତା'ପରେ ସେହି ଦାନବଶ୍ରେଷ୍ଠ ହେମା ନାମ୍ନୀ ଏକ ଅପ୍‌ସରା ପ୍ରତି ଅନୁରକ୍ତ ହେଲେ । ୧୪ । ଇନ୍ଦ୍ର ବିକ୍ରମସହକାରେ ବଜ୍ର ଗ୍ରହଣକରି ଏହାଙ୍କୁ ମାରିଦେଲେ । ଏହି ଉତ୍ତମ ବନକୁ ବ୍ରହ୍ମା ହେମାଙ୍କୁ ଦେଇଦେଲେ । ୧୫ । ଏହି ସୁବର୍ଣ୍ଣ ଭବନ ଏବଂ ଶାଶ୍ୱତ କାମଭୋଗ ବ୍ରହ୍ମା ହେମାଙ୍କୁ ଦେଇଥିଲେ । ମୁଁ ମେରୁସାବର୍ଣ୍ଣି ଋଷିଙ୍କର କନ୍ୟା ଅଟେଁ ଏବଂ ମୋର ନାମ ସ୍ୱୟଂପ୍ରଭା । ୧୬ । ମୁଁ ହେମାଙ୍କର ଏହି ଘରକୁ ଜଗିରହିଅଛି । ହେ ବାନରଶ୍ରେଷ୍ଠ ! ହେମା ମୋର ପ୍ରିୟସଖୀ ଏବଂ ସେ ନୃତ୍ୟଗୀତାଦିରେ ଅତ୍ୟନ୍ତ ନିପୁଣା । ୧୭ । ସେ ମୋତେ ବରଦେଇଅଛନ୍ତି, ସୁତରାଂ ମୁଁ ତାଙ୍କର ଏହି ବିଶାଳ ଗୃହକୁ ରକ୍ଷାକରୁଅଛି । ତୁମମାନଙ୍କର ପ୍ରୟୋଜନ କଅଣ ? କି ଉଦ୍ଦେଶ୍ୟରେ ତୁମେମାନେ ଏ କାନ୍ତାରକୁ ଆସିଅଛ ? । ୧୮ । ଏହି ଦୁର୍ଗମ ବନକୁ ତୁମେମାନେ କିପରି ଦେଖିପାରିଲ ? ପବିତ୍ର ଭୋଜନସାମଗ୍ରୀ ଓ ଫଳମୂଳାଦି ଖାଇସାରି ଏବଂ ପାଣି ପିଇସାରି ତୁମେମାନେ ମୋତେ ଏହି କଥା କହିବା ଉଚିତ" । ୧୯ ।

---

# ଦ୍ୱିପଞ୍ଚାଶଃ ସର୍ଗଃ

## ବିଲପ୍ରବେଶକାରଣକଥନମ୍

ଅଥ ତାନବ୍ରବୀତ୍ସର୍ବାନ୍ ବିଶ୍ରାନ୍ତାନ୍ ହରିଯୂଥପାନ୍ ।
ଇଦଂ ବଚନମେକାଗ୍ରା ତାପସୀ ଧର୍ମଚାରିଣୀ । ୧ ।
ବାନରା ଯଦି ବଃ ଖେଦଃ ପ୍ରନଷ୍ଟଃ ଫଲଭକ୍ଷଣାତ୍ । ।
ଯଦି ଚୈତନ୍ମୟା ଶ୍ରାବ୍ୟଂ ଶ୍ରୋତୁମିଚ୍ଛାମି ତାଂ କଥାମ୍ । ୨ ।
ତସ୍ୟାସ୍ତଦ୍ବଚନଂ ଶ୍ରୁତ୍ୱା ହନୂମାନ୍ମାରୁତାତ୍ମଜଃ ।
ଆର୍ଜବେନ ଯଥାତତ୍ତ୍ୱମାଖ୍ୟାତୁମୁପଚକ୍ରମେ । ୩ ।
ରାଜା ସର୍ବସ୍ୟ ଲୋକସ୍ୟ ମହେନ୍ଦ୍ରବରୁଣୋପମଃ ।
ରାମୋ ଦାଶରଥିଃ ଶ୍ରୀମାନ୍ ପ୍ରବିଷ୍ଟୋ ଦଣ୍ଡକାବନମ୍ । ୪ ।
ଲକ୍ଷ୍ମଣେନ ସହ ଭ୍ରାତ୍ରା ବୈଦେହ୍ୟା ସହ ଭାର୍ଯ୍ୟୟା ।
ଯସ୍ୟ ଭାର୍ଯ୍ୟା ଜନସ୍ଥାନାଦ୍ରାବଣେନ ହୃତା ବଲାତ୍ । ୫ ।
ବୀରସ୍ତସ୍ୟ ସଖା ରାଜ୍ଞଃ ସୁଗ୍ରୀବୋ ନାମ ବାନରଃ ।
ରାଜା ବାନରମୁଖ୍ୟାନାଂ ଯେନ ପ୍ରସ୍ଥାପିତା ବୟମ୍ । ୬ ।

---

## ୫୨ଶ ସର୍ଗ

(ଗୁହାପ୍ରବେଶର କାରଣକଥନ)

ବାନର ଦଳପତିମାନେ ବିଶ୍ରାମ କରିସାରିବା ପରେ ଧର୍ମଚାରିଣୀ ତପସ୍ୱିନୀ ଏକାଗ୍ରମନରେ ସେମାନଙ୍କୁ କହିଲେ । ୧ । "ହେ ବାନରଗଣ ! ଫଳଖାଇବା ଦ୍ୱାରା ଯଦି ତୁମମାନଙ୍କର କଷ୍ଟ ଦୂର ହୋଇଯାଇଅଛି ଏବଂ ତାହା ଯଦି ମୋର ଶୁଣିବାର ଯୋଗ୍ୟ, ତାହାହେଲେ ସେ କଥା (ତୁମମାନଙ୍କର ଏଠାକୁ ଆସିବାର ଉଦ୍ଦେଶ୍ୟ) ମୁଁ ଶୁଣିବାକୁ ଇଚ୍ଛା କରେଁ" । ୨ । ଅନନ୍ତର ତାଙ୍କର ବଚନ ଶୁଣି ବାୟୁପୁତ୍ର ହନୁମାନ୍ ସରଳଭାବରେ ଯଥାର୍ଥ କଥା ସବୁ କହିବାକୁ ଆରମ୍ଭ କଲେ । ୩ । "ସମସ୍ତ ଲୋକର ରାଜା, ଇନ୍ଦ୍ର ଏବଂ ବରୁଣଙ୍କ ସମାନ, ଦଶରଥଙ୍କ ପୁତ୍ର ରାମଚନ୍ଦ୍ର ଭାଇ ଲକ୍ଷ୍ମଣ ଏବଂ ପତ୍ନୀ ସୀତାଙ୍କ ସହିତ ଦଣ୍ଡକାରଣ୍ୟକୁ ଆସିଛନ୍ତି । ରାବଣ ବଳତ୍କାରରେ ତାଙ୍କର ଭାର୍ଯ୍ୟାଙ୍କୁ ଜନସ୍ଥାନ [ଦଣ୍ଡକାରଣ୍ୟ] ରୁ ହରଣକରି ନେଇଯାଇଅଛି ।୪-୫। ସୁଗ୍ରୀବ ନାମକ ବୀର ବାନର ସେହି ରାଜାଙ୍କର ସଖା । ସେ ପ୍ରଧାନ ପ୍ରଧାନ ବାନରମାନଙ୍କର ରାଜା ଅଟନ୍ତି । ସେହି ସୁଗ୍ରୀବ ଆମ୍ଭମାନଙ୍କୁ ପଠାଇ

ଅଗସ୍ତ୍ୟଚରିତାମାଶାଂ ଦକ୍ଷିଣାଂ ଯମରକ୍ଷିତାମ୍ ।
ସହୈଭିର୍ବାନରୈର୍ମୁଖ୍ୟୈରଙ୍ଗଦପ୍ରମୁଖୈର୍ବୟମ୍ । ୭ ।
ରାବଣଂ ସହିତାଃ ସର୍ବେ ରାକ୍ଷସଂ କାମରୂପିଣମ୍ ।
ସୀତୟା ସହ ବୈଦେହ୍ୟା ମାର୍ଗଧ୍ୱମିତି ଚୋଦିତାଃ । ୮ ।
ବିଚିତ୍ୟ ତୁ ବନଂ ସର୍ବଂ ସମୁଦ୍ରଂ ଦକ୍ଷିଣାଂ ଦିଶମ୍ ।
ବୟଂ ବୁଭୁକ୍ଷିତାଃ ସର୍ବେ ବୃକ୍ଷମୂଳମୁପାଶ୍ରିତାଃ । ୯ ।
ବିବର୍ଣ୍ଣବଦନାଃ ସର୍ବେ ସର୍ବେ ଧ୍ୟାନପରାୟଣାଃ ।
ନାଧିଗଚ୍ଛାମହେ ପାରଂ ମଗ୍ନାଶ୍ଚିନ୍ତାମହାର୍ଣ୍ଣବେ । ୧୦ ।
ଚାରୟନ୍ତସ୍ତତଶ୍ଚକ୍ଷୁର୍ଦୃଷ୍ଟବନ୍ତୋ ମହଦ୍ ବିଲମ୍ ।
ଲତାପାଦପସଂପନ୍ନଂ ତିମିରେଣ ସମାବୃତମ୍ । ୧୧ ।
ଅସ୍ମାଦ୍ଧଂସାଃ ଜଲକ୍ଳିନ୍ନାଃ ପକ୍ଷୈଃ ସଲିଲରେଣୁଭିଃ ।
କୁରରାଃ ସାରସାଶ୍ଚୈବ ନିଷ୍ପତନ୍ତି ପତତ୍ରିଣଃ । ୧୨ ।
ସାଧ୍ୱତ୍ର ପ୍ରବିଶାମେତି ମୟୋକ୍ତାଃ ପ୍ଲବଙ୍ଗମାଃ ।
ତେଷାମପି ହି ସର୍ବେଷାମନୁମାନମୁପାଗତମ୍ । ୧୩ ।

---

ଅନ୍ୱୟ । ୭ । ଅଗସ୍ତ୍ୟଙ୍କ ବାସଭୂମି ଏବଂ ଯମରାଜଙ୍କ ଦ୍ୱାରା ରକ୍ଷିତ ଦକ୍ଷିଣ ଦିଗକୁ ଅଙ୍ଗଦ ପ୍ରଭୃତି ପ୍ରଧାନ ବୀର ବାନରମାନଙ୍କ ସହିତ ଆମ୍ଭେମାନେ ଆସିଅଛୁଁ । ୭ । ଆମ୍ଭମାନଙ୍କୁ ଏହି ଆଦେଶ ଦିଆଯାଇଅଛି—"ତୁମ୍ଭେମାନେ ସମସ୍ତେ ମିଳି କାମରୂପୀ ରାକ୍ଷସ ରାବଣକୁ ଏବଂ ସୀତାଙ୍କୁ ଅନ୍ୱେଷଣ କର" । ୮ । ସମସ୍ତ ବନକୁ ଏବଂ ସମୁଦ୍ରକୁ ଖୋଜିସାରି ଆମ୍ଭେମାନେ କ୍ଷୁଧାର୍ତ୍ତ ହୋଇ ବୃକ୍ଷର ଛାୟାରେ ଏକତ୍ର ହେଲୁଁ । ୯ । ଆମ୍ଭମାନଙ୍କର ମୁହଁ ଶୁଖିଯାଇଥିଲା ଏବଂ ସମସ୍ତେ ଚିନ୍ତା କରୁଥିଲୁଁ । ଚିନ୍ତାସାଗରରେ ମଗ୍ନ ହୋଇ ଆମ୍ଭେମାନେ ଯାହାର ପାର ଦେଖି ପାରୁ ନ ଥିଲୁଁ । ୧୦ । ସେହିଠାରୁ ଆଖି ବୁଲାଇ ବୁଲାଇ ଆମ୍ଭେମାନେ ଏହି ମହାବିଲକୁ ଦେଖିଲୁଁ । ଏହା ବୃକ୍ଷଲତାଯୁକ୍ତ ଏବଂ ଅନ୍ଧକାରପୂର୍ଣ୍ଣ ଥିଲା । ୧୧ । ଜଳଦ୍ୱାରା ଆର୍ଦ୍ର ଏବଂ ଜଳରେଣୁଯୁକ୍ତପକ୍ଷବିଶିଷ୍ଟ ହଂସ, ସାରସ, କୁରର ଆଦି ପକ୍ଷୀମାନେ ଏଠାରୁ ବାହାରକୁ ବାହାରିଲେ । ୧୨। ମୁଁ ବାନରମାନଙ୍କୁ କହିଲି, ଆଚ୍ଛା, ଚାଲ ଆମ୍ଭେମାନେ ଏହିଠାକୁ ଯିବା । ସେମାନଙ୍କର ମଧ୍ୟ ଏହାହିଁ (ଏଠାରେ ଜଳଥିବାର) ଅନୁମାନ ହେଲା । ୧୩ । କାର୍ଯ୍ୟର ବ୍ୟଗ୍ରତାହେତୁରୁ ଆମ୍ଭେମାନେ ସମସ୍ତେ

ଅସ୍ମିନ୍ନିପତିତାଃ ସର୍ବେଽପ୍ୟଥ କାର୍ଯ୍ୟତ୍ୱରାନ୍ୱିତାଃ ।
ତତୋ ଗାଢ଼ଂ ନିପତିତା ଗୃହ୍ୟ ହସ୍ତୈଃ ପରସ୍ପରମ୍ । ୧୪ ।
ଇଦଂ ପ୍ରବିଷ୍ଟାଃ ସହସା ବିଲଂ ତିମିରସଂବୃତମ୍ ।
ଏତନ୍ନଃ କାର୍ଯ୍ୟମେତେନ କୃତ୍ୟେନ ବୟମାଗତାଃ । ୧୫ ।
ତ୍ୱାଂ ଚୈବୋପଗତାଃ ସର୍ବେ ପରିଦ୍ୟୂନା ବୁଭୁକ୍ଷିତାଃ ।
ଆତିଥ୍ୟଧର୍ମଦତ୍ତାନି ମୂଲାନି ଚ ଫଲାନି ଚ । ୧୬ ।
ଅସ୍ମାଭିରୁପଭୁକ୍ତାନି ବୁଭୁକ୍ଷାପରିପୀଡ଼ିତୈଃ ।
ଯତ୍ତ୍ୱୟା ରକ୍ଷିତାଃ ସର୍ବେ ମ୍ରିୟମାଣା ବୁଭୁକ୍ଷୟା । ୧୭ ।
ବ୍ରୂହି ପ୍ରତ୍ୟୁପକାରାର୍ଥଂ କିଂ ତେ କୁର୍ବନ୍ତୁ ବାନରାଃ ।
ଏବମୁକ୍ତା ତୁ ସର୍ବଜ୍ଞା ବାନରୈସ୍ତୈଃ ସ୍ୱୟଂପ୍ରଭା । ୧୮ ।
ପ୍ରତ୍ୟୁବାଚ ତତଃ ସର୍ବାନିଦଂ ବାନର ଯୂଥପାନ୍ ।
ସର୍ବେଷାଂ ପରିତୁଷ୍ଟାସ୍ମି ବାନରାଣାଂ ତରସ୍ୱିନାମ୍ । ୧୯ ।
ଚରନ୍ତ୍ୟା ମମ ଧର୍ମେଣ ନ କାର୍ଯ୍ୟମିହ କେନଚିତ୍ ।
ଏବମୁକ୍ତଂ ଶୁଭଂ ବାକ୍ୟଂ ତାପସ୍ୟା ଧର୍ମସଂହିତମ୍ । ୨୦ ।
ଉବାଚ ହନୁମାନ୍ ବାକ୍ୟଂ ତାମନିନ୍ଦିତଲୋଚନାମ୍ ।
ଶରଣଂ ତ୍ୱାଂ ପ୍ରପନ୍ନାଃ ସ୍ମଃ ସର୍ବେ ବୈ ଧର୍ମଚାରିଣୀମ୍ । ୨୧ ।

---

ଏହିଠାକୁ ଚାଲି ଆସିଲୁଁ । ତା'ପରେ ପରସ୍ପର ହାତ ଧରାଧରି ହୋଇ ଆମ୍ଭେମାନେ ସମସ୍ତେ ଏକାବେଳକେ ଏହା ଭିତରକୁ ଡେଇଁ ପଡ଼ିଲୁଁ । ୧୪ । ଏହି ଅନ୍ଧକାରାଚ୍ଛନ୍ନ ବିଲଭିତରକୁ ଆମ୍ଭେମାନେ ହଠାତ୍ ଚାଲିଆସିଅଛୁଁ । ଏହାହିଁ ଆମ୍ଭମାନଙ୍କର କାର୍ଯ୍ୟ ଏବଂ ଏଇଥିନିମନ୍ତେ ଆମ୍ଭେମାନେ ଆସିଅଛୁଁ । ୧୫ । କ୍ଷୁଧାରେ ପୀଡ଼ିତ ହୋଇ ଆମ୍ଭେମାନେ ତୁମ୍ଭ ନିକଟକୁ ଆସିଅଛୁଁ ଏବଂ ଆତିଥ୍ୟଧର୍ମ ଅନୁସାରେ ତୁମେ ଆମ୍ଭମାନଙ୍କୁ ଫଳମୂଳ ଦେଇଅଛ । ୧୬ । କ୍ଷୁଧାରେ ବ୍ୟାକୁଳ ହୋଇ ଆମ୍ଭେମାନେ ତାହା ଖାଇଅଛୁଁ । କ୍ଷୁଧାରେ ମୃତପ୍ରାୟ ହୋଇଥିବାବେଳେ ତୁମେ ଆମ୍ଭମାନଙ୍କର ପ୍ରାଣ ରକ୍ଷା କରିଅଛ । ୧୭। ତୁମ୍ଭର ପ୍ରତ୍ୟୁପକାର ସ୍ୱରୂପ ବାନରମାନେ ତୁମ ନିମନ୍ତେ କଅଣ କରିବେ କହ ।" ବାନରମାନେ ଏହିପରି କହିବା ପରେ ସର୍ବଜ୍ଞ ସ୍ୱୟଂପ୍ରଭା କହିଲେ । ୧୮ । ସମସ୍ତ ବାନରଦଳପତିଙ୍କୁ ସେ କହିଲେ, "ତୁମ ସମସ୍ତ ବେଗଗାମୀ ବାନରମାନଙ୍କ ପ୍ରତି ମୁଁ ସନ୍ତୁଷ୍ଟ ହୋଇଅଛି । ୧୯ । ଧର୍ମାଚରଣ କରୁଥିବାରୁ ମୋର କୌଣସି କାର୍ଯ୍ୟରେ ପ୍ରୟୋଜନ ନାହିଁ ।" ତାପସୀ ଏହିପରି ଧର୍ମଯୁକ୍ତ ବଚନ କହିବା ପରେ ହନୁମାନ୍ ସେହି ସୁଲୋଚନାଙ୍କୁ କହିଲେ, "ଧର୍ମଚାରିଣି ! ତୁମ୍ଭର ଆମ୍ଭେମାନେ ସମସ୍ତେ ଶରଣାପନ୍ନ ହୋଇଅଛୁଁ । ୨୦-୨୧ ।

ଯଃ କୃତଃ ସମୟୋଽସ୍ମାସୁ ସୁଗ୍ରୀବେଣ ମହାତ୍ମନା ।
ସ ତୁ କାଲୋ ବ୍ୟତିକ୍ରାନ୍ତୋ ବିଲେ ଚ ପରିବର୍ତ୍ତତାମ୍ । ୨୨ ।
ସା ତ୍ୱମସ୍ମାଦ୍‌ବିଲାଦସ୍ମାନୁତ୍ତାରୟିତୁମର୍ହସି ।
ତସ୍ମାତ୍ସୁଗ୍ରୀବବଚନାଦତିକ୍ରାନ୍ତାନ୍ ଗତାୟୁଷଃ । ୨୩ ।
ତ୍ରାତୁମର୍ହସି ନଃ ସର୍ବାନ୍ ସୁଗ୍ରୀବଭୟଶଙ୍କିତାନ୍ ।
ମହଚ୍ଚ କାର୍ଯ୍ୟମସ୍ମାଭିଃ କର୍ତ୍ତବ୍ୟଂ ଧର୍ମଚାରିଣି । ୨୪ ।
ତଚ୍ଚାପି ନ କୃତଂ କାର୍ଯ୍ୟମସ୍ମାଭିରିହବାସିଭିଃ ।
ଏବମୁକ୍ତା ହନୁମତା ତାପସୀ ବାକ୍ୟମବ୍ରବୀତ୍ । ୨୫ ।
ଜୀବତା ଦୁଷ୍କରଂ ମନ୍ୟେ ପ୍ରବିଷ୍ଟେନ ନିବର୍ତ୍ତିତୁମ୍ ।
ତପସଃ ସୁପ୍ରଭାବେଣ ନିୟମୋପାର୍ଜିତେନ ଚ । ୨୬ ।
ସର୍ବାନେବ ବିଲାଦସ୍ମାତ୍ତାରୟିଷ୍ୟାମି ବାନରାନ୍ ।
ନିମୀଲୟତ ଚକ୍ଷୂଂଷି ସର୍ବେ ବାନରପୁଙ୍ଗବାଃ । ୨୭ ।
ନ ହି ନିଷ୍କ୍ରମିତୁଂ ଶକ୍ୟମନିମୀଲିତଲୋଚନୈଃ ।
ତତୋ ନିମୀଲିତାଃ ସର୍ବେ ସୁକୁମାରାଙ୍ଗୁଲୈଃ କରୈଃ । ୨୮ ।

---

ମହାତ୍ମା ସୁଗ୍ରୀବ ଆମ୍ଭମାନଙ୍କ ନିମନ୍ତେ ଯେଉଁ ସମୟର ଅବଧି ନିର୍ଦ୍ଦେଶ କରିଥିଲେ, ଏହି ଗର୍ତ୍ତ ମଧ୍ୟରେ ବୁଲି ବୁଲି ସେ ସମୟ ଅତିକ୍ରାନ୍ତ ହୋଇଗଲାଣି । ୨୨ । ଅତଏବ ଆପଣ ଆମ୍ଭମାନଙ୍କୁ ଏ ବିଳମଧ୍ୟରୁ ବାହାର କରାଇଦିଅନ୍ତୁ । ସୁଗ୍ରୀବଙ୍କ ଆଜ୍ଞା ଉଲ୍ଲଙ୍ଘନ କରିଥିବାରୁ ଆମ୍ଭମାନଙ୍କ ଜୀବନ ସନ୍ଦେହାପନ୍ନ ହୋଇଅଛି । ୨୩ । ସୁଗ୍ରୀବଙ୍କ ଭୟରେ ଭୀତ ଆମ୍ଭମାନଙ୍କୁ ତୁମ୍ଭର ପରିତ୍ରାଣ କରିବା ଉଚିତ । ହେ ଧର୍ମଚାରିଣି ! ଆମ୍ଭମାନଙ୍କର ଏକ ଅତି ମହତ୍ କାର୍ଯ୍ୟ (ସୀତାଙ୍କ ଅନ୍ୱେଷଣ) କରିବାକୁ ଅଛି । ୨୪ । ଏଠାରେ ରହିଥିଲେ ଆମ୍ଭେମାନେ ସେ କାର୍ଯ୍ୟ ସାଧନ କରିପାରିବୁଁ ନାହିଁ ।" ହନୁମାନ୍ ଏପରି କହିବା ପରେ ତାପସୀ କହିଲେ । ୨୫ । "ଏହା ମଧ୍ୟରେ ପ୍ରବେଶ କରି ଜୀବିତ ଥାଇ ଏଠାରୁ ଫେରିଯିବା ବଡ଼ କଷ୍ଟକର ଅଟେ । ତଥାପି ନିୟମଦ୍ୱାରା ଉପାର୍ଜିତ ମୋର ତପସ୍ୟାର ପ୍ରଭାବରେ ମୁଁ ସମସ୍ତ ବାନରଙ୍କୁ ଏ ବିଳମଧ୍ୟରୁ ବାହାର କରାଇଦେବି । ବାନରମାନେ ସମସ୍ତେ ଆପଣା ଆପଣା ଆଖି ବନ୍ଦକର । ୨୬-୨୭ । ଆଖି ନ ବୁଜିଲେ ଏଠାରୁ ବାହାରି ପାରିବ ନାହିଁ ।" ସବୁ ବାନର କୋମଳ ଅଙ୍ଗୁଳିଯୁକ୍ତ ହାତଦ୍ୱାରା ନିଜନିଜର

ସହସାପି ଦଧ୍ରୂର୍ଦ୍ଦୃଷ୍ଟିଂ ହୃଷ୍ଟ୍ୱା ଗମନକାଙ୍କ୍ଷୟା ।
ବାନରାସ୍ତୁ ମହାତ୍ମାନୋ ହସ୍ତରୁଦ୍ଧମୁଖାସ୍ତଦା । ୨୯ ।
ନିମେଷାନ୍ତରମାତ୍ରେଣ ବିଲାଦୁତ୍ତାରିତା ତୟା ।
ଉବାଚ ସର୍ବାଂସ୍ତାଂସ୍ତତ୍ର ତାପସୀ ଧର୍ମଚାରିଣୀ । ୩୦ ।
ନିଃସୃତାନ୍ ବିଷମାତ୍ତସ୍ମାତ୍ସମାଶ୍ୱାସ୍ୟେଦମବ୍ରବୀତ୍ ।
ଏଷ ବିନ୍ଧ୍ୟୋ ଗିରିଃ ଶ୍ରୀମାନ୍ନାନାଦ୍ରୁମଲତାଯୁତଃ । ୩୧ ।
ଏଷ ପ୍ରସ୍ରବଣଃ ଶୈଳଃ ସାଗରୋଽୟଂ ମହୋଦଧିଃ ।
ସ୍ୱସ୍ତି ବୋଽସ୍ତୁ ଗମିଷ୍ୟାମି ଭବନଂ ବାନରର୍ଷଭାଃ ।
ଇତ୍ୟୁକ୍ତ୍ୱା ତଦ୍ବିଲଂ ଶ୍ରୀମତ୍ ପ୍ରବିବେଶ ସ୍ୱୟଂପ୍ରଭା । ୩୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ବିଲପ୍ରବେଶକାରଣକଥନମ୍
ନାମ ଦ୍ୱିପଞ୍ଚାଶଃ ସର୍ଗଃ

---

ଆଖି ମୁଦିଲେ । ୨୮ । ସେଠାରୁ ଯିବା ଇଚ୍ଛାରେ ସବୁ ବାନର ଖୁସୀ ହୋଇ ଆପଣା ଆପଣା ଆଖି ବୁଜିଲେ ଏବଂ ହାତଦ୍ୱାରା ମୁହଁ ଘୋଡ଼ାଇଦେଲେ । ୨୯ । ମୁହୂର୍ତ୍ତକ ମଧ୍ୟରେ ସେ ତାପସୀ ସେମାନଙ୍କୁ ବିଲମଧ୍ୟରୁ ବାହାର କରାଇଦେଲେ । ତା'ପରେ ଧର୍ମଚାରିଣୀ ତାପସୀ ସେମାନଙ୍କ ସମସ୍ତଙ୍କୁ କହିଲେ । ୩୦ । ସେହି ବିଷମ ବିଲରୁ ନିର୍ଗତ ହୋଇ ଥିବା ବାନରମାନଙ୍କୁ ଆଶ୍ୱାସନା ଦେଇ ସେ କହିଲେ, "ବିବିଧ ବୃକ୍ଷଲତାଯୁକ୍ତ ବିନ୍ଧ୍ୟପର୍ବତ ହେଉଛି । ୩୧ । ହେଉଛି, ଏ ପ୍ରସ୍ରବଣ ପର୍ବତ ଏବଂ ଏ ମହୋଦଧି ସମୁଦ୍ର । ହେ ବାନରଶ୍ରେଷ୍ଠଗଣ ! ତୁମ୍ଭମାନଙ୍କର ମଙ୍ଗଳ ହେଉ । ମୁଁ ମୋ ଘରକୁ ଯିବି ।" ଏହା କହି ସ୍ୱୟଂପ୍ରଭା ସେହି ଶୋଭାପୂର୍ଣ୍ଣ ବିଲମଧ୍ୟରେ ପ୍ରବେଶ କଲେ । ୩୨ ।

# ତ୍ରିପଞ୍ଚାଶଃ ସର୍ଗଃ

## ଅଙ୍ଗଦାଦ୍ୟନିର୍ବେଦଃ

ତତସ୍ତେ ଦଦୃଶୁର୍ଘୋରଂ ସାଗରଂ ବରୁଣାଳୟମ୍ ।
ଅପାରମଭିଗର୍ଜନ୍ତଂ ଘୋରୈରୂର୍ମିଭିରାକୁଳମ୍ । ୧ ।
ମୟସ୍ୟ ମାୟାବିହିତଂ ଗିରିଦୁର୍ଗଂ ବିଚିନ୍ୱତାମ୍ ।
ତେଷାଂ ମାସୋ ବ୍ୟତିକ୍ରାନ୍ତୋ ଯୋ ରାଜ୍ଞା ସମୟଃ କୃତଃ । ୨ ।
ବିନ୍ଧ୍ୟସ୍ୟ ତୁ ଗିରେଃ ପାଦେ ସଂପ୍ରପୁଷ୍ପିତପାଦପେ ।
ଉପବିଶ୍ୟ ମହାତ୍ମାନଶ୍ଚିନ୍ତାମାପେଦିରେ ତଦା । ୩ ।
ତତଃ ପୁଷ୍ପାତିଭାରାଗ୍ରାଁଲ୍ଲତାଶତସମାବୃତାନ୍ ।
ଦ୍ରୁମାନ୍ ବାସନ୍ତିକାନ୍ ଦୃଷ୍ଟ୍ୱା ବଭୁବୁର୍ଭୟଶଙ୍କିତାଃ । ୪ ।
ତେ ବସନ୍ତମନୁପ୍ରାପ୍ତଂ ପ୍ରତିବେଦ୍ୟ ପରସ୍ପରମ୍ ।
ନଷ୍ଟସନ୍ଦେଶକାଲାର୍ଥା ନିପେତୁର୍ଧରଣୀତଳେ । ୫ ।
ତତସ୍ତାନ୍ କପିବୃଦ୍ଧାଂଶ୍ଚ ଶିଷ୍ଟାଂଶ୍ଚୈବ ବନୌକସଃ ।
ବାଗ୍ଭିର୍ମଧୁରୟାଭାଷ୍ୟ ଯଥାବଦନୁମାନ୍ୟ ଚ । ୬ ।

---

## ୫୩ଶ ସର୍ଗ

(ଅଙ୍ଗଦ ପ୍ରଭୃତିଙ୍କର ନିର୍ବେଦଭାବ)

ଅନନ୍ତର ସେମାନେ (ବାନରମାନେ) ବରୁଣଙ୍କର ନିବାସସ୍ଥାନ ଭୀଷଣ ସମୁଦ୍ରକୁ ଦେଖିଲେ । ତାହାର ପାର କଳା ହେଉ ନ ଥିଲା ଏବଂ ଭୟଙ୍କର ଲହରୀମାନଙ୍କଦ୍ୱାରା ବ୍ୟାକୁଳିତ ହୋଇ ତାହା ଅତିଶୟ ଗର୍ଜନ କରୁଥିଲା । ୧ । ମୟ ଦାନବର ମାୟାନିର୍ମିତ ଗିରିଦୁର୍ଗ ଅନ୍ୱେଷଣ କରୁ କରୁ ରାଜା ସୁଗ୍ରୀବଙ୍କ ନିର୍ଦ୍ଧାରିତ ଏକମାସ ସମୟ ସେମାନଙ୍କର ବିତିଯାଇଥିଲା । ୨ । ବିନ୍ଧ୍ୟପର୍ବତର ପୁଷ୍ପପୂର୍ଣ୍ଣ ବୃକ୍ଷଯୁକ୍ତ ପାଦଦେଶରେ ବସି ସେତେବେଳେ ସେ ମହାତ୍ମାମାନଙ୍କ ମନରେ ଚିନ୍ତା ଜାତ ହେଲା । ୩ । ଅନନ୍ତର ଅସଂଖ୍ୟ ଲତାବେଷ୍ଟିତ ପୁଷ୍ପଭାରାବନତ ବସନ୍ତକାଳୀନ ବୃକ୍ଷମାନଙ୍କୁ ଦେଖି ସେମାନେ ଭୟଭୀତ ହେଲେ । ୪ । ବସନ୍ତକାଳ ଆସିଗଲା ଏହି କଥା ପରସ୍ପରକୁ କହି ସୁଗ୍ରୀବଙ୍କର ନିର୍ଦ୍ଦିଷ୍ଟ କାଳ ବିତିଯିବାହେତୁରୁ ସେମାନେ ସମସ୍ତେ (ଭୟରେ) ଭୂମି ଉପରେ ପଡ଼ିଗଲେ । ୫ । ଅନନ୍ତର ସେହି ଶିଷ୍ଟ ବୃଦ୍ଧ ବାନରମାନଙ୍କୁ ମଧୁର କଥାରେ ସମ୍ଭାଷଣ ଏବଂ ସମ୍ମାନକରି ସେହି ସିଂହ

ସ ତୁ ସିଂହବୃଷସ୍କନ୍ଧଃ ପୀନାୟତଭୁଜଃ କପିଃ ।
ଯୁବରାଜୋ ମହାପ୍ରାଜ୍ଞ ଅଙ୍ଗଦୋ ବାକ୍ୟମବ୍ରବୀତ୍ ।୭।
ଶାସନାତ୍କପିରାଜସ୍ୟ ବୟଂ ସର୍ବେ ବିନିର୍ଗତାଃ ।
ମାସଃ ପୂର୍ଣୋ ବିଲସ୍ଥାନାଂ ହରୟଃ କିଂ ନ ବୁଧ୍ୟତ ।୮।
ବୟମାଶ୍ୱୟୁଜେ ମାସି କାଲସଂଖ୍ୟା ବ୍ୟବସ୍ଥିତାଃ ।
ପ୍ରସ୍ଥିତାଃ ସୋଽପି ଚାତୀତଃ କିମତଃ କାର୍ଯ୍ୟମୁତ୍ତରମ୍ ।୯।
ଭବନ୍ତଃ ପ୍ରତ୍ୟୟଂ ପ୍ରାପ୍ତା ନୀତିମାର୍ଗବିଶାରଦାଃ ।
ହିତେଷ୍ୱଭିରତା ଭର୍ତୁର୍ନିସୃଷ୍ଟାଃ ସର୍ବକର୍ମସୁ ।୧୦।
କର୍ମସ୍ୱପ୍ରତିମାଃ ସର୍ବେ ଦିକ୍ଷୁ ବିଶ୍ରୁତପୌରୁଷାଃ ।
ମାଂ ପୁରସ୍କୃତ୍ୟ ନିର୍ଯାତାଃ ପିଙ୍ଗାକ୍ଷପ୍ରତିଚୋଦିତାଃ ।୧୧।
ଇଦାନୀମକୃତାର୍ଥାନାଂ ମର୍ତ୍ତବ୍ୟଂ ନାତ୍ର ସଂଶୟଃ ।
ହରିରାଜସ୍ୟ ସଂଦେଶମକୃତ୍ୱା କଃ ସୁଖୀ ଭବେତ୍ ।୧୨।
ଅସ୍ମିନ୍ନତୀତେ କାଲେ ତୁ ସୁଗ୍ରୀବେଣ କୃତେ ସ୍ୱୟମ୍ ।
ପ୍ରାୟୋପବେଶନଂ ଯୁକ୍ତଂ ସର୍ବେଷାଂ ଚ ବନୌକସାମ୍ ।୧୩

---

ଏବଂ ବୃଷସଦୃଶ ସ୍କନ୍ଧବିଶିଷ୍ଟ ଦୀର୍ଘବଳିଷ୍ଠବାହୁ ମହାପ୍ରାଜ୍ଞ ଯୁବରାଜ ଅଙ୍ଗଦ ସେମାନଙ୍କୁ କହିଲେ ।୬-୭। "ବାନରରାଜଙ୍କ ଆଜ୍ଞା ଅନୁସାରେ ଆମ୍ଭେମାନେ ସମସ୍ତେ ବାହାରିଥିଲେଇଁ । ବିଳମଧ୍ୟରେହିଁ ଆମ୍ଭମାନଙ୍କର ମାସ ପୂର୍ଣ୍ଣ ହୋଇଗଲା । ହେ ବାନରଗଣ ! ଏ କଥା କ'ଣ ତୁମ୍ଭେମାନେ ଜାଣିପାରୁ ନାହଁ ? ।୮। ଆମ୍ଭେମାନେ ଆଶ୍ୱିନ ମାସରେ ସମୟର ଅବଧି ସ୍ଥିର କରି ଯାତ୍ରା କରିଥିଲେଇଁ । ସେ ଅବଧି ବିତିଗଲାଣି । ବର୍ତ୍ତମାନ ଆମ୍ଭମାନଙ୍କର କ'ଣ କରିବା ଉଚିତ ? ।୯। ଆପଣମାନେ ନୀତିମାର୍ଗ ବିଷୟରେ ବିଶେଷଜ୍ଞ, ପ୍ରଭୁଙ୍କର ବିଶ୍ୱସ୍ତ, ହିତାକାଂକ୍ଷୀ ଏବଂ ତାଙ୍କଦ୍ୱାରା ସମସ୍ତ କାର୍ଯ୍ୟରେ ନିଯୁକ୍ତ ହୁଅନ୍ତି ।୧୦। କାର୍ଯ୍ୟ ସାଧନ କରିବାରେ ସମସ୍ତେ ଅତୁଳନୀୟ ଏବଂ ସବୁ ଦିଗରେ ଆପଣମାନଙ୍କର ପରାକ୍ରମ ପ୍ରସିଦ୍ଧ ଅଟେ । ପୀତଚକ୍ଷୁଙ୍କ (ସୁଗ୍ରୀବଙ୍କ) ଦ୍ୱାରା ପ୍ରେରିତ ହୋଇ ମୋର ନେତୃତ୍ୱରେ ଆପଣମାନେ ବାହାରିଛନ୍ତି ।୧୧। ବର୍ତ୍ତମାନ ଅକୃତକାର୍ଯ୍ୟ ହେବାରୁ ଆମ୍ଭମାନଙ୍କୁ ସମସ୍ତଙ୍କୁ ମରିବାକୁ ହେବ, ଏଥିରେ ସନ୍ଦେହ ନାହିଁ । କାରଣ ବାନରରାଜଙ୍କର ଆଜ୍ଞା ପାଳନ ନ କରି କେଉଁ ଲୋକ ସୁଖୀ ହୋଇପାରେ ? ।୧୨। ସ୍ୱୟଂ ସୁଗ୍ରୀବଙ୍କଦ୍ୱାରା ନିର୍ଦ୍ଧାରିତ କାଳ ବିତିଯିବାରେ ବର୍ତ୍ତମାନ ସମସ୍ତ ବାନରଙ୍କର ପ୍ରାୟୋପବେଶନ

ତୀକ୍ଷ୍ଣଃ ପ୍ରକୃତ୍ୟା ସୁଗ୍ରୀବଃ ସ୍ୱାମିଭାବେ ବ୍ୟବସ୍ଥିତଃ ।
ନ କ୍ଷମିଷ୍ୟତି ନଃ ସର୍ବାନପରାଧକୃତୋ ଗତାନ୍ ।୧୪।
ଅପ୍ରବୃତ୍ତୌ ଚ ସୀତାୟାଃ ପାପମେବ କରିଷ୍ୟତି ।
ତସ୍ମାତ୍ କ୍ଷମମିହାଦ୍ୟୈବ ଗନ୍ତୁଂ ପ୍ରାୟୋପବେଶନମ୍ ।। ୧୫।
ତ୍ୟକ୍ତ୍ୱା ପୁତ୍ରାଂଶ୍ଚ ଦାରାଂଶ୍ଚ ଧନାନି ଚ ଗୃହାଣି ଚ ।
ଧ୍ରୁବଂ ନୋ ହିଂସିତା ରାଜା ସର୍ବାନ୍ ପ୍ରତିଗତାନିତଃ । ୧୬ ।
ବଧେନାପ୍ରତିରୂପେଣ ଶ୍ରେୟାନ୍ମୃତ୍ୟୁରିହୈବ ନଃ ।
ନ ଚାହଂ ଯୌବରାଜ୍ୟେନ ସୁଗ୍ରୀବେଣାଭିଷେଚିତଃ । ୧୭ ।
ନରେନ୍ଦ୍ରେଣାଭିଷିକ୍ତୋଽସ୍ମି ରାମେଣାକ୍ଲିଷ୍ଟକର୍ମଣା ।
ସ ପୂର୍ବଂ ବଦ୍ଧବୈରୋ ମାଂ ରାଜା ଦୃଷ୍ଟ୍ୱା ବ୍ୟତିକ୍ରମମ୍ । ୧୮ ।
ଘାତୟିଷ୍ୟତି ଦଣ୍ଡେନ ତୀକ୍ଷ୍ଣେନ କୃତନିଶ୍ଚୟଃ ।
କିଂ ମେ ସୁହୃଦ୍ଭିର୍ବ୍ୟସନଂ ପଶ୍ୟଦ୍ଭିର୍ଜୀବିତାନ୍ତରେ ।
ଇହୈବ ପ୍ରାୟମାସିଷ୍ୟେ ପୁଣ୍ୟେ ସାଗରରୋଧସି । ୧୯ ।
ଏତଚ୍ଛ୍ରୁତ୍ୱା କୁମାରେଣ ଯୁବରାଜେନ ଭାଷିତମ୍ ।
ସର୍ବେ ତେ ବାନରଶ୍ରେଷ୍ଠାଃ କରୁଣଂ ବାକ୍ୟମବ୍ରୁବନ୍ । ୨୦ ।

---

(ଉପବାସ କରି ମରିବା) ଉଚିତ । ୧୩ । ସୁଗ୍ରୀବଙ୍କର ସ୍ୱଭାବହିଁ ତୀକ୍ଷ୍ଣ ; ସେଥିରେ ପୁଣି ସେ ବର୍ତ୍ତମାନ ଆମ୍ଭମାନଙ୍କର ସ୍ୱାମିରୂପରେ ଅବସ୍ଥିତ । ଅପରାଧ କରି ଫେରିଲେ ଆମ୍ଭମାନଙ୍କୁ ସେ କଦାପି କ୍ଷମା କରିବେ ନାହିଁ । ୧୪ । ସୀତାଙ୍କର ସନ୍ଧାନ ନ ପାଇଲେ ସେ ଆମ୍ଭମାନଙ୍କୁ ନିଶ୍ଚୟ ବଧ କରିବେ । ଏହିହେତୁରୁ ଆମ୍ଭମାନଙ୍କର ପ୍ରାୟୋପବେଶନ କରିବାର ଏହାହିଁ ଉପଯୁକ୍ତ ସମୟ । ୧୫ । ପୁତ୍ର, ଦାରା, ଧନ, ଏବଂ ଗୃହ ତ୍ୟାଗକରି ଆମ୍ଭମାନଙ୍କର ପ୍ରାୟୋପବେଶନ କରିବା ଉଚିତ । ଏଠାରୁ ଫେରିଗଲେ ରାଜା ଆମ୍ଭମାନଙ୍କୁ ସମସ୍ତଙ୍କୁ ନିଶ୍ଚୟ ବଧ କରିବେ । ୧୬ । ଅନୁଚିତ ବଧ ଅପେକ୍ଷା ଏହିଠାରେହିଁ ମରିଯିବା ଆମ୍ଭମାନଙ୍କ ନିମନ୍ତେ ଶ୍ରେୟସ୍କର । ସୁଗ୍ରୀବ ମୋତେ ଯୁବରାଜ ପଦରେ ଅଭିଷିକ୍ତ କରି ନାହାନ୍ତି । ଦୁଃସାଧ୍ୟ ସାଧନକାରୀ ରାଜା ରାମଚନ୍ଦ୍ର ହିଁ ମୋର ଅଭିଷେକ କରି ଅଛନ୍ତି । ସେ ରାଜା (ସୁଗ୍ରୀବ)ଙ୍କର ପୂର୍ବରୁ ମୋ ପ୍ରତି ବୈରିଭାବ ରହିଛି । ମୋର ଏହି ବ୍ୟତିକ୍ରମ ଦେଖି ସେ ନିଶ୍ଚୟ ମୋତେ କଠିନ ଦଣ୍ଡ ଦେବାକୁ ସଂକଳ୍ପ କରିବେ । ମୋର ଜୀବନ ବିନାଶସମୟରେ ଯେଉଁ ବନ୍ଧୁମାନେ ଦେଖିବେ ସେମାନଙ୍କୁ ଦୁଃଖ ଦେଇ ଲାଭ କଣ ? ଏହିଠାରେ ପବିତ୍ର ସମୁଦ୍ରତୀରରେ ମୁଁ ପ୍ରାୟୋପବେଶନ କରିବି” ।୧୭-୧୯। କୁମାର ଯୁବରାଜ ଏହିପରି କହିବାର ଶୁଣି ସେହିସବୁ ଶ୍ରେଷ୍ଠ ବାନରମାନେ କରୁଣଭାବରେ କହିଲେ । ୨୦ ।

ତୀକ୍ଷ୍ଣଃ ପ୍ରକୃତ୍ୟା ସୁଗ୍ରୀବଃ ପ୍ରିୟାରକ୍ତଶ୍ଚ ରାଘବଃ ।
ସମୀକ୍ଷ୍ୟାକୃତକାର୍ଯାଂସ୍ତୁ ତସ୍ମିଂଶ୍ଚ ସମୟେ ଗତେ । ୨୧ ।
ଅଦୃଷ୍ଟାୟାଂ ଚ ବୈଦେହ୍ୟାଂ ଦୃଷ୍ଟ୍ୱା ଚୈବ ସମାଗତାନ୍ ।
ରାଘବପ୍ରିୟକାମାୟ ଘାତୟିଷ୍ୟତ୍ୟସଂଶୟମ୍ । ୨୨ ।
ନ କ୍ଷମଂ ହ୍ୟପରାଦ୍ଧାନାଂ ଗମନଂ ସ୍ୱାମିପାର୍ଶ୍ୱତଃ ।
ପ୍ରଧାନଭୂତାଶ୍ଚ ବୟଂ ସୁଗ୍ରୀବସ୍ୟ ସମାଗତାଃ । ୨୩ ।
ଇହୈବ ସୀତାମନ୍ୱୀକ୍ଷ୍ୟ ପ୍ରବୃତ୍ତିମୁପଲଭ୍ୟ ବା ।
ନ ଚେଦ୍‌ଗଚ୍ଛାମ ତଂ ବୀରଂ ଗମିଷ୍ୟାମୋ ଯମକ୍ଷୟମ୍ । ୨୪ ।

ପ୍ଳବଙ୍ଗମାନାଂ ତୁ ଭୟାର୍ଦ୍ଦିତାନାମ୍
ଶ୍ରୁତ୍ୱା ବଚସ୍ତାର ଇଦଂ ବଭାଷେ ।
ଅଲଂ ବିଷାଦେନ ବିଲଂ ପ୍ରବିଶ୍ୟ
ବସାମ ସର୍ବେ ଯଦି ରୋଚତେ ବଃ । ୨୫ ।
ଇଦଂ ହି ମାୟାବିହିତଂ ସୁଦୁର୍ଗମମ୍
ପ୍ରଭୂତପୁଷ୍ପୋଦକଭୋଜ୍ୟପେୟମ୍ ।
ଇହାସ୍ତି ନୋ ନୈବ ଭୟଂ ପୁରନ୍ଦରା-
ନ୍ନ ରାଘବାଦ୍‌ବାନରରାଜତୋଽପି ବା । ୨୬ ।

---

"ସୁଗ୍ରୀବଙ୍କର ପ୍ରକୃତି କଠୋର ଏବଂ ରାମଚନ୍ଦ୍ର ନିଜର ପ୍ରିୟାଙ୍କ ପ୍ରତି ଅନୁରକ୍ତ । ଆମ୍ଭମାନଙ୍କୁ ଅକୃତକାର୍ଯ୍ୟ ଦେଖି ଏବଂ ସମୟ ଅତୀତ ହେବାର ଦେଖି, ପୁଣି ସୀତାଙ୍କୁ ନ ଦେଖି ଏବଂ ଆମ୍ଭମାନଙ୍କୁ ଫେରିଯିବାର ଦେଖି ରାମଚନ୍ଦ୍ରଙ୍କୁ ପ୍ରୀତ କରିବା ଉଦ୍ଦେଶ୍ୟରେ ସେ (ସୁଗ୍ରୀବ) ଆମ୍ଭମାନଙ୍କୁ ନିଶ୍ଚୟ ହତ୍ୟା କରିବେ, ଏଥିରେ ସନ୍ଦେହ ନାହିଁ । ୨୧-୨୨ । ଅପରାଧୀମାନଙ୍କର ସ୍ୱାମୀଙ୍କ ନିକଟକୁ ଯିବା ଉଚିତ ନୁହେ । ଆମ୍ଭେମାନେ ପୁଣି ସୁଗ୍ରୀବଙ୍କର ପ୍ରଧାନ ସେବକ ହୋଇ ଏଠାକୁ ଆସିଥାଇଁ । ୨୩ । ଆମେ ଯଦି ଏହିଠାରେ ସୀତାଙ୍କୁ ନ ଦେଖି ବା ତାଙ୍କର ସନ୍ଧାନ ନ ନେଇ ସେ ବୀରଙ୍କ ନିକଟକୁ ନ ଯିବା ତେବେ ଆମ୍ଭମାନଙ୍କୁ ନିଶ୍ଚୟ ଯମାଳୟକୁ ଯିବାକୁ ପଡିବ" ।୨୪। ଭୟପୀଡ଼ିତ ବାନରମାନଙ୍କର ବଚନ ଶୁଣି ତାର କହିଲେ, "ଦୁଃଖ କରିବା ଦରକାର ନାହିଁ । ଯଦି ତୁମ୍ଭମାନଙ୍କ ମନକୁ ପାଏ,ତେବେ ଚାଲ ଆମେ ସମସ୍ତେ ଯାଇ ଏହି ବିଳମଧ୍ୟରେ ବାସକରିବା । ୨୫ । ଏହି ବିଳ ମାୟାନିର୍ମିତ ଏବଂ ଦୁର୍ଗମ ଅଟେ । ଏଠାକୁ କେହି ସହଜରେ ପ୍ରବେଶ କରିପାରିବ ନାହିଁ । ପ୍ରଚୁର ଜଳ, ଭୋଜନ ଏବଂ ପାନୀୟ ଏଠାରେ ରହିଛି । ଏଠାରେ ଇନ୍ଦ୍ର, ରାମଚନ୍ଦ୍ର ବା ବାନରରାଜ

ଶ୍ରୁତ୍ୱାଙ୍ଗଦସ୍ୟାପି ବଚୋଽନୁକୂଲ-
ମୂଚୁଶ୍ଚ ସର୍ବେ ହରୟଃ ପ୍ରତୀତାଃ ।
ଯଥା ନ ହନ୍ୟେମ ତଥା ବିଧାନ-
ମସକ୍ତମଦ୍ୟୈବ ବିଧୀୟତାଂ ନଃ । ୨୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ଅଙ୍ଗଦାବିନୟବେଦୋ
ନାମ ଦ୍ୱିପଞ୍ଚାଶଃ ସର୍ଗଃ

---

ସୁଗ୍ରୀବ କାହାରଠାରୁ ଆମ୍ଭମାନଙ୍କର ଭୟ ନାହିଁ" । ୨୧ । ଅଙ୍ଗଦଙ୍କ କଥାର ଅନୁକୂଳ ତାରଙ୍କର ବଚନ ଶୁଣି ବାନରମାନେ ସମସ୍ତେ ବିଶ୍ୱସ୍ତଭାବରେ କହିଲେ, "ଯେପରି ଆମ୍ଭେମାନେ ନ ମରିବା ସେହିପରି ଉପାୟ ଶୀଘ୍ର ଆଜ ହିଁ କରିବା ଉଚିତ" । ୨୨ ।

———

# ଚତୁଃପଞ୍ଚାଶଃ ସର୍ଗଃ

## ହନୂମଦ୍‌ଭେଦନମ୍

ତଥା ବ୍ରୁବତି ତାରେ ତୁ ତାରାଧିପତିବର୍ଚସି ।
ଅଥ ମେନେ ହୃତଂ ରାଜ୍ୟଂ ହନୂମାନଙ୍ଗଦେନ ତତ୍ । ୧ ।
ବୁଦ୍ଧ୍ୟା ହ୍ୟଷ୍ଟାଙ୍ଗୟା ଯୁକ୍ତଂ ଚତୁର୍ବଲସମନ୍ୱିତମ୍ ।
ଚତୁର୍ଦଶଗୁଣଂ ମେନେ ହନୂମାନ୍ ବାଲିନଃ ସୁତମ୍ । ୨ ।
ଆପୂର୍ଯମାଣଂ ଶଶ୍ୱଚ୍ଚ ତେଜୋବଲପରାକ୍ରମୈଃ ।
ଶଶିନଂ ଶୁକ୍ଳପକ୍ଷାଦୌ ବର୍ଧମାନମିବ ଶ୍ରିୟା । ୩ ।
ବୃହସ୍ପତିସମଂ ବୁଦ୍ଧ୍ୟା ବିକ୍ରମେ ସଦୃଶଂ ପିତୁଃ ।
ଶୁଶ୍ରୂଷମାଣଂ ତାରସ୍ୟ ଶୁକ୍ରସ୍ୟେବ ପୁରନ୍ଦରମ୍ । ୪ ।
ଭର୍ତୁରର୍ଥେ ପରିଶ୍ରାନ୍ତଂ ସର୍ବଶାସ୍ତ୍ରବିଶାରଦଃ ।
ଅଭିସଂଧାତୁମାରେଭେ ହନୂମାନଙ୍ଗଦଂ ତତଃ । ୫ ।

---

## ୫୪ଶ ସର୍ଗ

### (ହନୂମାନଙ୍କର ଅଙ୍ଗଦଙ୍କୁ ପରାମର୍ଶ)

ଚନ୍ଦ୍ରଙ୍କ ସଦୃଶ ଦୀପ୍ତିଯୁକ୍ତ ତାର ଏପରି କହିବା ପରେ ହନୂମାନ୍ ମନେକଲେ ଯେ ଅଙ୍ଗଦର ରାଜ୍ୟ ନଷ୍ଟ ହେଲା । ୧ । ବାଳୀଙ୍କ ପୁତ୍ର ଅଙ୍ଗଦଙ୍କୁ ହନୂମାନ୍ ଅଷ୍ଟାଙ୍ଗ ବୁଦ୍ଧିଯୁକ୍ତ, ଚତୁରଙ୍ଗବଳଯୁକ୍ତ ତଥା ଚତୁର୍ଦ୍ଦଶଗୁଣାନ୍ୱିତ ବୋଲି ବୁଝିଥିଲେ । ୨ । (ଅଷ୍ଟାଙ୍ଗବୁଦ୍ଧି—ଶୁଣିବାର ଇଚ୍ଛା, ଶ୍ରବଣ, ଘ୍ରାଣ, ଧାରଣ, ଊହାପୋହ, ଅର୍ଥ-ବିଜ୍ଞାନ ଏବଂ ତତ୍ତ୍ୱଜ୍ଞାନ । ଚତୁର୍ବଳ—ସାମ, ଦାନ, ଦଣ୍ଡ, ଭେଦ । ଚୌଦ ଗୁଣ—ଦେଶକାଳଜ୍ଞାନ, ଦୃଢ଼ତା, କଷ୍ଟସହିଷ୍ଣୁତା, ସର୍ବବିଜ୍ଞାନତା, ଦକ୍ଷତା, ଉତ୍ସାହ, ମନ୍ତ୍ରଗୁପ୍ତି, ଏକବାକ୍ୟତା, ଶୁରତା, ଭକ୍ତିଜ୍ଞାନ, କୃତଜ୍ଞତା, ଶରଣାଗତବାତ୍ସଲ୍ୟ, ଅମର୍ଷିତା ଏବଂ ଅଚାପଲ୍ୟ । ତେଜ, ବଳ ଏବଂ ପରାକ୍ରମରେ ଶୁକ୍ଳପକ୍ଷରେ ବଢ଼ୁଥିବା ଚନ୍ଦ୍ର ପରି ଅଙ୍ଗଦ ତେଜ, ବଳ ଏବଂ ପରାକ୍ରମରେ ଦିନ ଦିନ ପୂର୍ଣ୍ଣ ହେଉ ଅଛନ୍ତି । ୩ । ସେ ବୁଦ୍ଧିରେ ବୃହସ୍ପତିସମାନ, ପରାକ୍ରମରେ ପିତାଙ୍କ ସମାନ ଥିଲେ । ଇନ୍ଦ୍ର ଶୁକ୍ରଙ୍କର ଉପଦେଶ ଶୁଣିଲାପରି ଅଙ୍ଗଦ ତାରଙ୍କ କଥା ଶୁଣିଲେ । ସ୍ୱାମୀଙ୍କ କାର୍ଯ୍ୟରେ ପରିଶ୍ରାନ୍ତ ଅଙ୍ଗଦଙ୍କୁ ସର୍ବଶାସ୍ତ୍ରବିଶାରଦ ହନୂମାନ ନିଜର ଅନୁକୂଳ କରିବା (ଅର୍ଥାତ୍ ତାରଙ୍କ କଥାରେ ନ ମାତିଯିବା) ନିମନ୍ତେ ଉଦ୍‌ଯୋଗ କରିବାକୁ

ସ ଚତୁର୍ଣାମୁପାୟାନାଂ ତୃତୀୟମୁପବର୍ଣୟନ୍ ।
ଭେଦୟାମାସ ତାନ୍ ସର୍ବାନ୍ ବାନରାନ୍ ବାକ୍ୟସମ୍ପଦା । ୭ ।
ତେଷୁ ସର୍ବେଷୁ ଭିନ୍ନେଷୁ ତତୋଽଭୀଷୟଦଙ୍ଗଦମ୍ ।
ଭୀଷଣୈର୍ବିବିଧୈର୍ବାକ୍ୟୈଃ କୋପୋପାୟସମନ୍ୱିତୈଃ ।୭।
ତ୍ୱଂ ସମର୍ଥତରଃ ପିତ୍ରା ଯୁଦ୍ଧେ ତାରେୟ ବୈ ଧ୍ରୁବମ୍ ।
ଦୃଢ଼ଂ ଧାରୟିତୁଂ ଶକ୍ତଃ କପିରାଜ୍ୟଂ ଯଥା ପିତା । ୮ ।
ନିତ୍ୟମସ୍ଥିରଚିତ୍ତା ହି କପୟୋ ହରିପୁଙ୍ଗବ ।
ନାଜ୍ଞାପ୍ୟଂ ବିଷହିଷ୍ୟନ୍ତି ପୁତ୍ରଦାରଂ ବିନା ତ୍ୱୟା । ୯ ।
ତ୍ୱାଂ ନୈତେ ହ୍ୟନୁରଜ୍ୟେୟୁଃ ପ୍ରତ୍ୟକ୍ଷଂ ପ୍ରବଦାମି ତେ ।
ଯଥାୟଂ ଜାମ୍ବବାନ୍ନୀଲଃ ସୁହୋତ୍ରଶ୍ଚ ମହାକପିଃ । ୧୦ ।
ନ ହ୍ୟହଂ ତେ ଇମେ ସର୍ବେ ସାମଦାନାଦିଭିର୍ଗୁଣୈଃ ।
ଦଣ୍ଡେନ ନ ତ୍ୱୟା ଶକ୍ୟାଃ ସୁଗ୍ରୀବାଦପକର୍ଷିତୁମ୍ । ୧୧।
ବିଗୃହ୍ୟାସନମପ୍ୟାହୁର୍ଦୁର୍ବଲେନ ବଲୀୟସା ।
ଆତ୍ମରକ୍ଷାକରସ୍ତସ୍ମାନ୍ନ ବିଗୃହ୍ଣୀତ ଦୁର୍ବଲଃ । ୧୨ ।

---

ଆରମ୍ଭ କଲେ । ୪-୫ । ଚାରି ଉପାୟମଧ୍ୟରୁ ତୃତୀୟଟିକୁ ( ଅର୍ଥାତ୍ ଭେଦନୀତି ) ବର୍ଣ୍ଣନାକରି ସେ କଥାଦ୍ୱାରା ସବୁ ବାନରଙ୍କ ମଧ୍ୟରେ ଭେଦଭାବ ଜାତ କରାଇଲେ । ବାନରମାନଙ୍କ ମଧ୍ୟରେ ଭେଦ ଜାତ ହେବାପରେ ଅନେକ ଭୟାନକ ଏବଂ କ୍ରୋଧଯୁକ୍ତ ବଚନଦ୍ୱାରା ସେ ଅଙ୍ଗଦଙ୍କୁ ଡରାଇଲେ । ୭ । "ହେ ତାରାପୁତ୍ର ! ତୁମେ ଯୁଦ୍ଧରେ ତୁମ ପିତାଙ୍କଠାରୁ ମଧ୍ୟ ଅଧିକତର ସମର୍ଥ । ତୁମ ପିତାଙ୍କ ପରି ତୁମେ ବାନରରାଜ୍ୟକୁ ଧାରଣ କରିବାକୁ ସମର୍ଥ । ୮ । ହେ ବାନରଶ୍ରେଷ୍ଠ ! ବାନରମାନେ ସର୍ବଦା ଚଞ୍ଚଳଚିତ୍ତ ଅଟନ୍ତି । ଏମାନେ ପତ୍ନୀ ପୁତ୍ର ଛାଡ଼ି ତୁମ୍ଭର ଆଜ୍ଞାକୁ କେବେ ମାନି ଚଳିବେ ନାହିଁ । ୯ । ମୁଁ ତୁମ୍ଭଙ୍କୁ ସ୍ପଷ୍ଟ କହୁଛି, ଏହି ଜାମ୍ବବାନ୍, ନୀଳ ଏବଂ ସୁହୋତ୍ର ପ୍ରଭୃତି ମହାକପିମାନେ କଦାପି ତୁମପ୍ରତି ଅନୁରକ୍ତ ହେବେ ନାହିଁ । ୧୦ । ତୁମେ ସାମଦାନାଦି ଗୁଣଦ୍ୱାରା ବା ଦଣ୍ଡଦ୍ୱାରା ମୋତେ ଏବଂ ଏ ସବୁ କପିଙ୍କୁ ସୁଗ୍ରୀବଙ୍କଠାରୁ ପୃଥକ୍ କରାଇ ପାରିବ ନାହିଁ । ୧୧ । ଦୁର୍ବଳ ସହିତ ବିରୋଧ କରି ବଳବାନ୍ ବ୍ୟକ୍ତି ଅଲଗା ହୋଇ ରହିପାରେ, ମାତ୍ର ଦୁର୍ବଳ ନୁହେ । କାରଣ ତାହାକୁ ଆତ୍ମରକ୍ଷା କରିବାର ଆବଶ୍ୟକ ପଡ଼ିବ । ଅତଏବ ଦୁର୍ବଳର ବିରୋଧ କରିବା ଉଚିତ ନୁହେ । ୧୨ । ଏ ଯେଉଁ ଗୁହାକୁ ତୁମେ ତାରଙ୍କ କଥା ଶୁଣି

ଯାଂ ଚେମାଂ ମନ୍ୟସେ ଧାତ୍ରୀମେତଦ୍‌ବଲମିତି ଶ୍ରୁତମ୍ ।
ଏତଲ୍ଲକ୍ଷ୍ମଣବାଣାନାମୀଷତ୍କାର୍ଯ୍ୟଂ ବିଦାରଣମ୍ । ୧୩ ।
ସ୍ୱଳ୍ପଂ ହି କୃତମିନ୍ଦ୍ରେଣ କ୍ଷିପତା ହ୍ୟଶନିଂ ପୁରା ।
ଲକ୍ଷ୍ମଣୋ ନିଶିତୈର୍ବାଣୈର୍ଭିନ୍ଦ୍ୟାତ୍ପତ୍ରପୁଟଂ ଯଥା । ୧୪ ।
ଲକ୍ଷ୍ମଣସ୍ୟ ତୁ ନାରାଚା ବହବଃ ସନ୍ତି ତଦ୍‌ବିଧାଃ ।
ବଜ୍ରାଶନିସମସ୍ପର୍ଶା ଗିରୀଣାମପି ଦାରକାଃ । ୧୫ ।
ଅବସ୍ଥାନଂ ଯଦୈବ ତ୍ୱମାସିଷ୍ୟସି ପରନ୍ତପ ।
ତଦୈବ ହରୟଃ ସର୍ବେ ତ୍ୟକ୍ଷ୍ୟନ୍ତି କୃତନିଶ୍ଚୟାଃ । ୧୬ ।
ସ୍ମରନ୍ତଃ ପୁତ୍ରଦାରାଣାଂ ନିତ୍ୟୋଦ୍‌ବିଗ୍ନା ବୁଭୁକ୍ଷିତାଃ ।
ଖେଦିତା ଦୁଃଖଶଯ୍ୟାଭିସ୍ତ୍ୱାଂ କରିଷ୍ୟନ୍ତି ପୃଷ୍ଠତଃ । ୧୭ ।
ସ ତ୍ୱଂ ହୀନଃ ସୁହୃଦ୍‌ଭିଶ୍ଚ ହିତକାମୈଶ୍ଚ ବନ୍ଧୁଭିଃ ।
ତୃଣାଦପି ଭୃଶୋଦ୍‌ବିଗ୍ନଃ ସ୍ପନ୍ଦମାନାଦ୍‌ଭବିଷ୍ୟସି । ୧୮ ।
ଅତ୍ୟୁଗ୍ରବେଗା ନିଶିତା ଘୋରା ଲକ୍ଷ୍ମଣସାୟକାଃ ।
ଅପାବୃତ୍ତଂ ଜିଘାଂସନ୍ତୋ ମହାବେଗା ଦୁରାସଦାଃ । ୧୯ ।
ଅସ୍ମାଭିସ୍ତୁ ଗତଂ ସାର୍ଧଂ ବିନୀତବଦୁପସ୍ଥିତମ୍ ।
ଆନୁପୂର୍ବ୍ୟାତ୍ତୁ ସୁଗ୍ରୀବୋ ରାଜ୍ୟେ ତ୍ୱାଂ ସ୍ଥାପୟିଷ୍ୟତି ।୨୦ ।

---

ଘର ବଳ ବୋଲି ମନେକରୁଛ, ତାହାକୁ ଲକ୍ଷ୍ମଣ ବାଣଦ୍ୱାରା ଅତି ସହଜରେ ବିଦାରଣ କରିଦେଇ ପାରିବେ । ୧୩ । ପୂର୍ବେ ଇନ୍ଦ୍ର ବଜ୍ର ନିକ୍ଷେପକରି ଏହାକୁ କିୟତ୍ ପରିମାଣରେ ବିନଷ୍ଟ କରିଅଛନ୍ତି । ମାତ୍ର ଲକ୍ଷ୍ମଣ ତୀକ୍ଷ୍ଣ ଶରଦ୍ୱାରା ଏହାକୁ ପତ୍ରପୁଡ଼ାଟିଏପରି ଛିନ୍ନଭିନ୍ନ କରିଦେବେ । ୧୪ । ଲକ୍ଷ୍ମଣଙ୍କର ଏପରି ଅନେକ ଶର ଅଛି, ଯାହାକି ବଜ୍ରସମାନ ପର୍ବତକୁ ମଧ୍ୟ ବିଦୀର୍ଣ୍ଣ କରିଦେଇପାରେ । ୧୫ । ହେ ପରନ୍ତପ ! ତୁମେ ଯେତେବେଳେ ଏହି ସ୍ଥାନକୁ ଆଶ୍ରୟକରି ରହିବାକୁ ଲାଗିବ, ସେତେବେଳେ ସବୁ ବାନର ନିଶ୍ଚୟ କରି ତୁମ୍ଭଙ୍କୁ ତ୍ୟାଗକରି ଚାଲିଯିବେ । ୧୬ । ଏମାନେ ସ୍ତ୍ରୀ ପୁତ୍ରଙ୍କୁ ସ୍ମରଣ କରି ସର୍ବଦା ଉଦ୍‌ବିଗ୍ନ ହେବେ ଏବଂ କ୍ଷୁଧା ଓ ଅନ୍ୟାନ୍ୟ ଦୁଃଖରେ ଖିନ୍ନହୋଇ ତୁମ୍ଭଙ୍କୁ ପିଠିକରି ଚାଲିଯିବେ । ୧୭ । ତୁମେ ଏହିପରି ହିତାକାଙ୍‌କ୍ଷୀ ବନ୍ଧୁମାନଙ୍କଠାରୁ ବିଚ୍ଛିନ୍ନ ହୋଇ, ଉଡୁଥିବା ଘାସ ପରି ଦୁର୍ବଳ ହୋଇ ଅତିଶୟ ଉଦ୍‌ବିଗ୍ନ ହୋଇପଡ଼ିବ । ୧୮ । ଲକ୍ଷ୍ମଣଙ୍କର ବେଗବାନ୍ ଭୀଷଣ ତୀକ୍ଷ୍ଣ ବାଣ ରାମଙ୍କ କାର୍ଯ୍ୟରେ ବିମୁଖ ତୁମ୍ଭଙ୍କୁ ବଧ କରିବା-ନିମନ୍ତେ ଉଦ୍ୟତ ହେବ । ୧୯ । ମାତ୍ର ଆମ୍ଭମାନଙ୍କ ସଙ୍ଗରେ ଯାଇ ବିନୟପୂର୍ବକ ସୁଗ୍ରୀବଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ସେ ସମୟରେ ନିଶ୍ଚୟ ତୁମ୍ଭଙ୍କୁ ରାଜ୍ୟରେ

ଧର୍ମରାଜଃ ପିତୃବ୍ୟସ୍ତେ ପ୍ରୀତିକାମୋ ଦୃଢ଼ବ୍ରତଃ ।
ଶୁଚିଃ ସତ୍ୟପ୍ରତିଜ୍ଞଶ୍ଚ ସ ତ୍ୱାଂ ଜାତୁ ନ ନାଶୟେତ୍ । ୨୧ ।
ପ୍ରିୟକାମଶ୍ଚ ତେ ମାତୁସ୍ତଦର୍ଥଂ ଚାସ୍ୟ ଜୀବିତମ୍ ।
ତସ୍ୟାପତ୍ୟଂ ଚ ନାସ୍ତ୍ୟନ୍ୟତ୍ତସ୍ମାଦଙ୍ଗଦ ଗମ୍ୟତାମ୍ । ୨୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ହନୂମଦ୍ଭେଦନମ୍
ନାମ ଚତୁଃପଞ୍ଚାଶଃ ସର୍ଗଃ

---

ପ୍ରତିଷ୍ଠିତ କରିବେ । ୨୦ । ତୁମ୍ଭର ପିତୃବ୍ୟ ଧର୍ମାତ୍ମା, ଶୁଦ୍ଧ ଓ ସତ୍ୟପ୍ରତିଜ୍ଞ ଅଟନ୍ତି । ସେ ତୁମ୍ଭଙ୍କୁ ପ୍ରେମ କରନ୍ତି । ସେ କଦାପି ତୁମ୍ଭର ବିନାଶ କରିବେ ନାହିଁ । ୨୧ । ସୁଗ୍ରୀବ ତୁମ ମାତାଙ୍କର ପ୍ରିୟକାର୍ଯ୍ୟ କରିବାକୁ ସର୍ବଦା ତତ୍ପର । ତାଙ୍କ ଲାଗି ସେ ଜୀବନ ଦେବାକୁ ମଧ୍ୟ ପ୍ରସ୍ତୁତ । ତାଙ୍କର ମଧ୍ୟ ଅନ୍ୟ ସନ୍ତାନ ନାହିଁ । ଅତଏବ ହେ ଅଙ୍ଗଦ ! ତୁମେ କିଷ୍କିନ୍ଧାପୁରେ ଚାଲ” । ୨୨ ।

# ପଞ୍ଚପଞ୍ଚାଶଃ ସର୍ଗଃ

## ପ୍ରାୟୋପବେଶଃ

ଶ୍ରୁତ୍ବା ହନୁମତୋ ବାକ୍ୟଂ ପ୍ରଶ୍ରିତଂ ଧର୍ମସଂହିତମ୍ ।
ସ୍ବାମିସତ୍କାରସଂଯୁକ୍ତମଙ୍ଗଦୋ ବାକ୍ୟମବ୍ରବୀତ୍ । ୧ ।
ସ୍ଥୈର୍ଯଂ ସର୍ବ୍ବଂ ମନଃଶୌଚମାନୃଶଂସ୍ୟମଥାର୍ଜବମ୍ ।
ବିକ୍ରମଶ୍ଚୈବ ଧୈର୍ଯଂ ଚ ସୁଗ୍ରୀବେ ନୋପପଦ୍ୟତେ । ୨ ।
ଭ୍ରାତୁର୍ଜ୍ୟେଷ୍ଠସ୍ୟ ଯୋ ଭାର୍ଯାଂ ଜୀବତୋ ମହିଷୀଂ ପ୍ରିୟାମ୍ ।
ଧର୍ମେଣ ମାତରଂ ଯସ୍ତୁ ସ୍ବୀକରୋତି ଜୁଗୁପ୍ସିତଃ ।୩।
କଥଂ ସ ଧର୍ମଂ ଜାନୀତେ ଯେନ ଭ୍ରାତ୍ରା ଦୁରାତ୍ମନା ।
ଯୁଦ୍ଧାୟାଭିନିଯୁକ୍ତେନ ବିଲସ୍ୟ ପିହିତଂ ମୁଖମ୍ । ୪ ।
ସତ୍ୟାତ୍ପାଣିଗୃହୀତଶ୍ଚ କୃତକର୍ମା ମହାଯଶାଃ ।
ବିସ୍ମୃତୋ ରାଘବୋ ଯେନ ସ କସ୍ୟ ସୁକୃତଂ ସ୍ମରେତ୍ । ୫ ।
ଲକ୍ଷ୍ମଣସ୍ୟ ଭୟେନେହ ନାଧର୍ମଭୟଭୀରୁଣା ।
ଆଦିଷ୍ଟା ମାର୍ଗିତୁଂ ସୀତାଂ ଧର୍ମସ୍ତସ୍ମିନ୍ କଥଂ ଭବେତ୍ । ୬ ।

---

## ୫୫ଶ ସର୍ଗ

### (ଅଙ୍ଗଦଙ୍କର ଅନଶନ)

ହନୂମାନଙ୍କର ଧର୍ମଯୁକ୍ତ ନମ୍ରତ ଏବଂ ପ୍ରଭୁଭକ୍ତିପୂର୍ଣ୍ଣ ବଚନ ଶୁଣି ଅଙ୍ଗଦ କହିଲେ । ୧ । "ସ୍ଥିରତା, ସତ୍ତ୍ବ ଏବଂ ମନର ପବିତ୍ରତା, ଦୟାଳୁତା, ସରଳତା, ଧୀରତା ଏବଂ ବିକ୍ରମ ଏ ସମସ୍ତ ଗୁଣ ସୁଗ୍ରୀବଙ୍କଠାରେ ନାହିଁ । ୨ । ଜ୍ୟେଷ୍ଠ ଭ୍ରାତାଙ୍କର ପ୍ରିୟମହିଷୀ ଧର୍ମରେ ମାତୃସଦୃଶ ଅଟନ୍ତି । ଭାଇ ଜୀବିତ ଥାଉଁ ଥାଉଁ ତାଙ୍କୁ ଯେ ଗ୍ରହଣ କରେ ସେ ଗର୍ହଣୀୟ ଅଟେ । ୩ । ଯେଉଁ ଦୁରାତ୍ମା ଭାଇଙ୍କ ଦ୍ୱାରା ଯୁଦ୍ଧରେ ନିୟୋଜିତ ହୋଇ ବିଳର ଦ୍ୱାର ବନ୍ଦ କରିଦେଲା ସେ ଧର୍ମ ଜାଣେ ବୋଲି କପରି କୁହାଯିବ ?। ୪ । ସତ୍ୟକୁ ସାକ୍ଷୀ କରି ହାତଧରି ଯେ ମିତ୍ରତା କରିଥିଲେ, ସେହି ରାମଚନ୍ଦ୍ରଙ୍କୁ ଯେ ଭୁଲିଗଲା ସେ ବ୍ୟକ୍ତି କାହାର ସତ୍‌କାର୍ଯ୍ୟକୁ ସ୍ମରଣ କରିବ ? । ୫ । ଯେ ଧର୍ମଭୟରେ ନୁହେ, କେବଳ ଲକ୍ଷ୍ମଣଙ୍କ ଭୟରେ ବର୍ତ୍ତମାନ ସୀତାଙ୍କୁ ଅନ୍ୱେଷଣ କରିବାର ଆଜ୍ଞା ଦେଇଛି, ତାହାଠାରେ ଧର୍ମ କପରି ସମ୍ଭବ ହୋଇ-

ତସ୍ମିନ୍ ପାପେ କୃତଘ୍ନେ ତୁ ସ୍ମୃତିଭିନ୍ନେ ଚଲାତ୍ମନି ।
ଆର୍ଯଃ କୋ ବିଶ୍ୱସେଜ୍ଜାତୁ ତତ୍କୁଲୀନୋ ବିଶେଷତଃ । ୭ ।
ରାଜ୍ୟେ ପୁତ୍ରଃ ପ୍ରତିଷ୍ଠାପ୍ୟଃ ସଗୁଣୋ ବିଗୁଣୋଽପି ବା ।
କଥଂ ଶତ୍ରୁକୁଲୀନଂ ମାଂ ସୁଗ୍ରୀବୋ ଜୀବୟିଷ୍ୟତି । ୮ ।
ଭିନ୍ନମନ୍ତ୍ରୋଽପରାଦ୍ଧଶ୍ଚ ଭିନ୍ନଶକ୍ତିଃ କଥଂ ହ୍ୟହମ୍ ।
କିଷ୍କିନ୍ଧାଂ ପ୍ରାପ୍ୟ ଜୀବେୟମନାଥ ଇବ ଦୁର୍ବଲଃ । ୯ ।
ଉପାଂଶୁଦଣ୍ଡେନ ହି ମାଂ ବନ୍ଧନେନୋପପାଦୟେତ୍ ।
ଶଠଃ କ୍ରୂରୋ ନୃଶଂସଶ୍ଚ ସୁଗ୍ରୀବୋ ଜୀବୟିଷ୍ୟତି । ୧୦ ।
ବନ୍ଧନାଦ୍‌ବାବସାଦାନ୍ମେ ଶ୍ରେୟଃ ପ୍ରାୟୋପବେଶନମ୍ ।
ଅନୁଜାନନ୍ତୁ ମାଂ ସର୍ବେ ଗୃହଂ ଗଚ୍ଛନ୍ତୁ ବାନରାଃ । ୧୧ ।
ଅହଂ ବଃ ପ୍ରତିଜାନାମି ନ ଗମିଷ୍ୟାମ୍ୟହଂ ପୁରୀମ୍ ।
ଇହୈବ ପ୍ରାୟମାସିଷ୍ୟେ ଶ୍ରେୟୋ ମରଣମେବ ମେ । ୧୨।
ଅଭିବାଦନପୂର୍ବଂ ତୁ ରାଜା କୁଶଲମେବ ଚ ।
ଅଭିବାଦନପୂର୍ବଂ ତୁ ରାଘବୌ ବଲଶାଲିନୌ । ୧୩ ।

---

ପାରେ ? । ୬ । ସେହି ପାପୀ, କୃତଘ୍ନ, ସ୍ମୃତିହୀନ, ଚଞ୍ଚଳଚିତ୍ତ ସୁଗ୍ରୀବ ଉପରେ କେଉଁ ସଜ୍ଜନ ବିଶ୍ୱାସ କରିପାରେ ? ବିଶେଷତଃ ଯେ ତାହାର କୁଳରେ ଜାତ ହୋଇଛୁ ସେ କଦାପି ବିଶ୍ୱାସ ସ୍ଥାପନ କରି ନ ପାରେ । ୭ । ତାହାର ନିଜର ପୁତ୍ର ସଗୁଣ ହେଉ ବା ଗୁଣହୀନ ହେଉ ତାହାକୁ ହିଁ ରାଜ୍ୟରେ ପ୍ରତିଷ୍ଠିତ କରାଇବା ଉଦ୍ଦେଶ୍ୟକୁ ପୋଷଣ କରି ଶତ୍ରୁକୁଳରେ ଜାତ ମୋତେ ସେ କିପରି ଜୀବିତ ରଖି-ପାରେ ? । ୮ । ମୋର ମନ୍ତ୍ରଣା ପ୍ରକାଶିତ ହୋଇ ଗଲାଣି; ମୁଁ ଅପରାଧ ମଧ୍ୟ କରିଅଛି; ସୁତରାଂ ମୁଁ ଯେପରି ନିରାଶ୍ରୟ ଏବଂ ଦୁର୍ବଳ, ସେଥିରେ କିଷ୍କିନ୍ଧାକୁ ଫେରିଯାଇ କିପରି ଜୀବିତ ରହି ପାରିବି ? ।୯ । ଶଠ, କ୍ରୂର, ନିର୍ଦ୍ଦୟ ସୁଗ୍ରୀବ ରାଜ୍ୟ ଲାଗି ହୁଏତ ମୋତେ ଗୁପ୍ତଦଣ୍ଡ ଦେବ, ନତୁବା କଏଦ କରିଦେବ । ୧୦। ବନ୍ଧନ-ଦୁଃଖଠାରୁ ପ୍ରାୟୋପବେଶନ ହିଁ ମୋପକ୍ଷରେ ଶ୍ରେୟସ୍କର । ଆପଣମାନେ ସମସ୍ତେ ମୋତେ ଅନୁମତି (ପ୍ରାୟୋପବେଶନ କରିବାକୁ) ଦିଅନ୍ତୁ ଏବଂ ସମସ୍ତେ ନିଜ ନିଜ ଘରକୁ ଫେରିଯାଆନ୍ତୁ ।୧୧ । ମୁଁ ପ୍ରତିଜ୍ଞା କରି କହୁଛି, ମୁଁ କଦାପି କିଷ୍କିନ୍ଧାନଗରୀକୁ ଫେରିଯିବି ନାହିଁ; ମୁଁ ଏହିଠାରେ ପ୍ରାୟୋପବେଶନ କରିବି । ମୋପକ୍ଷରେ ମୃତ୍ୟୁହିଁ ଶ୍ରେୟସ୍କର । ୧୨ । ମୋପକ୍ଷରୁ ଅଭିବାଦନ କରି ରାଜା ସୁଗ୍ରୀବଙ୍କୁ କୁଶଳ ସମାଚାର

ବାଚ୍ୟସ୍ତାତୋ ଯବୀୟାନ୍ମେ ସୁଗ୍ରୀବୋ ବାନରେଶ୍ୱରଃ ।
ଆରୋଗ୍ୟପୂର୍ବଂ କୁଶଲଂ ବାଚ୍ୟା ମାତା ରୁମା ଚ ମେ । ୧୪ ।
ମାତରଂ ଚୈବ ମେ ତାରାମାଶ୍ୱାସୟିତୁମର୍ହଥ ।
ପ୍ରକୃତ୍ୟା ପ୍ରିୟପୁତ୍ରା ସା ସାନୁକ୍ରୋଶା ତପସ୍ୱିନୀ । ୧୫ ।
ବିନଷ୍ଟମିହ ମାଂ ଶ୍ରୁତ୍ୱା ବ୍ୟକ୍ତଂ ହାସ୍ୟତ ଜୀବିତମ୍ ।
ଏତାବଦୁକ୍ତ୍ୱା ବଚନଂ ବୃଦ୍ଧାଂସ୍ତାନଭିବାଦ୍ୟ ଚ । ୧୬ ।
ବିବେଶ ଚାଙ୍ଗଦୋ ଭୂମୌ ରୁଦନ୍ ଦର୍ଭେଷୁ ଦୁର୍ମୁଖଃ ।
ତସ୍ୟ ସଂବିଶତସ୍ତତ୍ର ରୁଦନ୍ତୋ ବାନରର୍ଷଭାଃ । ୧୭ ।
ନୟନେଭ୍ୟଃ ପ୍ରମୁମୁଚୁରୁଷ୍ଣଂ ବୈ ବାରି ଦୁଃଖିତାଃ ।
ସୁଗ୍ରୀବଂ ଚୈବ ନିନ୍ଦନ୍ତଃ ପ୍ରଶଂସନ୍ତଶ୍ଚ ବାଲିନମ୍ ।୧୮।
ପରିବାର୍ଯାଙ୍ଗଦଂ ସର୍ବେ ବ୍ୟବାସ୍ୟନ୍ ପ୍ରାୟମାସିତୁମ୍ ।
ତଦ୍ ବାକ୍ୟଂ ବାଲିପୁତ୍ରସ୍ୟ ବିଜ୍ଞାୟ ପ୍ଲବଗର୍ଷଭାଃ । ୧୯ ।
ଉପସ୍ପୃଶ୍ୟୋଦକଂ ସର୍ବେ ପ୍ରାଙ୍ମୁଖାଃ ସମୁପାବିଶନ୍ ।
ଦକ୍ଷିଣାଗ୍ରେଷୁ ଦର୍ଭେଷୁ ଉଦକ୍ତୀରଂ ସମାଶ୍ରିତାଃ । ୨୦ ।
ମୁମୂର୍ଷବୋ ହରିଶ୍ରେଷ୍ଠା ଏତତ୍କ୍ଷମମିତି ସ୍ମ ହ ।
ରାମସ୍ୟ ବନବାସଂ ଚ କ୍ଷୟଂ ଦଶରଥସ୍ୟ ଚ । ୨୧ ।

---

କହିବ ; ବଳବାନ୍ ରାମ ଏବଂ ଲକ୍ଷ୍ମଣଙ୍କୁ ମଧ୍ୟ ଅଭିବାଦନ କରି କୁଶଳ ଜଣାଇବ । ମୋର ମାତା ରୁମାଙ୍କୁ ମଧ୍ୟ ଆରୋଗ୍ୟପୂର୍ବକ କୁଶଳ ସମାଚାର ଜଣାଇବ । ୧୩-୧୪ । ମୋର ମାତା ତାରାଙ୍କୁ ମଧ୍ୟ ତୁମ୍ଭମାନଙ୍କର ଆଶ୍ୱାସନା ଦେବା ଉଚିତ । ସେ ବିଚାରି ସ୍ୱଭାବତଃ ପୁତ୍ରପ୍ରିୟ ଅତିଶୟ ସ୍ନେହମୟୀ ଏବଂ ବିଶେଷ ଦୟାବତୀ ଅଟନ୍ତି । ୧୫ । ମୁଁ ପରିଷ୍କାରବୁଝୁଛି ଯେ ମୁଁ ବର୍ତ୍ତମାନ ବିନଷ୍ଟ ହୋଇଯିବାର ଶୁଣିଲେ ସେ ପ୍ରାଣତ୍ୟାଗ କରିଦେବେ ।" ଅଙ୍ଗଦ ଏହି କଥା କହି ଏବଂ ସେହି ବୟୋବୃଦ୍ଧମାନଙ୍କୁ ପ୍ରଣାମ କରି କାନ୍ଦି କାନ୍ଦି ଭୂମିରେ କୁଶ ଉପରେ ବସିପଡ଼ିଲେ । ସେ ବସିଯିବା ପରେ ବାନର-ଶ୍ରେଷ୍ଠମାନେ ଦୁଃଖିତ ହୋଇ ରୋଦନ କରି ଚକ୍ଷୁରୁ ଉଷ୍ଣଲୋତକ ଗଡ଼ାଇବାକୁ ଲାଗିଲେ । ସେମାନେ ସୁଗ୍ରୀବଙ୍କ ନିନ୍ଦା କରିବାକୁ ଲାଗିଲେ ଏବଂ ବାଲୀଙ୍କୁ ପ୍ରଶଂସା କରିବାକୁ ଲାଗିଲେ ।୧୬-୧୮। ଅଙ୍ଗଦଙ୍କୁ ଘେରିଆଡ଼ୁ ଘେରି ସେମାନେ ମଧ୍ୟ ପ୍ରାୟୋପ-ବେଶନ କରିବାକୁ ଉଦ୍ୟତ ହେଲେ । ବାଲୀପୁତ୍ରଙ୍କର ସେ କଥା ବୁଝି ଶ୍ରେଷ୍ଠ ବାନରମାନେ ଜଳରେ ଆଚମନ କରି ପୂର୍ବକୁ ମୁହଁ କରି ବସିଗଲେ ! ସମୁଦ୍ରର ଉତ୍ତରତୀରକୁ ଯାଇ ସେମାନେ ଦକ୍ଷିଣ ଆଡ଼କୁ ଅଗ୍ରଭାଗ କରି ପଡ଼ିଥିବା କୁଶ ଉପରେ ବସିଗଲେ । ୧୯-୨୦ । ମରଣାଭିଳାଷୀ ବାନରମାନେ ଏହା କହିବା

ଜନସ୍ଥାନବଧଂ ଚୈବ ବଧଂ ଚୈବ ଜଟାୟୁଷଃ ।
ହରଣଂ ଚୈବ ବୈଦେହ୍ୟା ବାଲିନଶ୍ଚ ବଧଂ ତଥା ।
ରାମକୋପଂ ଚ ବଦତାଂ ହରୀଣାଂ ଭୟମାଗତମ୍ । ୨୨ ।
ସ ସଂବଶଦ୍ଭିର୍ବହୁଭିର୍ମହୀଧରୋ
ମହାଦ୍ରିକୂଟପ୍ରତିମୈଃ ପ୍ଲବଙ୍ଗମୈଃ ।
ବଭୂବ ସଂନାଦିତନିର୍ଝରାନ୍ତରୋ
ଭୃଶଂ ନଦଦ୍ଭିର୍ଜଲଦୈରିବାମ୍ବରମ୍ । ୨୩ ।

ଇତ୍ୟାର୍ଷେ ଶ୍ରୀମଦ୍‌ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ପ୍ରାୟୋପବେଶୋ ନାମ ପଞ୍ଚପଞ୍ଚାଶଃ ସର୍ଗଃ

---

ଉଚିତ ବୋଲି ମନେ କଲେ । ରାମଚନ୍ଦ୍ରଙ୍କର ବନବାସ, ଦଶରଥଙ୍କର ମୃତ୍ୟୁ, ଜନସ୍ଥାନରେ ରାକ୍ଷସମାନଙ୍କର ବଧ, ଜଟାୟୁର ବଧ, ସୀତାଙ୍କ ହରଣ, ବାଲୀଙ୍କ ବଧ ଏବଂ ରାମଚନ୍ଦ୍ରଙ୍କର କୋପ ଏହିସବୁ ବିଷୟ କଥାବାର୍ତ୍ତା ହୋଇ ବାନରମାନେ ଭୟଭୀତ ହୋଇପଡ଼ିଲେ । ୨୧-୨୨ । ପର୍ବତଶୃଙ୍ଗସଦୃଶ ବଡ଼ ବଡ଼ ବାନରମାନେ ବସିଯିବାଦ୍ୱାରା, ଆକାଶ ଗର୍ଜନକାରୀ ମେଘଦ୍ୱାରା ଶବ୍ଦାୟମାନ ହେଲାପରି, ସେ ପର୍ବତର ନିର୍ଝରମାନ ଅତିଶୟ ଶବ୍ଦାୟିତ ହୋଇ ଉଠିଲା । ୨୩ ।

# ଷଟ୍‌ପଞ୍ଚାଶଃ ସର୍ଗଃ

## ସଂପାତିପ୍ରଶ୍ନଃ

ଉପବିଷ୍ଟାସ୍ତୁ ତେ ସର୍ବେ ଯସ୍ମିନ୍ ପ୍ରାୟଂ ଗିରିସ୍ଥଲେ ।
ହରୟୋ ଗୃଧ୍ରରାଜସ୍ତୁ ତଂ ଦେଶମୁପଚକ୍ରମେ ।୧।
ସଂପାତିର୍ନାମ ନାମ୍ନା ତୁ ଚିରଜୀବୀ ବିହଙ୍ଗମଃ ।
ଭ୍ରାତା ଜଟାୟୁଷଃ ଶ୍ରୀମାନ୍ ବିଖ୍ୟାତବଲପୌରୁଷଃ ।୨।
କନ୍ଦରାଦଭିନିଷ୍କ୍ରମ୍ୟ ସ ବିନ୍ଧ୍ୟସ୍ୟ ମହାଗିରେଃ ।
ଉପବିଷ୍ଟାନ୍ ହରୀନ୍ ଦୃଷ୍ଟ୍ୱା ହୃଷ୍ଟାତ୍ମା ଗିରମବ୍ରବୀତ୍ ।୩।
ବିଧିଃ କିଲ ନରଂ ଲୋକେ ବିଧାନେନାନୁବର୍ତ୍ତତେ ।
ଯଥାୟଂ ବିହିତୋ ଭକ୍ଷ୍ୟଶ୍ଚିରାନ୍ମହ୍ୟମୁପାଗତଃ ।୪।
ପରମ୍ପରାଣାଂ ଭକ୍ଷିଷ୍ୟେ ବାନରାଣାଂ ମୃତଂ ମୃତମ୍ ।
ଉବାଚୈତଦ୍ ବଚଃ ପକ୍ଷୀ ତାନ୍ ନିରୀକ୍ଷ୍ୟ ପ୍ଲବଙ୍ଗମାନ୍ ।୫।
ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ଭକ୍ଷ୍ୟଲୁବ୍ଧସ୍ୟ ପକ୍ଷିଣଃ ।
ଅଙ୍ଗଦଃ ପରମାୟସ୍ତୋ ହନୂମନ୍ତମଥାବ୍ରବୀତ୍ ।୬।

---

## ୫୬ଶ ସର୍ଗ

( ସମ୍ପାତିଙ୍କ ପ୍ରଶ୍ନ )

ଯେଉଁ ପର୍ବତପ୍ରଦେଶରେ ସେହି ବାନରମାନେ ପ୍ରାୟୋପବେଶନ କରି ବସିରହିଥିଲେ ସେହି ସ୍ଥାନରେ ସମ୍ପାତି ନାମକ ଏକ ଚିରଜୀବୀ ଗୃଧ୍ରରାଜ ଆସି ଉପସ୍ଥିତ ହେଲା । ସେ ଜଟାୟୁର ଭାଇଥିଲା ଏବଂ ତାହାର ବଳପୌରୁଷ ପ୍ରସିଦ୍ଧ ଥିଲା । ।୧-୨। ସେ ବିନ୍ଧ୍ୟମହାପର୍ବତର କନ୍ଦରରୁ ବାହାରି ବାନରମାନଙ୍କୁ ବସିଥିବାର ଦେଖି ଆନନ୍ଦିତ ହୋଇ କହିଲା । ୩ । "ଯେପରି ଭାଗ୍ୟ ଅନୁସାରେ ଏ ସଂସାରରେ ଲୋକକୁ ଫଳ ମିଳେ, ସେହିପରି ପୂର୍ବାର୍ଜିତ କର୍ମଫଳରୁ ଏ ଭୋଜନ ମୋନିମନ୍ତେ ଆସି ଉପସ୍ଥିତ ହୋଇଅଛି" । ୪ । ସେହି ବାନରମାନଙ୍କୁ ଦେଖି ସେ ପକ୍ଷୀ କହିଲା, "ବାନରମାନେ ଗୋଟିକପରେ ଗୋଟିଏ ଯେପରି ମରିବେ ସେହି କ୍ରମ ଅନୁସାରେ ମୁଁ ସେମାନଙ୍କୁ ଖାଇବି" ।୫। ଭୋଜନଲୋଭୀ ସେହି ପକ୍ଷୀର ବଚନ ଶୁଣି ଉଦ୍‌ବିଗ୍ନ ହୋଇ ଅଙ୍ଗଦ ହନୁମାନଙ୍କୁ କହିଲେ, "ଦେଖ ! ସୀତାଙ୍କ ଛଳରେ ସାକ୍ଷାତ୍ ଯମରାଜ ଏହି ବେଓଡାଓ ଓଡଓମାନଙ୍କର ବିପତ୍ତି ଘଟାଇବା ନିମନ୍ତେ ଏ ସ୍ଥାନରେ

ପଶ୍ୟ ସୀତାପଦେଶେନ ସାକ୍ଷାଦ୍‌ବୈ ବସ୍ୱତୋ ଯମଃ ।
ଇମଂ ଦେଶମନୁପ୍ରାପ୍ତୋ ବାନରାଣାଂ ବିପତ୍ତୟେ । ୭ ।
ରାମସ୍ୟ ନ କୃତଂ କାର୍ଯ୍ୟଂ ନ କୃତଂ ରାଜଶାସନମ୍ ।
ହରୀଣାମିୟମଜ୍ଞାତା ବିପତ୍ତିଃ ସହସାଗତା । ୮ ।
ବୈଦେହ୍ୟାଃ ପ୍ରିୟକାମେନ କୃତଂ କର୍ମ ଜଟାୟୁଷା ।
ଗୃଧ୍ରରାଜେନ ଯତ୍ତତ୍ର ଶ୍ରୁତଂ ବସ୍ତଦଶେଷତଃ । ୯ ।
ତଥା ସର୍ବାଣି ଭୂତାନି ତିର୍ଯ୍ୟଗ୍ୟୋନିଗତାନ୍ୟପି ।
ପ୍ରିୟଂ କୁର୍ବନ୍ତି ରାମସ୍ୟ ତ୍ୟକ୍ତ୍ୱା ପ୍ରାଣାନ୍ ଯଥା ବୟମ୍ । ୧୦ ।
ଅନ୍ୟୋନ୍ୟମୁପକୁର୍ବନ୍ତି ସ୍ନେହକାରୁଣ୍ୟୟନ୍ତ୍ରିତାଃ ।
ତତସ୍ତସ୍ୟୋପକାରାର୍ଥଂ ତ୍ୟଜ୍ୟତାତ୍ମାନମାତ୍ମନା । ୧୧ ।
ପ୍ରିୟଂ କୃତଂ ହି ରାମସ୍ୟ ଧର୍ମଜ୍ଞେନ ଜଟାୟୁଷା ।
ରାଘବାର୍ଥେ ପରିଶ୍ରାନ୍ତା ବୟଂ ସଂତ୍ୟକ୍ତଜୀବିତାଃ । ୧୨ ।
କାନ୍ତାରାଣି ପ୍ରପନ୍ନାଃ ସ୍ମ ନ ଚ ପଶ୍ୟାମ ମୈଥିଲୀମ୍ ।
ସ ସୁଖୀ ଗୃଧ୍ରରାଜସ୍ତୁ ରାବଣେନ ହତୋ ରଣେ ।
ମୁକ୍ତଶ୍ଚ ସୁଗ୍ରୀବଭୟାଦ୍ ଗତଶ୍ଚ ପରମାଂ ଗତିମ୍ । ୧୩ ।

---

ଆସି ଉପସ୍ଥିତ ହୋଇଅଛି । ୭-୭ । ଆମ୍ଭେମାନେ, ନା ରାମଚନ୍ଦ୍ରଙ୍କ କାର୍ଯ୍ୟ ସାଧନ କରିପାରିଲେଇଁ, ନା ରଜାଙ୍କର ଆଜ୍ଞାପାଳନ କରିପାରିଲେଇଁ । ବାନରମାନଙ୍କ ଉପରେ ଏ ଅଜ୍ଞାନକ ବିପତ୍ତି କେଉଁଠାରୁ ଆସି ଉପସ୍ଥିତ ହେଲା !! ୮ । ସୀତାଙ୍କର ପ୍ରିୟସାଧନ କରିବା ଉଦ୍ଦେଶ୍ୟରେ ଗୃଧ୍ରରାଜ ଜଟାୟୁ ଯେଉଁ କାର୍ଯ୍ୟ କରିଥିଲେ ସେ କଥା ତୁମ୍ଭେମାନେ ସମସ୍ତ ବିଶେଷଭାବରେ ଶୁଣିଅଛ । ୯ । ଆମ୍ଭମାନଙ୍କ ପରି ପକ୍ଷିଯୋନିରେ ଜାତ ପ୍ରାଣୀମାନେ ମଧ୍ୟ ପ୍ରାଣତ୍ୟାଗ କରି ରାମଚନ୍ଦ୍ରଙ୍କର ପ୍ରିୟକାର୍ଯ୍ୟ ସାଧନ କରନ୍ତି । ୧୦ । ସ୍ନେହ ଏବଂ ଦୟାହେତୁରୁ ସଜ୍ଜନମାନେ ପରସ୍ପରର ଉପକାର କରିଥାନ୍ତି । ଅତଏବ ତୁମ୍ଭେମାନେ ମଧ୍ୟ ରାମଚନ୍ଦ୍ରଙ୍କ ଉପକାର ନିମନ୍ତେ ଆପଣା ଆପଣା ପ୍ରାଣ ତ୍ୟାଗକର । ୧୧ । ଧର୍ମଜ୍ଞ ଜଟାୟୁ ରାମଚନ୍ଦ୍ରଙ୍କର ପ୍ରିୟକାର୍ଯ୍ୟ କରିଥିଲେ । ରାମଚନ୍ଦ୍ରଙ୍କ ନିମନ୍ତେ ପରିଶ୍ରାନ୍ତ ହୋଇ ଆମ୍ଭେମାନେ ମଧ୍ୟ ବର୍ତ୍ତମାନ ନିଜ ନିଜର ପ୍ରାଣ ବିସର୍ଜନ କରିବା । ୧୨ । ଆମ୍ଭେମାନେ ଏ କାନ୍ତାରକୁ ଆସିଲେଇଁ; ତଥାପି ସୀତାଙ୍କୁ ଦେଖିଲେଇଁ ନାହିଁ । ଯେଉଁ ଗୃଧ୍ରରାଜ ଯୁଦ୍ଧରେ ରାବଣଦ୍ୱାରା ନିହତ ହେଲେ ସେ ସୁଗ୍ରୀବଭୟରୁ ଅବ୍ୟାହତି ପାଇଲେ ଏବଂ ପରମଗତି ଲାଭକଲେ । ୧୩ ।

ଜଟାୟୁଷୋ ବିନାଶେନ ରାଜ୍ଞୋ ଦଶରଥସ୍ୟ ଚ ।
ହରଣେନ ଚ ବୈଦେହ୍ୟାଃ ସଂଶୟଂ ହରୟୋ ଗତାଃ ।୧୪ ।
ରାମଲକ୍ଷ୍ମଣୟୋର୍ବାସମରଣ୍ୟେ ସହ ସୀତୟା ।
ରାଘବସ୍ୟ ଚ ବାଣେନ ବାଲିନଶ୍ଚ ତଥା ବଧମ୍ । ୧୫ ।
ରାମକୋପାଦଶେଷାଣାଂ ରକ୍ଷସାଂ ଚ ତଥା ବଧମ୍ ।
କୈକେୟ୍ୟା ବରଦାନେନ ଇଦଂ ଚ ବିକୃତଂ କୃତମ୍ । ୧୬ ।
ତଦସୁଖମନୁକୀର୍ତ୍ତିତଂ ବଚୋ
ଭୁବି ପତିତାଂଶ୍ଚ ନିରୀକ୍ଷ୍ୟ ବାନରାନ୍ ।
ଭୃଶଚକିତମତିର୍ମହାମତିଃ
କୃପଣମୁଦାହୃତବାନ୍ ସ ଗୃଧ୍ରରାଜଃ । ୧୭।
ତତ୍ତୁ ଶ୍ରୁତ୍ୱା ତଥା ବାକ୍ୟମଙ୍ଗଦସ୍ୟ ମୁଖୋଦ୍‌ଗତମ୍ ।
ଅବ୍ରବୀଦ୍‌ବଚନଂ ଗୃଧ୍ରସ୍ତୀକ୍ଷ୍ଣତୁଣ୍ଡୋ ମହାସ୍ୱନଃ । ୧୮ ।
କୋଽୟଂ ଗିରା ଘୋଷୟତି ପ୍ରାଣୈଃ ପ୍ରିୟତରସ୍ୟ ମେ ।
ଜଟାୟୁଷୋ ବଧଂ ଭ୍ରାତୁଃ କମ୍ପୟନ୍ନିବ ମେ ମନଃ । ୧୯ ।
କଥମାସୀଜ୍ଜନସ୍ଥାନେ ଯୁଦ୍ଧଂ ରାକ୍ଷସଗୃଧ୍ରୟୋଃ ।
ନାମଧେୟମିଦଂ ଭ୍ରାତୁଶ୍ଚିରସ୍ୟାଦ୍ୟ ମୟା ଶ୍ରୁତମ୍ । ୨୦ ।

---

ଜଟାୟୁ ଏବଂ ଦଶରଥଙ୍କର ମୃତ୍ୟୁଦ୍ୱାରା ତଥା ସୀତାଙ୍କର ହରଣହେତୁରୁ ବାନରମାନଙ୍କର ଏ ଜୀବନସଂଶୟ ଉପସ୍ଥିତ ହୋଇଅଛି । ୧୪ । ରାମ, ଲକ୍ଷ୍ମଣଙ୍କର ସୀତାଙ୍କ ସହିତ ବନବାସ, ରାମଚନ୍ଦ୍ରଙ୍କ ବାଣରେ ବାଲୀଙ୍କର ବିନାଶ, ରାମଚନ୍ଦ୍ରଙ୍କ କୋପରେ ସମସ୍ତ ରାକ୍ଷସଙ୍କର ବଧ ଏ ସମସ୍ତ ଗଣ୍ଡଗୋଳ କୈକେୟୀଙ୍କର ବରଦାନରୁହିଁ ଘଟିଅଛି" । ୧୫-୧୬ । ବାନରମାନଙ୍କଦ୍ୱାରା କଥିତ ଏହି ଦୁଃଖମୟ କାହାଣୀ ଶୁଣି ଏବଂ ଭୂମି ଉପରେ ପଡ଼ିଥିବା ବାନରମାନଙ୍କୁ ଦେଖି ଗୃଧ୍ରରାଜ ସମ୍ପାତି ବିଶେଷ ଚକିତ ହେଲେ ଏବଂ ସେ ମହାମନା ଗୃଧ୍ରରାଜ କରୁଣଭାବରେ କହିଲେ । ୧୭ । ଅଙ୍ଗଦଙ୍କ ମୁଖରୁ ନିଃସୃତ ଏହି ବଚନ ଶୁଣି ତୀକ୍ଷ୍ଣତୁଣ୍ଡ ଘୋର ଶବ୍ଦକାରୀ ଗୃଧ୍ରରାଜ କହିଲେ । ୧୮ । "କିଏ ଏ ମୋର ପ୍ରାଣଠାରୁ ବଳି ପ୍ରିୟତର ଭାଇ ଜଟାୟୁର ବଧକଥା କହି ମୋମନକୁ କମ୍ପାଇଦେଲା । । ୧୯ । ରାକ୍ଷସ (ରାବଣ) ଏବଂ ଗୃଧ୍ର ( ଜଟାୟୁ ) ମଧ୍ୟରେ ଜନସ୍ଥାନରେ କିପରି ଯୁଦ୍ଧ ହୋଇଥିଲା ? ବହୁଦିନପରେ ମୁଁ ଆଜି ମୋର ଭାଇର ନାମ ଶୁଣିଲି । ୨୦ । ମୋର

ଇଚ୍ଛେୟଂ ଗିରିଦୁର୍ଗାଚ୍ଚ ଭବଦ୍ଭିରବତାରିତୁମ୍ ।
ଯବୀୟସୋ ଗୁଣଜ୍ଞସ୍ୟ ଶ୍ଳାଘନୀୟସ୍ୟ ବିକ୍ରମୈଃ । ୨୧ ।
ଅତିଦୀର୍ଘସ୍ୟ କାଳସ୍ୟ ପରିତୁଷ୍ଟୋଽସ୍ମି କୀର୍ତ୍ତନାତ୍ ।
ତଦିଚ୍ଛେୟମହଂ ଶ୍ରୋତୁଂ ବିନାଶଂ ବାନରର୍ଷଭାଃ । ୨୨ ।
ଭ୍ରାତୁର୍ଜଟାୟୁଷସ୍ତସ୍ୟ ଜନସ୍ଥାନନିବାସିନଃ ।
ତସ୍ୟୈବ ଚ ମମ ଭ୍ରାତୁଃ ସଖା ଦଶରଥଃ କଥମ୍ । ୨୩ ।
ଯସ୍ୟ ରାମଃ ପ୍ରିୟଃ ପୁତ୍ରୋ ଜ୍ୟେଷ୍ଠୋ ଗୁରୁଜନପ୍ରିୟଃ ।
ସୂର୍ଯ୍ୟାଂଶୁଦଗ୍ଧପକ୍ଷତ୍ୱାନ୍ନ ଶକ୍ନୋମି ବିସର୍ପିତୁମ୍ ।
ଇଚ୍ଛେୟଂ ପର୍ବତାଦସ୍ମାଦବତର୍ତୁମରିନ୍ଦମାଃ । ୨୪ ।।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସମ୍ପାତିପ୍ରଶ୍ନୋ
ନାମ ଷଟ୍‌ପଞ୍ଚାଶଃ ସର୍ଗଃ

---

ଇଚ୍ଛା ଯେ ତୁମ୍ଭେମାନେ ଏ ଦୁର୍ଗମ ପର୍ବତ ଉପରୁ ମୋତେ ଓହ୍ଲାଇନିଅ । ଗୁଣଜ୍ଞ ବିକ୍ରମରେ ଶ୍ଳାଘନୀୟ ମୋର କ୍ରୋଷ୍ଠ ଭାଇ ଜଟାୟୁର ନାମକୀର୍ତ୍ତନ ବହୁ ଦିନପରେ ଶୁଣି ମୁଁ ପ୍ରସନ୍ନ ହୋଇଅଛି । ସୁତରାଂ ହେ ବାନରଶ୍ରେଷ୍ଠଗଣ ! ମୁଁ ତାହାର ମୃତ୍ୟୁର ବିବରଣ ଶୁଣିବାକୁ ଇଚ୍ଛା କରୁଅଛି । ଜନସ୍ଥାନନିବାସୀ ଜଟାୟୁ ମୋର ଭାଇ ଥିଲା । ରାଜା ଦଶରଥ ମୋର ସେହି ଭାଇର ବନ୍ଧୁ ଥିଲେ । ଶ୍ରୀରାମଚନ୍ଦ୍ର ତାଙ୍କର ପ୍ରିୟ ଜ୍ୟେଷ୍ଠପୁତ୍ର । ସେ ଗୁରୁଜନମାନଙ୍କର ବିଶେଷ ପ୍ରିୟ ଅଟନ୍ତି । ସୂର୍ଯ୍ୟକିରଣରେ ମୋର ପକ୍ଷ ପୋଡ଼ିଯାଇଥିବାରୁ ମୁଁ ଚାଲିପାରୁ ନାହିଁ । ହେ ଶତ୍ରୁହନ୍ତାମାନେ ! ମୁଁ ଏହି ପର୍ବତରୁ ଓହ୍ଲାଇବାକୁ ଇଚ୍ଛା କରୁଅଛି” ।୨୧-୨୪ ।

---

# ସପ୍ତପଞ୍ଚାଶଃ ସର୍ଗଃ

## ଜଟାୟୁର୍ଦିଷ୍ଟକଥନମ୍

ଶୋକାଦ୍ ଭ୍ରଷ୍ଟସ୍ୱରମପି ଶ୍ରୁତ୍ୱା ବାନରଯୂଥପାଃ ।
ଶ୍ରଦ୍ଦଧୁର୍ନୈବ ତଦ୍‌ବାକ୍ୟଂ କର୍ମଣା ତସ୍ୟ ଶଙ୍କିତାଃ । ୧ ।
ତେ ପ୍ରାୟମୁପବିଷ୍ଟାସ୍ତୁ ଦୃଷ୍ଟ୍ୱା ଗୃଧ୍ରଂ ପ୍ଲବଙ୍ଗମାଃ ।
ଚକ୍ରୁର୍ବୁଦ୍ଧିଂ ତଦା ରୌଦ୍ରାଂ ସର୍ବାନ୍ନୋ ଭକ୍ଷୟିଷ୍ୟତି । ୨ ।
ସର୍ବଥା ପ୍ରାୟମାସୀନାନ୍ ଯଦି ନୋ ଭକ୍ଷୟିଷ୍ୟତି ।
କୃତକୃତ୍ୟା ଭବିଷ୍ୟାମଃ କ୍ଷିପ୍ରଂ ସିଦ୍ଧିମିତୋ ଗତାଃ । ୩ ।
ଏତାଂ ବୁଦ୍ଧିଂ ତତଶ୍ଚକ୍ରୁଃ ସର୍ବେ ତେ ହରିଯୂଥପାଃ ।
ଅବତାର୍ଯଗିରେଃ ଶୃଙ୍ଗାଦ୍ ଗୃଧ୍ରମାହାଙ୍ଗଦସ୍ତଦା । ୪ ।
ବଭୂବର୍କ୍ଷରଜୋ ନାମ ବାନରେନ୍ଦ୍ରଃ ପ୍ରତାପବାନ୍ ।
ମମାର୍ଯଃ ପାର୍ଥିବଃ ପକ୍ଷିନ୍ ଧାର୍ମିକୌ ତସ୍ୟ ଚାତ୍ମଜୌ । ୫ ।
ସୁଗ୍ରୀବଶ୍ଚୈବ ବାଲୀ ଚ ପୁତ୍ରୌ ଘନବଲାବୁଭୌ ।
ଲୋକେ ବିଶ୍ରୁତକର୍ମାଭୂଦ୍ରାଜା ବାଲୀ ପିତା ମମ ।୬ ।

---

## ୫୭ଶ ସର୍ଗ

(ଜଟାୟୁ ମୃତ୍ୟୁସମ୍ବାଦପ୍ରଦାନ)

ଶୋକହେତୁରୁ ଭଗ୍ନ ହୋଇଥିବା ସମ୍ପାତିର ସ୍ୱର ଶୁଣି ମଧ୍ୟ ବାନରଦଳପତିମାନେ ତାଙ୍କ କଥାରେ ବିଶ୍ୱାସ କଲେ ନାହିଁ; କାରଣ ତାଙ୍କ କାର୍ଯ୍ୟରୁ (ଭୋଜନ ଖୋଜିବା) ପୂର୍ବରୁ ସେମାନେ ଶଙ୍କିତ ହୋଇ ଯାଇଥିଲେ । ୧ । ପ୍ରାୟୋପବେଶନରେ ବସିଥିବା ସେହି ବାନରମାନେ ସେ ଗୃଧ୍ରକୁ ଦେଖି 'ଏ ଆମ୍ଭମାନଙ୍କୁ ଖାଇଯିବ' ଏହିପ୍ରକାର ଭୟଙ୍କର ଚିନ୍ତା ସେମାନଙ୍କ ମନରେ ଜାତହେଲା । ୨ ପ୍ରାୟୋପବେଶନରେ ବସିଥିବା ଆମ୍ଭମାନଙ୍କୁ ଯଦି ସେ ଖାଇଯାଏ ତାହାହେଲେ ଆମ୍ଭେମାନେ କୃତାର୍ଥ ହୋଇଯିବା; କାରଣ ଆମ୍ଭମାନଙ୍କୁ ଶୀଘ୍ର ସିଦ୍ଧି ମିଳିଯିବ । ୩ । ବାନରଦଳପତିମାନେ ଏହିପ୍ରକାର ସ୍ଥିରକରି ସମ୍ପାତିଙ୍କୁ ପର୍ବତ ଉପରୁ ଓହ୍ଲାଇଲେ । ଅନନ୍ତର ଅଙ୍ଗଦ ତାଙ୍କୁ କହିଲେ । ୪ । ହେ ପକ୍ଷିନ୍ ! ମୋର ପିତାମହ ଋକ୍ଷରଜ ନାମକ ଜଣେ ପ୍ରତାପଶାଳୀ ରଜା ଥିଲେ । ତାଙ୍କର ସୁଗ୍ରୀବ ଓ ବାଲୀ ନାମରେ ଦୁଇଟି ପୁତ୍ର ଜାତ ହୋଇଥିଲେ ଓ ଏ ଦୁହେଁ ଖୁବ୍ ବଳବାନ୍ ଥିଲେ । ମୋର ପିତା ରଜା ବାଲୀ ନିଜର କାର୍ଯ୍ୟଦ୍ୱାରା ସଂସାରରେ ବିଖ୍ୟାତ ହୋଇଥିଲେ । ୫-୬

ରାଜା କୃତ୍ସ୍ନସ୍ୟ ଜଗତ ଇକ୍ଷ୍ୱାକୂଣାଂ ମହାରଥଃ ।
ରାମୋ ଦାଶରଥିଃ ଶ୍ରୀମାନ୍ ପ୍ରବିଷ୍ଟୋ ଦଣ୍ଡକାବନମ୍ । ୭ ।
ଲକ୍ଷ୍ମଣେନ ସହ ଭ୍ରାତ୍ରା ବୈଦେହ୍ୟା ସହ ଭାର୍ଯ୍ୟୟା ।
ପିତୁର୍ନିଦେଶନିରତୋ ଧର୍ମ୍ୟଂ ପନ୍ଥାନମାଶ୍ରିତଃ । ୮ ।
ତସ୍ୟ ଭାର୍ଯ୍ୟା ଜନସ୍ଥାନାଦ୍ରାବଣେନ ହୃତା ବଳାତ୍ ।
ରାମସ୍ୟ ତୁ ପିତୁର୍ମିତ୍ରଂ ଜଟାୟୁର୍ନାମ ଗୃଧ୍ରରାଟ୍ । ୯।
ଦଦର୍ଶ ସୀତାଂ ବୈଦେହୀଂ ହ୍ରିୟମାଣାଂ ବିହାୟସା ।
ରାବଣଂ ବିରଥଂ କୃତ୍ୱା ସ୍ଥାପୟିତ୍ୱା ଚ ମୈଥିଳୀମ୍ ।
ପରିଶ୍ରାନ୍ତଶ୍ଚ ବୃଦ୍ଧଶ୍ଚ ରାବଣେନ ହତୋ ରଣେ । ୧୦ ।
ଏବଂ ଗୃଧ୍ରୋ ହତସ୍ତେନ ରାବଣେନ ବଲୀୟସା ।
ସଂସ୍କୃତଶ୍ଚାପି ରାମେଣ ଜଗାମ ଗତିମୁତ୍ତମାମ୍ । ୧୧ ।
ତତୋ ମମ ପିତୃବ୍ୟେନ ସୁଗ୍ରୀବେଣ ମହାତ୍ମନା ।
ଚକାର ରାଘବଃ ସଖ୍ୟଂ ସୋଽବଧୀତ୍ପିତରଂ ମମ । ୧୨ ।
ମମ ପିତ୍ରା ନିରୁଦ୍ଧୋ ହି ସୁଗ୍ରୀବଃ ସଚିବୈଃ ସହ ।
ନିହତ୍ୟ ବାଲିନଂ ରାମସ୍ତତସ୍ତମଭିଷେଚୟତ୍ । ୧୩ ।

---

ସମଗ୍ର ଜଗତର ସ୍ୱାମୀ, ଇକ୍ଷ୍ୱାକୁକୁଳରେ ଜାତ ଶ୍ରୀମାନ୍ ରାମଚନ୍ଦ୍ର ଦଣ୍ଡକାରଣ୍ୟକୁ ଆସିଲେ । ପିତାଙ୍କ ଆଜ୍ଞାରେ ଧର୍ମପଥ ଅନୁସରଣ କରି ସେ ଭାଇ ଲକ୍ଷ୍ମଣ ଏବଂ ପତ୍ନୀ ସୀତାଙ୍କ ସହିତ ଆସିଲେ । ୭-୮ । ଜନସ୍ଥାନରୁ ତାଙ୍କ ସ୍ତ୍ରୀଙ୍କୁ ରାବଣ ବଳାତ୍କାରରେ ହରଣ କରି ନେଇଗଲା । ଜଟାୟୁ ନାମକ ଗୃଧ୍ରରାଜ ରାମଚନ୍ଦ୍ରଙ୍କର ପିତାଙ୍କର ମିତ୍ର ଥିଲେ । ୯ । ଆକାଶମାର୍ଗରେ ସୀତା ଅପହୃତ ହେଉଥିବାର ସେ ଦେଖିଲେ । ସେ ରାବଣଙ୍କୁ ରଥଚ୍ୟୁତ କରି ସୀତାଙ୍କୁ ଭୂମି ଉପରେ ବସାଇଲେ । ସେହି ପରିଶ୍ରାନ୍ତ ବୃଦ୍ଧ ଗୃଧ୍ରରାଜଙ୍କୁ ରାବଣ ଯୁଦ୍ଧରେ ମାରିଦେଲା । ୧୦ । ଏହିପ୍ରକାରେ ବଳବାନ୍ ରାବଣଦ୍ୱାରା ସେ ଗୃଧ୍ର ହତ ହେଲେ । ରାମଚନ୍ଦ୍ରଙ୍କ ଦ୍ୱାରା ତାଙ୍କର ଶେଷ ସଂସ୍କାର ହେବାରୁ ସେ ଉତ୍ତମ ଗତି ପ୍ରାପ୍ତହେଲେ । ୧୧ । ଅନନ୍ତର ମୋର ପିତୃବ୍ୟ ମହାତ୍ମା ସୁଗ୍ରୀବଙ୍କ ସହିତ ରାଘବ ମିତ୍ରତା ସ୍ଥାପନ କଲେ । ସେ ମୋର ପିତାଙ୍କୁ ବଧକଲେ । ୧୨ । ମୋର ପିତା ମନ୍ତ୍ରୀମାନଙ୍କ ସହିତ ସୁଗ୍ରୀବଙ୍କୁ ତଡ଼ିଦେଇଥିଲେ । ବାଳୀଙ୍କୁ ମାରି ରାମଚନ୍ଦ୍ର ସୁଗ୍ରୀବଙ୍କୁ ରାଜ୍ୟରେ ଅଭିଷିକ୍ତ

ସ ରାଜ୍ୟେ ସ୍ଥାପିତସ୍ତେନ ସୁଗ୍ରୀବୋ ବାନରେଶ୍ୱରଃ ।
ରାଜା ବାନରମୁଖ୍ୟାନାଂ ତେନ ପ୍ରସ୍ଥାପିତା ବୟମ୍ । ୧୪ ।
ଏବଂ ରାମପ୍ରଯୁକ୍ତାସ୍ତୁ ମାର୍ଗମାଣାସ୍ତତସ୍ତତଃ ।
ବୈଦେହୀଂ ନାଧିଗଚ୍ଛାମୋ ରାତ୍ରୌ ସୂର୍ଯ୍ୟପ୍ରଭାମିବ । ୧୫ ।
ତେ ବୟଂ ଦଣ୍ଡକାରଣ୍ୟଂ ବିଚିତ୍ୟ ସୁସମାହିତାଃ ।
ଅଜ୍ଞାନାତ୍ତୁ ପ୍ରବିଷ୍ଟାଃ ସ୍ମ ଧରଣ୍ୟା ବିବୃତଂ ବିଲମ୍ । ୧୬ ।
ମୟସ୍ୟ ମାୟାବିହିତଂ ତଦ୍‌ବିଲଂ ଚ ବିଚିନ୍ୱତାମ୍ ।
ବ୍ୟତୀତସ୍ତତ୍ର ନୋ ମାସୋ ରାଜ୍ଞା ଯଃ ସମୟଃ କୃତଃ । ୧୭ ।
ତେ ବୟଂ କପିରାଜସ୍ୟ ସର୍ବେ ବଚନକାରିଣଃ ।
କୃତାଂ ସଂସ୍ଥାମତିକ୍ରାନ୍ତା ଭୟାତ୍ ପ୍ରାୟମୁପାସିତାଃ ।୧୮ ।
କ୍ରୁଦ୍ଧେ ତସ୍ମିଂସ୍ତୁ କାକୁତ୍ସ୍ଥେ ସୁଗ୍ରୀବେ ଚ ସ ଲକ୍ଷ୍ମଣେ ।
ଗତାନାମପି ସର୍ବେଷାଂ ତତ୍ର ନୋ ନାସ୍ତି ଜୀବିତମ୍ । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ଜଟାୟୁର୍ବୃତ୍ତକଥନମ୍
ନାମ ସପ୍ତପଞ୍ଚାଶଃ ସର୍ଗଃ

---

କଲେ । ୧୩ । ବାନରରାଜ ସୁଗ୍ରୀବ ତାଙ୍କ ଦ୍ୱାରା ରାଜ୍ୟରେ ପ୍ରତିଷ୍ଠିତ ହୋଇଅଛନ୍ତି । ସେହି ମୁଖ୍ୟ ବାନରମାନଙ୍କର ରାଜା ଆମ୍ଭମାନଙ୍କୁ ପଠାଇଅଛନ୍ତି । ୧୪ । ଏହିପରି ରାମଚନ୍ଦ୍ରଙ୍କ ଦ୍ୱାରା ପ୍ରେରିତ ହୋଇ ଆମ୍ଭେମାନେ ଚାରିଆଡ଼େ ସୀତାଙ୍କୁ ଖୋଜୁଅଛୁଁ; ମାତ୍ର ରାତିରେ ଯେପରି ସୂର୍ଯ୍ୟର ଦୀପ୍ତି ଦେଖାଯାଏ ନାହିଁ, ସେହିପରି ଆମ୍ଭେମାନେ ସୀତାଙ୍କୁ ଦେଖିପାରୁ ନାହୁଁ ।୧୫। ଆମ୍ଭେମାନେ ଖୁବ୍ ସାବଧାନଭାବରେ ଦଣ୍ଡକାରଣ୍ୟକୁ ଖୋଜିଯାଇ, ନ ଜାଣିପାରି ପୃଥିବୀର ଏକ ବିବୃତ ବିଲମଧ୍ୟରେ ପଶି ଯାଇଥିଲୁଁ । ୧୬। ମୟଦାନବର ସେହି ମାୟାନିର୍ମିତ ବିଲ ଖୋଜୁ ଖୋଜୁ, ରାଜା ଯେଉଁ ଏକମାସ ସମୟ ନିର୍ଦ୍ଧାରିତ କରିଥିଲେ ତାହା ବିତିଗଲା । ୧୭ । ଆମ୍ଭେମାନେ ସମସ୍ତେ ବାନରରାଜଙ୍କର ଆଜ୍ଞାକାରୀ ଅଟୁଁ । ନିର୍ଦ୍ଦିଷ୍ଟ ଅବଧି ଅତୀତ ହୋଇଯିବାରୁ ଆମ୍ଭେମାନେ ଭୟରେ ପ୍ରାୟୋପବେଶନ କରି ବସିଅଛୁଁ । ୧୮ । ରାମଚନ୍ଦ୍ର, ସୁଗ୍ରୀବ ଏବଂ ଲକ୍ଷ୍ମଣ କ୍ରୁଦ୍ଧହୋଇଥିବାରୁ ଆମ୍ଭେମାନେ ସେମାନଙ୍କ ନିକଟକୁ ଗଲେ ଆମ୍ଭମାନଙ୍କ ଆଉ ବଞ୍ଚିବାର ଆଶା ନାହିଁ" । ୧୯ ।

---

# ଅଷ୍ଟପଞ୍ଚାଶଃ ସର୍ଗଃ

## ସୀତାପ୍ରବୃତ୍ତ୍ୟୁପଲମ୍ଭଃ

ଇତ୍ୟୁକ୍ତଃ କରୁଣଂ ବାକ୍ୟଂ ବାନରୈସ୍ତ୍ୟକ୍ତଜୀବିତୈଃ ।
ସବାଷ୍ପୋ ବାନରାନ୍ ଗୃଧ୍ରଃ ପ୍ରତ୍ୟୁବାଚ ମହାସ୍ୱନଃ । ୧ ।
ଯବୀୟାନ୍ ସ ମମ ଭ୍ରାତା ଜଟାୟୁର୍ନାମ ବାନରାଃ ।
ଯମାଖ୍ୟାତ ହତଂ ଯୁଦ୍ଧେ ରାବଣେନ ବଲୀୟସା । ୨ ।
ବୃଦ୍ଧଭାବାଦପକ୍ଷତ୍ୱାଚ୍ଛୃଣ୍ୱଂସ୍ତଦପି ମର୍ଷୟେ ।
ନ ହି ମେ ଶକ୍ତିରସ୍ତ୍ୟଦ୍ୟ ଭ୍ରାତୁର୍ବୈରବିମୋକ୍ଷଣେ । ୩ ।
ପୁରା ବୃତ୍ରବଧେ ବୃତ୍ତେ ସ ଚାହଂ ଚ ଜୟୈଷିଣୌ ।
ଆଦିତ୍ୟମୁପଯାତୌ ସ୍ୱୋ ଜ୍ୱଲନ୍ତଂ ରଶ୍ମିମାଳିନମ୍ । ୪ ।
ଆବୃତ୍ୟାକାଶମାର୍ଗେଣ ଜବେନ ସ୍ୱର୍ଗତୌ ଭୃଶମ୍ ।
ମଧ୍ୟଂ ପ୍ରାପ୍ତେ ତୁ ସୂର୍ଯ୍ୟେ ତୁ ଜଟାୟୁରବସୀଦତ । ୫ ।
ତମହଂ ଭ୍ରାତରଂ ଦୃଷ୍ଟ୍ୱା ସୂର୍ଯ୍ୟରଶ୍ମିଭିରର୍ଦ୍ଦିତମ୍ ।
ପକ୍ଷାଭ୍ୟାଂ ଛାଦୟାମାସ ସ୍ନେହାତ୍ପରମବିହ୍ୱଳମ୍ । ୬ ।

---

## ୫୮ଶ ସର୍ଗ

### (ସୀତାଙ୍କ ସମ୍ବାଦପ୍ରାପ୍ତି)

ପ୍ରାଣର ଆଶା ଛାଡ଼ିଥିବା ବାନରମାନଙ୍କର ଏହି କରୁଣ ବଚନ ଶୁଣି ଗୃଧ୍ର ଚକ୍ଷୁ ଲୋତକପୂର୍ଣ୍ଣ କରି ମହାଶବ୍ଦକରି ଉତ୍ତରଦେଲେ ।୧। "ହେ ବାନରଗଣ ! ବଳବାନ୍ ରାବଣ ଯାହାକୁ ଯୁଦ୍ଧରେ ମାରିଦେଲା ବୋଲି କହିଲ, ସେ ଜଟାୟୁ ନାମକ ଗୃଧ୍ର ମୋର ସାନ ଭାଇ । ବୃଦ୍ଧ ହୋଇଥିବାହେତୁରୁ ଏବଂ ମୋର ପକ୍ଷ ନ ଥିବାରୁ ମୁଁ ଏହା ମଧ୍ୟ ସହ୍ୟକରି ରହିଅଛି; କାରଣ ମୋର ଭାଇର ଶତ୍ରୁଠାରୁ ପ୍ରତିଦାନ ଦେବାକୁ ମୋର ଆଜ ଶକ୍ତି ନାହିଁ । ୩ । ପୂର୍ବେ ବୃତ୍ରବଧ ହେବାପରେ ଆମ୍ଭେ ଦୁହେଁ ଜୟାଭିଳାଷୀ ହୋଇ ଜ୍ୱଳନ୍ତ ରଶ୍ମିଯୁକ୍ତ ସୂର୍ଯ୍ୟଙ୍କ ନିକଟରେ ଯାଇ ପହଞ୍ଚିଲୁଁ । ୪ । ଆକାଶମାର୍ଗରେ ଡିଆଁ ଦେଇ ଦେଇ ଅତି ବେଗରେ ଆମେ ଦୁହେଁ ସ୍ୱର୍ଗକୁ ଗଲୁଁ । ମଝିରେ ସୂର୍ଯ୍ୟଙ୍କ ସହିତ ମିଳିତହେଲାରୁ ଜଟାୟୁ ଅବସନ୍ନ ହୋଇପଡ଼ିଲା । ୫ । ସୂର୍ଯ୍ୟକିରଣରେ ପ୍ରପୀଡ଼ିତ ଭାଇକୁ ବ୍ୟତିବ୍ୟସ୍ତ ହୋଇପଡ଼ିବାର ଦେଖି ମୁଁ ନିଜର

ନିର୍ଦଗ୍ଧପକ୍ଷଃ ପତିତୋ ବନ୍ଧ୍ୟେଽହଂ ବାନରର୍ଷଭାଃ ।
ଅହମସ୍ମିନ୍ ବସନ୍ ଭ୍ରାତୁଃ ପ୍ରବୃତ୍ତିଂ ନୋପଲକ୍ଷୟେ ।୭।
ଜଟାୟୁଷସ୍ତ୍ୱେବମୁକ୍ତୋ ଭ୍ରାତ୍ରା ସଂପାତିନା ତଦା ।
ଯୁବରାଜୋ ମହାପ୍ରାଜ୍ଞଃ ପ୍ରତ୍ୟୁବାଚାଙ୍ଗଦସ୍ତଦା ।୮।
ଜଟାୟୁଷୋ ଯଦି ଭ୍ରାତା ଶ୍ରୁତଂ ତେ ଗଦିତଂ ମୟା ।
ଆଖ୍ୟାହି ଯଦି ଜାନାସି ନିଲୟଂ ତସ୍ୟ ରକ୍ଷସଃ ।୯।
ଅଦୀର୍ଘଦର୍ଶିନଂ ତଂ ବୈ ରାବଣଂ ରାକ୍ଷସାଧମମ୍ ।
ଅନ୍ତିକେ ଯଦି ବା ଦୂରେ ଯଦି ଜାନାସି ଶଂସ ନଃ ।୧୦।
ତତୋଽବ୍ରବୀନ୍ମହାତେଜା ଭ୍ରାତା ଜ୍ୟେଷ୍ଠୋ ଜଟାୟୁଷଃ ।
ଆତ୍ମାନୁରୂପଂ ବଚନଂ ବାନରାନ୍ ସଂପ୍ରହର୍ଷୟନ୍ ।୧୧।
ନିର୍ଦଗ୍ଧପକ୍ଷୋ ଗୃଧ୍ରୋଽହଂ ଗତବୀର୍ଯଃ ପ୍ଲବଙ୍ଗମାଃ ।
ବାଙ୍ମାତ୍ରେଣାପି ରାମସ୍ୟ କରିଷ୍ୟେ ସାହ୍ୟମୁତ୍ତମମ୍ ।୧୨।
ଜାନାମି ବାରୁଣାଁଲ୍ଲୋକାନ୍ ବିଷ୍ଣୋସ୍ତ୍ରୈବିକ୍ରମାନପି ।
ଦେବାସୁରବିମର୍ଦାଂଶ୍ଚ ହ୍ୟମୃତସ୍ୟ ଚ ମନ୍ଥନମ୍ ।୧୩।
ରାମସ୍ୟ ଯଦିଦଂ କାର୍ଯଂ କର୍ତ୍ତବ୍ୟଂ ପ୍ରଥମଂ ମୟା ।
ଜରୟା ଚ ହୃତଂ ତେଜଃ ପ୍ରାଣାଶ୍ଚ ଶିଥିଳା ମମ ।୧୪।

---

ଦୁଇ ପକ୍ଷଦ୍ୱାରା ତାକୁ ଘୋଡ଼ାଇଦେଲି ।୬। ହେ ବାନରଗଣ ! ମୋର ପକ୍ଷ ଜଳିଯିବାରୁ ମୁଁ ଏହି ବିନ୍ଧ୍ୟପର୍ବତ ଉପରେ ଖସିପଡ଼ିଲି । ମୁଁ ଏହିଠାରେ ବାସ କରୁଅଛି । ଅତଏବ ଭାଇର କୌଣସି ଗତିବିଧି ମୋତେ ଜଣାନାହିଁ” ।୭। ଜଟାୟୁଙ୍କର ଭାଇ ସମ୍ପାତି ଏହିପରି କହିବା ପରେ ବୁଦ୍ଧିମାନ୍ ଯୁବରାଜ ଅଙ୍ଗଦ କହିଲେ ।୮। “ତୁମେ ଯଦି ଜଟାୟୁଙ୍କର ଭାଇ, ତେବେ ମୁଁ ତ ତୁମ ଶାନ୍ତିକଥା କହିଲି; ତୁମେ ଯଦି ସେ ରାକ୍ଷସର ଘର କେଉଁଠି ଜାଣ ତେବେ ଆମକୁ ବତାଇ ଦିଅ ।୯। ଅପରିଣାମଦର୍ଶୀ ସେହି ରାକ୍ଷସାଧମ ରାବଣକୁ ତୁମେ ଯଦି ଜାଣ, ତେବେ ସେ ନିକଟରେ ଅଛି, ନା ଦୂରରେ ଅଛି ଆମକୁ କହିଦିଅ” ।୧୦। ତା'ପରେ ଜଟାୟୁଙ୍କର ମହାତେଜସ୍ୱୀ ବଡ଼ଭାଇ ବାନରମାନଙ୍କୁ ଖୁସିକରି ନିଜର ଅନୁରୂପ ବଚନ କହିଲେ ।୧୧। “ମୁଁ ଗୋଟିଏ ଦଗ୍ଧପକ୍ଷ ଗୃଧ୍ର । ମୋର ବଳ ନାହିଁ । ଅତଏବ କେବଳ ବାକ୍ୟଦ୍ୱାରା ମୁଁ ରାମଚନ୍ଦ୍ରଙ୍କର ଉତ୍ତମରୂପେ ସାହାଯ୍ୟ କରିବି ।୧୨। ମୁଁ ବରୁଣଲୋକ, ବିଷ୍ଣୁଙ୍କର ତ୍ରିବିକ୍ରମଲୋକ, ଦେବାସୁରଯୁଦ୍ଧ ଏବଂ ଅମୃତମନ୍ଥନର କଥା ଜାଣେ ।୧୩। ବାର୍ଦ୍ଧକ୍ୟଦ୍ୱାରା ମୋର ତେଜ ଅପହୃତ ହୋଇଅଛି ଏବଂ ମୋର ପ୍ରାଣ ମଧ୍ୟ ଶିଥିଳ ହୋଇଗଲାଣି । ତଥାପି ରାମଚନ୍ଦ୍ରଙ୍କର ଏ କାର୍ଯ୍ୟ ମୋର ପ୍ରଥମେ କରିବା

ତରୁଣୀ ରୂପସଂପନ୍ନା ସର୍ବାଭରଣଭୂଷିତା ।
ହ୍ରିୟମାଣା ମୟା ଦୃଷ୍ଟା । ରାବଣେନ ଦୁରାତ୍ମନା ।୧୫।
କ୍ରୋଶନ୍ତୀ ରାମ ରାମେତି ଲକ୍ଷ୍ମଣେତି ଚ ଭାମିନୀ ।
ଭୂଷଣାନ୍ୟପବିଧ୍ୟନ୍ତୀ ଗାତ୍ରାଣି ଚ ବିଧୂନ୍ୱତୀ ।୧୬।
ସୂର୍ଯ୍ୟପ୍ରଭେବ ଶୈଳାଗ୍ରେ ତସ୍ୟାଃ କୌଶେୟମୁତ୍ତମମ୍ ।
ଅସିତେ ରାକ୍ଷସେ ଭାତି ଯଥା ବିଦ୍ୟୁଦିବାମ୍ବରେ ।୧୭।
ତାଂ ତୁ ସୀତାମହଂ ମନ୍ୟେ ରାମସ୍ୟ ପରିକୀର୍ତ୍ତନାତ୍ ।
ଶ୍ରୂୟତାଂ ମେ କଥୟତୋ ନିଲୟଂ ତସ୍ୟ ରକ୍ଷସଃ ।୧୮।
ପୁତ୍ରୋ ବିଶ୍ରବସଃ ସାକ୍ଷାଦ୍ଭ୍ରାତା ବୈଶ୍ରବଣସ୍ୟ ଚ ।
ଅଧ୍ୟାସ୍ତେ ନଗରୀଂ ଲଙ୍କାଂ ରାବଣୋ ନାମ ରାକ୍ଷସଃ ।୧୯।
ଇତୋ ଦ୍ୱୀପେ ସମୁଦ୍ରସ୍ୟ ସଂପୂର୍ଣ୍ଣେ ଶତଯୋଜନେ ।
ତସ୍ମିଁଲ୍ଲଙ୍କାପୁରୀ ରମ୍ୟା ନିର୍ମିତା ବିଶ୍ୱକର୍ମଣା ।୨୦।
ଜାମ୍ବୂନଦମୟୈର୍ଦ୍ୱାରୈଶ୍ଚିତ୍ରୈଃ କାଞ୍ଚନବେଦିକୈଃ ।
ପ୍ରାସାଦୈର୍ହେମବର୍ଣ୍ଣୈଶ୍ଚ ମହଦ୍ଭିଃ ସୁସମା କୃତା ।୨୧।
ପ୍ରାକାରେଣାର୍କବର୍ଣ୍ଣେନ ମହତା ଚ ସମନ୍ୱିତା ।
ତସ୍ୟାଂ ବସତି ବୈଦେହୀ ଦୀନା କୌଶେୟବାସିନୀ ।୨୨।

---

ଉତ୍ତର ।୧୪। ଗୋଟିଏ ରୂପବତୀ ସର୍ବାଲଙ୍କାରଭୂଷିତା ତରୁଣୀକୁ ଦୁରାତ୍ମା ରାବଣ ହରଣକରି ନେବାର ମୁଁ ଦେଖିଅଛି ।୧୫। ସେ ନାରୀ 'ରାମ ରାମ' 'ଲକ୍ଷ୍ମଣ ଲକ୍ଷ୍ମଣ' ବୋଲି ଚିତ୍କାର କରି ରୋଦନ କରୁଥିଲେ, ଅଳଙ୍କାରମାନ ଫିଙ୍ଗିଦେଉଥିଲେ ଏବଂ ନିଜର ଅଙ୍ଗକୁ ବାଡ଼ିଆକଚଡ଼ା କରୁଥିଲେ ।୧୬। ପର୍ବତଶିଖର ଉପରେ ସୂର୍ଯ୍ୟରଶ୍ମି-ସଦୃଶ ତାଙ୍କର ପଟ୍ଟବସ୍ତ୍ର ସେହି କୃଷ୍ଣବର୍ଣ୍ଣ ରାକ୍ଷସଠାରେ (କୋଳରେ) ଆକାଶରେ ବିଜୁଳି ପରି ଦେଖାଯାଉଥିଲା ।୧୭। ରାମଙ୍କର ନାମ କହୁଥିବାରୁ ମୁଁ ସେ ରମଣୀଙ୍କୁ ସୀତା ବୋଲି ମନେକରୁଅଛି । ସେ ରାକ୍ଷସର ଘର ମୁଁ ବତାଇଦେଉଛି ଶୁଣ ।୧୮। ବିଶ୍ରବାଙ୍କର ପୁତ୍ର ଏବଂ ବୈଶ୍ରବଣ (କୁବେର)ଙ୍କର ଭାଇ ସେହି ରାବଣ ନାମକ ରାକ୍ଷସ ଲଙ୍କାନଗରୀରେ ଥାଏ ।୧୯। ଏହିଠାରୁ ପୂର୍ଣ୍ଣ ଶହେଯୋଜନ ଦୂରରେ ସମୁଦ୍ରମଧ୍ୟରେ ଏକ ଦ୍ୱୀପରେ ବିଶ୍ୱକର୍ମା ରମଣୀୟ ଲଙ୍କାପୁରୀ ନିର୍ମାଣ କରିଅଛନ୍ତି ।୨୦। ତାହାର ଦ୍ୱାର ଏବଂ ବେଦୀମାନ ସୁନାରେ ତିଆରି ହୋଇଛି । ସୁବର୍ଣ୍ଣବର୍ଣ୍ଣର ବଡ଼ ବଡ଼ ଅଟ୍ଟାଳିକାଦ୍ୱାରା ସେ ନଗରୀ ଅତି ସୁନ୍ଦର ହୋଇଅଛି ।୨୧। ସୂର୍ଯ୍ୟଙ୍କ ବର୍ଣ୍ଣସଦୃଶ ବର୍ଣ୍ଣବିଶିଷ୍ଟ ପ୍ରାଚୀରଦ୍ୱାରା ତାହା ବେଷ୍ଟିତ ହୋଇଅଛି । ପଟ୍ଟବସ୍ତ୍ରପରିହିତା, ଦୁଃଖିନୀ

ରାବଣାନ୍ତଃପୁରେ ରୁଦ୍ଧା ରାକ୍ଷସୀଭିଃ ସୁରକ୍ଷିତା ।
ଜନକସ୍ୟାତ୍ମଜା ରାଜ୍ଞସ୍ତସ୍ୟାଂ ଦ୍ରକ୍ଷ୍ୟଥ ମୈଥିଲୀମ୍ । ୨୩ ।
ଜ୍ଞାନେନ ଖଲୁ ପଶ୍ୟାମି ଦୃଷ୍ଟ୍ୱା ପ୍ରତ୍ୟାଗମିଷ୍ୟଥ ।
ଆଦ୍ୟଃ ପନ୍ଥାଃ କୁଳିଙ୍ଗାନାଂ ଯେ ଚାନ୍ୟେ ଧାନ୍ୟଜୀବନଃ । ୨୪ ।
ଦ୍ୱିତୀୟୋ ବଳିଭୋଜାନାଂ ଯେ ଚ ବୃକ୍ଷଫଳାଶନାଃ ।
ଭାସାସ୍ତୃତୀୟଂ ଗଚ୍ଛନ୍ତି କ୍ରୌଞ୍ଚାଶ୍ଚ କୁରରୈଃ ସହ । ୨୫ ।
ଶ୍ୟେନାଶ୍ଚତୁର୍ଥଂ ଗଚ୍ଛନ୍ତି ଗୃଧ୍ରା ଗଚ୍ଛନ୍ତି ପଞ୍ଚମମ୍ ।
ବଳବୀର୍ଯ୍ୟୋପପନ୍ନାନାଂ ରୂପଯୌବନଶାଳିନାମ୍ । ୨୬ ।
ଷଷ୍ଠସ୍ତୁ ପନ୍ଥା ହଂସାନାଂ ବୈନତେୟଗତିଃ ପରା ।
ବୈନତେୟାଚ୍ଚ ନୋ ଜନ୍ମ ସର୍ବେଷାଂ ବାନରର୍ଷଭାଃ । ୨୭ ।
ଗର୍ହିତଂ ତୁ କୃତଂ କର୍ମ ଯେନ ସ୍ମ ପିଶିତାଶିନଃ ।
ପ୍ରତିକାର୍ଯ୍ୟଂ ଚ ମେ ତସ୍ୟ ବୈରଂ ଭ୍ରାତୃକୃତଂ ଭବେତ୍ ।୨୮।
ଇହସ୍ଥୋଽହଂ ପ୍ରପଶ୍ୟାମି ରାବଣଂ ଜାନକୀଂ ତଥା ।
ଅସ୍ମାକମପି ସୌପର୍ଣ୍ଣଂ ଦିବ୍ୟଂ ଚକ୍ଷୁର୍ବଳଂ ତଥା । ୨୯ ।

---

ସୀତା ସେହିଠାରେ ରହିଅଛନ୍ତି । ୨୨ । ରାବଣର ଅନ୍ତଃପୁରମଧ୍ୟରେ ସେ ରଖାହୋଇଛନ୍ତି । ରାକ୍ଷସୀମାନେ ତାଙ୍କୁ ଉତ୍ତମରୂପେ ଜଗିରହିଛନ୍ତି । ରାଜା ଜନକଙ୍କର କନ୍ୟାଙ୍କୁ ତୁମ୍ଭେମାନେ ସେହି ଲଙ୍କାରେ ଯାଇ ଦେଖ ।୨୩। ମୁଁ ଜ୍ଞାନଦ୍ୱାରା ଦେଖି ପାରୁଛି ଯେ ତୁମ୍ଭେମାନେ ସୀତାଙ୍କୁ ଦେଖି ଫେରିଆସିବ । ଆକାଶର ପ୍ରଥମ ମାର୍ଗ କୁଳଙ୍ଗ ପକ୍ଷୀମାନଙ୍କର ଏବଂ ଧାନ୍ୟଭକ୍ଷୀ ଅନ୍ୟ ପକ୍ଷୀମାନଙ୍କର ଅଟେ । ୨୪ । ଦ୍ୱିତୀୟ ମାର୍ଗ ବୃକ୍ଷଫଳଭୋଜୀ ଏବଂ ବଳିଭୋଜୀ ପକ୍ଷୀମାନଙ୍କର(କାକ ଆଦିଙ୍କର)ଅଟେ । କ୍ରୌଞ୍ଚ, କୁରରୀ ଏବଂ ଭାସ ପକ୍ଷୀମାନେ ତୃତୀୟ ମାର୍ଗରେ ବିଚରଣ କରନ୍ତି । ୨୫ । ଶଞ୍ଚାଣମାନେ ଚତୁର୍ଥମାର୍ଗରେ ଗମନ କରନ୍ତି ଏବଂ ଗୃଧ୍ରମାନେ ପଞ୍ଚମ ମାର୍ଗରେ ଗମନ କରନ୍ତି । ବଳବୀର୍ଯ୍ୟଯୁକ୍ତ ରୂପଯୌବନସମ୍ପନ୍ନ ହଂସମାନେ ଷଷ୍ଠ ମାର୍ଗରେ ଏବଂ ଗରୁଡ଼ ତାହାଠାରୁ ଉଚ୍ଚତର ମାର୍ଗରେ ବିଚରଣ କରନ୍ତି । ହେ ବାନରଶ୍ରେଷ୍ଠଗଣ ! ଆମ୍ଭମାନଙ୍କର ସମସ୍ତଙ୍କର ଉତ୍ପତ୍ତି ଗରୁଡ଼ଙ୍କ ଠାରୁ । ୨୬-୨୭ । ଆମ୍ଭେମାନେ ମାଂସ ଭକ୍ଷଣ କରି ଗର୍ହିତ କାର୍ଯ୍ୟ କରିଅଛୁଁ । ମୋର ଭାଇର ବୈରଭାବର ପ୍ରତିକାର ତୁମ୍ଭମାନଙ୍କଦ୍ୱାରା ସାଧିତ ହୋଇପାରିବ । ୨୮ । ମୁଁ ଏହିଠାରୁ ରାବଣ ଓ ସୀତାଙ୍କୁ ଦେଖି ପାରୁଅଛି । ଆମ୍ଭମାନଙ୍କର ମଧ୍ୟ ଗରୁଡ଼ଙ୍କ ପରି ଦର୍ଶନଶକ୍ତି ଅଛି । ୨୯ ।

ତସ୍ମାଦାହାରବୀର୍ଯ୍ୟେଣ ନିସର୍ଗେଣ ଚ ବାନରାଃ ।
ଆଯୋଜନଶତାତ୍ସାଗ୍ରାଦ୍ବୟଂ ପଶ୍ୟାମ ନିତ୍ୟଶଃ । ୩୦ ।
ଅସ୍ମାକଂ ବିହିତା ବୃତ୍ତିର୍ନିସର୍ଗେଣ ଚ ଦୂରତଃ ।
ବିହିତା ବୃକ୍ଷମୂଲେ ତୁ ବୃତ୍ତିଶ୍ଚରଣଯୋଧିନାମ୍ । ୩୧ ।
ଉପାୟୋ ଦୃଶ୍ୟତାଂ କଶ୍ଚିଲ୍ଲଙ୍ଘନେ ଲବଣାମ୍ଭସଃ ।
ଅଭିଗମ୍ୟ ତୁ ବୈଦେହୀଂ ସମୃଦ୍ଧାର୍ଥା ଗମିଷ୍ୟଥ ।୩୨ ।
ସମୁଦ୍ରଂ ନେତୁମିଚ୍ଛାମି ଭବଦ୍ଭିର୍ବରୁଣାଲୟମ୍ ।
ପ୍ରଦାସ୍ୟାମ୍ୟୁଦକଂ ଭ୍ରାତୁଃ ସ୍ୱର୍ଗତସ୍ୟ ମହାତ୍ମନଃ । ୩୩ ।
ତତୋ ନୀତ୍ୱା ତୁ ତଂ ଦେଶଂ ତୀରେ ନଦନଦୀପତେଃ ।
ନିର୍ଦ୍ଦଗ୍ଧପକ୍ଷଂ ସଂପାତିଂ ବାନରାଃ ସୁମହୌଜସଃ । ୩୪ ।
ତଂ ପୁନଃ ପ୍ରାପୟିତ୍ୱା ଚ ତଂ ଦେଶଂ ପତଗେଶ୍ୱରମ୍ ।
ବଭୂବୁର୍ବାନରା ହୃଷ୍ଟାଃ ପ୍ରବୃତ୍ତିମୁପଲଭ୍ୟ ତେ । ୩୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ କଷ୍କିନ୍ଧାକାଣ୍ଡେ ସୀତାପ୍ରବୃତ୍ତ୍ୟୁପଲମ୍ଭୋ ନାମ ଅଷ୍ଟପଞ୍ଚାଶଃ ସର୍ଗଃ

---

ହେ ବାନରଗଣ ! ଆହାରବଳରେ ଏବଂ ସ୍ୱଭାବହେତୁରୁ ଶହେ ଯୋଜନ ଏବଂ ତାହାଠାରୁ ଆଗକୁ ମଧ୍ୟ ଆମ୍ଭେମାନେ ସବୁବେଳେ ଦେଖିପାରୁଁ । ୩୦ । ଆମ୍ଭମାନଙ୍କର ବୃତ୍ତି (ଜୀବିକା) ସ୍ୱଭାବତଃ ଦୂରସ୍ଥିତ ସାମଗ୍ରୀଦ୍ୱାରା ହୋଇଥାଏ ଏବଂ କୁକୁଟମାନଙ୍କର ଜୀବିକା ବୃକ୍ଷମୂଳରେ ହୋଇଥାଏ । ଏହା ହିଁ ବିଧିର ବିଧାନ । ୩୧ । ଏ ଲବଣ ସମୁଦ୍ର ପାର ହେବାର ଉପାୟ ସ୍ଥିର କର । ସୀତାଙ୍କ ନିକଟକୁ ଯାଇ ତୁମ୍ଭେମାନେ ସଫଳମନୋରଥ ହେବ । ୩୨ । ମୋର ସ୍ୱର୍ଗଗତ ମହାତ୍ମା ଭାଇକୁ ମୁଁ ଜଳଦାନ କରିବି, ସୁତରାଂ ମୁଁ ଚାହେଁ ଯେ ତୁମ୍ଭେମାନେ ମୋତେ ବରୁଣଙ୍କର ଗୃହ ସମୁଦ୍ରନିକଟକୁ ନେଇ ଚାଲ" । ୩୩ । ମହାବଳଶାଳୀ ବାନରମାନେ ଦଗ୍ଧପକ୍ଷ ସମ୍ପାତିଙ୍କୁ ସମୁଦ୍ରତୀରକୁ ଘେନିଗଲେ । ୩୪ । ପୁଣି ସେହି ପକ୍ଷିରାଜଙ୍କୁ ତାଙ୍କର ରହିବା ସ୍ଥାନକୁ ଲେଉଟାଇ ଆଣିଲେ । ସୀତାଙ୍କର ସନ୍ଧାନ ପାଇ ବାନରମାନେ ଆନନ୍ଦିତ ହେଲେ । ୩୫ ।

---

# ଏକୋନଷଷ୍ଟିତମଃ ସର୍ଗଃ

## ସୁପାର୍ଶ୍ୱବଚନାନୁବାଦଃ

ତତସ୍ତଦମୃତାସ୍ୱାଦଂ ଗୃଧ୍ରରାଜେନ ଭାଷିତମ୍ ।
ନିଶମ୍ୟ ବଦତା ହୃଷ୍ଟାସ୍ତେ ବଚଃ ପ୍ଲବଗର୍ଷଭାଃ । ୧ ।
ଜାମ୍ବବାନ୍ ବାନରଶ୍ରେଷ୍ଠଃ ସହ ସର୍ବୈଃ ପ୍ଲବଙ୍ଗମୈଃ ।
ଭୂତଳାତ୍ସହସୋତ୍ଥାୟ ଗୃଧ୍ରରାଜାନମବ୍ରବୀତ୍ । ୨ ।
କ୍ୱ ସୀତା କେନ ବା ଦୃଷ୍ଟା କୋ ବା ହରତି ମୈଥିଲୀମ୍ ।
ତଦାଖ୍ୟାତୁ ଭବାନ୍ ସର୍ବଂ ଗତିର୍ଭବ ବନୌକସାମ୍ । ୩ ।
କୋ ଦାଶରଥିବାଣାନାଂ ବଜ୍ରବେଗନିପାତିନାମ୍ ।
ସ୍ୱୟଂ ଲକ୍ଷ୍ମଣମୁକ୍ତାନାଂ ନ ଚିନ୍ତୟତି ବିକ୍ରମମ୍ । ୪ ।
ସ ହରୀନ୍ ପ୍ରୀତ ସଂମୁକ୍ତାନ ସୀତାଶ୍ରୁତିସମାହିତାନ୍ ।
ପୁନରାଶ୍ୱାସୟନ୍ ପ୍ରୀତ ଇଦଂ ବଚନମବ୍ରବୀତ୍ । ୫ ।
ଶ୍ରୂୟତାମିହ ବୈଦେହ୍ୟା ଯଥା ମେ ହରଣଂ ଶ୍ରୁତମ୍ ।
ଯେନ ଚାପି ମମାଖ୍ୟାତଂ ଯତ୍ର ଚାୟତଲୋଚନା । ୬ ।

---

## ୫୯ତମ ସର୍ଗ

( ସୁପାର୍ଶ୍ୱ ପ୍ରଦତ୍ତ ବିବରଣକଥନ )

ଅମୃତସଦୃଶ ଗୃଧ୍ରରାଜଙ୍କର ବଚନ ଶୁଣି ବାନରମାନେ ଆନନ୍ଦିତ ହେଲେ ଏବଂ ଗୃଧ୍ରରାଜଙ୍କର କହିବା କଥାକୁ ଆପଣା ମଧ୍ୟରେ କୁହାକୁହି ହେଲେ । ୧ । ଭୂମି ଉପରୁ ବାନରମାନଙ୍କ ସହିତ ସହସା ଉଠି ବାନରଶ୍ରେଷ୍ଠ ଜାମ୍ବବାନ୍ ଗୃଧ୍ରରାଜଙ୍କୁ କହିଲେ ।୨। "ସୀତା କେଉଁଠାରେ ଅଛନ୍ତି, କିଏ ତାଙ୍କୁ ଦେଖିଛି ଏବଂ କିଏ ତାଙ୍କୁ ହରଣ କରିଅଛି, ଏ ସମସ୍ତ କଥା ଆପଣ ଆମ୍ଭମାନଙ୍କୁ କହନ୍ତୁ ଏବଂ ବାନରମାନଙ୍କୁ ରକ୍ଷାକରନ୍ତୁ । ୩ । ଲକ୍ଷ୍ମଣ ଏବଂ ରାମଚନ୍ଦ୍ରଙ୍କର ବଜ୍ରସଦୃଶ ନିପତିତ ଶରର ପରାକ୍ରମକୁ କିଏ ଚିନ୍ତା କରୁନାହିଁ ?" । ୪ । ସୀତାଙ୍କ ସନ୍ଧାନ ମନୋଯୋଗପୂର୍ବକ ଶୁଣି ଆନନ୍ଦିତ ହୋଇଥିବା ବାନରମାନଙ୍କୁ ପ୍ରସନ୍ନତାପୂର୍ବକ ଆଶ୍ୱାସନା ଦେଇ ସମ୍ପାତି ପୁଣି କହିଲେ । ୫ । "ଯେପ୍ରକାରେ ସୀତାଙ୍କ ହରଣବୃତ୍ତାନ୍ତ ମୁଁ ଶୁଣିଲି, ଯେ ମୋତେ କହିଲେ ଏବଂ ଯେଉଁଠାରେ ସେ ଆୟତଲୋଚନା ଅଛନ୍ତି, ତାହା

ଅହମସ୍ମିନ୍ ଗିରୌ ଦୁର୍ଗେ ବହୁଯୋଜନମାୟତେ ।
ଚିରାନ୍ନିପତିତୋ ବୃଦ୍ଧଃ କ୍ଷୀଣପ୍ରାଣପରାକ୍ରମଃ । ୭ ।
ତଂ ମାମେବଂ ଗତଂ ପୁତ୍ରଃ ସୁପାର୍ଶ୍ୱୋ ନାମ ନାମତଃ ।
ଆହାରେଣ ଯଥାକାଳଂ ବିଭର୍ତ୍ତି ପତତାଂ ବରଃ । ୮ ।
ତୀକ୍ଷ୍ଣକାମାସ୍ତୁ ଗନ୍ଧର୍ବାସ୍ତୀକ୍ଷ୍ଣକୋପା ଭୁଜଙ୍ଗମାଃ ।
ମୃଗାଣାଂ ତୁ ଭୟଂ ତୀକ୍ଷ୍ଣଂ ତତସ୍ତୀକ୍ଷ୍ଣକ୍ଷୁଧା ବୟମ୍ । ୯ ।
ସ କଦାଚିତ୍ କ୍ଷୁଧାର୍ତ୍ତସ୍ୟ ମମାହାରାଭିକାଙ୍କ୍ଷିଣଃ ।
ଗତସୂର୍ଯ୍ୟେଽହନି ପ୍ରାପ୍ତୋ ମମ ପୁତ୍ରୋ ହ୍ୟନାମିଷଃ । ୧୦ ।
ସ ମୟାହାରସଂରୋଧାତ୍ପୀଡ଼ିତଃ ପ୍ରୀତିବର୍ଦ୍ଧନଃ ।
ଅନୁମାନ୍ୟ ଯଥା ତତ୍ତ୍ୱମିଦଂ ବଚନମବ୍ରବୀତ୍ । ୧୧ ।
ଅହଂ ତାତ ଯଥାକାଲମାମିଷାର୍ଥୀ ଖମାପ୍ଲୁତଃ ।
ମହେନ୍ଦ୍ରସ୍ୟ ଗିରେର୍ଦ୍ୱାରମାବୃତ୍ୟ ସୁସମାଶ୍ରିତଃ । ୧୨ ।
ତତ୍ର ସତ୍ତ୍ୱସହସ୍ରାଣାଂ ସାଗରାନ୍ତରଚାରିଣାମ୍ ।
ପନ୍ଥାନମେକୋଽଧ୍ୟବସଂ ସଂନିରୋଦ୍ଧୁମବାଙ୍ମୁଖଃ । ୧୩ ।

---

ବର୍ତ୍ତମାନ କହୁଅଛି ଶୁଣ ।୬। ଏହି ବହୁଯୋଜନ ବିସ୍ତୃତ ଦୁର୍ଗମ ପର୍ବତ ଉପରେ ମୁଁ ବୃଦ୍ଧ ଏବଂ ବଳହୀନ ହୋଇ ବହୁତ ଦିନହେଲା ପଡ଼ିରହିଅଛି ।୭। ମୋର ଏହିପରି ଅବସ୍ଥା ହେବାରୁ ପକ୍ଷିଶ୍ରେଷ୍ଠ ସୁପାର୍ଶ୍ୱ ନାମକ ମୋର ପୁତ୍ର ଯଥାସମୟରେ ମୋତେ ଆହାର ଯୋଗାଇ ପାଳୁଅଛି ।୮। ଗନ୍ଧର୍ବମାନେ ଅଧିକ କାମୀ, ସର୍ପମାନେ ବଡ଼ କ୍ରୋଧୀ, ମୃଗମାନେ ବଡ଼ ଭୀରୁ ଏବଂ ଆମ୍ଭେମାନେ ବଡ଼ କ୍ଷୁଧାତୁର ଅଟୁଁ ।୯। ଦିନେ କ୍ଷୁଧାତୁର ମୋ ପାଇଁ ଭୋଜନ ସଂଗ୍ରହ କରିବା ନିମନ୍ତେ ମୋର ସେ ପୁତ୍ର ଗଲା ଏବଂ ସୂର୍ଯ୍ୟ ଅସ୍ତହେଲା ପରେ ମାଂସ ନ ଆଣି ଫେରି ଆସିଲା ।୧୦। ମୋର ସେ ପ୍ରିୟତମ ପୁତ୍ର ମୋର ଖାଦ୍ୟ ବନ୍ଦ ହେବାରେ ଦୁଃଖିତ ହୋଇ ଏବଂ କ୍ଷମା ମାଗି ମୋତେ ଯଥାର୍ଥ କଥା କହିଲା ।୧୧। "ବାବା ! ମୁଁ ମାଂସନିମନ୍ତେ ଯଥାସମୟରେ ଆକାଶକୁ ଉଡ଼ିଲି ଏବଂ ମହେନ୍ଦ୍ର ପର୍ବତର ଦ୍ୱାରକୁ ରୋଧକରି ବସିଗଲି ।୧୨। ସମୁଦ୍ରଚର ସହସ୍ର ସହସ୍ର ପ୍ରାଣୀଙ୍କର ପଥରୋଧ କରି ମୁଁ ଏକାକୀ ଅଧୋମୁଖ ହୋଇ ବସିରହିଲି ।୧୩। ସେହି ସମୟରେ ଜଣେ କଜ୍ଜଳର

ତତ୍ର କଶ୍ଚିନ୍ମୟା ଦୃଷ୍ଟଃ ସୂର୍ଯୋଦୟସମପ୍ରଭାମ୍ ।
ସ୍ତ୍ରିୟମାଦାୟ ଗଚ୍ଛନ୍ ବୈ ଭିନ୍ନାଞ୍ଜନଚୟୋପମଃ । ୧୪ ।
ସୋଽହମଭ୍ୟବହାରାର୍ଥଂ ତୌ ଦୃଷ୍ଟ୍ୱା କୃତନିଶ୍ଚୟଃ ।
ତେନ ସାମ୍ନା ବିନୀତେନ ପନ୍ଥାନମନୁଯାଚିତଃ । ୧୫ ।
ନ ହି ସାମୋପପନ୍ନାନାଂ ପ୍ରହର୍ତା ବିଦ୍ୟତେ ଭୁବି ।
ନୀଚେଷ୍ୱପି ଜନଃ କଶ୍ଚିତ୍କିମଙ୍ଗ ବତ ମଦ୍ୱିଧଃ । ୧୬ ।
ସ ଯାତସ୍ତେଜସା ବ୍ୟୋମ ସଂକ୍ଷିପନ୍ନିବ ବେଗିତଃ ।
ଅଥାହଂ ଖେଚରୈର୍ଭୂତୈରଭିଗମ୍ୟ ସଭାଜିତଃ । ୧୭ ।
ଦିଷ୍ଟ୍ୟା ଜୀବତି ସୀତେତି ଅବ୍ରୁବନ୍ମାଂ ମହର୍ଷୟଃ ।
କଥଂ ଚିତ୍ରକଲତ୍ରୋଽସୌ ଗତସ୍ତେ ସ୍ୱସ୍ତ୍ୟସଂଶୟମ୍ । ୧୮ ।
ଏବମୁକ୍ତସ୍ତତୋଽହଂ ତୈଃ ସିଦ୍ଧୈଃ ପରମଶୋଭନୈଃ ।
ସ ଚ ମେ ରାବଣୋ ରାଜା ରକ୍ଷସାଂ ପ୍ରତିବେଦିତଃ । ୧୯ ।
ପଶ୍ୟ ଦାଶରଥେର୍ଭାର୍ଯାଂ ରାମସ୍ୟ ଜନକାତ୍ମଜାମ୍ ।
ଭ୍ରଷ୍ଟାଭରଣକୌଶେୟାଂ ଶୋକବେଗପରାଜିତାମ୍ । ୨୦ ।

---

ସମଷ୍ଟିସଦୃଶ କୃଷ୍ଣବର୍ଣ୍ଣ ପୁରୁଷ ପ୍ରାତଃକାଳୀନ ସୂର୍ଯ୍ୟପ୍ରଭାସଦୃଶୀ ଏକ ରମଣୀୟା ସ୍ତ୍ରୀକୁ ନେଇ ଚାଲିଯିବାର ମୁଁ ଦେଖିଲି । ୧୪ । ସେ ଦୁହିଁଙ୍କୁ ଦେଖି ଆହାର-ସ୍ୱରୂପ ସେହିମାନଙ୍କୁ ଆଣିବାକୁ ମୁଁ ସ୍ଥିରକଲି । ମାତ୍ର ସେ ବିନୀତଭାବରେ ମୋତେ ବାଟ ଛାଡ଼ିଦେବାକୁ ଅନୁରୋଧ କଲା । ୧୫ । ବିନୟପୂର୍ବକ ବ୍ୟବହାର କରିବା ଲୋକ ପ୍ରତି ପ୍ରହାର କରିବା ଲୋକ ଏ ସଂସାରରେ ନୀଚ ଲୋକଙ୍କ ମଧ୍ୟରେ ସୁଦ୍ଧା କେହି ନାହିଁ; ସୁତରାଂ ମୋପରି ବ୍ୟକ୍ତି ତାକୁ ବା କିପରି ପ୍ରହାର କରନ୍ତା ? । ୧୬ । ତେଜରେ ଆକାଶକୁ ଉଜ୍ଜ୍ୱଳ କରି ସେ ବେଗରେ ଚାଲିଗଲା । ଅନନ୍ତର ଆକାଶଚାରୀ ପ୍ରାଣୀମାନେ ଆସି ମୋତେ ସମ୍ମାନ ଦେଖାଇଲେ । ୧୭ । ମହର୍ଷିମାନେ ମୋତେ କହିଲେ, "ସୌଭାଗ୍ୟର କଥା ଯେ ସୀତା ଜୀବିତ ଅଛନ୍ତି"। କୌଣସିମତେ ସ୍ତ୍ରୀ ସହିତ ସେ ଚାଲିଗଲା 'ତୁମ୍ଭର ମଙ୍ଗଳ ହେଉ' । ୧୮ । ପରମଶୋଭମାନ ସିଦ୍ଧମାନେ ମୋତେ ଏହି ପ୍ରକାର କହିବାରେ ସେ ବ୍ୟକ୍ତି ରାକ୍ଷସମାନଙ୍କର ରାଜା ରାବଣ ବୋଲି ମୁଁ ଜାଣିଲି । ୧୯ । ଜନକଦୁହିତା ରାମଚନ୍ଦ୍ରଙ୍କର ପତ୍ନୀ,ଭୂଷଣହୀନା, ପଟ୍ଟବସ୍ତ୍ରପରିହୀତା, ଶୋକପୀଡ଼ିତା, ମୁକ୍ତକେଶୀ ସୀତାଙ୍କୁ ରାମ ଲକ୍ଷ୍ମଣଙ୍କର ନାମଧରି ଡାକୁଥିବାର ମୁଁ ଦେଖିଲି । ସେହି

ରାମଲକ୍ଷ୍ମଣୟୋର୍ନାମ କ୍ରୋଶନ୍ତୀଂ ମୁକ୍ତମୂର୍ଧଜାମ୍ ।
ଏଷ କାଲାତ୍ୟୟସ୍ତାତ ଇତି ବାକ୍ୟବିଦାଂ ବରଃ । ୨୧ ।
ଏତଦର୍ଥଂ ସମଗ୍ରଂ ମେ ସୁପାର୍ଶ୍ୱଃ ପ୍ରତ୍ୟବେଦୟତ୍ ।
ତଚ୍ଛ୍ରୁତ୍ୱାପି ହି ମେ ବୁଦ୍ଧିର୍ନାସୀତ୍କାଚିତ୍ପରାକ୍ରମେ । ୨୨ ।
ଅପକ୍ଷୋ ହି କଥଂ ପକ୍ଷୀ କର୍ମ କିଂଚିତ୍ସମାରଭେତ୍ ।
ଯତ୍ତୁ ଶକ୍ୟଂ ମୟା କର୍ତୁଂ ବାଗ୍‌ବୁଦ୍ଧିଗୁଣବର୍ତିନା । ୨୩ ।
ଶ୍ରୃଣୁତାଂ ତତ୍ର ବକ୍ଷ୍ୟାମି ଭବତାଂ ପୌରୁଷାଶ୍ରୟମ୍ ।
ବାଙ୍‌ମତିଭ୍ୟାଂ ହି ସର୍ବେଷାଂ କରିଷ୍ୟାମି ପ୍ରିୟଂ ହି ବଃ ।୨୪।
ଯଦ୍ଧି ଦାଶରଥେଃ କାର୍ଯଂ ମମ ତନ୍ନାତ୍ର ସଂଶୟଃ ।
ତଦ୍ଭବନ୍ତୋ ମତିଶ୍ରେଷ୍ଠା ବଲବନ୍ତୋ ମନସ୍ୱିନଃ । ୨୫ ।
ପ୍ରହିତାଃ କପିରାଜେନ ଦେବୈରପି ଦୁରାସଦାଃ ।
ରାମଲକ୍ଷ୍ମଣବାଣାଶ୍ଚ ବିହିତାଃ କଙ୍କପତ୍ରିଣଃ । ୨୬ ।
ତ୍ରୟାଣାମପି ଲୋକାନାଂ ପର୍ଯାପ୍ତାସ୍ତ୍ରାଣନିଗ୍ରହେ ।
କାମଂ ଖଲୁ ଦଶଗ୍ରୀବସ୍ତେଜୋବଲସମନ୍ୱିତଃ ।
ଭବତାଂ ତୁ ସମର୍ଥାନାଂ ନ କିଂଚିଦପି ଦୁଷ୍କରମ୍ । ୨୭ ।

---

ହେତୁରୁ ମୋତେ ଏତେ ବିଳମ୍ବ ହୋଇଗଲା ।” କଥା କହିବାରେ ନିପୁଣ ସୁପାର୍ଶ୍ୱ ଏ ସମସ୍ତ ବିଷୟ ମୋତେ ଜଣାଇଥିଲା । ଏ କଥା ଶୁଣି ମଧ୍ୟ ପରାକ୍ରମ ଦେଖାଇବାର କୌଣସିପ୍ରକାର ଉଦ୍ୟମ କରିବାପାଇଁ ମୋର ଇଚ୍ଛା ନ ଥିଲା । ୨୦-୨୨ । କାରଣ (ମୋଭଳି) ପକ୍ଷହୀନ ଗୋଟିଏ ପକ୍ଷୀ କିପରି ବା କାର୍ଯ୍ୟ ଆରମ୍ଭ କରିପାରେ ? ମୋଦ୍ୱାରା ଯାହା କିଛି ହୋଇପାରିବ ତାହା କେବଳ କଥା ଏବଂ ବୁଦ୍ଧି ଦିଗର ଗୁଣଦ୍ୱାରା ହୋଇପାରେ । ୨୩ । ମୁଁ ଯାହା କହୁଛି ତାହା ଶୁଣ । ତାହା କେବଳ ତୁମ୍ଭମାନଙ୍କ ପରାକ୍ରମ ସାହାଯ୍ୟରେ ସିଦ୍ଧ ହୋଇପାରେ । ବଚନ ଏବଂ ବୁଦ୍ଧିଦ୍ୱାରା ମୁଁ ତୁମ୍ଭମାନଙ୍କର ପ୍ରିୟକାର୍ଯ୍ୟ ସାଧନ କରିବି ।୨୪। ଯାହା ରାମଚନ୍ଦ୍ରଙ୍କର କାର୍ଯ୍ୟ,ତାହା ମୋର ନିଜର କାର୍ଯ୍ୟ, ଏଥିରେ କିଛିମାତ୍ର ସନ୍ଦେହ ନାହିଁ । ତୁମ୍ଭେମାନେ ବୁଦ୍ଧିମାନ୍ ବଳବାନ୍ ଏବଂ ମନସ୍ୱୀ ଅଟ । ବାନରରାଜ ତୁମ୍ଭମାନଙ୍କୁ ପଠାଇ ଅଛନ୍ତି । ଦେବତାମାନେ ମଧ୍ୟ ତୁମ୍ଭମାନଙ୍କ ସହିତ ସମକକ୍ଷ ହୋଇପାରିବେ ନାହିଁ । କଙ୍କପତ୍ରଯୁକ୍ତ ରାମ ଲକ୍ଷ୍ମଣଙ୍କର ବାଣସବୁ ତିନି ଲୋକର ଦଣ୍ଡବିଧାନ ଏବଂ ପରିତ୍ରାଣ କରିବା ନିମନ୍ତେ ଯଥେଷ୍ଟ ସମର୍ଥ ଅଟନ୍ତି । ରାବଣ ଯଦ୍ୟପି ତେଜ ଏବଂ ବଳସମ୍ପନ୍ନ

**ତଦଲଂ କାଳସଙ୍ଗେନ କ୍ରିୟତାଂ ବୁଦ୍ଧିନିଶ୍ଚୟଃ ।**
**ନ ହି କର୍ମସୁ ସଜ୍ଜନ୍ତେ ବୁଦ୍ଧିମନ୍ତୋ ଭବଦ୍ୱିଧାଃ । ୨୮ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସୁପାର୍ଶ୍ୱବଚନାନୁବାଦୋ
ନାମ ଏକୋନଷଷ୍ଟିତମଃ ସର୍ଗଃ

---

ଅଟେ, ତଥାପି ସମର୍ଥ ତୁମ୍ଭମାନଙ୍କ ପକ୍ଷରେ କୌଣସି କାର୍ଯ୍ୟ ଦୁଷ୍କର ନୁହେ ।୨୫-୨୭।
ଅତଏବ କାଳବିଳମ୍ବ କରିବା ବୃଥା । ଶୀଘ୍ର ବିଚାର ସ୍ଥିର କର । ତୁମ୍ଭମାନଙ୍କ ପରି ବୁଦ୍ଧିମାନ୍ ବ୍ୟକ୍ତିମାନେ କାର୍ଯ୍ୟରେ ପଶ୍ଚାତ୍ପଦ ହୁଅନ୍ତି ନାହିଁ” । ୨୮ ।

# ଷଷ୍ଟିତମଃ ସର୍ଗଃ

## ସଂପାତିପୂରାବୃତ୍ତବର୍ଣନମ୍

ତତଃ କୃତୋଦକଂ ସ୍ନାତଂ ତଂ ଗୃଧ୍ରଂ ହରିୟୂଥପାଃ ।
ଉପବିଷ୍ଟା ଗିରୌ ରମ୍ୟେ ପରିବାର୍ଯ ସମନ୍ତତଃ । ୧ ।
ତମଙ୍ଗଦମୁପାସୀନଂ ତୈଃ ସର୍ବୈର୍ହରିଭିର୍ବୃତମ୍ ।
ଜନିତପ୍ରତ୍ୟୟୋ ହର୍ଷାତ୍ସଂପାତିଃ ପୁନରବ୍ରବୀତ୍ । ୨ ।
କୃତ୍ୱା ନିଃଶବ୍ଦମେକାଗ୍ରାଃ ଶୃଣ୍ୱନ୍ତୁ ହରୟୋ ମମ ।
ତଥ୍ୟଂ ସଂକୀର୍ତୟିଷ୍ୟାମି ଯଥା ଜାନାମି ମୈଥିଲୀମ୍ । ୩ ।
ଅସ୍ୟ ବିନ୍ଧ୍ୟସ୍ୟ ଶିଖରେ ପତିତୋଽସ୍ମି ପୁରାନଘ ।
ସୂର୍ଯତାପପରୀତାଙ୍ଗୋ ନିର୍ଦଗ୍ଧଃ ସୂର୍ଯରଶ୍ମିଭିଃ ।୪।
ଲବ୍ଧସଂଜ୍ଞସ୍ତୁ ଷଡ୍ରାତ୍ରାଦ୍ ବିବଶୋ ବିହ୍ୱଲନ୍ନିବ ।
ବୀକ୍ଷମାଣୋ ଦିଶଃ ସର୍ବାନାଭିଜାନାମି କିଂଚନ । ୫ ।
ତତସ୍ତୁ ସାଗରାନ୍ ଶୈଳାନ୍ନଦୀଃ ସର୍ବାଃ ସରାଂସି ଚ ।
ବନାନି ଚ ପ୍ରଦେଶାଂଶ୍ଚ ନିରୀକ୍ଷ୍ୟ ମତିରାଗତା । ୬ ।

---

# ୬୦ତମ ସର୍ଗ

## (ସମ୍ପାତିଙ୍କର ଇତିହାସବର୍ଣ୍ଣନା)

ଅନନ୍ତର ସ୍ନାନ ଏବଂ ଜଳତର୍ପଣ କରିସାରିଥିବା ଗୃଧ୍ରର ଚାରିପାଖରେ ବେଢ଼ିକରି ବାନରଦଳପତିମାନେ ରମଣୀୟ ପର୍ବତ ଉପରେ ବସିଲେ । ୧ । ସମସ୍ତ ବାନରଙ୍କଦ୍ୱାରା ବେଷ୍ଟିତ ହୋଇ ବସିଥିବା ଅଙ୍ଗଦଙ୍କୁ ସମ୍ପାତି ଆନନ୍ଦପୂର୍ବକ ପୁଣି କହିଲେ । ବାନରମାନଙ୍କ ଉପରେ ତାହାଙ୍କର ବିଶ୍ୱାସ ଜନ୍ମିଯାଇଥିଲା । ୨ । "ଚୁପଚାପ ଏକାଗ୍ରମନରେ ବାନରମାନେ ମୋର କଥା ଶୁଣ । ମୁଁ ଯେ ପ୍ରକାରେ ସୀତାଙ୍କୁ ଜାଣିଛି ତାହାର ତଥ୍ୟ ମୁଁ କହୁଅଛି । ୩ । ହେ ନିଷ୍ପାପ ! ପୂର୍ବେ ସୂର୍ଯ୍ୟ-କିରଣରେ ଦଗ୍ଧ ହୋଇ ଏହି ବିନ୍ଧ୍ୟପର୍ବତ ଉପରେ ମୁଁ ପଡ଼ିଥିଲି ।୪। ଛ'ଦିନପରେ ମୋର ଚେତାହେଲା । ମୁଁ ଅବଶ ହୋଇପଡ଼ିଥିଲି । ମୁଁ ବ୍ୟାକୁଳ ହୋଇ ଚାରିଆଡ଼କୁ ଚାହିଁଲି, ମାତ୍ର କିଛି ଜାଣିପାରିଲି ନାହିଁ । ୫ । ଅନନ୍ତର ପର୍ବତ, ସମୁଦ୍ର, ନଦୀ, ପୁଷ୍କରିଣୀ, ବନ ଏବଂ ଦେଶମାନ ଦେଖିବାପରେ ମୋର ବୁଦ୍ଧି ଆସିଲା । ୬ । ମୁଁ

ହୃଷ୍ଟପକ୍ଷିଗଣାକୀର୍ଣ୍ଣଃ କନ୍ଦରୋଦରକୂଟବାନ୍ ।
ଦକ୍ଷିଣସ୍ୟୋଦଧେସ୍ତୀରେ ବିନ୍ଧ୍ୟୋଽୟମିତି ନିଶ୍ଚିତଃ । ୭ ।
ଆସୀଚ୍ଚାତ୍ରାଶ୍ରମଂ ପୁଣ୍ୟଂ ସୁରୈରପି ସୁପୂଜିତମ୍ ।
ଋଷେର୍ନିଶାକରୋ ନାମ ଯସ୍ମିନ୍ନୁଗ୍ରତପା ଭବତ୍ । ୮ ।
ଅଷ୍ଟୌ ବର୍ଷସହସ୍ରାଣି ତେନାସ୍ମିନ୍ନୃଷିଣା ଗିରୌ ।
ବସତୋ ମମ ଧର୍ମଜ୍ଞେ ସ୍ୱର୍ଗତେ ତୁ ନିଶାକରେ । ୯ ।
ଅବତୀର୍ଯ ଚ ବିନ୍ଧ୍ୟାଗ୍ରାତ୍କୃଚ୍ଛ୍ରେଣ ବିଷମାଚ୍ଛନୈଃ ।
ତୀକ୍ଷ୍ଣଦର୍ଭାଂ ବସୁମତୀଂ ଦୁଃଖେନ ପୁନରାଗତଃ । ୧୦ ।
ତମୃଷିଂ ଦ୍ରଷ୍ଟୁକାମୋଽସ୍ମି ଦୁଃଖେନାଭ୍ୟାଗତୋ ଭୃଶମ୍ ।
ଜଟାୟୁଷା ମୟା ଚୈବ ବହୁଶୋଽଧିଗତୋ ହି ସଃ । ୧୧ ।
ତସ୍ୟାଶ୍ରମପଦାଭ୍ୟାଶେ ବବୁର୍ବାତାଃ ସୁଗନ୍ଧିନଃ ।
ବୃକ୍ଷୋ ନାପୁଷ୍ପିତଃ କଶ୍ଚିଦଫଲୋ ବା ନ ଦୃଶ୍ୟତେ । ୧୨ ।
ଉପେତ୍ୟ ଚାଶ୍ରମଂ ପୁଣ୍ୟଂ ବୃକ୍ଷମୂଲମୁପାଶ୍ରିତଃ ।
ଦ୍ରଷ୍ଟୁକାମଃ ପ୍ରତୀକ୍ଷେ ଚ ଭଗବନ୍ତଂ ନିଶାକରମ୍ । ୧୩ ।

---

ନିଶ୍ଚୟ କରି ଜାଣିଲି, ଏହା ଆନନ୍ଦିତ ପକ୍ଷିପୂର୍ଣ୍ଣ କନ୍ଦର ଗୁହା ଏବଂ ଶିଖରଯୁକ୍ତ ବିନ୍ଧ୍ୟପର୍ବତ ଅଟେ । ଏହା ଦକ୍ଷିଣ ସମୁଦ୍ରର ତୀରରେ ଅବସ୍ଥିତ । ୭ । ଏଠାରେ ଦେବତାମାନଙ୍କ ଦ୍ୱାରା ପୂଜିତ ଏକ ପବିତ୍ର ଆଶ୍ରମ ଥିଲା । ସେଥିରେ ନିଶାକର ନାମକ ଜଣେ ଉଗ୍ରତପସ୍ୱୀ ଋଷି ଥିଲେ । ୮ । ଧର୍ମଜ୍ଞ ନିଶାକର ସ୍ୱର୍ଗଯାତ୍ରା କରିବାପରେ ଏହି ପର୍ବତରେ ମୁଁ ଆଠ ସହସ୍ର ବର୍ଷଧରି ବାସକରି ଆସୁଅଛି । ମୁଁ ଅତିକଷ୍ଟରେ ବିନ୍ଧ୍ୟପର୍ବତର ବିଷମ ଶିଖରରୁ ଆସ୍ତେ ଆସ୍ତେ ଓହ୍ଲାଇ ତୀକ୍ଷ୍ଣ କୁଶପୂର୍ଣ୍ଣ ଭୂମି ଉପରକୁ ପୁଣି ଆସିଲି । ୯-୧୦ । ସେହି ଋଷିଙ୍କ ସହିତ ମୋର ଏବଂ ଜଟାୟୁର ଅନେକବାର ଦେଖା ହୋଇଥିଲା । ତାଙ୍କୁ ଦେଖିବା ଉଦ୍ଦେଶ୍ୟରେ ମୁଁ କଷ୍ଟରେ ପୁଣି ଆସିଲି । ୧୧ । ତାଙ୍କ ଆଶ୍ରମ ନିକଟରେ ସୁଗନ୍ଧିତ ପବନ ବହୁଥିଲା । ସେଠାରେ ଏପରି କୌଣସି ବୃକ୍ଷ ନ ଥିଲା, ଯହିଁରେ ଫୁଲ ବା ଫଳ ନ ଥିଲା । ୧୨ । ସେହି ପବିତ୍ର ଆଶ୍ରମକୁ ଯାଇ ମୁଁ ଗୋଟିଏ ବୃକ୍ଷତଳେ ବସିଗଲି । ଭଗବାନ୍ ନିଶାକରଙ୍କୁ ଦେଖିବାଲାଗି ମୁଁ ତାଙ୍କର ପ୍ରତୀକ୍ଷା କରିବାକୁ ଲାଗିଲି । ୧୩ ।

ଅଥ ପଶ୍ୟାମି ଦୂରସ୍ଥମୃଷିଂ ଜ୍ୱଳିତତେଜସମ୍ ।
କୃତାଭିଷେକଂ ଦୁର୍ଦ୍ଧର୍ଷମୁପାବୃତ୍ତମୁଦଙ୍ମୁଖମ୍ । ୧୪ ।
ତମୃକ୍ଷାଃ ସୃମରା ବ୍ୟାଘ୍ରାଃ ସିଂହା ନାନାସରୀସୃପାଃ ।
ପରିବାର୍ଯ୍ୟୋପଗଚ୍ଛନ୍ତି ଦାତାରଂ ପ୍ରାଣିନୋ ଯଥା । ୧୫ ।
ତତଃ ପ୍ରାପ୍ତମୃଷିଂ ଜ୍ଞାତ୍ୱା ତାନି ସତ୍ତ୍ୱାନି ବୈ ଯଯୁଃ ।
ପ୍ରବିଷ୍ଟେ ରାଜନି ଯଥା ସର୍ବସାମାତ୍ୟକଂ ବଳମ୍ । ୧୬।
ଋଷିସ୍ତୁ ଦୃଷ୍ଟ୍ୱା ମାଂ ତୁଷ୍ଟଃ ପ୍ରବିଷ୍ଟଶ୍ଚାଶ୍ରମଂ ପୁନଃ ।
ମୁହୂର୍ତ୍ତମାତ୍ରାନ୍ନିର୍ଗମ୍ୟ ତତଃ କାର୍ଯ୍ୟମପୃଚ୍ଛତ । ୧୭ ।
ସୌମ୍ୟ ବୈକଲ୍ୟତାଂ ଦୃଷ୍ଟ୍ୱା ରୋମ୍ଣାଂ ତେ ନାବଗମ୍ୟତେ ।
ଅଗ୍ନିଦଗ୍ଧାବିମୌ ପକ୍ଷୌ ପ୍ରାଣାଶ୍ଚାପି ଶରୀରକେ । ୧୮।
ଗୃଧ୍ରୌ ଦ୍ୱୌ ଦୃଷ୍ଟପୂର୍ବୌ ମେ ମାତରିଶ୍ୱସମୌ ଜବେ ।
ଗୃଧ୍ରାଣାଂ ଚୈବ ରାଜାନୌ ଭ୍ରାତରୌ କାମରୂପିଣୌ । ୧୯ ।
ଜ୍ୟେଷ୍ଠୋଽବିତସ୍ତ୍ୱଂ ସଂପାତେ ଜଟାୟୁରନୁଜସ୍ତବ ।
ମାନୁଷଂ ରୂପମାସ୍ଥାୟ ଗୃହ୍ଣୀତାଂ ଚରଣୌ ମମ । ୨୦ ।

---

ତେଜରେ ଜଳୁଥିବା ସେ ଋଷିଙ୍କୁ ସ୍ନାନ କରିସାରି ଉତ୍ତରମୁଖରେ ଫେରିଆସୁଥିବାର ମୁଁ ଦୂରରୁ ଦେଖିଲି । ୧୪ । ଦାତାଙ୍କ ସାଥିରେ ଯାଚକପ୍ରାଣୀମାନେ ଯେପରି ଆସୁଥାନ୍ତି ସେହିପରି ତାଙ୍କ ଚାରିଆଡ଼େ ବେଢ଼ି ଭାଲୁ, ସମ୍ବର, ବାଘ, ସିଂହ ଏବଂ ନାନା ଜାତି ସରୀସୃପ ଆସୁଥିଲେ । ୧୫ । ଋଷି ଆଶ୍ରମରେ ପହଞ୍ଚିବାର ଜାଣି, ରାଜା ପ୍ରାସାଦମଧ୍ୟରେ ପ୍ରବେଶ କଲେ, ଅମାତ୍ୟ ଏବଂ ସୈନ୍ୟମାନେ ଯେପରି ଫେରିଯାନ୍ତି, ସେହିପରି ସେ ସବୁ ଜନ୍ତୁ ଫେରିଗଲେ । ୧୬ । ଋଷି ମୋତେ ଦେଖି ଆନନ୍ଦିତ ହେଲେ ଏବଂ ଆଶ୍ରମ ଭିତରକୁ ପ୍ରବେଶ କଲେ । ପୁଣି ମୁହୂର୍ତ୍ତକପରେ ବାହାରି ଆସି ମୋତେ ଆସିବାର ଉଦ୍ଦେଶ୍ୟ ପଚାରିଲେ । ୧୭ । "ହେ ସୌମ୍ୟ ! ତୁମ୍ଭର ଲୋମସବୁ ବିକୃତ ହୋଇଯାଇଥିବାର ଦେଖି ତୁମ୍ଭଙ୍କୁ ଚିହ୍ନିହେଉ ନାହିଁ । ତୁମ୍ଭର ଏ ପକ୍ଷ ଦୁଇଟି ଅଗ୍ନିରେ ପୋଡ଼ିଯାଇଅଛି ଏବଂ ତୁମ୍ଭ ଶରୀରରେ ପ୍ରାଣ ଥିବାପରି ମଧ୍ୟ ଜଣାପଡ଼ୁ ନାହିଁ । ୧୮ । ପୂର୍ବେ ମୁଁ ଦୁଇଟି ଗୃଧ୍ରଙ୍କୁ ଦେଖିଥିଲି । ବେଗରେ ସେମାନେ ପବନସଦୃଶ ଥିଲେ । ସେ ଦୁଇ ଭାଇ ଗୃଧ୍ରମାନଙ୍କ ମଧ୍ୟରେ ଦୁଇଟି ରାଜା ଥିଲେ । ସେମାନେ ଇଚ୍ଛା ଅନୁସାରେ ନାନା ରୂପ ଧରିପାରୁଥିଲେ । ୧୯ । ହେ ସମ୍ପାତି ! ତୁମ୍ଭେ ବଡ଼ ଏ କଥା ମୁଁ ଜାଣେ; ଜଟାୟୁ ତୁମ୍ଭର ସାନଭାଇ । ତୁମ୍ଭେ ଦୁହେଁ ମନୁଷ୍ୟରୂପ ଧାରଣକରି ମୋର ଚରଣ ଗ୍ରହଣ କରିଥିଲ । ୨୦ ।

**କିଂ ତେ ବ୍ୟାଧିସମୁତ୍ଥାନଂ ପକ୍ଷୟୋଃ ପତନଂ କଥମ୍ ।**
**ଦଣ୍ଡୋ ବାୟଂ ଧୃତଃ କେନ ସର୍ବମାଖ୍ୟାହି ପୃଚ୍ଛତଃ । ୨୧ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସଂପାତିପୂର୍ବବୃତ୍ତବର୍ଣ୍ଣନମ୍
ନାମ ଷଷ୍ଟିତମଃ ସର୍ଗଃ ।

---

ତୁମ୍ଭର କି ରୋଗ ହୋଇଛି ? ଏ ପକ୍ଷ ଦୁଇଟି କପରି ଖସିପଡ଼ିଲା ? ଅଥବା କେଉଁ ତୁମ୍ଭଙ୍କୁ ଏ ଦଣ୍ଡ ଦେଇଛି କି ? ମୁଁ ପଚାରୁଛି, ଏସବୁ କଥା ମୋତେ କହ” । ୨୧ ।

# ଏକଷଷ୍ଟିତମଃ ସର୍ଗଃ

## ସୂର୍ଯାନୁଗମନାଖ୍ୟାନମ୍

ତତସ୍ତଦ୍ଦାରୁଣଂ କର୍ମ ଦୁଷ୍କରଂ ସହସା କୃତମ୍ ।
ଆଚଚକ୍ଷେ ମୁନେଃ ସର୍ବଂ ସୂର୍ଯାନୁଗମନଂ ତଥା ୧ ।
ଭଗବନ୍ ବ୍ରଣଯୁକ୍ତତ୍ୱାଲ୍ଲଜ୍ଜୟା ଚ୍ୟାକୁଲେନ୍ଦ୍ରିୟଃ ।
ପରିଶ୍ରାନ୍ତୋ ନ ଶକ୍ନୋମି ବଚନଂ ପରିଭାଷିତୁମ୍ ।୨ ।
ଅହଂ ଚୈବ ଜଟାୟୁଶ୍ଚ ସଂଘର୍ଷାଦ୍‌ଗର୍ବମୋହିତୌ ।
ଆକାଶଂ ପତିତୌ ଦୂରାଜ୍ଜିଜ୍ଞାସନ୍ତୌ ପରାକ୍ରମମ୍ । ୩ ।
କୈଲାସଶିଖରେ ବଦ୍ଧ୍ୱା ମୁନୀନାମଗ୍ରତଃ ପଣମ୍ ।
ରବିଃ ସ୍ୟାଦନୁଯାତବ୍ୟୋ ଯାବଦସ୍ତଂ ମହାଗିରିମ୍ । ୪ ।
ଅପ୍ୟାବାଂ ଯୁଗପତ୍ପ୍ରାପ୍ତାବପଶ୍ୟାବ ମହୀତଲେ ।
ରଥଚକ୍ରପ୍ରମାଣାନି ନଗରାଣି ପୃଥକ୍ ପୃଥକ୍ । ୫ ।
କ୍ୱଚିଦ୍‌ବାଦ୍ୟରବଘୋଷଶ୍ଚ କ୍ୱଚିଦ୍‌ଭୂଷଣନିଃସ୍ୱନଃ ।
ଗାୟନ୍ତୀଶ୍ଚାଙ୍ଗନା ବହ୍ୱୀଃ ପଶ୍ୟାବୋ ରକ୍ତବାସସଃ । ୬ ।

---

## ୬୧ତମ ସର୍ଗ

( ସୂର୍ଯ୍ୟଙ୍କ ଅନୁଗମନବୃତ୍ତାନ୍ତ )

"ଅନନ୍ତର ମୁଁ ଯେଉଁ ଦାରୁଣ ଦୁଃସାଧ କାର୍ଯ୍ୟ ଅକାରଣରେ କରିଥିଲି ତାହା ସବୁ ଏବଂ ସୂର୍ଯ୍ୟଙ୍କ ପଛରେ ଯିବାକଥା ସବୁ ସେ ମୁନିଙ୍କ ଆଗରେ କହିଲି । ୧ । ହେ ଭଗବନ୍, ମୋର ଘା' ହୋଇଥିବାରୁ ଏବଂ ଲଜ୍ଜାରେ ମୋର ଇନ୍ଦ୍ରିୟ ସବୁ ବ୍ୟାକୁଳ ହୋଇ ଯାଇଥିବାରୁ ମୁଁ ପରିଶ୍ରାନ୍ତ ହୋଇପଡ଼ିଅଛି; ଅତଏବ ସବୁ କଥା ବିବୃତଭାବରେ ମୁଁ କହିପାରୁ ନାହିଁ । ୨ । ଗର୍ବରେ ମୋହିତ ହୋଇ ମୁଁ ଏବଂ ଜଟାୟୁ ପରସ୍ପର ପ୍ରତିଦ୍ୱନ୍ଦ୍ୱିତାରେ ଆକାଶରେ ଅନେକ-ଦୂର ପର୍ଯ୍ୟନ୍ତ ନିଜ ନିଜର ପରାକ୍ରମ ପରୀକ୍ଷା କରିବା ନିମନ୍ତେ ଉଡ଼ିଗଲୁଁ । ୩ । କୈଳାସପର୍ବତ ଉପରେ ଆମେ ଦୁହେଁ ମୁନିମାନଙ୍କ ସମକ୍ଷରେ ପ୍ରତିଜ୍ଞା କଲୁଁ ଯେ ଅସ୍ତାଚଳ ପର୍ବତ ପର୍ଯ୍ୟନ୍ତ ସୂର୍ଯ୍ୟଙ୍କର ଅନୁଗମନ କରିବାକୁ ହେବ । ୪ । ଆମେ ଦୁହେଁ ଏକା ସମୟରେ ପହଞ୍ଚିଲୁ । ସେଠାରୁ ପୃଥିବୀର ନଗରମାନ ରଥଚକ୍ରସଦୃଶ ଛୋଟ ଛୋଟ ଦେଖା ଯାଉଥାଏ । ୫ । କେଉଁଠାରେ ବାଜଣାର ଶବ୍ଦ, କେଉଁଠାରେ ବା ଅଳଙ୍କାରର ଝଣ୍‌ଝଣ୍ ଶବ୍ଦ ଶୁଣାଯାଉଥାଏ । ରକ୍ତବସ୍ତ୍ରପରିହିତା ଅନେକ

ତୂର୍ଣମୁତ୍ପତ୍ୟ ଚାକାଶାଦାଦିତ୍ୟପଦମାସ୍ଥିତୌ ।
ଆବାମାଲୋକୟାବସ୍ତଦ୍‌ବନଂ ଶାଦ୍ୱଲସଂସ୍ଥିତମ୍ । ୭ ।
ଉପଲୈରିବ ସଂଛନ୍ନା ଦୃଶ୍ୟତେ ଭୂଃ ଶିଲୋଚ୍ଚୟୈଃ ।
ଆପଗାଭିଶ୍ଚ ସଂବୀତା ସୂତ୍ରୈରିବ ବସୁନ୍ଧରା । ୮ ।
ହିମବାଂଶ୍ଚୈବ ବିନ୍ଧ୍ୟଶ୍ଚ ମେରୁଶ୍ଚ ସୁମହାଗିରିଃ ।
ଭୂତଲେ ସଂପ୍ରକାଶନ୍ତେ ନାଗା ଇବ ଜଲାଶୟେ । ୯ ।
ତୀବ୍ରଃ ସ୍ୱେଦଶ୍ଚ ଖେଦଶ୍ଚ ଭୟଂ ଚାସୀତ୍ତଦାବୟୋଃ ।
ସମାବିଶତ ମୋହଶ୍ଚ ତତୋ ମୂର୍ଚ୍ଛା ଚ ଦାରୁଣା । ୧୦ ।
ନ ଚ ଦିଗ୍‌ଜ୍ଞାୟତେ ଯାମ୍ୟା ନ ଚାଗ୍ନେୟୀ ନ ବାରୁଣୀ ।
ଯୁଗାନ୍ତେ ନିୟତୋ ଲୋକୋ ହତୋ ଦଗ୍‌ଧ ଇବାଗ୍ନିନା । ୧୧ ।
ମନଶ୍ଚ ମେ ହତଂ ଭୂୟଶ୍ଚକ୍ଷୁଃ ପ୍ରାପ୍ୟ ତୁ ସଂଶ୍ରୟମ୍ ।
ଯତ୍ନେନ ମହତା ହ୍ୟସ୍ମିନ୍ମନଃ ସନ୍ଧାୟ ଚକ୍ଷୁଷୀ । ୧୨ ।
ଯତ୍ନେନ ମହତା ଭୂୟୋ ଭାସ୍କରଃ ପ୍ରତିଲୋକିତଃ ।
ତୁଲ୍ୟଃ ପୃଥ୍ୱୀପ୍ରମାଣେନ ଭାସ୍କରଃ ପ୍ରତିଭାତି ନୌ ।୧୩ ।

---

ରମଣୀ ଗାନ କରୁଥିବାର ଆମେ ଦେଖିଲୁଁ । ୬ । ଆମ୍ଭେମାନେ ଶୀଘ୍ର ଉଡ଼ିଯାଇ ଆକାଶରୁ ସୂର୍ଯ୍ୟଙ୍କ ମାର୍ଗରେ ଆସି ପହଞ୍ଚିଲୁଁ । ସେଠାରେ ଆମ୍ଭେମାନେ ଘାସପୂର୍ଣ୍ଣ ବନକୁ ଦେଖିଲୁଁ । ୭ । ସେଠାରୁ ପୃଥିବୀ ପଥର ଗୋଡ଼ମାନଙ୍କ ଦ୍ୱାରା ଆଚ୍ଛାଦିତ ହୋଇଥିବାପରି ଦେଖାଯାଉଥିଲା, ନଦୀମାନଙ୍କଦ୍ୱାରା ପୃଥିବୀ ସୂତାରେ ବନ୍ଧାହେଲା-ପରି ଦେଖାଯାଉଥାଏ । ୮ । ହିମାଳୟ, ବିନ୍ଧ୍ୟ ଏବଂ ମେରୁପର୍ବତମାନ ପୃଥିବୀ ଉପରେ ପୁଷ୍କରିଣୀ ମଧ୍ୟରେ ଥିବା ହସ୍ତୀମାନଙ୍କ ପରି ଦେଖାଯାଉଥାନ୍ତି । ୯ । ସେତେବେଳେ ଆମ ଦୁହିଁଙ୍କ ଦେହରୁ ବହୁତ ଝାଳ ବୋହିଲା, ଆମ୍ଭଙ୍କୁ ବିଷାଦ ଏବଂ ଭୟ ବୋଧହେଲା । ମୋହ ଆମଠାରେ ପ୍ରବେଶ କଲା ଏବଂ ତାପରେ ଭୟଙ୍କର ମୂର୍ଚ୍ଛା ହୋଇଗଲା । ୧୦ । ଦକ୍ଷିଣ, ଅଗ୍ନିକୋଣ ଏବଂ ପଶ୍ଚିମ ଆଦି ଦିଗମାନ ଆମ୍ଭମାନଙ୍କୁ ଜଣାଗଲା ନାହିଁ । ପ୍ରଳୟ ସମୟରେ ସଂସାର ଅଗ୍ନିରେ ଜଳିଗଲେ ଯେପରି ଜଣାଯାଏ, ଆମକୁ ସେହିପରି ବୋଧହେଲା । ୧୧ । ସୂର୍ଯ୍ୟଙ୍କ ସଂଶ୍ରବରେ ଆସିବାଦ୍ୱାରା ମୋର ମନ ଏବଂ ଚକ୍ଷୁ ବିନଷ୍ଟ ହୋଇଗଲା । ଅତି ଯତ୍ନରେ ମୁଁ ମନ ଏବଂ ଚକ୍ଷୁକୁ ସୂର୍ଯ୍ୟଙ୍କଠାରେ ନିବେଶ କଲି । ୧୨ । ବହୁତ ଯତ୍ନରେ ମୁଁ ପୁଣି ସୂର୍ଯ୍ୟଙ୍କୁ ଦେଖିଲି । ସୂର୍ଯ୍ୟ ଆମ ଦୁହିଁଙ୍କୁ ପୃଥିବୀସଦୃଶ ବି

ଜଟାୟୁର୍ମାମନାପୃଚ୍ଛ୍ୟ ନିପପାତ ମହୀଂ ତତଃ ।
ତଂ ଦୃଷ୍ଟ୍ୱା ତୂର୍ଣମାକାଶାଦାତ୍ମାନଂ ମୁକ୍ତବାନହମ୍ । ୧୪ ।
ପକ୍ଷାଭ୍ୟାଂ ଚ ମୟା ଗୁପ୍ତୋ ଜଟାୟୁର୍ନ ପ୍ରଦହ୍ୟତେ ।
ପ୍ରମାଦାତ୍ତତ୍ର ନିର୍ଦଗ୍ଧଃ ପତନ୍ ବାୟୁପଥାଦହମ୍ । ୧୫ ।
ଆଶଙ୍କେ ତଂ ନିପତିତଂ ଜନସ୍ଥାନେ ଜଟାୟୁଷମ୍ ।
ଅହଂ ତୁ ପତିତୋ ବିନ୍ଧ୍ୟେ ଦଗ୍ଧପକ୍ଷୋ ଜଡ଼ୀକୃତଃ । ୧୬ ।
ରାଜ୍ୟାଚ୍ଚ ହୀନୋ ଭ୍ରାତ୍ରା ଚ ପକ୍ଷାଭ୍ୟାଂ ବିକ୍ରମେଣ ଚ ।
ସର୍ବଥା ମର୍ତ୍ତୁମେବେଚ୍ଛନ୍ ପତିଷ୍ୟେ ଶିଖରାଦ୍‌ଗିରେଃ । ୧୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସୂର୍ଯାନୁଗମନାଖ୍ୟାନମ୍
ନାମ ଏକଷଷ୍ଟିତମଃ ସର୍ଗଃ ।

---

ଦେଖାଗଲେ । ୧୩ । ଜଟାୟୁ ମୋତେ ନ ପଚାରି ପୃଥିବୀ ଉପରକୁ ଚାଲିଆସିଲା । ତାକୁ ଦେଖି ମୁଁ ମଧ୍ୟ ଶୀଘ୍ର ଆକାଶରୁ ନିଜକୁ ମୁକ୍ତ କରିଦେଲି ( ଅର୍ଥାତ୍ ମୁଁ ମଧ୍ୟ ଆକାଶରୁ ତଳକୁ ଖସି ଆସିଲି ) । ୧୪ । ମୁଁ ମୋର ପକ୍ଷଦୁଇଟିଦ୍ୱାରା ଘୋଡ଼ାଇ ଦେବାରୁ ଜଟାୟୁ ପୋଡ଼ିଗଲା ନାହିଁ । ମୁଁ ସେଠାରେ ପୋଡ଼ିଯାଇ ବାୟୁପଥରୁ ଖସି ପଡ଼ିବାବେଳେ ମୋର ମନେହେଲା, ଜଟାୟୁ ଯାଇ ଜନସ୍ଥାନରେ ପଡ଼ିଲା । ମୁଁ ବିନ୍ଧ୍ୟପର୍ବତ ଉପରେ ଆସି ପଡ଼ିଲି । ମୋର ପକ୍ଷ ପୋଡ଼ିଗଲା ଏବଂ ମୁଁ ଜଡ଼ ହୋଇଗଲି । ୧୫-୧୬ । ରାଜ୍ୟ, ଭାଇ, ପକ୍ଷ ଏବଂ ବିକ୍ରମରୁ ବଞ୍ଚିତ ହୋଇ ମୁଁ ଏହି ପର୍ବତଶିଖରରୁ ପଡ଼ି ମରିଯିବାକୁ ଇଚ୍ଛା କରୁଅଛି'' ।୧୭।

---

# ଦ୍ୱିଷଷ୍ଟିତମଃ ସର୍ଗଃ

## ନିଶାକରଭବିଷ୍ୟାଖ୍ୟାନମ୍

ଏବମୁକ୍ତ୍ୱା ମୁନିଶ୍ରେଷ୍ଠମରୁଦଂ ଭୃଶଦୁଃଖିତଃ ।
ଅଥ ଧ୍ୟାତ୍ୱା ମୁହୂର୍ତ୍ତଂ ଚ ଭଗବାନିଦମବ୍ରବୀତ୍ । ୧ ।
ପକ୍ଷୌ ଚ ତେ ପ୍ରପକ୍ଷୌ ଚ ପୁନରନ୍ୟୌ ଭବିଷ୍ୟତଃ ।
ଚକ୍ଷୁଷୀ ଚୈବ ପ୍ରାଣାଶ୍ଚ ବିକ୍ରମଶ୍ଚ ବଲଂ ଚ ତେ । ୨ ।
ପୁରାଣେ ସୁମହତ୍କାର୍ଯ୍ୟଂ ଭବିଷ୍ୟଂ ହି ମୟା ଶ୍ରୁତମ୍ ।
ଦୃଷ୍ଟଂ ମେ ତପସା ଚୈବ ଶ୍ରୁତ୍ୱା ଚ ବିଦିତଂ ମମ । ୩ ।
ରାଜା ଦଶରଥୋ ନାମ କଶ୍ଚିଦିକ୍ଷ୍ୱାକୁବର୍ଦ୍ଧନଃ ।
ତସ୍ୟ ପୁତ୍ରୋ ମହାତେଜା ରାମୋ ନାମ ଭବିଷ୍ୟତି ।୪।
ଅରଣ୍ୟଂ ଚ ସହ ଭ୍ରାତ୍ରା ଲକ୍ଷ୍ମଣେନ ଗମିଷ୍ୟତି ।
ତସ୍ମିନ୍ନର୍ଥେ ନିଯୁକ୍ତଃ ସନ୍ ପିତ୍ରା ସତ୍ୟପରାକ୍ରମଃ । ୫ ।
ନୈର୍ଋତୋ ରାବଣୋ ନାମ ତସ୍ୟ ଭାର୍ଯ୍ୟାଂ ହରିଷ୍ୟତି ।
ରାକ୍ଷସେନ୍ଦ୍ରୋ ଜନସ୍ଥାନେ ଅବଧ୍ୟଃ ସୁରଦାନବୈଃ । ୬ ।

---

## ୬୨ତମ ସର୍ଗ

### (ନିଶାକର ଋଷିଙ୍କ ଭବିଷ୍ୟତ କଥନ)

"ମୁଁ ସେ ମୁନିଶ୍ରେଷ୍ଠଙ୍କୁ ଏହିପରି କହି ଅତିଶୟ ଦୁଃଖିତ ହୋଇ କାନ୍ଦିପକାଇଲି । ମୁହୂର୍ତ୍ତକାଳ ଧ୍ୟାନକରି ଭଗବାନ୍ ଋଷି ଏହି କଥା କହିଲେ ।୧। "ତୁମ୍ଭର ବଡ଼ ଏବଂ ଶ୍ରେଷ୍ଠ ପକ୍ଷମାନ ପୁଣି ଜାତହେବ ଏବଂ ତୁମ୍ଭର ଚକ୍ଷୁ, ପ୍ରାଣ, ବଳ ଏବଂ ବିକ୍ରମ ପୁଣି ଲେଉଟି ଆସିବ । ୨ । ପୁରାଣରେ ମୁଁ ଶୁଣିଛି ଯେ ଭବିଷ୍ୟତରେ ଏକ ମହତ୍ କାର୍ଯ୍ୟ ଘଟିବ । ମୁଁ ତପସ୍ୟାଦ୍ୱାରା ତାହା ପ୍ରତ୍ୟକ୍ଷ କରିଅଛି ଏବଂ ପୁରାଣରୁ ଶୁଣି ଜାଣିଅଛି । ୩ । ଇକ୍ଷ୍ୱାକୁକୁଳରେ ଦଶରଥ ନାମକ ରାଜା ହେବେ । ରାମ ନାମକ ତାଙ୍କର ଏକ ମହାତେଜସ୍ୱୀ ପୁତ୍ର ହେବେ । ୪ । ସେ ଭାଇ ଲକ୍ଷ୍ମଣଙ୍କ ସହିତ ବନକୁ ଯିବେ; କାରଣ ସେଥିନିମନ୍ତେ ସତ୍ୟପରାକ୍ରମ ରାମଚନ୍ଦ୍ର ତାଙ୍କ ପିତାଙ୍କଠାରୁ ଆଦେଶ ପାଇବେ । ୫ । ଦେବତା ଏବଂ ଦାନବମାନଙ୍କ ଦ୍ୱାରା ଅବଧ୍ୟ ରାକ୍ଷସ ରାବଣ ଜନସ୍ଥାନରୁ ତାଙ୍କର ପତ୍ନୀଙ୍କୁ ହରଣ କରିବ । ୬ । ଯଶସ୍ୱିନୀ ସୀତାଙ୍କୁ ସେ ରାକ୍ଷସ

ସା ଚ କାମୈଃ ପ୍ରଲୋଭ୍ୟନ୍ତୀ ଭକ୍ଷୈର୍ଭୋଜ୍ୟୈର୍ବିଶିଷ୍ଟ ମୈଥିଲୀ ।
ନ ଭୋକ୍ଷ୍ୟତି ମହାଭାଗା ଦୁଃଖମଗ୍ନା ଯଶସ୍ୱିନୀ । ୭ ।
ପରମାନ୍ନଂ ଚ ବୈଦେହ୍ୟା ଜ୍ଞାତ୍ୱା ଦାସ୍ୟତି ବାସବଃ ।
ଯଦନ୍ନମମୃତପ୍ରଖ୍ୟଂ ସୁରାଣାମପି ଦୁର୍ଲଭମ୍ । ୮ ।
ତଦନ୍ନଂ ମୈଥିଲୀ ପ୍ରାପ୍ୟ ବିଜ୍ଞାୟେନ୍ଦ୍ରାଦିଦଂ ତ୍ୱିତି ।
ଅଗ୍ରମୁଦ୍ଧୃତ୍ୟ ରାମାୟ ଭୂତଲେ ନିର୍ବପେଷ୍ୟତି । ୯ ।
ଯଦି ଜୀବତି ମେ ଭର୍ତ୍ତା ଲକ୍ଷ୍ମଣୋ ବାପି ଦେବରଃ ।
ଦେବତ୍ୱଂ ଗଚ୍ଛତୋର୍ବାପି ତୟୋରନ୍ନମିଦଂ ତ୍ୱିତି । ୧୦ ।
ଏଷ୍ୟନ୍ତି ପ୍ରେଷିତାସ୍ତତ୍ର ରାମଦୂତାଃ ପ୍ଲବଙ୍ଗମାଃ ।
ଆଖ୍ୟେୟସ୍ତ୍ୱା ରାମମହିଷୀ ତ୍ୱୟା ତେଭ୍ୟୋ ବିହଙ୍ଗମ । ୧୧ ।
ସର୍ବଥା ତୁ ନ ଗନ୍ତବ୍ୟମୀଦୃଶଃ କ୍ୱ ଗମିଷ୍ୟସି ।
ଦେଶକାଲୌ ପ୍ରତୀକ୍ଷସ୍ୱ ପକ୍ଷୌ ତ୍ୱଂ ପ୍ରତିପତ୍ସ୍ୟସେ । ୧୨ ।
ଉତ୍ସହେୟମହଂ କର୍ତ୍ତୁମଦ୍ୟୈବ ତ୍ୱାଂ ସପକ୍ଷକମ୍ ।
ଇହସ୍ଥସ୍ତ୍ୱଂ ହି ଲୋକାନାଂ ହିତଂ କାର୍ଯ୍ୟଂ କରିଷ୍ୟସି ।୧୩ ।

---

ତାଙ୍କର ଅଭିଳାଷ ପୂରଣଦ୍ୱାରା ଏବଂ ଭକ୍ଷ୍ୟ ଭୋଜ୍ୟ ଆଦିଦ୍ୱାରା ପ୍ରଲୋଭିତ କରିବାକୁ ଚାହିଁବ; ମାତ୍ର ସେ ଦୁଃଖିନୀ ସୀତା କୌଣସିପ୍ରକାର ଭୋଗ ସ୍ୱୀକାର କରିବେ ନାହିଁ ।୭। ଏହା ଜାଣିପାରି ଇନ୍ଦ୍ର ତାଙ୍କ ନିମନ୍ତେ ପାୟସ ପଠାଇବେ । ସେ ଅନ୍ନ ଅମୃତସଦୃଶ ଏବଂ ଦେବତାମାନଙ୍କର ମଧ୍ୟ ଦୁର୍ଲଭ । ୮ । ସେ ଅନ୍ନକୁ ପାଇ ଏବଂ ଇନ୍ଦ୍ରଙ୍କଠାରୁ ଆସିଥିବାର ଜାଣି ସୀତା ତାହା ଗ୍ରହଣ କରିବେ ଏବଂ ସେଥିରୁ ପ୍ରଥମାଂଶ ରାମଚନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଭୂମି ଉପରେ ଥୋଇଦେବେ ।୯। 'ଯଦି ମୋର ପତି ଜୀବିତ ଥାଆନ୍ତି, ଯଦି ଦେବର ଲକ୍ଷ୍ମଣ ଜୀବିତ ଥାଆନ୍ତି, ଅଥବା ଯଦି ସେମାନେ ଦେବତ୍ୱ ଲାଭକରିଥା'ନ୍ତି, ତଥାପି ଏ ଅନ୍ନ ସେମାନଙ୍କୁ ପ୍ରାପ୍ତ ହେଉ' । ୧୦ । ହେ ବିହଙ୍ଗମ ! ରାମଚନ୍ଦ୍ରଙ୍କ ଦ୍ୱାରା ପ୍ରେରିତ ହୋଇ ବାନରଦୂତମାନେ ଆସିବେ । ସେମାନଙ୍କୁ ରାମଚନ୍ଦ୍ରଙ୍କ ମହିଷୀଙ୍କର ସନ୍ଧାନ ତୁମ୍ଭେ ବତାଇଦେବ । ୧୧। ଏଠା ଛାଡ଼ି ତୁମ୍ଭେ କୌଣସିମତେ ଚାଲିଯିବ ନାହିଁ; ଏ ଅବସ୍ଥାରେ ବା କୁଆଡ଼େ ଯିବ ? କିଛି ସମୟ ଏହି ସ୍ଥାନରେ ଅପେକ୍ଷା କର । ତୁମ୍ଭର ପକ୍ଷ ତୁମ୍ଭେ ପୁଣି ଫେରିପାଇବ । ୧୨ । ତୁମ୍ଭଙ୍କୁ ଆଜିହିଁ ସପକ୍ଷ କରିଦେବାକୁ ମୋର ଇଚ୍ଛା ହେଉଅଛି; ମାତ୍ର ଏହିଠାରେ ଥିଲେ ତୁମ୍ଭେ ସଂସାରର ହିତ ସାଧନ କରିପାରିବ (ସେଥିପାଇଁ ମୁଁ ବର୍ତ୍ତମାନ ତୁମ୍ଭଙ୍କୁ

ତ୍ୱୟାପି ଖଲୁ ତତ୍କାର୍ଯଂ ତୟୋସ୍ତୁ ନୃପପୁତ୍ରୟୋଃ ।
ବ୍ରାହ୍ମଣାନାଂ ଗୁରୂଣାଂ ଚ ମୁନୀନାଂ ବାସବସ୍ୟ ଚ । ୧୪ ।
ଇଚ୍ଛାମ୍ୟହମପି ଦ୍ରଷ୍ଟୁଂ ଭ୍ରାତରୌ ରାମଲକ୍ଷ୍ମଣୌ ।
ନେଚ୍ଛେଽଶରଂ ଧାରୟିତୁଂ ପ୍ରାଣାଂସ୍ତ୍ୟକ୍ଷ୍ୟେ କଲେବରମ୍ ।
ମହର୍ଷିସ୍ତୁ ବ୍ରବୀଦେବଂ ଦୃଷ୍ଟତତ୍ତ୍ୱାର୍ଥଦର୍ଶନଃ । ୧୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ନିଶାକରଭବିଷ୍ୟାଖ୍ୟାନମ୍
ନାମ ଦ୍ୱିଷଷ୍ଟିତମଃ ସର୍ଗଃ

---

ପକ୍ଷ ଦେଉନାହିଁ) । ୧୩ । ତୁମେ ସେହି ଦୁଇ ରାଜପୁତ୍ରଙ୍କର ତଥା ବ୍ରାହ୍ମଣ, ଗୁରୁ ମୁନିମାନଙ୍କର ଏବଂ ଇନ୍ଦ୍ରଙ୍କର କାର୍ଯ୍ୟ କରିବା ଉଚିତ । ୧୪ । ମୁଁ ମଧ୍ୟ ରାମ ଲକ୍ଷ୍ମଣ ଦୁଇଭାଇଙ୍କୁ ଦେଖିବାକୁ ଇଚ୍ଛା କରୁଅଛି । ମୁଁ ବେଶି ଦିନ ପ୍ରାଣ ଧାରଣ କରିବାକୁ ଚାହୁଁନାହିଁ । ଶୀଘ୍ର ଶରୀର ତ୍ୟାଗ କରିବି; ସେହି ଯଥାର୍ଥତତ୍ତ୍ୱଜ୍ଞ ମୁନି ଏହିପରି କହିଥିଲେ ” । ୧୫ ।

# ତ୍ରିଷଷ୍ଟିତମଃ ସର୍ଗଃ

## ସଂପାତପକ୍ଷପ୍ରରୋହଃ

ଏତୈରନ୍ୟୈଶ୍ଚ ବହୁଭିର୍ବାକ୍ୟୈର୍ବାକ୍ୟବିଶାରଦଃ ।
ମାଂ ପ୍ରଶସ୍ୟାଭ୍ୟନୁଜ୍ଞାପ୍ୟ ପ୍ରବିଷ୍ଟଃ ସ ସ୍ୱମାଲୟମ୍ । ୧ ।
କନ୍ଦରାତ୍ତୁ ବିସର୍ପିତ୍ୱା ପର୍ବତସ୍ୟ ଶନୈଃ ଶନୈଃ ।
ଅହଂ ବିନ୍ଧ୍ୟଂ ସମାରୁହ୍ୟ ଭବତଃ ପ୍ରତିପାଲୟେ । ୨ ।
ଅଦ୍ୟ ତ୍ୱେତସ୍ୟ କାଲସ୍ୟ ବର୍ଷଂ ସାଗ୍ରଶତଂ ଗତମ୍ ।
ଦେଶକାଲପ୍ରତୀକ୍ଷୋଽସ୍ମି ହୃଦି କୃତ୍ୱା ମୁନେର୍ବଚଃ । ୩ ।
ମହାପ୍ରସ୍ଥାନମାସାଦ୍ୟ ସ୍ୱର୍ଗତେ ତୁ ନିଶାକରେ ।
ମାଂ ନିର୍ଦହତି ସଂତାପୋ ବିତର୍କୈର୍ବହୁଭିର୍ବୃତମ୍ । ୪ ।
ଉଦ୍ଦିତାଂ ମରଣେ ବୁଦ୍ଧିଂ ମୁନିବାକ୍ୟୈର୍ନିବର୍ତୟେ ।
ବୁଦ୍ଧିର୍ଯା ତେନ ମେ ଦତ୍ତା ପ୍ରାଣାନାଂ ରକ୍ଷଣେ ମମ । ୫ ।
ସା ମେଽପନୟତେ ଦୁଃଖଂ ଦୀପ୍ତେବାଗ୍ନିଶିଖା ତମଃ ।
ବୁଧ୍ୟତା ଚ ମୟା ବୀର୍ଯଂ ରାବଣସ୍ୟ ଦୁରାତ୍ମନଃ । ୬।

---

## ୬୩ତମ ସର୍ଗ

### (ସମ୍ପାତିଙ୍କର ପକ୍ଷ ପଲ୍ଲବିବା)

ସେ ବାକ୍ୟବିଶାରଦ ମୁନି ଏହି କଥା ଏବଂ ଅନ୍ୟାନ୍ୟ ଅନେକ କଥାରେ ମୋତେ ବୁଝାଇ ଏବଂ ଯିବା ନିମନ୍ତେ ଅନୁମତି ଦେଇ ନିଜ ଆଶ୍ରମ ମଧ୍ୟରେ ପ୍ରବେଶ କଲେ ।୧। ସେହି କନ୍ଦରମଧ୍ୟରୁ ଧୀରେ ଧୀରେ ଚାଲି ବିନ୍ଧ୍ୟପର୍ବତ ଉପରକୁ ଚଢ଼ି ମୁଁ ତୁମ୍ଭମାନଙ୍କର ପ୍ରତୀକ୍ଷା କରିବାକୁ ଲାଗିଲି । ୨ । ମୁନିଙ୍କ କଥାକୁ ମନମଧ୍ୟରେ ପୋଷଣ କରି ଆଜକୁ ଶହେବର୍ଷରୁ ଅଧିକ କାଳ ମୁଁ ଏହି ସ୍ଥାନରେ ଏହି ସମୟକୁ ପ୍ରତୀକ୍ଷା କରି ରହିଅଛି । ୩ । ନିଶାକର ମୁନି ସ୍ୱର୍ଗ ଉଦ୍ଦେଶ୍ୟରେ ମହାପ୍ରସ୍ଥାନ କରିବାପରେ ନାନା ପ୍ରକାର ତର୍କବିତର୍କ, ଯୁକ୍ତି ଏବଂ ସନ୍ତାପ ମୋର ମନକୁ ଦଗ୍ଧ କରୁଅଛି । ୪ । ମରିବା ନିମନ୍ତେ ମୋ'ମନରେ ଯେ ଇଚ୍ଛା ଜାତ ହୋଇଥିଲା, ତାହାକୁ ମୁଁ ମୁନିଙ୍କ କଥାରେ ନିବର୍ତ୍ତାଇଲି । ପ୍ରାଣ ରକ୍ଷାକରିବା ନିମନ୍ତେ ମୁନି ମୋତେ ଯେ ପରାମର୍ଶ ଦେଇଥିଲେ, ମୋର ସମସ୍ତ ଦୁଃଖ ସେଥିରେ ଅଗ୍ନିଶିଖା ଦ୍ୱାରା ଅନ୍ଧକାରସଦୃଶ ଦୂର ହୋଇଅଛି । ରାବଣର ପରାକ୍ରମ ମୁଁ ବୁଝିଥିଲେ ମଧ୍ୟ ମୋର ପୁତ୍ର କାହିଁକି ସୀତାଙ୍କୁ ରକ୍ଷା ନ କଲା ବୋଲି ମୁଁ ତାହାକୁ ଭର୍ତ୍ସନା କରିଥିଲି । ସୀତାଙ୍କ ବିଳାପ

ପୁତ୍ରଃ ସଂତର୍ଜିତୋ ବାଗ୍ଭିର୍ନ ଭ୍ରାତା ମୈଥିଲୀ କଥମ୍ ।
ତସ୍ୟା ବଲପିତଂ ଶ୍ରୁତ୍ୱା ତୌ ଚ ସୀତାବିୟୋଜିତୌ । ୭ ।
ନ ମେ ଦଶରଥସ୍ନେହାତ୍ ପୁତ୍ରେଣୋତ୍ପାଦିତଂ ପ୍ରିୟମ୍ ।
ତସ୍ୟ ତ୍ୱେବଂ ବ୍ରୁବାଣସ୍ୟ ସଂହତୈର୍ବାନରୈଃ ସହ । ୮ ।
ଉତ୍ପେତତୁସ୍ତଦା ପକ୍ଷୌ ସମକ୍ଷଂ ବନଚାରିଣାମ୍ ।
ସ ଦୃଷ୍ଟ୍ୱା ସ୍ୱାଂ ତନୁଂ ପକ୍ଷୈରୁଦ୍ଗତୈରରୁଣଚ୍ଛଦୈଃ । ୯ ।
ପ୍ରହର୍ଷମତୁଲଂ ଲେଭେ ବାନରାଂଶ୍ଚେଦମବ୍ରବୀତ୍ ।
ନିଶାକରସ୍ୟ ରାଜର୍ଷେଃ ପ୍ରସାଦାଦମିତୌଜସଃ । ୧୦ ।
ଆଦିତ୍ୟରଶ୍ମିନିର୍ଦଗ୍ଧୌ ପକ୍ଷୌ ପୁନରୁପସ୍ଥିତୌ ।
ଯୌବନେ ବର୍ତ୍ତମାନସ୍ୟ ମମାସୀଦ୍ ଯଃ ପରାକ୍ରମଃ । ୧୧ ।
ତମେବାଦ୍ୟାବଗଚ୍ଛାମି ବଲଂ ପୌରୁଷମେବ ଚ ।
ସର୍ବଥା କ୍ରିୟତାଂ ଯତ୍ନଃ ସୀତାମଧିଗମିଷ୍ୟଥ । ୧୨ ।
ପକ୍ଷଲାଭୋ ମମାୟଂ ବଃ ସିଦ୍ଧିପ୍ରତ୍ୟୟକାରକଃ ।
ଇତ୍ୟୁକ୍ତ୍ୱା ତାନ୍ ହରୀନ୍ ସର୍ବାନ୍ ସଂପାତିଃ ପତଗୋତ୍ତମଃ ।୧୩

---

ଶୁଣି ଏବଂ ସୀତାବିରହିତ ରାମ ଲକ୍ଷ୍ମଣଙ୍କ ବିଷୟ ସ୍ମରଣକରି ମୋର ପୁତ୍ର ଦଶରଥଙ୍କ ପ୍ରତି ଆମ୍ଭର ସ୍ନେହର ଅନୁରୂପ ପ୍ରିୟକାର୍ଯ୍ୟ କରି ନାହିଁ ।" ବାନରମାନଙ୍କ ସହିତ ଏହିପରି କଥା କହୁ କହୁ ସେ ଗୃଧ୍ରର ବାନରମାନଙ୍କ ସମକ୍ଷରେ ସେହି ମୁହୂର୍ତ୍ତରେ ଦୁଇଟି ପକ୍ଷ ଉଠିଆସିଲା । ଉତ୍ପନ୍ନ ରକ୍ତବର୍ଣ୍ଣର ପକ୍ଷଯୁକ୍ତ ନିଜର ଶରୀରକୁ ଦେଖି ସେ ଗୃଧ୍ର ଅସୀମ ଆନନ୍ଦ ଲାଭକଲା ଏବଂ ବାନରମାନଙ୍କୁ ଏହି କଥା କହିଲା । "ଅତୁଳନୀୟ ତେଜସମ୍ପନ୍ନ ନିଶାକର ରାଜର୍ଷିଙ୍କର ଅନୁଗ୍ରହରୁ ସୂର୍ଯ୍ୟକିରଣରେ ଜଳିଯାଇଥିବା ମୋର ପକ୍ଷଦୁଇଟି ପୁଣି କଅଁଳ ଉଠିଲାଣି । ଯୌବନ ଅବସ୍ଥାରେ ମୋର ଯେ ପରାକ୍ରମ ଥିଲା, ବର୍ତ୍ତମାନ ସେ ବଳ ଏବଂ ପରାକ୍ରମ ମୁଁ ଆଜ ପୁଣି ଅନୁଭବ କରୁଅଛି । ତୁମ୍ଭେମାନେ ସକଳପ୍ରକାର ଯତ୍ନକର, ସୀତାଙ୍କୁ ନିଶ୍ଚୟ ପାଇବ । ୫-୧୨ । ମୋର ଏ ପକ୍ଷପ୍ରାପ୍ତି ତୁମ୍ଭମାନଙ୍କ କାର୍ଯ୍ୟସିଦ୍ଧିରେ ବିଶ୍ୱାସ ଜାତ କରାଉଅଛି ।" ସେହି ସମସ୍ତ ବାନରଙ୍କୁ ଏହି କଥା କହି ପକ୍ଷିଶ୍ରେଷ୍ଠ ସମ୍ପାତି ନିଜର ଆକାଶଗମନଶକ୍ତିର ପରୀକ୍ଷା କରିବା ନିମନ୍ତେ ସେହି ପର୍ବତଶିଖର

ଉତ୍ପପାତ ଗିରେଃ ଶୃଙ୍ଗାଦ୍‌ଜିଜ୍ଞାସୁଃ ଖଟମୋ ଗତମ୍ ।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ପ୍ରତିସଂହୃଷ୍ଟମାନସାଃ ।
ବଭୂବୁର୍ହରିଶାର୍ଦ୍ଦୂଳା ବିକ୍ରମାଭ୍ୟୁଦୟୋନ୍ମୁଖାଃ । ୧୪ ।
ଅଥ ପବନସମାନବିକ୍ରମାଃ
ପ୍ଲବଗବରାଃ ପ୍ରତିଲବ୍‌ଧପୌରୁଷାଃ ।
ଅଭିଜିଦଭିମୁଖାଂ ଦିଶଂ ଯୟୁ-
ର୍ଜନକସୁତାପରିମାର୍ଗଣୋନ୍ମୁଖାଃ । ୧୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସଂପାତିପକ୍ଷପ୍ରରୋହୋ
ନାମ ଦ୍ୱିଷଷ୍ଟିତମଃ ସର୍ଗଃ

---

ଉପରୁ ଆକାଶକୁ ଉଡ଼ିଲା । ତାହାର ବଚନ ଶୁଣି ବାନରମାନେ ବିଶେଷ ଆନନ୍ଦିତ ହେଲେ ଏବଂ ପରାକ୍ରମ ଦେଖାଇବା ପାଇଁ ଯତ୍ନକରିବାକୁ ଉଦ୍ୟତ ହେଲେ । ୧୪ । ଅନନ୍ତର ପବନସମାନ ପରାକ୍ରମୀ ବାନରଶ୍ରେଷ୍ଠମାନେ ନିଜର ବିକ୍ରମ ପୁନଃପ୍ରାପ୍ତହୋଇ ଏବଂ ଜନକଦୁହିତାଙ୍କୁ ଅନ୍ୱେଷଣ କରିବାକୁ ଉଦ୍ୟତ ହୋଇ ବିଷ୍ଣୁଙ୍କର ଅଭିମୁଖ ଦିଗକୁ (ଦକ୍ଷିଣ) ଗମନ କଲେ । ୧୫ ।

# ଚତୁଃଷଷ୍ଟିତମଃ ସର୍ଗଃ

## ସମୁଦ୍ର ଲଙ୍ଘନ ମନ୍ତ୍ରଣମ୍

ଆଖ୍ୟାତା ଗୃଧ୍ରରାଜେନ ସମୁତ୍ପ୍ଲୁତ୍ୟ ପ୍ଲବଙ୍ଗମାଃ ।
ସଂଗତାଃ ପ୍ରୀତିସଂଯୁକ୍ତା ବିନେଦୁଃ ସିଂହବିକ୍ରମାଃ । ୧ ।
ସଂପାତେର୍ବଚନଂ ଶ୍ରୁତ୍ୱା ହରୟୋ ରାବଣକ୍ଷୟମ୍ ।
ହୃଷ୍ଟାଃ ସାଗରମାଜଗ୍ମୁଃ ସୀତାଦର୍ଶନକାଙ୍କ୍ଷିଣଃ । ୨ ।
ଅଭିଗମ୍ୟ ତୁ ତଂ ଦେଶଂ ଦଦୃଶୁର୍ଭୀମବିକ୍ରମାଃ ।
କୃତ୍ସ୍ନଂ ଲୋକସ୍ୟ ମହତଃ ପ୍ରତିବିମ୍ବମିବ ସ୍ଥିତମ୍ । ୩ ।
ଦକ୍ଷିଣସ୍ୟ ସମୁଦ୍ରସ୍ୟ ସମାସାଦ୍ୟୋତ୍ତରାଂ ଦିଶମ୍ ।
ସଂନିବେଶଂ ତତଶ୍ଚକ୍ରୁର୍ହରିବୀରା ମହାବଲାଃ । ୪ ।
ପ୍ରସୁପ୍ତମିବ ଚାନ୍ୟତ୍ର କ୍ରୀଡ଼ନ୍ତମିବ ଚାନ୍ୟତଃ ।
କ୍ୱଚିତ୍ପର୍ବତମାତ୍ରୈଶ୍ଚ ଜଲରାଶିଭିରାବୃତମ୍ । ୫ ।
ସଙ୍କୁଲଂ ଦାନବେନ୍ଦ୍ରୈଶ୍ଚ ପାତାଲତଲବାସିଭିଃ ।
ରୋମହର୍ଷକରଂ ଦୃଷ୍ଟ୍ୱା ବିଷେଦୁଃ କପିକୁଞ୍ଜରାଃ । ୬ ।

---

## ୬୪ତମ ସର୍ଗ

### (ସମୁଦ୍ରଲଙ୍ଘନମନ୍ତ୍ରଣା)

ଗୃଧ୍ରରାଜ ଏ ସମସ୍ତ ବୃତ୍ତାନ୍ତ କହିବା ପରେ ସିଂହସମାନ ପରାକ୍ରମୀ ବାନରମାନେ ସମସ୍ତେ ଏକତ୍ର ହୋଇ ଆନନ୍ଦରେ ଡିଆଁ ଡେଇଁ କରି ନାଦ କରିବାକୁ ଲାଗିଲେ । ୧ । ରାବଣର ବିନାଶ ବିଷୟରେ ସମ୍ପାତିଙ୍କର ବଚନ ଶୁଣି ବାନରମାନେ ଆନନ୍ଦିତ ହୋଇ ସୀତାଙ୍କୁ ଦର୍ଶନ କରିବାର ଇଚ୍ଛା ପୋଷଣକରି ସମୁଦ୍ରତୀରକୁ ଆସିଲେ । ୨ । ସେହି ଭୀମପରାକ୍ରମୀ ବାନରମାନେ ସେଠାକୁ ଆସି ସମସ୍ତ ସଂସାରର ପ୍ରତିବିମ୍ବସ୍ୱରୂପ ସେ ସ୍ଥାନକୁ ଦେଖିଲେ । ୩ । ଦକ୍ଷିଣ ସମୁଦ୍ରର ଉତ୍ତରତୀରରେ ଆସି ତହୁଁ ସେ ମହାବଳୀ ବାନରମାନେ ଛାଉଣି ପକାଇଲେ । ୪ । କେଉଁଠାରେ ଶୋଇଥିଲାପରି, କେଉଁଠାରେ ବା କ୍ରୀଡ଼ାକରୁଥିବାପରି, କେଉଁଠାରେ ବା ପର୍ବତସଦୃଶ ଅବସ୍ଥିତ ଜଳରାଶିଯୁକ୍ତ, ପାତାଳବାସୀ ଦାନବସଙ୍କୁଳ ସେହି ଭୀଷଣ ରୋମହର୍ଷଣକାରୀ ସମୁଦ୍ରକୁ ଦେଖି ସମସ୍ତ ବାନରସେନାପତି ଅତିଶୟ

ଆକାଶମିବ ଦୁଷ୍ପାରଂ ସାଗରଂ ପ୍ରେକ୍ଷ୍ୟ ବାନରାଃ ।
ବିଷେଦୁଃ ସହିତାଃ ସର୍ବେ କଥଂ କାର୍ଯମିତି ବ୍ରୁବନ୍ । ୭ ।
ବିଷଣ୍ଣାଂ ବାହିନୀଂ ଦୃଷ୍ଟ୍ୱା ସାଗରସ୍ୟ ନିରୀକ୍ଷଣାତ୍ ।
ଆଶ୍ୱାସୟାମାସ ହରୀନ୍ ଭୟାର୍ତ୍ତାନ୍ ହରିସତ୍ତମଃ । ୮ ।
ନ ବିଷାଦେ ମନଃ କାର୍ଯଂ ବିଷାଦୋ ଦୋଷବତ୍ତରଃ ।
ବିଷାଦୋ ହନ୍ତି ପୁରୁଷଂ ବାଲଂ କ୍ରୁଦ୍ଧ ଇବୋରଗଃ । ୯ ।
ଯୋ ବିଷାଦଂ ପ୍ରସହତେ ବିକ୍ରମେ ସମୁପସ୍ଥିତେ ।
ତେଜସା ତସ୍ୟ ହୀନସ୍ୟ ପୁରୁଷାର୍ଥୋ ନ ସିଧ୍ୟତି । ୧୦ ।
ତସ୍ୟାଂ ରାତ୍ର୍ୟାଂ ବ୍ୟତୀତାୟାମଙ୍ଗଦୋ ବାନରୈଃ ସହ ।
ହରିବୃଦ୍ଧୈଃ ସମାଗମ୍ୟ ପୁନର୍ମନ୍ତ୍ରମମନ୍ତ୍ରୟତ୍ । ୧୧ ।
ସା ବାନରାଣାଂ ଧ୍ୱଜିନୀ ପରିବାର୍ଯାଙ୍ଗଦଂ ବଭୌ ।
ବାସବଂ ପରିବାର୍ଯେବ ମରୁତାଂ ବାହିନୀ ସ୍ଥିତା । ୧୨ ।
କୋଽନ୍ୟସ୍ତାଂ ବାନରୀଂ ସେନାଂ ଶକ୍ତଃ ସ୍ତମ୍ଭୟିତୁଂ ଭବେତ୍ ।
ଅନ୍ୟତ୍ର ବାଲିତନୟାଦନ୍ୟତ୍ର ଚ ହନୂମତଃ । ୧୩ ।

---

ବିଷଣ୍ଣ ହୋଇପଡ଼ିଲେ । ୫-୬ । ଆକାଶସଦୃଶ ଦୁରତିକ୍ରମଣୀୟ ସମୁଦ୍ରକୁ ଦେଖି ସବୁ ବାନର ବିଶେଷ ଦୁଃଖିତ ହେଲେ ଏବଂ ଅତଃପର କଣ କରିବାକୁ ହେବ ସେହି କଥା କଥାବାର୍ତ୍ତା ହେବାକୁ ଲାଗିଲେ । ୭ । ସମୁଦ୍ରକୁ ଦେଖି ବିଷଣ୍ଣ ହୋଇଥିବା ନିଜର ସେନାକୁ ଦେଖି ବାନରଶ୍ରେଷ୍ଠ (ଅଙ୍ଗଦ) ଭୟଭୀତ ବାନରମାନଙ୍କୁ ଆଶ୍ୱାସନା ଦେଲେ । ୮ । "ତୁମ୍ଭମାନଙ୍କର ବିଷାଦ କରିବା ଉଚିତ ନୁହେ । ବିଷାଦ ବିଶେଷ ଦୋଷାବହ । କ୍ରୁଦ୍ଧ ସର୍ପ ଯେପରି ବାଳକକୁ ମାରିଦିଏ, ସେହିପରି ବିଷାଦ ପୁରୁଷକୁ ମାରିପକାଏ । ୯ । ବିକ୍ରମ ପ୍ରକାଶ କରିବାର ସମୟ ଉପସ୍ଥିତ ହେଲାବେଳେ ଯେଉଁ ବ୍ୟକ୍ତି ବିଷାଦ କରେ ସେହି ତେଜୋହୀନ ପୁରୁଷର ମନୋରଥ କଦାପି ସିଦ୍ଧ ହୁଏ ନାହିଁ" । ୧୦ । ସେହି ରାତି ବିତିଯିବା ପରେ ଅଙ୍ଗଦ ବାନରମାନଙ୍କ ସହିତ ବୃଦ୍ଧବାନରମାନଙ୍କ ନିକଟକୁ ଯାଇ ମନ୍ତ୍ରଣା କରିବାକୁ ଲାଗିଲେ । ୧୧ । ଇନ୍ଦ୍ରଙ୍କ ଚାରିପାଖରେ ଘେରି ବସିଥିଲେ ଦେବସେନା ଯେପରି ଶୋଭାପାଆନ୍ତି, ସେହି ବାନରସେନା ଅଙ୍ଗଦଙ୍କ ଚାରିପାଖରେ ଘେରିବସି ସେହିପରି ଶୋଭାପାଇଲା । ୧୨ । ବାଳିପୁତ୍ର ଅଙ୍ଗଦ ଏବଂ ହନୁମାନଙ୍କ ବ୍ୟତୀତ ଆଉ କିଏ ସେହି ବାନରସେନାକୁ ସଂଯତ କରି ରଖିପାରେ ! । ୧୩ । ଅନନ୍ତର ଶତ୍ରୁହନ୍ତା

ତତସ୍ତାନ୍ ହରିବୃଦ୍ଧାଂଶ୍ଚ ତଚ୍ଚ ସୈନ୍ୟମରିନ୍ଦମଃ ।
ଅନୁମାନ୍ୟାଙ୍ଗଦଃ ଶ୍ରୀମାନ୍ ବାକ୍ୟମର୍ଥବଦବ୍ରବୀତ୍ । ୧୪ ।
କ ଇଦାନୀଂ ମହାତେଜା ଲଙ୍ଘୟିଷ୍ୟତି ସାଗରମ୍ ।
କଃ କରିଷ୍ୟତି ସୁଗ୍ରୀବଂ ସତ୍ୟସନ୍ଧମରିନ୍ଦମମ୍ । ୧୫ ।
କୋ ବୀରୋ ଯୋଜନଶତଂ ଲଙ୍ଘୟେତେ ପ୍ଲବଙ୍ଗମଃ ।
ଇମାଂଶ୍ଚ ଯୂଥପାନ୍ ସର୍ବାନ୍ମୋଚୟେତ୍କୋ ମହାଭୟାତ୍ । ୧୬ ।
କସ୍ୟ ପ୍ରସାଦାଦ୍ଦାରାଂଶ୍ଚ ପୁତ୍ରାଂଶ୍ଚୈବ ଗୃହାଣି ଚ ।
ଇତୋ ନିବୃତ୍ତାଃ ପଶ୍ୟେମ ସିଦ୍ଧାର୍ଥାଃ ସୁଖିନେ ବୟମ୍ । ୧୭ ।
କସ୍ୟ ପ୍ରସାଦାଦ୍ରାମଂ ଚ ଲକ୍ଷ୍ମଣଂ ଚ ମହାବଲମ୍ ।
ଅଭିଗଚ୍ଛେମ ସଂହୃଷ୍ଟାଃ ସୁଗ୍ରୀବଂ ଚ ବନୌକସମ୍ । ୧୮ ।
ଯଦି କଶ୍ଚିତ୍ସମର୍ଥୋ ବଃ ସାଗରପ୍ଲବନେ ହରିଃ ।
ସ ଦଦାତ୍ୱିହ ନଃ ଶୀଘ୍ରଂ ପୁଣ୍ୟାମଭୟଦକ୍ଷିଣାମ୍ । ୧୯ ।
ଅଙ୍ଗଦସ୍ୟ ବଚଃ ଶ୍ରୁତ୍ୱା ନ କଶ୍ଚିତ୍ କିଂଚିଦବ୍ରବୀତ୍ ।
ସ୍ତିମିତେବାଭବତ୍ସର୍ବା ସା ତତ୍ର ହରିବାହିନୀ । ୨୦ ।

---

ଶ୍ରୀମାନ୍ ଅଙ୍ଗଦ ସେହି ବୃଦ୍ଧବାନରମାନଙ୍କୁ ଏବଂ ସେହି ବାନରସେନାକୁ ସମ୍ମାନ କରି ଅର୍ଥଯୁକ୍ତ ବଚନ କହିଲେ ।୧୪। "କେଉଁ ମହାତେଜା ବର୍ତ୍ତମାନ ଏହି ସାଗରକୁ ପାରି-ହେବ ? କିଏ ଶତ୍ରୁହନ୍ତା ସୁଗ୍ରୀବଙ୍କୁ ସତ୍ୟପ୍ରତିଜ୍ଞ କରିପାରିବ ? ।୧୫। କେଉଁ ବୀର ବାନର ଶତଯୋଜନବିସ୍ତୃତ ସମୁଦ୍ରକୁ ଲଙ୍ଘନ କରିବ ? କିଏ ଏହି ବାନର ଦଳପତିମାନଙ୍କୁ ଭୟରୁ ତ୍ରାଣକରି ପାରିବ ? । ୧୬ । କାହା ଅନୁଗ୍ରହରୁ ଆମ୍ଭେମାନେ ପୂର୍ଣ୍ଣମନୋରଥ ଏବଂ ସୁଖୀ ହୋଇ ଏଠାରୁ ଫେରିଯାଇ ପୁଣି ନିଜର, ପତ୍ନୀ, ପୁତ୍ର ଏବଂ ଗୃହ ଦେଖିପାରିବା ? ।୧୭ । କାହା ପ୍ରସାଦରୁ ଆମ୍ଭେମାନେ ମହାବଳୀ ରାମ, ଲକ୍ଷ୍ମଣ ଏବଂ ବନବାସୀ ସୁଗ୍ରୀବଙ୍କ ସହିତ ପୁଣି ଯାଇ ଆନନ୍ଦିତମନରେ ମିଳି ପାରିବା ? । ୧୮ । ଆପଣମାନଙ୍କ ମଧ୍ୟରେ କୌଣସି ବାନର ଯଦି ସମୁଦ୍ର ଲଙ୍ଘନ କରିବାକୁ ସମର୍ଥ ଅଛନ୍ତି,ତେବେ ସେ ଆମ୍ଭମାନଙ୍କୁ ଶୀଘ୍ର ପବିତ୍ର ଅଭୟଦକ୍ଷିଣା ପ୍ରଦାନ କରନ୍ତୁ" । ୧୯ । ଅଙ୍ଗଦଙ୍କ କଥା ଶୁଣି କେହି କିଛି କହିଲେ ନାହିଁ; ସମସ୍ତ ବାନରସେନା ସେଠାରେ ମ୍ଳାନହୋଇ ବସିରହିଲେ । ୨୦ । ବାନରଶ୍ରେଷ୍ଠ ଅଙ୍ଗଦ

ପୁନରେବାଙ୍ଗଦଃ ପ୍ରାହ ତାନ୍ ହରୀନ୍ ହରିସତ୍ତମଃ ।
ସର୍ବେ ବଲବତାଂ ଶ୍ରେଷ୍ଠା ଭବନ୍ତୋ ଦୃଢ଼ବିକ୍ରମାଃ ।
ବ୍ୟପଦେଶ୍ୟକୁଲେ ଜାତାଃ ପୂଜିତାଶ୍ଚାପ୍ୟଭୀକ୍ଷ୍ଣଶଃ । ୨୧ ।
ନ ହି ବୋ ଗମନେ ସଙ୍ଗଃ କଦାଚିତ୍କସ୍ୟଚିଦ୍ଭବେତ୍ ।
ବ୍ରୁବଧ୍ୱଂ ଯସ୍ୟ ଯା ଶକ୍ତିଃ ପ୍ଲବନେ ପ୍ଲବଗର୍ଷଭାଃ ।୨୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ସମୁଦ୍ରଲଙ୍ଘନମନ୍ତ୍ରଣମ୍
ନାମ ଚତୁଃଷଷ୍ଟିତମଃ ସର୍ଗଃ

---

ପୁଣି ସେହି ବାନରମାନଙ୍କୁ କହିଲେ । "ଆପଣମାନେ ସମସ୍ତେ ବଳବାନ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି । ଉତ୍ତମକୁଳରେ ଆପଣମାନେ ଜନ୍ମ ହୋଇଅଛନ୍ତି । ବାରଂବାର ଲାଗି ଆପଣମାନେ ଅନେକ କ୍ଷେତ୍ରରେ ପୂଜା ପାଇଛନ୍ତି । ୨୧ । ଆପଣମାନଙ୍କ ଯିବା ବିଷୟରେ କାହାରି କିଛି ବାଧା ହେବ ନାହିଁ । ଅତଏବ ହେ ବାନରଶ୍ରେଷ୍ଠଗଣ ! ଡେଇଁବା ବିଷୟରେ ଯାହାର ଯାହା ଶକ୍ତି ଅଛି ତାହା ଆପଣମାନେ ପ୍ରକାଶ କରନ୍ତୁ" । ୨୨ ।

# ପଞ୍ଚଷଷ୍ଟିତମଃ ସର୍ଗଃ

## ବଳେୟତ୍ତାବିଷ୍କରଣମ୍

ଅଥାଙ୍ଗଦବଚଃ ଶ୍ରୁତ୍ୱା ତେ ସର୍ବେ ବାନରର୍ଷଭାଃ ।
ସ୍ୱଂ ସ୍ୱଂ ଗତୌ ସମୁତ୍ସାହମୂଚୁସ୍ତତ୍ର ଯଥାକ୍ରମମ୍ । ୧ ।
ଗଜୋ ଗବାକ୍ଷୋ ଗବୟଃ ଶରଭୋ ଗନ୍ଧମାଦନଃ ।
ମୈନ୍ଦଶ୍ଚ ଦ୍ୱିବିଦଶ୍ଚୈବ ଅଙ୍ଗଦୋ ଜାମ୍ବବାଂସ୍ତଥା । ୨ ।
ଆବଭାଷେ ଗଜସ୍ତତ୍ର ପ୍ଳବେୟଂ ଦଶଯୋଜନମ୍ ।
ଗବାକ୍ଷୋ ଯୋଜନାନ୍ୟାହ ଗମିଷ୍ୟାମୀତି ବିଂଶତିମ୍ । ୩ ।
ଶରଭୋ ବାନରସ୍ତତ୍ର ବାନରାଂସ୍ତାନୁବାଚ ହ ।
ତ୍ରିଂଶତଂ ତୁ ଗମିଷ୍ୟାମି ଯୋଜନାନାଂ ପ୍ଳବଙ୍ଗମାଃ ।୪ ।
ଋଷଭୋ ବାନରସ୍ତତ୍ର ବାନରାଂସ୍ତାନୁବାଚ ହ ।
ଚତ୍ୱାରିଂଶଦ୍ ଗମିଷ୍ୟାମି ଯୋଜନାନାଂ ନ ସଂଶୟଃ । ୫ ।
ବାନରାଂସ୍ତୁ ମହାତେଜା ଅବ୍ରବୀଦ୍ ଗନ୍ଧମାଦନଃ ।
ଯୋଜନାନାଂ ଗମିଷ୍ୟାମି ପଞ୍ଚାଶତ୍ତୁ ନ ସଂଶୟଃ । ୬ ।

---

## ୬୫ତମ ସର୍ଗ

### (ବାନରମାନଙ୍କ ବଳବତ୍ତ୍ୱର ପରିଚୟ)

ଅଙ୍ଗଦଙ୍କର ବଚନ ଶୁଣି ସେହି ଶ୍ରେଷ୍ଠ ବାନରମାନେ ଯାହାର ଯାହା ଗତିଶକ୍ତି ଅଛି ତାହା ସବୁ ସେହିଠାରେ ଯଥାକ୍ରମରେ ବତାଇଲେ ।୧। ଗଜ, ଗବାକ୍ଷ, ଗବୟ, ଗନ୍ଧମାଦନ, ଶରଭ, ମୈନ୍ଦ, ଦ୍ୱିବିଦ, ଅଙ୍ଗଦ ଏବଂ ଜାମ୍ବବାନ୍ ସମସ୍ତେ ନିଜନିଜର ଗମନଶକ୍ତି ପ୍ରକାଶ କଲେ । ୨ । ଗଜ କହିଲା, "ମୁଁ ଦଶଯୋଜନ ଡେଇଁ ପାରିବି" । ଗବାକ୍ଷ କହିଲା,"ମୁଁ କୋଡ଼ିଏ ଯୋଜନ ଡେଇଁଯାଇ ପାରିବି" । ୩ । ଶରଭ ନାମକ ବାନର ବାନରମାନଙ୍କୁ କହିଲା, "ହେ ବାନରଗଣ ! ମୁଁ ତିରିଶ ଯୋଜନପର୍ଯ୍ୟନ୍ତ ଯାଇପାରେଁ" । ୪ । ଋଷଭ ବାନର ସେହି ବାନରମାନଙ୍କୁ କହିଲା, "ମୁଁ ଚାଳିଶି ଯୋଜନ ପର୍ଯ୍ୟନ୍ତ ଯାଇପାରିବି ଏଥିରେ କୌଣସି ସନ୍ଦେହ ନାହିଁ" ।୫। ମହାତେଜସ୍ୱୀ ଗନ୍ଧମାଦନ ବାନରମାନଙ୍କୁ କହିଲା,"ମୁଁ ନିଃସନ୍ଦେହରେ ପଞ୍ଚାଶ ଯୋଜନପର୍ଯ୍ୟନ୍ତ ଚାଲିପିବି" ।୬। ମୈନ୍ଦ ସେହି ବାନରମାନଙ୍କୁ

ମୈନ୍ଦସ୍ତୁ ବାନରସ୍ତତ୍ର ବାନରାଂସ୍ତାନୁବାଚ ହ ।
ଯୋଜନାନାଂ ପରଂ ଷଷ୍ଟିମହଂ ପ୍ଲବିତୁମୁତ୍ସହେ ।୭।
ତତସ୍ତତ୍ର ମହାତେଜା ଦ୍ୱିବିଦଃ ପ୍ରତ୍ୟଭାଷତ ।
ଗମିଷ୍ୟାମି ନ ସନ୍ଦେହଃ ସପ୍ତତିଂ ଯୋଜନାନ୍ୟହମ୍ ।୮।
ସୁଷେଣସ୍ତୁ ମହାତେଜାଃ ସତ୍ତ୍ୱବାନ୍ କପିସତ୍ତମଃ ।
ଅଶୀତିଂ ପ୍ରତିଜାନେଽହଂ ଯୋଜନାନାଂ ପରାକ୍ରମେ ।୯।
ତେଷାଂ କଥୟତାଂ ତତ୍ର ସର୍ବାଂସ୍ତାନନୁମାନ୍ୟ ଚ ।
ତତୋ ବୃଦ୍ଧତମସ୍ତେଷାଂ ଜାମ୍ବବାନ୍ ପ୍ରତ୍ୟଭାଷତ ।୧୦।
ପୂର୍ବମସ୍ମାକମପ୍ୟାସୀତ୍କଶ୍ଚିଦ୍ଗତିପରାକ୍ରମଃ ।
ତେ ବୟଂ ବୟସଃ ପାରମନୁପ୍ରାପ୍ତାଃ ସ୍ମ ସାମ୍ପ୍ରତମ୍ ।୧୧।
କିଂ ତୁ ନୈବଂ ଗତେ ଶକ୍ୟମିଦଂ କାର୍ଯ୍ୟମୁପେକ୍ଷିତୁମ୍ ।
ଯଦର୍ଥଂ କପିରାଜଶ୍ଚ ରାମଶ୍ଚ କୃତନିଶ୍ଚୟୌ ।୧୨।
ସାମ୍ପ୍ରତଂ କାଲମସ୍ମାକଂ ଯା ଗତିସ୍ତାଂ ନିବୋଧତ ।
ନବତିଂ ଯୋଜନାନାଂ ତୁ ଗମିଷ୍ୟାମି ନ ସଂଶୟଃ ।୧୩।
ତାଂଶ୍ଚ ସର୍ବାନ୍ ହରିଶ୍ରେଷ୍ଠାନ୍ ଜାମ୍ବବାନିଦମବ୍ରବୀତ୍ ।
ନ ଖଲ୍ୱେତାବଦେବାସୀଦ୍ଗମନେ ମେ ପରାକ୍ରମଃ ।୧୪।

---

କହିଲେ, ଯେ "ଷାଠିଏ ଯୋଜନ ପର୍ଯ୍ୟନ୍ତ ଡେଇଁପିବାର ମୋର ସାହସ ଅଛି" ।୭। ତା'ପରେ ମହାତେଜସ୍ୱୀ ଦ୍ୱିବିଦ କହିଲେ କି "ମୁଁ ସତୁରିଯୋଜନ ନିଃସନ୍ଦେହରେ ଯାଇପାରିବି" ।୮। ବଳବାନ୍ ଏବଂ ତେଜସ୍ୱୀ ସୁଷେଣ କହିଲେ, "ଅଶୀ ଯୋଜନ ପର୍ଯ୍ୟନ୍ତ ଯିବାକୁ ମୁଁ ପ୍ରତିଜ୍ଞା କରି କହୁଛି" ।୯। ଏହି ପ୍ରକାରେ କହୁଥିବା ସବୁ ବାନରଙ୍କୁ ସମ୍ମାନ ଦେଖାଇ ସେମାନଙ୍କ ମଧ୍ୟରେ ସବୁଠାରୁ ବୟୋବୃଦ୍ଧ ଜାମ୍ବବାନ୍ କହିଲେ ।୧୦। "ପୂର୍ବେ ମୋର ମଧ୍ୟ ଯଥେଷ୍ଟ ଗତିଶକ୍ତି ଥିଲା; ମାତ୍ର ମୋର ବର୍ତ୍ତମାନ ସେ ବୟସ ପାର ହୋଇଗଲାଣି ।୧୧। ମାତ୍ର ସୁଗ୍ରୀବ ଏବଂ ରାମଚନ୍ଦ୍ର ଯେଉଁ କାର୍ଯ୍ୟର ନିଶ୍ଚୟ କରିଛନ୍ତି ତାହାକୁ ସେଥିଲାଗି କୌଣସିମତେ ଉପେକ୍ଷା କରାଯାଇ ନ ପାରେ ।୧୨। ବର୍ତ୍ତମାନ ସମୟରେ ମୋର ଯାହା ଗତିଶକ୍ତି ଅଛି, ତାହା ତୁମ୍ଭମାନେ ଶୁଣ । ମୁଁ ନବେ ଯୋଜନ ପର୍ଯ୍ୟନ୍ତ ଯାଇପାରିବି, ଏଥିରେ କୌଣସି ସନ୍ଦେହ ନାହିଁ" ।୧୩। ସେହିସବୁ ଶ୍ରେଷ୍ଠ ବାନରଙ୍କୁ ଜାମ୍ବବାନ୍ କହିଲେ, "ମୋର

ମୟା ବୈରୋଚନେ ଯଜ୍ଞେ ପ୍ରଭବିଷ୍ଣୁଃ ସନାତନଃ ।
ପ୍ରଦକ୍ଷିଣୀକୃତଃ ପୂର୍ବଂ କ୍ରମମାଣସ୍ତ୍ରିବିକ୍ରମଃ । ୧୫ ।
ସ ଇଦାନୀମହଂ ବୃଦ୍ଧଃ ପ୍ଲବନେ ମନ୍ଦବିକ୍ରମଃ ।
ଯୌବନେ ଚ ତଦାସୀନ୍ମେ ବଲମପ୍ରତିମଂ ପରମ୍ । ୧୬ ।
ସମ୍ପ୍ରତ୍ୟେତାବଦେବାଦ୍ୟ ଶକ୍ୟଂ ମେ ଗମନେ ସ୍ୱତଃ ।
ନୈତାବତା ଚ ସଂସିଦ୍ଧିଃ କାର୍ଯସ୍ୟାସ୍ୟ ଭବିଷ୍ୟତି । ୧୭ ।
ଅଥୋତ୍ତରମୁଦାରାର୍ଥମବ୍ରବୀଦଙ୍ଗଦସ୍ତଦା ।
ଅନୁମାନ୍ୟ ତଦା ପ୍ରାଜ୍ଞୋ ଜାମ୍ବବନ୍ତଂ ମହାକପିମ୍ । ୧୮ ।
ଅହମେତଦ୍‌ଗମିଷ୍ୟାମି ଯୋଜନାନାଂ ଶତଂ ମହତ୍ ।
ନିବର୍ତ୍ତନେ ତୁ ମେ ଶକ୍ତିଃ ସ୍ୟାନ୍ନବେତି ନ ନିଶ୍ଚିତମ୍ । ୧୯ ।
ତମୁବାଚ ହରିଶ୍ରେଷ୍ଠଂ ଜାମ୍ବବାନ୍ ବାକ୍ୟକୋବିଦଃ ।
ଜ୍ଞାୟତେ ଗମନେ ଶକ୍ତିସ୍ତବ ହର୍ୟୃକ୍ଷସତ୍ତମଃ । ୨୦ ।
କାମଂ ଶତସହସ୍ରଂ ବା ନ ହ୍ୟେଷ ବିଧିରୁଚ୍ୟତେ ।
ଯୋଜନାନାଂ ଭବାନ୍ ଶକ୍ତୋ ଗନ୍ତୁଂ ପ୍ରତିନିବର୍ତ୍ତିତୁମ୍ । ୨୧ ।
ନ ହି ପ୍ରେଷୟିତା ତାତ ସ୍ୱାମୀ ପ୍ରେଷ୍ୟଃ କଥଂଚନ ।
ଭବତାୟଂ ଜନଃ ସର୍ବଃ ପ୍ରେଷ୍ୟଃ ପ୍ଲବଗସତ୍ତମ । ୨୨ ।

---

ଗମନର ବଳ ଏତିକିମାତ୍ର ନ ଥିଲା । ୧୪ । ବଳିଙ୍କ ଯଜ୍ଞସମୟରେ ବର୍ଦ୍ଧନଶୀଳ ସନାତନ ବାମନ ପଦବିକ୍ଷେପଦ୍ୱାରା ଭୂମି ମାପିବାବେଳେ ମୁଁ ତାଙ୍କୁ ପ୍ରଦକ୍ଷିଣ କରିଥିଲି ।୧୫। ମୁଁ ବର୍ତ୍ତମାନ ବୁଢ଼ାହୋଇଗଲିଣି, ମୋର ଡେଇଁବା ଶକ୍ତି ଶିଥିଳହୋଇ ପଡ଼ିଲାଣି । ଯୁବାବସ୍ଥାରେ ମୋର ବଳ ଅଦ୍ଭୁତ ଥିଲା ।୧୬। ଏବେବେଳେ ମୁଁ ଏତିକି-ମାତ୍ର ଯାଇପାରିବି; ମାତ୍ର ଏତିକରେ ଏ କାର୍ଯ୍ୟର ସିଦ୍ଧି ହୋଇ ପାରିବ ନାହିଁ" ।୧୭। ଏହାପରେ ବୁଦ୍ଧିମାନ୍ ଅଙ୍ଗଦ ମହାକପି ଜାମ୍ବବାନଙ୍କୁ ସମ୍ମାନ କରି ଅର୍ଥଯୁକ୍ତ ବଚନ କହିଲେ ।୧୮। "ମୁଁ ଏହି ବିଶାଳ ଶହେ ଯୋଜନ ଡେଇଁ ଚାଲିଯିବି; ମାତ୍ର ଫେରିବାକୁ ମୋର ଶକ୍ତି ହେବ କି ନାହିଁ ସେ କଥା ମୁଁ ନିଶ୍ଚିତ କରି କହି-ପାରୁ ନାହିଁ" ।୧୯। ବାନରଶ୍ରେଷ୍ଠ ଅଙ୍ଗଦଙ୍କୁ ବାକ୍ୟପଟୁ ଜାମ୍ବବାନ୍ କହିଲେ, "ହେ ବାନର ଏବଂ ଋକ୍ଷଶ୍ରେଷ୍ଠ ! ତୁମ୍ଭର ଯିବାର ଶକ୍ତି ଅଛି, ଏକଥା ଆମ୍ଭେମାନେ ଜାଣୁଛୁଁ । ୨୦ । ଅବଶ୍ୟ ଶହେ ବା ହଜାରେ ଯୋଜନ ପଥ ଯିବାର ଏବଂ ଫେରି ଆସିବାର ତୁମ୍ଭର ଶକ୍ତି ଥାଇପାରେ; ମାତ୍ର ଏହା ଉଚିତ ବିଧାନ ନୁହେଁ । ୨୧ । ବତ୍ସ ! ପ୍ରେରଣକାରୀ ପ୍ରଭୁ ସ୍ୱୟଂ କଦାପି ପ୍ରେଷ୍ୟ ହୁଏ ନାହିଁ । ହେ ବାନରଶ୍ରେଷ୍ଠ !

ଭବାନ୍ କଲତ୍ରମସ୍ମାକଂ ସ୍ୱାମିଭାବେ ବ୍ୟବସ୍ଥିତଃ ।
ସ୍ୱାମୀ କଲତ୍ରଂ ସୈନ୍ୟସ୍ୟ ଗତିରେଷା ପରଂତପ । ୨୩ ।
ଅପିଚୈତସ୍ୟ କାର୍ଯସ୍ୟ ଭବାନ୍ମୂଲମରିନ୍ଦମ ।
ତସ୍ମାତ୍କଲତ୍ରବଦ୍ରାତ ପ୍ରତିପାଲ୍ୟଃ ସଦା ଭବାନ୍ । ୨୪ ।
ମୂଲମର୍ଥସ୍ୟ ସଂରକ୍ଷ୍ୟମେଷ କାର୍ଯବିଦାଂ ନୟଃ ।
ମୂଲେ ହି ସତି ସିଧ୍ୟନ୍ତି ଗୁଣାଃ ସର୍ବେ ଫଲୋଦୟାଃ । ୨୫ ।
ତଦ୍ଭବାନସ୍ୟ କାର୍ଯସ୍ୟ ସାଧନଂ ସତ୍ୟବିକ୍ରମ ।
ବୁଦ୍ଧିବିକ୍ରମସଂପନ୍ନୋ ହେତୁରତ୍ର ପରନ୍ତପ । ୨୬ ।
ଗୁରୁଶ୍ଚ ଗୁରୁପୁତ୍ରଶ୍ଚ ତ୍ୱଂ ହି ନଃ କପିସତ୍ତମ ।
ଭବନ୍ତମାଶ୍ରିତ୍ୟ ବୟଂ ସମର୍ଥା ହ୍ୟର୍ଥସାଧନେ । ୨୭ ।
ଉକ୍ତବାକ୍ୟଂ ମହାପ୍ରାଜ୍ଞଂ ଜାମ୍ବବନ୍ତଂ ମହାକପିଃ ।
ପ୍ରତ୍ୟୁବାଚୋତ୍ତରଂ ବାକ୍ୟଂ ବାଲିସୂନୁରଥାଙ୍ଗଦଃ । ୨୮ ।
ଯଦି ନାହଂ ଗମିଷ୍ୟାମି ନାନ୍ୟୋ ବାନରପୁଙ୍ଗବଃ ।
ପୁନଃ ଖଲ୍ୱିଦମସ୍ମାଭିଃ କାର୍ଯଂ ପ୍ରାୟୋପବେଶନମ୍ । ୨୯ ।

---

ଏ ସମସ୍ତେ ତୁମ୍ଭର ପ୍ରେଷ୍ୟ ଅଟନ୍ତି । ୨୨ । ସ୍ୱାମିରୂପରେ ଅବସ୍ଥିତ ତୁମ୍ଭେ ଆମ୍ଭମାନଙ୍କର ସ୍ତ୍ରୀ ଅଟ (ଅର୍ଥାତ୍ ସ୍ତ୍ରୀସଦୃଶ ତୁମ୍ଭେ ଆମ୍ଭମାନଙ୍କ ଦ୍ୱାରା ରକ୍ଷଣୀୟ ଅଟ ) । ସ୍ୱାମୀ ସେନାର କଲତ୍ରସଦୃଶ ରକ୍ଷଣୀୟ ଅଟନ୍ତି, ଏହାହିଁ ପରମ୍ପରାଗତ ବିଧାନ ଅଟେ । ୨୩ । ହେ ଶତ୍ରୁହନ୍ତା ! ତୁମ୍ଭେ ହିଁ ଏହି କାର୍ଯ୍ୟର (ସୀତା ଅନ୍ୱେଷଣ କାର୍ଯ୍ୟର) ମୂଳ ଅଟ । ଅତଏବ ହେ ବତ୍ସ ! ତୁମ୍ଭଙ୍କୁ ଆମ୍ଭେମାନେ ନିଜର ପତ୍ନୀ-ସଦୃଶ (ସକଳ ବିପଦରୁ) ରକ୍ଷା କରିବା ଉଚିତ । ୨୪ । କାର୍ଯ୍ୟଜ୍ଞମାନଙ୍କର ନୀତି ହେଉଛି ଯେ କାର୍ଯ୍ୟର ମୂଳକୁ ସର୍ବଥା ରକ୍ଷାକରିବା ଉଚିତ; କାରଣ ମୂଳ ରହିଥିଲେ ସମସ୍ତ କାର୍ଯ୍ୟ ସିଦ୍ଧ ହୁଏ ଏବଂ ସମସ୍ତ ଗୁଣ ସଫଳ ହୁଏ ।୨୫ । ଅତଏବ ହେ ସତ୍ୟବିକ୍ରମ ! ତୁମ୍ଭେ ଏ କାର୍ଯ୍ୟର ସାଧନ ଅର୍ଥାତ୍ ବୁଦ୍ଧିବିକ୍ରମସମ୍ପନ୍ନ ଓ ଏଥିରେ ହେତୁ ଅଟ ।୨୬। ହେ କପିଶ୍ରେଷ୍ଠ ! ତୁମ୍ଭେ ଆମ୍ଭମାନଙ୍କର ଗୁରୁ ଏବଂ ଗୁରୁପୁତ୍ର ଅଟ । ତୁମ୍ଭଙ୍କୁ ହିଁ ଆଶ୍ରୟ କରି ଆମ୍ଭେମାନେ କାର୍ଯ୍ୟସାଧନ କରିପାରିବୁଁ" । ୨୭ । ମହାପ୍ରାଜ୍ଞ ଜାମ୍ବବାନ୍ ଏପରି କହିବା ପରେ ବାଲିପୁତ୍ର ଅଙ୍ଗଦ ଏହିପ୍ରକାରେ ଉତ୍ତରଦେଲେ । ୨୮ । "ଯଦି ମୁଁ ନ ଯାଏଁ ବା ଅନ୍ୟ କୌଣସି ବାନର ନ ଯାଆନ୍ତି ତେବେ ଆମ୍ଭମାନଙ୍କୁ ପୁଣି ପ୍ରାୟୋପବେଶନ କରିବାକୁ ହେବ । ୨୯ । ଧୀମାନ୍

ନ ହ୍ୟକୃତ୍ୱା ହରିପତେଃ ସନ୍ଦେଶଂ ତସ୍ୟ ଧୀମତଃ ।
ତତ୍ରାପି ଗତ୍ୱା ପ୍ରାଣାନାଂ ନ ପଶ୍ୟେ ପରିରକ୍ଷଣମ୍ । ୩୦ ।
ସ ହି ପ୍ରସାଦେ ଚାତ୍ୟର୍ଥଂ କୋପେ ଚ ହରୀଶ୍ୱରଃ ।
ଅତୀତ୍ୟ ତସ୍ୟ ସଂଦେଶଂ ବିନାଶୋ ଗମନେ ଭବେତ୍ ।୩୧ ।
ତତ୍ତଥା ହ୍ୟସ୍ୟ କାର୍ଯସ୍ୟ ନ ଭବତ୍ୟନ୍ୟଥା ଗତିଃ ।
ତଦ୍ଭବାନେବ ଦୃଷ୍ଟାର୍ଥଃ ସଂଚିନ୍ତୟିତୁମର୍ହତି । ୩୨ ।
ସୋଽଙ୍ଗଦେନ ତଦା ବୀରଃ ପ୍ରତ୍ୟୁକ୍ତଃ ପ୍ଲବଗର୍ଷଭଃ ।
ଜାମ୍ବବାନୁତ୍ତମଂ ବାକ୍ୟଂ ପ୍ରୋବାଚେଦଂ ତତୋଽଙ୍ଗଦମ୍ ।୩୩।
ତସ୍ୟ ତେ ବୀର କାର୍ଯସ୍ୟ ନ କିଞ୍ଚିତ୍ ପରିହାସ୍ୟତେ ।
ଏଷ ସଂଚୋଦୟାମ୍ୟେନଂ ଯଃ କାର୍ଯଂ ସାଧୟିଷ୍ୟତି । ୩୪ ।
ତତଃ ପ୍ରତୀତଂ ପ୍ଲବତାଂ ବରିଷ୍ଠ-
ମେକାନ୍ତମାଶ୍ରିତ୍ୟ ସୁଖୋପବିଷ୍ଟମ୍ ।
ସଂଚୋଦୟାମାସ ହରିପ୍ରବୀରୋ
ହରିପ୍ରବୀରଂ ହନୁମନ୍ତମେବ । ୩୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ବଲେୟତ୍ତାବିସ୍ତରଣମ୍
ନାମ ପଞ୍ଚଷଷ୍ଟିତମଃ ସର୍ଗଃ

---

ବାନରରାଜ ସୁଗ୍ରୀବଙ୍କର ଆଦେଶ ପାଳନ ନ କରି ଆମ୍ଭେମାନେ ଯଦି ତାଙ୍କ ନିକଟକୁ ଫେରିଯିବା, ତାହାହେଲେ ଆମ୍ଭମାନଙ୍କର ପ୍ରାଣରକ୍ଷା ହୋଇପାରିବା ଦେଖାଯାଉ ନାହିଁ । ୩୦ । ବାନରରାଜ ସୁଗ୍ରୀବ ଅନୁଗ୍ରହ କରିବାରେ ତଥା କୋପ କରିବାରେ ଅତିଶୟ ସମର୍ଥ ଅଟନ୍ତି । ତାଙ୍କର ଆଜ୍ଞା ପାଳନ ନ କରି ଫେରିଲେ ବିନାଶ ଅବଶ୍ୟମ୍ଭାବୀ । ୩୧ । ଅତଏବ ଏ କାର୍ଯ୍ୟନିମନ୍ତେ ଅନ୍ୟ କୌଣସି ଉପାୟ ନାହିଁ । ତୁମ୍ଭେ ତ ସବୁ ଜାଣିବା ଶୁଣିବା ବ୍ୟକ୍ତି । ଏ ବିଷୟ ଭଲକରି ତୁମ୍ଭର ଚିନ୍ତା କରିବା ଉଚିତ” । ୩୨ । ଅଙ୍ଗଦ ଏହିପ୍ରକାର ଉତ୍ତର ଦେବାପରେ ବାନରଶ୍ରେଷ୍ଠ ଜାମ୍ବବାନ୍ ଅଙ୍ଗଦଙ୍କୁ ପୁଣି ଏହା କହିଲେ । ୩୩। “ହେ ବୀର ! ତୁମ୍ଭର ଏ କାର୍ଯ୍ୟରେ କିଛିମାତ୍ର କ୍ଷତି ହେବ ନାହିଁ । ଯେ ଏ କାର୍ଯ୍ୟକୁ ସାଧନ କରିପାରିବ ମୁଁ ତାହାକୁ ପ୍ରବର୍ତ୍ତଉଅଛି” । ୩୪ । ଅନନ୍ତର ଏକାନ୍ତରେ ସୁଖରେ ବସିଥିବା ବାନରମାନଙ୍କ ମଧ୍ୟରେ ଶ୍ରେଷ୍ଠ, ବିଖ୍ୟାତ ହନୁମାନଙ୍କୁ ବାନରଶ୍ରେଷ୍ଠ ଜାମ୍ବବାନ ପ୍ରବର୍ତ୍ତାଇଲେ । ୩୫ ।

---

# ଷଟ୍‌ଷଷ୍ଟିତମଃ ସର୍ଗଃ

## ହନୂମଦ୍‌ବଲସନ୍ଧୁକ୍ଷଣମ୍‌

ଅନେକଶତସାହସ୍ରୀଂ ବିଷର୍ଣ୍ଣାଂ ହରିବାହିନୀମ୍‌ ।
ଜାମ୍ବବାନ୍‌ ସମୁଦୀକ୍ଷୈବଂ ହନୂମନ୍ତମଥାବ୍ରବୀତ୍‌ । ୧ ।
ବୀର ବାନରଲୋକସ୍ୟ ସର୍ବଶାସ୍ତ୍ରବଦାଂ ବର ।
ତୂଷ୍ଣୀମେକାନ୍ତମାଶ୍ରିତ୍ୟ ହନୂମନ୍‌ କିଂ ନ ଜଲ୍ପସି । ୨ ।
ହନୂମନ୍‌ ହରିରାଜସ୍ୟ ସୁଗ୍ରୀବସ୍ୟ ସମୋ ହ୍ୟସି ।
ରାମଲକ୍ଷ୍ମଣୟୋଶ୍ଚାପି ତେଜସା ଚ ବଲେନ ଚ । ୩ ।
ଅରିଷ୍ଟନେମିନଃ ପୁତ୍ରୋ ବୈନତେୟୋ ମହାବଲଃ ।
ଗରୁତ୍ମାନିବ ବିଖ୍ୟାତ ଉତ୍ତମଃ ସର୍ବପକ୍ଷିଣାମ୍‌ । ୪ ।
ବହୁଶୋ ହି ମୟା ଦୃଷ୍ଟଃ ସାଗରେ ସ ମହାବଲଃ ।
ଭୁଜଙ୍ଗାନୁଦ୍ଧରନ୍‌ ପକ୍ଷୀ ମହାବାହୁର୍ମହାବଲଃ । ୫ ।
ପକ୍ଷୟୋର୍ଯଦ୍‌ବଲଂ ତସ୍ୟ ଭୁଜବୀର୍ଯବଲଂ ତବ ।
ବିକ୍ରମଶ୍ଚାପି ତେଜଶ୍ଚ ନ ତେ ତେନାପହୀୟତେ । ୬ ।

---

## ୬୬ତମ ସର୍ଗ

### ( ହନୂମାନଙ୍କର ନିଜବଳର ପରିଚୟ )

ଅନେକ ଶତ ସହସ୍ର ବାନରସେନାଙ୍କୁ ବିଷର୍ଣ୍ଣ ଦେଖି ଜାମ୍ବବାନ୍‌ ହନୂମାନଙ୍କୁ ଏହିପ୍ରକାର କହିଲେ ।୧। "ହେ ସର୍ବଶାସ୍ତ୍ରଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ, ବାନରଜଗତର ପ୍ରଧାନ ବୀର ହନୂମନ୍‌ ! ତୁମ୍ଭେ ଏକାକୀ ଚୁପ୍‌ହୋଇ କାହିଁକି ବସିଛ, କିଛି କଥା କହୁ ନାହିଁ କାହିଁକି ? ।୨। ହେ ହନୂମନ୍‌ ! ତୁମ୍ଭେ ବାନରରାଜ ସୁଗ୍ରୀବଙ୍କର ସମାନ ଅଛ ଏବଂ ତେଜ ଓ ବଳରେ ରାମ ଏବଂ ଲକ୍ଷ୍ମଣଙ୍କର ମଧ୍ୟ ସମାନ ଅଛ ।୩। ଅରିଷ୍ଟନେମିଙ୍କର ପୁତ୍ର, ସବୁ ପକ୍ଷୀଙ୍କ ମଧ୍ୟରେ ଶ୍ରେଷ୍ଠ, ମହାବଳୀ ବୈନତେୟଙ୍କ ସମାନ ତୁମ୍ଭେ ବିଖ୍ୟାତ ଅଛ ।୪। ସେହି ମହାବାହୁ ମହାବଳୀ ଗରୁଡ଼ ପକ୍ଷୀଙ୍କୁ ମୁଁ ଅନେକବାର ସମୁଦ୍ରମଧ୍ୟରେ ସର୍ପମାନଙ୍କୁ ଧରିବାର ଦେଖିଅଛି ।୫। ତାହାଙ୍କର ପକ୍ଷରେ ଯେପରି ବଳ ଅଛି, ତୁମ୍ଭର ବାହୁର ବଳ ସେହିରୂପ । ପରାକ୍ରମ ଏବଂ ତେଜରେ ସେ ତୁମ୍ଭଙ୍କୁ

ବଲଂ ବୁଦ୍ଧିଶ୍ଚ ତେଜଶ୍ଚ ସତ୍ତ୍ୱଂ ଚ ହରିପୁଙ୍ଗବ ।
ବିଶିଷ୍ଟଂ ସର୍ବଭୂତେଷୁ କିମାତ୍ମାନଂ ନ ବୁଧ୍ୟସେ ।୭।
ଅପ୍‌ସରାଽପ୍‌ସରସାଂ ଶ୍ରେଷ୍ଠା ବିଖ୍ୟାତା ପୁଞ୍ଜିକସ୍ଥଲା ।
ଅଞ୍ଜନେତି ପରିଖ୍ୟାତା ପତ୍ନୀ କେସରିଣୋ ହରେଃ ।୮।
ବିଖ୍ୟାତା ତ୍ରିଷୁ ଲୋକେଷୁ ରୂପେଣାପ୍ରତିମା ଭୁବି ।
ଅଭିଶାପାଦଭୂତ୍ତାତ କପିତ୍ୱେ କାମରୂପିଣୀ ।୯।
ଦୁହିତା ବାନରେନ୍ଦ୍ରସ୍ୟ କୁଞ୍ଜରସ୍ୟ ମହାତ୍ମନଃ ।
ମାନୁଷଂ ବିଗ୍ରହଂ କୃତ୍ୱା ରୂପଯୌବନଶାଳିନୀ ।୧୦।
ବିଚିତ୍ରମାଲ୍ୟାଭରଣା କଦାଚିତ୍ କ୍ଷୌମଧାରିଣୀ ।
ଅଚରତ୍ପର୍ବତସ୍ୟାଗ୍ରେ ପ୍ରାବୃଡମ୍ବୁଦସନ୍ନିଭେ ।୧୧।
ତସ୍ୟା ବସ୍ତ୍ରଂ ବିଶାଲାକ୍ଷ୍ୟାଃ ପୀତଂ ରକ୍ତଦଶଂ ଶୁଭମ୍ ।
ସ୍ଥିତାୟାଃ ପର୍ବତସ୍ୟାଗ୍ରେ ମାରୁତୋଽପହରଚ୍ଛନୈଃ ।୧୨।
ସ ଦଦର୍ଶ ତତସ୍ତସ୍ୟା ବୃତ୍ତାବୂରୂ ସୁସଂହତୌ ।
ସ୍ତନୌ ଚ ପୀନୌ ସହିତୌ ସୁଜାତଂ ଚାରୁ ଚାନନମ୍ ।୧୩।

---

ବଲପାରିବେ ନାହିଁ ।୭। ହେ ବାନରଶ୍ରେଷ୍ଠ ! ସବୁ ପ୍ରାଣୀଙ୍କଠାରେ ଯେତିକି ବଳ, ବୁଦ୍ଧି ଏବଂ ତେଜ ଅଛି ତାହାଠାରୁ ତୁମ ବଳ, ବୁଦ୍ଧି ଏବଂ ପରାକ୍ରମ ଅଧିକ ଅଛି । ତୁମେ ନିଜକୁ ସନ୍ଦିହିତ କରୁନାହିଁ କାହିଁକି ? ।୭। ଅପ୍ସରାମାନଙ୍କ ମଧ୍ୟରେ ଶ୍ରେଷ୍ଠ ପୁଞ୍ଜିକସ୍ଥଳା ନାମକ ଅପ୍‌ସରା ଅଞ୍ଜନା ନାମରେ ପ୍ରସିଦ୍ଧ ହୋଇ କେଶରୀ ନାମକ ବାନରଙ୍କର ପତ୍ନୀ ହେଲେ ।୮। ସେ ତିନି ଲୋକରେ ପ୍ରସିଦ୍ଧ ହୋଇଥିଲେ ଏବଂ ସମଗ୍ର ପୃଥିବୀ ମଧ୍ୟରେ ରୂପରେ ଅତୁଳନୀୟା ଥିଲେ । ହେ ବତ୍ସ ! ସେହି କାମରୂପିଣୀ ଅଭିଶାପ ପାଇ ବାନରତ୍ୱ ପ୍ରାପ୍ତହେଲେ ।୯। ବାନରେନ୍ଦ୍ର ମହାତ୍ମା କୁଞ୍ଜରଙ୍କର କନ୍ୟାରୂପରେ ସେ କେବେ କେବେ ରୂପଯୌବନସମ୍ପନ୍ନ ମାନବ-ଶରୀର ଧାରଣ କରି ବିଚିତ୍ର ମାଲ୍ୟ, ଅଳଙ୍କାର ଏବଂ ପଟ୍ଟବସ୍ତ୍ର ଆଦିରେ ଶୋଭିତ ହୋଇ ବର୍ଷାକାଳୀନ ମେଘସମାନ ଶୋଭମାନ ପର୍ବତର ଅଗ୍ରଦେଶରେ ବିଚରଣ କରୁଥିଲେ ।୧୦-୧୧। ପର୍ବତଶିଖର ଉପରେ ବସିଥିବା ସେହି ବିଶାଳାକ୍ଷୀଙ୍କର ନାଲିଧଡ଼ିଆ ହଳଦିଆ ଶାଢ଼ୀକୁ ପବନ ଆସ୍ତେ ଆସ୍ତେ ଆକର୍ଷଣ କରିନେଲେ ।୧୨। ବାୟୁ ତାହାଙ୍କର ସୁଗଠିତ ସୁଗୋଲ ଉରୁ, ପୃଥୁଳ ସ୍ତନ ଏବଂ ସୁନ୍ଦର ମୁଖକୁ ଦେଖିଲେ ।୧୩। ସର୍ବାଙ୍ଗସୁନ୍ଦରୀ, ଆୟତଶ୍ରୋଣୀ, କ୍ଷୀଣକଟୀ ସେହି

ତାଂ ବଲାଦାୟତଶ୍ରୋଣୀଂ ତନୁମଧ୍ୟାଂ ଯଶସ୍ୱିନୀମ୍ ।
ଦୃଷ୍ଟ୍ୱୈବ ଶୁଭସର୍ବାଙ୍ଗୀଂ ପବନଃ କାମମୋହିତଃ ।୧୪।
ସ ତାଂ ଭୁଜାଭ୍ୟାଂ ଦୀର୍ଘାଭ୍ୟାଂ ପର୍ଯ୍ୟଷ୍ୱଜତ ମାରୁତଃ ।
ମନ୍ମଥାବିଷ୍ଟସର୍ବାଙ୍ଗୋ ଗତାତ୍ମା ତାମନିନ୍ଦିତାମ୍ ।୧୫।
ସା ତୁ ତତ୍ରୈବ ସଂଭ୍ରାନ୍ତା ସୁବ୍ରତା ବାକ୍ୟମବ୍ରବୀତ୍ ।
ଏକପତ୍ନୀବ୍ରତମିଦଂ କୋ ନାଶୟିତୁମିଚ୍ଛତି ।୧୬।
ଅଞ୍ଜନାୟା ବଚଃ ଶ୍ରୁତ୍ୱା ମାରୁତଃ ପ୍ରତ୍ୟଭାଷତ ।
ନ ତ୍ୱାଂ ହିଂସାମି ସୁଶ୍ରୋଣି ମାଭୂତ୍ତେ ମନସୋ ଭୟମ୍ ।୧୭।
ମନସାସ୍ମି ଗତୋ ଯତ୍ତ୍ୱାଂ ପରିଷ୍ୱଜ୍ୟ ଯଶସ୍ୱିନି ।
ବୀର୍ଯ୍ୟବାନ୍ ବୁଦ୍ଧିସଂପନ୍ନସ୍ତବ ପୁତ୍ରୋ ଭବିଷ୍ୟତି ।୧୮।
ମହାସତ୍ତ୍ୱୋ ମହାତେଜା ମହାବଲପରାକ୍ରମଃ ।
ଲଙ୍ଘନେ ପ୍ଲବନେ ଚୈବ ଭବିଷ୍ୟତି ମୟା ସମଃ ।୧୯।
ଏବମୁକ୍ତା ତତସ୍ତୁଷ୍ଟା ଜନନୀ ତେ ମହାକପେ ।
ଗୁହାୟାଂ ତ୍ୱାଂ ମହାବାହୋ ପ୍ରଜଜ୍ଞେ ପ୍ଲବଗର୍ଷଭ ।୨୦।
ଅଭ୍ୟୁତ୍ଥିତଂ ତତଃ ସୂର୍ଯ୍ୟଂ ବାଲୋ ଦୃଷ୍ଟ୍ୱା ମହାବନେ ।
ଫଲଂ ଚେତି ଜିଘୃକ୍ଷୁସ୍ତ୍ୱମୁତ୍ପ୍ଲୁତ୍ୟାଭ୍ୟୁଦ୍‌ଗତୋ ଦିବମ୍ ।୨୧।

---

ଯଶସ୍ୱିନୀଙ୍କୁ ଦେଖିବାମାତ୍ରେ ବାୟୁ କାମମୋହିତ ହୋଇଗଲେ ।୧୪। କାମମୋହିତ ବାୟୁ ସେହି ସୁନ୍ଦରୀଙ୍କର ସର୍ବାଙ୍ଗକୁ ନିଜର ଦୀର୍ଘଭୁଜଦ୍ୱାରା ଆଲିଙ୍ଗନ କଲେ । ବାୟୁଙ୍କର ମନ ସେହି ଅନିନ୍ଦିତା ରୂପବତୀଙ୍କଠାରେ ଲାଗିଯାଇଥିଲା ।୧୫। ବ୍ରତ-ଧାରିଣୀ ଅଞ୍ଜନା ବଡ଼ ବ୍ୟସ୍ତବ୍ୟସ୍ତ ହୋଇ କହିଲେ, "ମୋର ଏକପତ୍ନୀବ୍ରତକୁ କିଏ ନଷ୍ଟ କରିବାକୁ ଇଚ୍ଛା କରୁଅଛି ? ।୧୬। ଅଞ୍ଜନାଙ୍କର ବଚନ ଶୁଣି ପବନ କହିଲେ, ହେ ସୁନ୍ଦରି ! ମୁଁ ତୁମପ୍ରତି ଦୁର୍ବ୍ୟବହାର କରିବି ନାହିଁ । ତୁମେ କୌଣସି ଭୟ କର ନାହିଁ ।୧୭। ହେ ଯଶସ୍ୱିନି ! ମୁଁ ମନେ ମନେ ତୁମ୍ଭକୁ ଯେ ଆଲିଙ୍ଗନ କଲି ତଦ୍ୱାରା ତୁମ୍ଭର ଏକ ଅତି ବୁଦ୍ଧିମାନ୍ ଏବଂ ବଳବାନ୍ ପୁତ୍ର ଉତ୍ପନ୍ନ ହେବ । ।୧୮। ସେ ମହାବଳୀ, ମହାପରାକ୍ରମୀ, ମହାତେଜସ୍ୱୀ ହେବ ଏବଂ ଡେଇଁବା ଓ ଲଙ୍ଘନ କରିବାରେ ମୋହରି ସଦୃଶ ପରାକ୍ରମୀ ହେବ" ।୧୯। ବାୟୁ ଏପରି କହିବାପରେ ତୁମ୍ଭର ମାତା ଅତିଶୟ ଆନନ୍ଦିତା ହେଲେ ଏବଂ ଗୁହାମଧ୍ୟରେ ତୁମ୍ଭକୁ ପ୍ରସବକଲେ । ।୨୦। ତୁମେ ବାଳକ ଥିବାବେଳେ ମହାବନରେ ସୂର୍ଯ୍ୟଙ୍କୁ ଉଦୟ ହେବାର ଦେଖି ତାହାଙ୍କୁ ଫଳ ବୋଲି ଭାବି ତୁମେ ଡେଇଁ ଆକାଶକୁ ଉଠିଗଲ ।୨୧। ହେ

ଶତାନି ତ୍ରୀଣି ଗତ୍ୱାଥ ଯୋଜନାନାଂ ମହାକପେ ।
ତେଜସା ତସ୍ୟ ନିର୍ଧୂତୋ ନ ବିଷାଦଂ ଗତସ୍ତତଃ । ୨୨ ।
ତ୍ୱାମପ୍ୟୁପଗତଂ ତୂର୍ଣମନ୍ତରିକ୍ଷଂ ମହାକପେ ।
କ୍ଷିପ୍ତମିନ୍ଦ୍ରେଣ ତେ ବଜ୍ରଂ କୋପାବିଷ୍ଟେନ ତେଜସା । ୨୩ ।
ତଦା ଶୈଳାଗ୍ରଶିଖରେ ବାମୋ ହନୁରଭଜ୍ୟତ ।
ତତୋଽଭିନାମଧେୟଂ ତେ ହନୁମାନିତି କୀର୍ତ୍ତିତମ୍ । ୨୪ ।
ତତସ୍ତ୍ୱାଂ ନିହତଂ ଦୃଷ୍ଟ୍ୱା ବାୟୁର୍ଗନ୍ଧବହଃ ସ୍ୱୟମ୍ ।
ତ୍ରୈଲୋକ୍ୟଂ ଭୃଶସଂକ୍ରୁଦ୍ଧୋ ନ ବବୌ ବୈ ପ୍ରଭଞ୍ଜନଃ । ୨୫ ।
ସଂଭ୍ରାନ୍ତାଶ୍ଚ ସୁରାଃ ସର୍ବେ ତ୍ରୈଲୋକ୍ୟେ କ୍ଷୁଭିତେ ସତି ।
ପ୍ରସାଦୟନ୍ତି ସଂକ୍ରୁଦ୍ଧଂ ମାରୁତଂ ଭୁବନେଶ୍ୱରାଃ । ୨୬ ।
ପ୍ରସାଦିତେ ଚ ପବନେ ବ୍ରହ୍ମା ତୁଭ୍ୟଂ ବରଂ ଦଦୌ ।
ଅଶସ୍ତ୍ରବଧ୍ୟତାଂ ତାତ ସମରେ ସତ୍ୟବିକ୍ରମ । ୨୭ ।
ବଜ୍ରସ୍ୟ ଚ ନିପାତେନ ବିରୁଜଂ ତ୍ୱାଂ ସମୀକ୍ଷ୍ୟ ଚ ।
ସହସ୍ରନେତ୍ରଃ ପ୍ରୀତାତ୍ମା ଦଦୌ ତେ ବରମୁତ୍ତମମ୍ । ୨୮ ।
ସ୍ୱଚ୍ଛନ୍ଦତଶ୍ଚ ମରଣଂ ତବ ସ୍ୟାଦିତି ବୈ ପ୍ରଭୋ ।
ସ ତ୍ୱଂ କେସରିଣଃ ପୁତ୍ରଃ କ୍ଷେତ୍ରଜୋ ଭୀମବିକ୍ରମଃ । ୨୯ ।

---

ମହାକପେ ! ତୁମେ ତିନି ଶହ ଯୋଜନ ଯିବାପରେ ସୂର୍ଯ୍ୟଙ୍କ ଉତ୍ତାପରେ ତପ୍ତ ହୋଇ ମଧ୍ୟ ତୁମ୍ଭର କୌଣସି କଷ୍ଟ ହେଲା ନାହିଁ । ୨୨ । ତୁମ୍ଭଙ୍କୁ ଅନ୍ତରୀକ୍ଷକୁ ଆସୁଥିବାର ଦେଖି ଇନ୍ଦ୍ର କ୍ରୁଦ୍ଧହୋଇ ତୁମପ୍ରତି ଅତି ତେଜରେ ବଜ୍ର ନିକ୍ଷେପ କଲେ । ୨୩ । ସେତେବେଳେ ପର୍ବତଶିଖର ଉପରେ ତୁମ୍ଭର ବାମ ହନୁ ଭାଙ୍ଗିଯାଇଥିଲା । ସେହି ହେତୁରୁ ତୁମ୍ଭର 'ହନୁମାନ୍' ନାମ ହୋଇଅଛି । ୨୪ । ତୁମେ ମରିଗଲ, ଏହା ଦେଖି ସ୍ୱୟଂ ଗନ୍ଧବହ ବାୟୁ ଅତିଶୟ କ୍ରୁଦ୍ଧ ହୋଇ ତିନି ଲୋକରେ ବହିଲେ ନାହିଁ । ୨୫ । ଦେବତାମାନେ ସମସ୍ତେ ତିନିଲୋକଯାକ କ୍ଷୁଭିତ ହେବାର ଦେଖି ବ୍ୟସ୍ତବ୍ୟସ୍ତ ହୋଇ-ଉଠିଲେ ଏବଂ ସେମାନେ ବାୟୁଙ୍କୁ ପ୍ରସନ୍ନ କରିବାକୁ ଲାଗିଲେ । ୨୬ । ବାୟୁ ପ୍ରସନ୍ନ ହେଲାଉତ୍ତାରୁ ବ୍ରହ୍ମା ତୁମ୍ଭଙ୍କୁ ବର ଦାନକଲେ ଯେ ତୁମେ ଯୁଦ୍ଧରେ ଶସ୍ତ୍ରଦ୍ୱାରା କଦାପି ହତ ହେବ ନାହିଁ । ୨୭ । ବଜ୍ରାଘାତଦ୍ୱାରା ମଧ୍ୟ ତୁମ୍ଭର କୌଣସି ପୀଡ଼ା ନ ହେବାର ଦେଖି ସହସ୍ରନେତ୍ର ଇନ୍ଦ୍ର ପ୍ରୀତହୋଇ ତୁମ୍ଭଙ୍କୁ ଉତ୍ତମ ବର ଦେଇଥିଲେ । ୨୮ । ନିଜ ଇଚ୍ଛାନୁସାରେ ତୁମ୍ଭର ମରଣ ହେବ । ହେ ହନୁମନ୍, ତୁମେ କେଶରୀଙ୍କର କ୍ଷେତ୍ରଜ ପୁତ୍ର ଏବଂ ଅତିଶୟ ପରାକ୍ରମୀ ଅଟ । ୨୯ । ତୁମେ ପବନଙ୍କର ଔରସଜାତ

ମାରୁତସ୍ୟୌରସଃ ପୁତ୍ରସ୍ତେଜସା ଚାପି ତତ୍ସମଃ ।
ତ୍ୱଂ ହି ବାୟୁସୁତୋ ବତ୍ସ ପ୍ଲବନେ ଚାପି ତତ୍ସମଃ । ୩୦ ।
ବୟମଦ୍ୟ ଗତପ୍ରାଣା ଭବାନସ୍ମାସୁ ସାଂପ୍ରତମ୍ ।
ଦାକ୍ଷ୍ୟବିକ୍ରମସଂପନ୍ନଃ କପିରାଜ ଇବାପରଃ । ୩୧ ।
ତ୍ରିବିକ୍ରମେ ମୟା ତାତ ସଶୈଳବନକାନନା ।
ତ୍ରିଃସପ୍ତକୃତ୍ୱଃ ପୃଥିବୀ ପରିକ୍ରାନ୍ତା ପ୍ରଦକ୍ଷିଣମ୍ । ୩୨ ।
ତଦା ଚୌଷଧୟୋଽସ୍ମାଭିଃ ସଂଚିତା ଦେବଶାସନାତ୍ ।
ନିଷ୍ପନ୍ନମମୃତଂ ଯାଭିସ୍ତଦାନୀଂ ନୋ ମହଦ୍ବଲମ୍ । ୩୩ ।
ସ ଇଦାନୀମହଂ ବୃଦ୍ଧଃ ପରିହୀନପରାକ୍ରମଃ ।
ସାଂପ୍ରତଂ କାଲମସ୍ମାକଂ ଭବାନ୍ ସର୍ବଗୁଣାନ୍ୱିତଃ । ୩୪ ।
ତଦ୍ବିଜୃମ୍ଭସ୍ୱ ବିକ୍ରାନ୍ତଃ ପ୍ଲବତାମୁତ୍ତମୋ ହ୍ୟସି ।
ତ୍ୱଦ୍ବୀର୍ଯଂ ଦ୍ରଷ୍ଟୁକାମା ହି ସର୍ବା ବାନରବାହିନୀ । ୩୫ ।
ଉତ୍ତିଷ୍ଠ ହରିଶାର୍ଦୂଲ ଲଙ୍ଘୟସ୍ୱ ମହାର୍ଣବମ୍ ।
ପରା ହି ସର୍ବଭୂତାନାଂ ହନୁମନ୍ ଯା ଗତିସ୍ତବ । ୩୬ ।

---

ପୁତ୍ର ଏବଂ ତାଙ୍କର ସଦୃଶ ତେଜସ୍ୱୀ ଅଟ । ବତ୍ସ ! ତୁମେ ବାୟୁଙ୍କର ପୁତ୍ର ଏବଂ ଡେଇଁବା ବିଷୟରେ ତାଙ୍କର ସଦୃଶ ଶକ୍ତିଶାଳୀ ଅଟ । ୩୦ । ଆଜି ଆମ୍ଭମାନଙ୍କର ପ୍ରାଣ ଯାଉଅଛି, ଅଥଚ ତୁମେ ଦକ୍ଷତା ଏବଂ ପରାକ୍ରମରେ ଦ୍ୱିତୀୟ ବାନରରାଜଙ୍କପରି ଆମ ମଧ୍ୟରେ ବର୍ତ୍ତମାନ ରହିଅଛ । ୩୧ । ବତ୍ସ ! ବାମନଙ୍କର ତ୍ରିବିକ୍ରମ କ୍ଷେପ କରିବା ସମୟରେ ମୁଁ ଏକୋଇଶବାର ବନପର୍ବତଯୁକ୍ତ ଏହି ପୃଥିବୀକୁ ପ୍ରଦକ୍ଷିଣ କରିଅଛି । ୩୨ । ସେତେବେଳେ ଦେବତାମାନଙ୍କ ଆଜ୍ଞାରେ ଆମ୍ଭେମାନେ ଔଷଧି ସବୁ ସଂଗ୍ରହ କରିଥିଲୁଁ । ସେହି ଔଷଧି ସବୁ ମନ୍ଥନ କରି ଅମୃତ ବାହାର କରାଯାଇଥିଲା । ସେତେବେଳେ ଆମ୍ଭମାନଙ୍କର ଖୁବ୍ ବେଶୀ ବଳ ଥିଲା । ୩୩ । ସେହି ମୁଁ ବର୍ତ୍ତମାନ ବୃଦ୍ଧ ହୋଇଯାଇଅଛି ଏବଂ ମୋର ପରାକ୍ରମ ହ୍ରାସ ପାଇଅଛି । ବର୍ତ୍ତମାନ ମୋର ଆସି ଶେଷକାଳ ଉପସ୍ଥିତ ହେଲାଣି । ତୁମେ ସକଳଗୁଣସମ୍ପନ୍ନ ଅଟ । ୩୪ । ତୁମେ ଡେଇଁବା ବ୍ୟକ୍ତିମାନଙ୍କ ମଧ୍ୟରେ ଉତ୍କୃଷ୍ଟତମ ଅଟ । ତୁମେ ଲମ୍ଫପ୍ରଦାନ କର । ସମସ୍ତ ବାନରସେନା ତୁମ୍ଭର ବୀର୍ଯ୍ୟ ଦେଖିବାକୁ ଚାହିଁ ରହିଛନ୍ତି । । ୩୫ । ହେ ବାନରଶ୍ରେଷ୍ଠ ! ଉଠ, ଏ ମହାସମୁଦ୍ରକୁ ଲଙ୍ଘନକର । ହେ ହନୁମନ୍ ! ତୁମ୍ଭର ଗତି ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଉତ୍କୃଷ୍ଟତମ ଅଟେ । ୩୬ । ବାନର-

ବିଷଣ୍ଣା ହରୟଃ ସର୍ବେ ହନୂମନ୍ କିମପେକ୍ଷସେ ।
ବିକ୍ରମସ୍ୱ ମହାବେଗ ବିଷ୍ଣୁସ୍ତ୍ରୀନ୍ ବିକ୍ରମାନିବ । ୩୭ ।
ତତଃ କପୀନାମୃଷଭେଣ ଚୋଦିତଃ
ପ୍ରତୀତବେଗଃ ପବନାତ୍ମଜଃ କପିଃ ।
ପ୍ରହର୍ଷୟଂସ୍ତାଂ ହରିବୀରବାହିନୀମ୍
ଚକାର ରୂପଂ ମହଦାତ୍ମନସ୍ତଦା । ୩୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ହନୂମଦ୍‌ବଳସନ୍ଧୁକ୍ଷଣମ୍
ନାମ ଷଟ୍‌ଷଷ୍ଟିତମଃ ସର୍ଗଃ

---

ମାନେ ସମସ୍ତେ ବିଷନ୍ନ ହୋଇବସିଛନ୍ତି । ହେ ହନୁମନ୍ ! ତୁମ୍ଭେ କାହିଁକି ଆଉ ବିଳମ୍ବ କରୁଛ ? ହେ ମହାବେଗବାନ୍ ! ବିଷ୍ଣୁ ଯେପରି ତିନି ପାଦରେ ପୃଥିବୀକୁ ମାପିଥିଲେ, ସେହିପରି ତୁମେ ନିଜର ବିକ୍ରମ ଦେଖାଅ" ।୩୭। ଅନନ୍ତର କପିଶ୍ରେଷ୍ଠ(ଜାମ୍ବବାନ୍)ଙ୍କ ଦ୍ୱାରା ପ୍ରେରିତ ହୋଇ ବର୍ଦ୍ଧିତବେଗ ପବନପୁତ୍ର ବାନର (ହନୁମାନ୍) ବାନରସେନାକୁ ପ୍ରସନ୍ନ କରି ନିଜର ରୂପ ପ୍ରକାଶକଲେ । ୩୮ ।

---

# ସପ୍ତଷଷ୍ଟିତମଃ ସର୍ଗଃ

## ଲଂଘନାବଷ୍ଟମ୍ଭଃ

ତଂ ଦୃଷ୍ଟ୍ୱା ଜୃମ୍ଭମାଣଂ ତେ କ୍ରମିତୁଂ ଶତଯୋଜନମ୍ ।
ବେଗେନାପୂର୍ୟମାଣଂ ଚ ସହସା ବାନରୋତ୍ତମମ୍ । ୧ ।
ସହସା ଶୋକମୁତ୍ସୃଜ୍ୟ ପ୍ରହର୍ଷେଣ ସମନ୍ୱିତାଃ ।
ବିନେଦୁସ୍ତୁଷ୍ଟୁବୁଶ୍ଚାପି ହନୂମନ୍ତଂ ମହାବଲମ୍ । ୨ ।
ପ୍ରହୃଷ୍ଟା ବିସ୍ମିତାଶ୍ଚାପି ତେ ବୀକ୍ଷନ୍ତେ ସମନ୍ତତଃ ।
ତ୍ରିବିକ୍ରମଂ କୃତୋତ୍ସାହଂ ନାରାୟଣମିବ ପ୍ରଜାଃ । ୩ ।
ସଂସ୍ତୂୟମାନୋ ହନୁମାନ୍ ବ୍ୟବର୍ଧତ ମହାବଲଃ ।
ସମାବିଦ୍ଧ୍ୟ ଚ ଲାଙ୍ଗୂଲଂ ହର୍ଷାଦ୍‌ବଲମୁପେୟିବାନ୍ । ୪ ।
ତସ୍ୟ ସଂସ୍ତୂୟମାନସ୍ୟ ବୃଦ୍ଧୈର୍ବାନରପୁଙ୍ଗବୈଃ ।
ତେଜସାପୂର୍ୟମାଣସ୍ୟ ରୂପମାସୀଦନୁତ୍ତମମ୍ । ୫ ।
ଯଥା ବିଜୃମ୍ଭତେ ସିଂହୋ ବିବୃତେ ଗିରିଗହ୍ୱରେ ।
ମାରୁତସ୍ୟୌରସଃ ପୁତ୍ରସ୍ତଥା ସମ୍ପ୍ରତି ଜୃମ୍ଭତେ । ୬ ।

---

## ୬୭ତମ ସର୍ଗ

### ( ସମୁଦ୍ର ଲଙ୍ଘନର ଉଦ୍‌ଯୋଗ )

ଶତେ ଯୋଜନ ଲଙ୍ଘନ କରିବା ନିମନ୍ତେ ପ୍ରସ୍ତୁତ ହୋଇ ନିଜ ଶରୀରମଧ୍ୟରେ ବେଗ ପୂର୍ତ୍ତିକରୁଥିବାର ସେହି ବାନରଶ୍ରେଷ୍ଠ ହନୂମାନଙ୍କୁ ଦେଖି ଅନ୍ୟ ବାନରମାନେ ଶୋକତ୍ୟାଗ କରି ଆନନ୍ଦିତ ହେଲେ ଏବଂ ଚିତ୍କାରଧ୍ୱନି କରି ହନୂମାନଙ୍କୁ ପ୍ରଶଂସା କରିବାକୁ ଲାଗିଲେ । ୧-୨ । ଯେପରି ଉତ୍ସାହସମ୍ପନ୍ନ ବାମନଙ୍କୁ ତ୍ରିବିକ୍ରମ-କ୍ଷେପକଲାବେଳେ ପ୍ରଜାମାନେ ନିରୀକ୍ଷଣ କରିଥିଲେ, ସେହିପରି ସେହି ବାନରମାନେ ଆନନ୍ଦିତ ଏବଂ ବିସ୍ମିତ ହୋଇ ହନୂମାନଙ୍କୁ ଅବଲୋକନ କଲେ । ୩ । ମହାବଳୀ ହନୂମାନ୍ ଏହିପରି ପ୍ରଶଂସିତ ହୋଇ ନିଜର ଶରୀରକୁ ବଢ଼ାଇବାକୁ ଲାଗିଲେ ଏବଂ ଲାଙ୍ଗୁଳ ବାଡ଼େଇ ଓ ହର୍ଷିତ ହୋଇ ବଳ ସଞ୍ଚୟ କଲେ । ୪ । ବୃଦ୍ଧ ଏବଂ ଶ୍ରେଷ୍ଠ ବାନରମାନଙ୍କଦ୍ୱାରା ପ୍ରଶଂସିତ ହୋଇ ହନୁମାନଙ୍କ ଶରୀର ତେଜରେ ପୂରିଉଠିଲା ଏବଂ ତାହାଙ୍କର ରୂପ ଅତିଶୟ ସୁନ୍ଦର ହୋଇଉଠିଲା । ୫ । ବିଶାଳ ପର୍ବତ ଗୁହାମଧ୍ୟରେ ସିଂହ ଯେପରି ହାଇମାରେ, ସେହିପରି ବାୟୁପୁତ୍ର ହନୁମାନ୍

ଅଶୋଭତ ମୁଖଂ ତସ୍ୟ ଜୃମ୍ଭମାଣସ୍ୟ ଧୀମତଃ ।
ଅମ୍ବରୀଷୋପମଂ ଦୀପ୍ତଂ ବିଧୂମ ଇବ ପାବକଃ । ୭ ।
ହରୀଣାମୁତ୍ଥିତୋ ମଧ୍ୟାତ୍ ସଂପ୍ରହୃଷ୍ଟତନୂରୁହଃ ।
ଅଭିବାଦ୍ୟ ହରୀନ୍ ବୃଦ୍ଧାନ୍ ହନୂମାନଦମବ୍ରବୀତ୍ । ୮ ।
ଅରୁଜତ୍ ପର୍ବତାଗ୍ରାଣି ହୁତାଶନସଖୋଽନିଳଃ ।
ବଲବାନପ୍ରମେୟଶ୍ଚ ବାୟୁରାକାଶଗୋଚରଃ । ୯ ।
ତସ୍ୟାହଂ ଶୀଘ୍ରବେଗସ୍ୟ ଶୀଘ୍ରଗସ୍ୟ ମହାତ୍ମନଃ ।
ମାରୁତସ୍ୟୌରସଃ ପୁତ୍ରଃ ପ୍ଲବନେ ନାସ୍ତି ତତ୍ସମଃ । ୧୦ ।
ଉତ୍ସହେୟଂ ହି ବିସ୍ତୀର୍ଣମାଲିଖନ୍ତମିବାମ୍ବରମ୍ ।
ମେରୁଂ ଗିରିମସଙ୍ଗେନ ପରିଗନ୍ତୁଂ ସହସ୍ରଶଃ । ୧୧ ।
ବାହୁବେଗପ୍ରଣୁନ୍ନେନ ସାଗରେଣାହମୁତ୍ସହେ ।
ସମାପ୍ଲାବୟିତୁଂ ଲୋକଂ ସପର୍ବତନଦୀହ୍ରଦମ୍ । ୧୨ ।
ମମୋରୁଜଙ୍ଘାବେଗେନ ଭବିଷ୍ୟତି ସମୁତ୍ଥିତଃ ।
ସମୁତ୍ଥିତମହାଗ୍ରାହଃ ସମୁଦ୍ରୋ ବରୁଣାଲୟଃ । ୧୩ ।
ପନ୍ନଗାଶନମାକାଶେ ପତନ୍ତଂ ପକ୍ଷିସେବିତମ୍ ।
ବୈନତେୟମହଂ ଶକ୍ତଃ ପରିଗନ୍ତୁଂ ସହସ୍ରଶଃ ।୧୪ ।

---

ହାଇମାରିଲେ । ୭ । ହାଇମାରିଲାବେଳେ ସେହି ବୁଦ୍ଧିମାନ୍ ହନୁମାନଙ୍କର ମୁଖ ଅମ୍ବରୀଷ (ସୂର୍ଯ୍ୟ)ଙ୍କ ସମାନ ଶୋଭାପାଇଲା ଏବଂ ଧୂମହୀନ ଅଗ୍ନି ସଦୃଶ ଦେଖାଗଲା । ୭ । ହନୂମାନଙ୍କର ଶରୀର ରୋମାଞ୍ଚିତ ହୋଇଉଠିଲା । ସେ ବାନରମାନଙ୍କ ମଧ୍ୟରୁ ଉଠି ବୃଦ୍ଧବାନରମାନଙ୍କୁ ଅଭିବାଦନ କରି କହିଲେ । ୮ । ପର୍ବତଶିଖରମାନଙ୍କୁ ବ୍ୟଥିତକାରୀ, ଅଗ୍ନିସଖା, ଅସୀମଆକାଶବିହାରୀ, ଶୀଘ୍ରଗାମୀ, ବଲବାନ୍, ମହାତ୍ମା ପବନଙ୍କର ମୁଁ ସନ୍ତାନ ଅଟେଁ । ଗମନ ବିଷୟରେ ମୁଁ ତାଙ୍କର ସମାନ ଅଟେଁ । ୯-୧୦। ଯେଉଁ ମେରୁପର୍ବତ ବିସ୍ତୀର୍ଣ୍ଣ ଆକାଶକୁ ସ୍ପର୍ଶ କରିଅଛି, ସେହି ପର୍ବତ ଉପରେ ଆଶ୍ରୟ ନ ନେଇ ମଧ୍ୟ ମୁଁ ସହସ୍ରବାର ଯିବା ଆସିବା କରିବାକୁ ସାହସ କରୁଅଛି । ୧୧ । ବାହୁବେଗଦ୍ୱାରା ସମୁଦ୍ରକୁ ଉଦ୍‌ବେଳିତ କରି ମୁଁ ପର୍ବତ, ନଦୀ ଓ ହ୍ରଦ ସହିତ ସମଗ୍ର ସଂସାରକୁ ବୁଡ଼ାଇ ଦେଇପାରିବି । ୧୨ । ମୋହର ଜାନୁବଳରେ ଏହି ବରୁଣାଳୟ ସମୁଦ୍ର ଉଦ୍‌ବେଳିତ ହୋଇଉଠିବ । ଏଥିମଧ୍ୟରେ ଥିବା ବଡ଼ ବଡ଼ ଜଳଜନ୍ତୁମାନେ ଉପରକୁ ଉଠିଆସିବେ । ୧୩ । ସର୍ପଭୁକ୍, ଆକାଶଗାମୀ ପକ୍ଷୀମାନଙ୍କ ରାଜା ଗରୁଡ଼ଙ୍କ ସହିତ ବାଜି ରଖି ମୁଁ ସହସ୍ରବାର ଯିବ

ଉଦୟାତ୍ ପ୍ରସ୍ଥିତଂ ବାପି ଜ୍ୱଲନ୍ତଂ ରଶ୍ମିମାଳିନମ୍ ।
ଅନସ୍ତମିତମାଦିତ୍ୟମହଂ ଗନ୍ତୁଂ ସମୁତ୍ସହେ । ୧୫ ।
ତତୋ ଭୂମିମସଂସ୍ପୃଷ୍ଟ୍ୱା ପୁନରାଗନ୍ତୁମୁତ୍ସହେ ।
ପ୍ରବେଗେନୈବ ମହତା ଭୀମେନ ପ୍ଲବଗର୍ଷଭାଃ । ୧୬ ।
ଉତ୍ସହେୟମତିକ୍ରାନ୍ତୁଂ ସର୍ବାନାକାଶଗୋଚରାନ୍ ।
ସାଗରାନ୍ ଶୋଷୟିଷ୍ୟାମି ଦାରୟିଷ୍ୟାମି ମେଦିନୀମ୍ । ୧୭ ।
ପର୍ବତାଂଶ୍ଚୂର୍ଣୟିଷ୍ୟାମି ପ୍ଲବମାନଃ ପ୍ଲବଙ୍ଗମାଃ ।
ହରିଷ୍ୟାମ୍ୟୂରୁବେଗେନ ପ୍ଲବମାନୋ ମହାର୍ଣବମ୍ । ୧୮ ।
ଲତାନାଂ ବିବିଧଂ ପୁଷ୍ପଂ ପାଦପାନାଂ ଚ ସର୍ବଶଃ ।
ଅନୁଯାସ୍ୟନ୍ତି ମାମଦ୍ୟ ପ୍ଲବମାନଂ ବିହାୟସା । ୧୯ ।
ଭବିଷ୍ୟତି ହି ମେ ପନ୍ଥାଃ ସ୍ୱାତେଃ ପନ୍ଥା ଇବାମ୍ବରେ ।
ଚରନ୍ତଂ ଘୋରମାକାଶମୁତ୍ପତିଷ୍ୟନ୍ତମେବ ଚ । ୨୦ ।
ଦ୍ରକ୍ଷ୍ୟନ୍ତି ନିପତନ୍ତଂ ଚ ସର୍ବଭୂତାନି ବାନରାଃ ।
ମହାମେରୁପ୍ରତୀକାଶଂ ମାଂ ଦ୍ରକ୍ଷ୍ୟଧ୍ୱଂ ପ୍ଲବଙ୍ଗମାଃ । ୨୧ ।

---

ସମର୍ଥ । ୧୪ । ଉଦୟାଚଳରୁ ଯାତ୍ରା କରିଥିବା କିରଣମାଳାଧାରୀ ଜ୍ୱଳନ୍ତ ସୂର୍ଯ୍ୟଙ୍କ ସଙ୍ଗେ ସଙ୍ଗେ, ସେ ଅସ୍ତାଚଳକୁ ଯିବାଯାଏ, ଯିବାକୁ ମୋର ସାହସ ଅଛି । ୧୫ । ହେ ବାନରଶ୍ରେଷ୍ଠଗଣ ! ସେଠାରୁ ଭୂମିକୁ ସ୍ପର୍ଶ ନ କରି ମଧ୍ୟ ମୁଁ ଅତିଶୟ ଭୀଷଣବେଗରେ ଫେରି ଆସିପାରିବି । ୧୬ । ମୁଁ ସମସ୍ତ ଆକାଶଗ୍ରହ-ମାନଙ୍କୁ ପଛରେ ପକାଇ ଦେଇପାରିବି, ସମୁଦ୍ରକୁ ଶୁଖାଇ ଦେଇପାରିବି ଏବଂ ପୃଥିବୀକୁ ବିଦୀର୍ଣ୍ଣ କରିଦେଇପାରିବି । ୧୭ । ଅତି ବେଗରେ ଡେଇଁ ମୁଁ ପର୍ବତମାନଙ୍କୁ ଚୂର୍ଣ୍ଣବିଚୂର୍ଣ୍ଣ କରିଦେଇ ପାରିବି । ଉଗ୍ରବେଗରେ ଡେଇଁ ମୁଁ ସମୁଦ୍ରକୁ ପାରହୋଇଯିବି ।୧୮। ଆକାଶରେ ମୁଁ ଯେତେବେଳେ ଉଡ଼ି ଯିବି ସେତେବେଳେ ଅନେକ ଲତା ଏବଂ ବୃକ୍ଷମାନଙ୍କର ପୁଷ୍ପସବୁ ମୋ ସଙ୍ଗେ ସଙ୍ଗେ ଉଡ଼ିଯିବେ । ୧୯ । ଏହାଦ୍ୱାରା ଆକାଶମାର୍ଗରେ ପ୍ରସ୍ଥାନ କରିବା ସମୟରେ ଏବଂ ଉପରକୁ ଉଠିବା ସମୟରେ ମୋର ପଥ, ସ୍ୱାତୀଙ୍କର ମାର୍ଗ(ଛାୟାପଥ) ସଦୃଶ ଦେଖାଯିବ । ୨୦ । ହେ ବାନରଗଣ ! ମୁଁ ସମୁଦ୍ର ଲଙ୍ଘନ କଲାବେଳେ ସମସ୍ତ ପ୍ରାଣୀ ମୋତେ ଦେଖିବେ ମେରୁସଦୃଶ ମୋର ବିଶାଳ ରୂପକୁ ତୁମ୍ଭେମାନେ ଅବଲୋକନ କର । ୨୧। ଆକାଶକୁ ଘୋଡ଼ାଇ ପକାଇ

ଉଦ୍‌ଯାବୃତ୍ୟ ଗଚ୍ଛନ୍ତଂ ଗ୍ରସମାନମିବାମ୍ବରମ୍ ।
ବିଧମିଷ୍ୟାମି ଜୀମୁତାନ୍ କମ୍ପୟିଷ୍ୟାମି ପର୍ବତାନ୍ ।
ସାଗରଂ ଶୋଷୟିଷ୍ୟାମି ପ୍ଳବମାନଃ ସମାହିତଃ । ୨୨ ।
ବୈନତେୟସ୍ୟ ବା ଶକ୍ତିର୍ମମ ବା ମାରୁତସ୍ୟ ବା ।
ଋତେ ସୁପର୍ଣ୍ଣରାଜାନାଂ ମାରୁତଂ ବା ମହାବଳମ୍ ।
ନ ତଦ୍ଭୂତଂ ପ୍ରପଶ୍ୟାମି ଯନ୍ମାଂ ପ୍ଳୁତମନୁବ୍ରଜେତ୍ । ୨୩।
ନିମେଷାନ୍ତରମାତ୍ରେଣ ନିରାଲମ୍ବନମମ୍ବରମ୍ ।
ସହସା ନିପତିଷ୍ୟାମି ଘନାଦ୍‌ବିଦ୍ୟୁଦିବୋତ୍ଥିତା । ୨୪ ।
ଭବିଷ୍ୟତି ହି ମେ ରୂପଂ ପ୍ଳବମାନସ୍ୟ ସାଗରମ୍ ।
ବିଷ୍ଣୋଃ ପ୍ରକ୍ରମମାଣସ୍ୟ ତଦା ତ୍ରୀନ୍ ବିକ୍ରମାନିବ । ୨୫ ।
ବୁଦ୍ଧ୍ୟା ଚାହଂ ପ୍ରପଶ୍ୟାମି ମନଶ୍ଚେଷ୍ଟା ଚ ମେ ତଥା ।
ଅହଂ ଦ୍ରକ୍ଷ୍ୟାମି ବୈଦେହୀଂ ପ୍ରମୋଦଧ୍ୱଂ ପ୍ଳବଙ୍ଗମାଃ । ୨୬ ।
ମାରୁତସ୍ୟ ସମୋ ବେଗେ ଗରୁଡ଼ସ୍ୟ ସମୋ ଜବେ ।
ଅୟୁତଂ ଯୋଜନାନାଂ ତୁ ଗମିଷ୍ୟାମୀତି ମେ ମତିଃ । ୨୭ ।
ବାସବସ୍ୟ ସବଜ୍ରସ୍ୟ ବ୍ରହ୍ମଣୋ ବା ସ୍ୱୟମ୍ଭୁବଃ ।
ବିକ୍ରମ୍ୟ ସହସା ହସ୍ତାଦମୃତଂ ତଦିହାନୟେ । ୨୮ ।

---

ତାହାକୁ ଗ୍ରାସ କଲାପରି ମୁଁ ଯିବି । ଯିବାବେଳେ ମୁଁ ମେଘମାନଙ୍କୁ ଚୂର୍ଣ୍ଣବିଚୂର୍ଣ୍ଣ କରିଦେବି, ପର୍ବତମାନଙ୍କୁ ଦୋହଲାଇଦେବି ଏବଂ ଡେଇଁଡେଇଁ ମୁଁ ସମୁଦ୍ରକୁ ଶୁଖାଇଦେବି । ୨୨ । ମୋ ସମାନ କେବଳ ଗରୁଡ଼ ଏବଂ ବାୟୁଙ୍କର ହିଁ ଶକ୍ତି ଅଛି । ପକ୍ଷିରାଜ ଏବଂ ମହାବଳୀ ପବନଙ୍କୁ ଛାଡ଼ି ମୋ ସଙ୍ଗେ ଡେଇଁ ଯାଇପାରିବା ଭଳି ଅନ୍ୟ କୌଣସି ପ୍ରାଣୀକୁ ମୁଁ ଦେଖିପାରୁ ନାହିଁ । ୨୩ । ମୁଁ ମୁହୂର୍ତ୍ତକ ମଧ୍ୟରେ ମେଘମଧ୍ୟରୁ ବିଦ୍ୟୁତ୍ ବାହାରିବାଭଳି ଏହି ଆଶ୍ରୟହୀନ ଆକାଶକୁ ଡେଇଁପଡ଼ିବି ।୨୪। ସମୁଦ୍ର ଲଙ୍ଘନ କଲାବେଳେ ମୋର ରୂପ, ତିନିପାଦରେ ପୃଥିବୀକୁ ମାପୁଥିବା ବିଷ୍ଣୁଙ୍କ ସଦୃଶ ହୋଇଯିବ । ୨୫ । ମୁଁ ବୁଦ୍ଧିଦ୍ୱାରା ଦେଖିପାରୁଛି ଏବଂ ମୋର ମନରେ ଉତ୍ସାହ ହେଉଛି ଯେ ମୁଁ ସୀତାଙ୍କୁ ଦେଖିବି । ହେ ବାନରଗଣ ! ତୁମ୍ଭେମାନେ ଆନନ୍ଦ ଉପଭୋଗ କର । ୨୬ । ମୁଁ ବେଗରେ ପବନ ଏବଂ ଗରୁଡ଼ଙ୍କ ସମାନ ଅଟେଁ । ମୋର ମନେହୁଏ, ମୁଁ ଦଶସହସ୍ର ଯୋଜନପର୍ଯ୍ୟନ୍ତ ଯାଇପାରିବି । ୨୭ । ବଜ୍ରଧାରୀ ଇନ୍ଦ୍ର ଅଥବା ସ୍ୱୟଂଭୂ ବ୍ରହ୍ମାଙ୍କ ହାତରୁ ମୁଁ ପରାକ୍ରମ ସହକାରେ ଅମୃତ ଛଡ଼ାଇ

ଲଙ୍କାଂ ବାପି ସମୁତ୍କ୍ଷିପ୍ୟ ଗଚ୍ଛେୟମିତି ମେ ମତିଃ ।
ତମେବଂ ବାନରଶ୍ରେଷ୍ଠଂ ଗର୍ଜନ୍ତମମିତପ୍ରଭମ୍ । ୨୯ ।
ପ୍ରହୃଷ୍ଟା ହରୟସ୍ତତ୍ର ସମୁଦୈକ୍ଷନ୍ତ ବିସ୍ମିତାଃ ।
ତଚ୍ଚାସ୍ୟ ବଚନଂ ଶ୍ରୁତ୍ୱା ଜ୍ଞାତୀନାଂ ଶୋକନାଶନମ୍ । ୩୦ ।
ଉବାଚ ପରିସଂହୃଷ୍ଟୋ ଜାମ୍ବବାନ୍ ପ୍ଲବଗେଶ୍ୱରଃ ।
ବୀର କେସରିଣଃ ପୁତ୍ର ବେଗବନ୍ମାରୁତାତ୍ମଜ । ୩୧ ।
ଜ୍ଞାତୀନାଂ ବିପୁଲଃ ଶୋକସ୍ତ୍ୱୟା ତାତ ପ୍ରଣାଶିତଃ ।
ତବ କଲ୍ୟାଣରୁଚୟଃ କପିମୁଖ୍ୟାଃ ସମାଗତାଃ । ୩୨ ।
ମଙ୍ଗଲାନ୍ୟର୍ଥସିଦ୍ଧ୍ୟର୍ଥଂ କରିଷ୍ୟନ୍ତି ସମାହିତାଃ ।
ଋଷୀଣାଂ ଚ ପ୍ରସାଦେନ କପିବୃଦ୍ଧମତେନ ଚ । ୩୩ ।
ଗୁରୂଣାଂ ଚ ପ୍ରସାଦେନ ସଂପ୍ଲବ ତ୍ୱଂ ମହାର୍ଣ୍ଣବମ୍ ।
ସ୍ଥାସ୍ୟାମଶ୍ଚୈକପାଦେନ ଯାବଦାଗମନଂ ତବ । ୩୪ ।
ତ୍ୱଦ୍‌ଗତାନି ଚ ସର୍ବେଷାଂ ଜୀବନାନି ବନୌକସାମ୍ ।
ତତଶ୍ଚ ହରିଶାର୍ଦ୍ଦୂଳସ୍ତାନୁବାଚ ବନୌକସଃ । ୩୫ ।

---

ଏଠାକୁ ଫେରି ଆସିପାରିବି । ୨୮ । ମୋର ମନେହୁଏ, ମୁଁ ଲଙ୍କାରୁ ଆଗକୁ ମଧ୍ୟ ଯାଇପାରିବି" । ସେହି ଅମିତତେଜା ଗର୍ଜନକାରୀ ବାନରଶ୍ରେଷ୍ଠ ହନୁମାନଙ୍କୁ ବାନରମାନେ ଆନନ୍ଦିତହୋଇ ଚକିତଭାବରେ ଚାହିଁରହିଲେ । ଜ୍ଞାତିମାନଙ୍କର ଶୋକ ଅପହରଣକାରୀ ତାଙ୍କର ଏହି ବଚନ ଶୁଣି ବାନରାଧିପତି ଜାମ୍ବବାନ୍ ଅତିଶୟ ଆନନ୍ଦିତ ହୋଇ କହିଲେ, "ହେ କେଶରୀ ଏବଂ ପବନପୁତ୍ର ! ହେ ବୀର ବତ୍ସ ! ତୁମେ ଜ୍ଞାତିମାନଙ୍କର ସମସ୍ତ ଶୋକ ଦୂର କରିଦେଇଅଛ । ତୁମର ମଙ୍ଗଳାକାଙ୍କ୍ଷୀ ଶ୍ରେଷ୍ଠ ବାନରମାନେ ଏଠାରେ ଏକତ୍ର ହୋଇଛନ୍ତି । ସେମାନେ ସମସ୍ତେ ଏକାଗ୍ରଚିତ୍ତରେ କାର୍ଯ୍ୟସିଦ୍ଧିନିମନ୍ତେ ତୁମ୍ଭ ପାଇଁ ମାଙ୍ଗଳିକ ଅନୁଷ୍ଠାନ କରିବେ । ଋଷିମାନଙ୍କ ଅନୁଗ୍ରହରୁ, ବୃଦ୍ଧ ବାନରମାନଙ୍କର ପରାମର୍ଶରେ ଏବଂ ଗୁରୁଜନମାନଙ୍କ ଅନୁଗ୍ରହରୁ ତୁମେ ଏ ମହାସମୁଦ୍ରକୁ ଲଙ୍ଘନକର । ତୁମେ ଆସିବାପର୍ଯ୍ୟନ୍ତ ଆମ୍ଭେମାନେ ସମସ୍ତେ ଗୋଟିଏ ଗୋଡ଼ରେ ଠିଆହୋଇ ରହିଥିବୁଁ । ୨୯-୩୪ । ବନବାସୀ ସମସ୍ତ ବାନରଙ୍କର ଜୀବନ କେବଳ ତୁମର ଉପରେ ନିର୍ଭର କରେ ।" ଅନନ୍ତର ବାନରଶ୍ରେଷ୍ଠ (ହନୁମାନ୍) ସେହି ବାନରମାନଙ୍କୁ

କୋଽପି ଲୋକେ ନ ମେ ବେଗଂ ପ୍ଲବନେ ଧାରୟିଷ୍ୟତି ।
ଏତାନୀହ ନଗସ୍ୟାସ୍ୟ ଶିଳାସଙ୍କଟଶାଳିନଃ । ୩୬ ।
ଶିଖରାଣି ମହେନ୍ଦ୍ରସ୍ୟ ସ୍ଥିରାଣି ଚ ମହାନ୍ତି ଚ ।
ଯେଷୁ ବେଗଂ ଗମିଷ୍ୟାମି ମହେନ୍ଦ୍ରଶିଖରେଷ୍ୱହମ୍ । ୩୭ ।
ନାନାଦ୍ରୁମବିକୀର୍ଣ୍ଣେଷୁ ଧାତୁନିଷ୍ୟନ୍ଦଶୋଭିଷୁ ।
ଏତାନି ମମ ବେଗଂ ହି ଶିଖରାଣି ମହାନ୍ତି ଚ । ୩୮ ।
ପ୍ଲବତୋ ଧାରୟିଷ୍ୟନ୍ତି ଯୋଜନାନାମିତଃ ଶତମ୍ ।
ତତସ୍ତୁ ମାରୁତପ୍ରଖ୍ୟଃ ସ ହରିର୍ମାରୁତାତ୍ମଜଃ ।
ଆରୁରୋହ ନଗଶ୍ରେଷ୍ଠଂ ମହେନ୍ଦ୍ରମରିମର୍ଦ୍ଦନଃ । ୩୯ ।
ବୃତଂ ନାନାବିଧୈଃ ପୁଷ୍ପୈର୍ମୃଗସେବିତଶାଦ୍ୱଲମ୍ ।
ଲତାକୁସୁମସଂବାଧଂ ନିତ୍ୟପୁଷ୍ପଫଳଦ୍ରୁମମ୍ । ୪୦ ।
ସିଂହଶାର୍ଦ୍ଦୂଳ ସହିତଂ ମତ୍ତମାତଙ୍ଗସେବିତମ୍ ।
ମତ୍ତଦ୍ୱିଜଗଣୋଦ୍‌ଘୁଷ୍ଟଂ ସଲିଲୋତ୍ପୀଡ଼ସଂକୁଲମ୍ । ୪୧ ।
ମହଦ୍ଭିରୁଚ୍ଛ୍ରିତଃ ଶୃଙ୍ଗୈର୍ମହେନ୍ଦ୍ରସ୍ୟ ମହାବଳଃ ।
ବିଚଚାର ହରିଶ୍ରେଷ୍ଠୋ ମହେନ୍ଦ୍ରସମବିକ୍ରମଃ । ୪୨ ।
ବାହୁଭ୍ୟାଂ ପୀଡ଼ିତସ୍ତେନ ମହାଶୈଳୋ ମହାତ୍ମନା ।
ରରାସ ସଂହାଭିହତୋ ମହାନ୍ମତ୍ତ ଇବ ଦ୍ୱିପଃ । ୪୩ ।

---

କହିଲେ । ୩୫ । "ମୁଁ ଡେଇଁବାବେଳେ ଏ ସଂସାରରେ କେହି ମୋର ବେଗକୁ ସହ୍ୟ କରିପାରିବ ନାହିଁ । ଉଚ୍ଚ ଉଚ୍ଚ ପ୍ରସ୍ତରଯୁକ୍ତ ଏହି ମହେନ୍ଦ୍ରପର୍ବତର ଶିଖର ବିଶାଳ ଓ ସ୍ଥିର ଅଛି । ଏହାର ଉପରୁ ମୁଁ ମୋର ବେଗ ସହିତ ଡେଇଁବି ।୩୬-୩୭। ନାନା ବୃକ୍ଷଦ୍ୱାରା ଆବୃତ ଏବଂ ତରଳଧାତୁଶୋଭିତ ଏହି ବିଶାଳ ଶିଖରମାନେ, ଶତଯୋଜନ ଡେଇଁବାବେଳେ ମୋର ବେଗକୁ ସହ୍ୟ କରିପାରିବେ ।" ଅନନ୍ତର ବାୟୁସଦୃଶ ବଳବାନ୍ ବାୟୁପୁତ୍ର ହନୂମାନ୍ ପର୍ବତଶ୍ରେଷ୍ଠ ମହେନ୍ଦ୍ର ଉପରେ ଚଢ଼ିଲେ ।୩୮-୩୯ । ନାନାବିଧ ପୁଷ୍ପଶୋଭିତ, ଲତାପୁଷ୍ପଯୁକ୍ତ, ସର୍ବଦା ପ୍ରସ୍ଫୁଟିତ ଏବଂ ଫଳଯୁକ୍ତ ବୃକ୍ଷପଂକ୍ତି, ସିଂହ, ବ୍ୟାଘ୍ର ଏବଂ ମତ୍ତହସ୍ତି ସଙ୍କୁଳ, ମତ୍ତପକ୍ଷୀମାନଙ୍କ ଶବ୍ଦରେ ମୁଖରିତ, ଜଳଧାରାଯୁକ୍ତ, ଉଚ୍ଚ ଶିଖରମାନଙ୍କଦ୍ୱାରା ବିଶାଳ ମହେନ୍ଦ୍ର ପର୍ବତ ଉପରେ ଇନ୍ଦ୍ରସଦୃଶ ପରାକ୍ରମୀ ବାନରଶ୍ରେଷ୍ଠ ହନୂମାନ୍ ବିଚରଣ କରିବାକୁ ଲାଗିଲେ ।୪୦-୪୨ । ମହାତ୍ମା ହନୁମାନଙ୍କ ହସ୍ତଦ୍ୱାରା ଆହତ ହୋଇ ସେହି ମହାଶୈଳ ସିଂହଦ୍ୱାରା ଆହତ ହସ୍ତିସଦୃଶ ଶବ୍ଦ କରିବାକୁ ଲାଗିଲା । ୪୩ ।

ମୁମୋଚ ସଲିଲୋତ୍ପୀଡ଼ାନ୍ ବିପ୍ରକୀର୍ଣ୍ଣଶିଲୋଚ୍ଚୟଃ ।
ବିତ୍ରସ୍ତମୃଗମାତଙ୍ଗଃ ପ୍ରକମ୍ପିତମହାଦ୍ରୁମଃ । ୪୪ ।
ନାନାଗନ୍ଧର୍ବମିଥୁନୈଃ ପାନସଂସର୍ଗକର୍କଶୈଃ ।
ଉତ୍ପତଦ୍ଭିର୍ବିହଙ୍ଗୈଶ୍ଚ ବିଦ୍ୟାଧରଗଣୈରପି । ୪୫ ।
ତ୍ୟଜ୍ୟମାନମହାସାନୁଃ ସଂନିଲୀନମହୋରଗଃ ।
ଶୈଳଶୃଙ୍ଗଶିଲୋତ୍ପାତସ୍ତଦାଭୂତ୍ସ ମହାଗିରିଃ । ୪୬ ।
ନିଃଶ୍ୱସଦ୍ଭିସ୍ତଦା ତୈସ୍ତୁ ଭୁଜଗୈରର୍ଦ୍ଧନିଃସୃତୈଃ ।
ସପତାକ ଇବାଭାତି ସ ତଦା ଧରଣୀଧରଃ । ୪୭ ।
ଋଷିଭିସ୍ତ୍ରାସସଂଭ୍ରାନ୍ତୈସ୍ତ୍ୟଜ୍ୟମାନଶିଲୋଚ୍ଚୟଃ ।
ସୀଦନ୍ମହତି କାନ୍ତାରେ ସାର୍ଥହୀନ ଇବାଧ୍ୱଗଃ । ୪୮ ।
ସ ବେଗବାନ୍ ବେଗସମାହିତାତ୍ମା ହରିପ୍ରବୀରଃ ପରବୀରହନ୍ତା ।
ମନଃ ସମାଧାୟ ମହାନୁଭାବୋ ଜଗାମ ଲଙ୍କାଂ ମନସା ମନସ୍ୱୀ ।୪୯

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ କିଷ୍କିନ୍ଧାକାଣ୍ଡେ ଲଙ୍ଘନାବଷ୍ଟମ୍ଭୋ ନାମ ସପ୍ତଷଷ୍ଟିତମଃ ସର୍ଗଃ

**ଶ୍ରୀମଦ୍‌ବାଲ୍ମୀକିରାମାୟଣେ କିଷ୍କିନ୍ଧାକାଣ୍ଡଃ ସମ୍ପୂର୍ଣ୍ଣଃ**

---

ତାହାର ପ୍ରସ୍ତରଖଣ୍ଡସମୂହ ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ତାହା ଦେହରୁ ଜଳଧାରା ନିର୍ଗତ ହେଲା । ହସ୍ତୀ, ମୃଗ ଆଦି ପଶୁମାନେ ଭୟଭୀତ ହୋଇପଡ଼ିଲେ ଏବଂ ବିଶାଳ ମହାଦ୍ରୁମମାନ କମ୍ପିଗଲେ । ୪୪ । ମଦ୍ୟପାନହେତୁରୁ କର୍କଶ ହୋଇଥିବା ଗନ୍ଧର୍ବଦମ୍ପତିମାନେ, ଉଡ଼ୁଥିବା ପକ୍ଷୀମାନେ ଏବଂ ବିଦ୍ୟାଧରମାନେ ସେ ପର୍ବତର ମହାଶିଖରକୁ ଛାଡ଼ି ଉପରକୁ ଉଠିଗଲେ । ବଡ଼ ବଡ଼ ସର୍ପମାନେ (ବିଳମଧ୍ୟରେ) ଲୁଚିଗଲେ । ସେ ପର୍ବତଶିଖର ଉପରୁ ପଥରମାନ ଖସିପଡ଼ିବାଦ୍ୱାରା ସେ ମହାଗିରିରେ ଏକ ମହା ଉତ୍ପାତ ସୃଷ୍ଟି ହେଲା । ନିଃଶ୍ୱାସ ଛାଡ଼ୁଥିବା ଅର୍ଦ୍ଧନିର୍ଗତ ସର୍ପମାନଙ୍କ ଦ୍ୱାରା ସେ ପର୍ବତ ପତାକାଦ୍ୱାରା ଶୋଭିତ ହେଲାପରି ଦେଖାଗଲା । ୪୫-୪୭ । ନିବିଡ଼ ଅରଣ୍ୟମଧ୍ୟରେ ପଥିକକୁ ନିଜର ସାଥିମାନେ ଛାଡ଼ି ପଳାଇଲେ ସେ ଯେପରି ଦୁଃଖିତ ହୋଇପଡ଼େ, ସେହିପରି ଭୟଭୀତ ଋଷିମାନେ ସେହି ପର୍ବତକୁ ଛାଡ଼ି ପଳାଇଗଲେ ।୪୮। ବେଗବାନ୍, ମହାନୁଭବ, ଶତ୍ରୁହନ୍ତା, ବାନରଶ୍ରେଷ୍ଠ ହନୁମାନ୍ ବେଗଦ୍ୱାରା ନିଜର ମନକୁ ଦୃଢ଼କରି ସାବଧାନଭାବରେ ମନେ ମନେ ଲଙ୍କାକୁ ଚାଲିଗଲେ ।୪୯।

ଶ୍ରୀମଦ୍‌ବାଲ୍ମୀକିରାମାୟଣେ କିଷ୍କିନ୍ଧାକାଣ୍ଡ ସମ୍ପୂର୍ଣ୍ଣ

---

ସତ୍ୟବାଦୀ ପ୍ରେସରେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କଦ୍ୱାରା ମୁଦ୍ରିତ—୧୯୫୫